2



ବିଶିଷ୍ଟ ବିଧାୟକ ପ୍ରକରଣ ପୁସ୍ତକମାଳା



# ପଣ୍ଡିତ ନୀଳକଣ୍ଠ ଦାସ

ଗବେଷଣା, ସୂଚନା, ଗ୍ରନ୍ଥାଗାର ଓ ତାଲିମ ବିଭାଗ
ଓଡ଼ିଶା ବିଧାନସଭା ସଚିବାଳୟ
ଭୁବନେଶ୍ୱର



ORISSA LEGISLATIVE ASSEMBLY

# ବିଶିଷ୍ଟ ବିଧାୟକ ପ୍ରକରଣ ପୁସ୍ତକମାଳା

## ପଣ୍ଡିତ ନୀଳକଣ୍ଠ ଦାସ

## 2

ଗବେଷଣା, ସୂଚନା, ଗ୍ରନ୍ଥାଗାର ଓ ତାଲିମ ବିଭାଗ,
ଓଡ଼ିଶା ବିଧାନସଭା ସଚିବାଳୟ,
ଭୁବନେଶ୍ୱର
1996

# ମୁଖବନ୍ଧ

ପ୍ରଚଣ୍ଡ ବିଦ୍‌ବତ୍ତା, ଅସାଧାରଣ ବ୍ୟକ୍ତିତ୍ୱ ଓ ବହୁମୁଖୀ ପ୍ରତିଭାର ଅଧିକାରୀ, ରାଜନୀତିଜ୍ଞ, ଦାର୍ଶନିକ, ଛାତ୍ରବତ୍ସଳ ଶିକ୍ଷକ, ସାହିତ୍ୟିକ, ସମାଜ ସଂସ୍କାରକ ଓ ରାଷ୍ଟ୍ରନୀତିଜ୍ଞ ବାଚସ୍ପତି ପଣ୍ଡିତ ନୀଳକଣ୍ଠ ଏ ଜାତିର ଗର୍ବ ଓ ଗୌରବ । ଓଡ଼ିଶାରେ ଅର୍ଦ୍ଧଶତାବ୍ଦୀ ଧରି ରାଜନୀତି, ସାହିତ୍ୟ ଦର୍ଶନ ଓ ସମାଜ ସଂସ୍କାର କାର୍ଯ୍ୟକ୍ରମରେ ପଣ୍ଡିତ ନୀଳକଣ୍ଠ ସର୍ବଦା ପୁରୋଭାଗରେ ଥିଲେ । ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ନୀଳକଣ୍ଠଙ୍କ ଉଦ୍ୟମ ଚିରସ୍ମରଣୀୟ । କେନ୍ଦ୍ର ବ୍ୟବସ୍ଥାପକ ସଭାର ସଦସ୍ୟ ଓ ଓଡ଼ିଶା ବିଧାନ ସଭାର ବାଚସ୍ପତି ପଦବୀର ମର୍ଯ୍ୟାଦା ରକ୍ଷା କରିବା ପାଇଁ ସେ ଯେଉଁ ବଳିଷ୍ଠ ପଦକ୍ଷେପ ନେଇଥିଲେ ତଦ୍ୱାରା ଭାରତୀୟ ଗଣତାନ୍ତ୍ରିକ ପରମ୍ପରା ସମୃଦ୍ଧ ହୋଇଅଛି । ବିଧାନ ସଭା ଗୃହରେ ତାଙ୍କର ସମସ୍ତ ବକ୍ତବ୍ୟ ଅକାଟ୍ୟ ଯୁକ୍ତି ଆଧାରିତ ଓ ସର୍ବଜନଆଦୃତ ହୋଇଥିଲା । ଓଡ଼ିଶା ବିଧାନ ସଭାର ଉଚ୍ଚକୋଟୀର ବୈଧାନିକ ପରମ୍ପରା ପ୍ରତିଷ୍ଠା ପାଇଁ ସେ ନିରବଚ୍ଛିନ୍ନ ଉଦ୍ୟମ କରିବା ସଙ୍ଗେ ସଙ୍ଗେ ତାଙ୍କର ଅସାଧାରଣ ପ୍ରତିଭା ଅଧ୍ୟୟନ ଓ କାର୍ଯ୍ୟଦକ୍ଷତାର ପ୍ରତିପାଦନ କରିଅଛନ୍ତି ।

ପ୍ରବାଦ ପୁରୁଷ ପଣ୍ଡିତ ନୀଳକଣ୍ଠଙ୍କ ନୀତି, ଆଦର୍ଶ ଓ ସାଂସଦ, ବିଧାୟକ ଏବଂ ବାଚସ୍ପତି ରୂପେ ତାଙ୍କର କୃତିତ୍ୱ ଓ ବୈପ୍ଳବିକ ଚିନ୍ତାଧାରାର ପ୍ରସାରଣ ପାଇଁ ବିଧାନ ସଭାର ଗବେଷଣା, ସୂଚନା, ଗ୍ରନ୍ଥାଗାର ଓ ତାଲିମ ବିଭାଗ ଯେଉଁ ଉଦ୍ୟମ କରିଅଛନ୍ତି ତାହା ସର୍ବାଦୌ ଅଭିନନ୍ଦନୀୟ । ଡାଃ. ପର୍ଶୁରାମ ମିଶ୍ର, ଅଗ୍ରଗାମୀ ଶିକ୍ଷା ପ୍ରତିଷ୍ଠାନ, ସମ୍ବଲପୁର ଓ ପୂର୍ବତନ ଅଧ୍ୟକ୍ଷ ପ୍ରଫେସର ଜଗନ୍ନାଥ ମହାନ୍ତି ବହୁ ଶ୍ରମ ସ୍ୱୀକାର ପୂର୍ବକ ସୀମିତ ସମୟ ମଧ୍ୟରେ ଏହି ଉପାଦେୟ ଓ ଶିକ୍ଷଣୀୟ ଗ୍ରନ୍ଥ ସଂପାଦନ କରିଥିବାରୁ ବିଶେଷ ଧନ୍ୟବାଦର ପାତ୍ର । ଗ୍ରନ୍ଥ ପ୍ରକାଶନ ପାଇଁ ଯେଉଁମାନେ ପ୍ରଫେସର ମହାନ୍ତିଙ୍କୁ ସାହାଯ୍ୟ, ସହଯୋଗ, ସମର୍ଥନ ଓ ପ୍ରୋତ୍ସାହନ ଯୋଗାଇ ଦେଇଅଛନ୍ତି ସେମାନେ ସମସ୍ତେ ଧନ୍ୟବାଦାର୍ହ ।

ସ୍ୱାଧୀନତା ଆନ୍ଦୋଳନ, ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ପାଇଁ ନିଆଯାଇଥିବା ଅସ୍ମମାରି ପଦକ୍ଷେପ, ପଞ୍ଚସଖାଙ୍କ ଶିକ୍ଷା, ସାହିତ୍ୟ ଓ ସମାଜ ସଂସ୍କାର କାର୍ଯ୍ୟକ୍ରମ, ରାଜନୀତି ଓ ରାଜନୀତିଜ୍ଞମାନଙ୍କର କାର୍ଯ୍ୟକଳାପ ଓ ଅବଦାନ ସଂକ୍ରାନ୍ତ ବହୁ ଉପାଦେୟ ତଥ୍ୟଭିତ୍ତିକ ଏହି ସୁସମ୍ପାଦିତ ଗ୍ରନ୍ଥ ଛାତ୍ର, ଶିକ୍ଷକ, ଗବେଷକ, ବିଧାୟକ ଓ ରାଜନୀତିଜ୍ଞଙ୍କ ଦ୍ୱାରା ଆଦୃତ ହେବ ବୋଲି ମୁଁ ଅତ୍ୟନ୍ତ ଆଶାବାଦୀ ।

ଚିନ୍ତାମଣି ଦ୍ୟାନସାମନ୍ତରା

ବାଚସ୍ପତି

# ପ୍ରାକ୍ କଥନ

"ବିଶିଷ୍ଟ ବିଧାୟକ ପ୍ରକରଣ ପୁସ୍ତକମାଳା" ପ୍ରକାଶନ ଧାରାରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ବ୍ୟକ୍ତିତ୍ୱ ଓ କୃତିତ୍ୱକୁ ନେଇ ପ୍ରକାଶିତ ହେଉଥିବା ଗବେଷଣାତ୍ମକ ପୁସ୍ତକ ଓଡ଼ିଶାର ସୁଧୀ ପାଠକ ସମାଜ ପାଇଁ ବାସ୍ତବିକ୍ ବିଶେଷ ଆନନ୍ଦର କଥା । ପ୍ରାତଃ ସ୍ମରଣୀୟ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ଅନ୍ତରଙ୍ଗ ସହକର୍ମୀ ଭାବରେ ସତ୍ୟବାଦୀ ଯୁଗର ପଞ୍ଚ ସଖାଙ୍କ ମଧ୍ୟରେ ଜଣେ ଆଦର୍ଶ ଶିକ୍ଷକ, ସାହିତ୍ୟିକ, ସଂସ୍କାରକ, ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ବିପ୍ଳବୀ ଜନନାୟକ ଭାବରେ ନୁହଁନ୍ତି, କେନ୍ଦ୍ର ବ୍ୟବସ୍ଥାପକ ସଭାର ଜଣେ ବିଶିଷ୍ଟ ସାଂସଦ ଓ ଓଡ଼ିଶା ବିଧାନସଭାର ବାଚସ୍ପତି ଭାବରେ ପଣ୍ଡିତ ନୀଳକଣ୍ଠଙ୍କ ଅବଦାନ, ଭାରତର ସଂସଦୀୟ ଗଣତାନ୍ତ୍ରିକ ଇତିହାସରୁ ବିସ୍ମୃତ ହେବାର ନୁହେଁ । ଓଡ଼ିଶା ବିଧାନସଭାର ସଚିବାଳୟକୁ ରାଜ୍ୟ ପ୍ରଶାସନିକ କର୍ତ୍ତୃତ୍ୱରୁ ମୁକ୍ତ କରି ତାକୁ ସ୍ୱତନ୍ତ୍ର ପଦ ମର୍ଯ୍ୟାଦା ପ୍ରଦାନ କରିବାରେ ସେ ଯେଉଁଳି ବୈପ୍ଳବିକ ପଦକ୍ଷେପ ନେଇଥିଲେ, ସେହିଭଳି ବିଧାନସଭା ଭାଙ୍ଗିଗଲେ ମଧ୍ୟ ବାଚସ୍ପତିଙ୍କ ସ୍ଥିତି ନୂତନ ବାଚସ୍ପତି ନିର୍ବାଚିତ ହେବା ଯାଏଁ ଅକ୍ଷୁର୍ଣ୍ଣ ରଖିବାରେ ତାଙ୍କର ସୁଚିନ୍ତିତ ପରାମର୍ଶକୁ ସର୍ବଭାରତୀୟ ସ୍ତରରେ ଗ୍ରହଣ କରି ନିଆଯାଇଥିଲା । କେନ୍ଦ୍ର ବ୍ୟବସ୍ଥାପକ ସଭାର ସଦସ୍ୟ ଭାବରେ ବହୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗରେ ସେ ନିଜର ବଳିଷ୍ଠ, ଯୁକ୍ତିଯୁକ୍ତ ତଥ୍ୟଭିତ୍ତିକ ଓ ନିର୍ଭୀକ ଅଭିଭାଷଣମାନ ପ୍ରଦାନ କରି ଯେଉଁଳି ଭାରତୀୟ ନେତୃବୃନ୍ଦଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ, ବିଧାନସଭାର ବାଚସ୍ପତି ଭାବରେ ସେଉଁଳି ବହୁ ଐତିହାସିକ ନିଷ୍ପତ୍ତି ପ୍ରଦାନ କରି ଏହି ପଦବୀର ଗୌରବ ବୃଦ୍ଧିରେ ସହାୟକ ହୋଇଥିଲେ ।

ଓଡ଼ିଶା ବିଧାନସଭାର ମାନ୍ୟବର ବାଚସ୍ପତି ଶ୍ରୀଯୁକ୍ତ ଚିନ୍ତାମଣି ଦ୍ୟାନ ସାମନ୍ତରାଙ୍କ ପ୍ରେରଣା ଓ ଉତ୍ସାହ, ପ୍ରଫେସର ଜଗନ୍ନାଥ ମହାନ୍ତିଙ୍କର ଅଧ୍ୟୟନ ଓ ରଚନା ଏବଂ ଆମ ବିଧାନସଭାର ଗବେଷଣା, ସୂଚନା, ଗ୍ରନ୍ଥାଗାର ଓ ପ୍ରଶିକ୍ଷଣ ବିଭାଗର କର୍ମକର୍ତ୍ତା-ମାନଙ୍କ ସହଯୋଗ ଫଳରେ ପଣ୍ଡିତ ନୀଳକଣ୍ଠଙ୍କ ସମ୍ପର୍କରେ ଉପାଦେୟ ପୁସ୍ତକଟିଏ ପ୍ରକାଶ ପାଇଥିବାରୁ ମୁଁ ସେ ସମସ୍ତଙ୍କୁ ଆନ୍ତରିକ କୃତଜ୍ଞତା ଜଣାଉଅଛି । ଆଶା କରୁଛି ପଣ୍ଡିତ ନୀଳକଣ୍ଠ ଦାସଙ୍କ ରାଜନୈତିକ ବ୍ୟକ୍ତିତ୍ୱ ଓ କୃତିତ୍ୱକୁ ଜାଣିବାରେ ଏ ପୁସ୍ତକଟି ବିଶେଷ ସହାୟକ ହେବ ।

**ସତ୍ୟେନ୍ଦ୍ର ନାରାୟଣ ତ୍ରିପାଠୀ**

ସଚିବ

## ବନ୍ଧୁ ସମ୍ପର୍କରେ ପଦେ

ଆମ ରାଜ୍ୟର ଶିକ୍ଷା, ସାହିତ୍ୟ ସଂସ୍କୃତି ଓ ସମାଜ ସଂସ୍କାର କ୍ଷେତ୍ରରେ ପଣ୍ଡିତ ନୀଳକଣ୍ଠଙ୍କ ଅବଦାନ ଅବିସ୍ମରଣୀୟ । ଆମେ ସମସ୍ତେ ଅଳ୍ପ ବହୁତ ଏ ସଂପର୍କରେ କିଛି ଜାଣିଛୁ । ମାତ୍ର ରାଷ୍ଟ୍ରନୀତି ତଥା ରାଜନୀତିରେ ତାଙ୍କର ଭୂମିକା ଯେ କେତେ ଗୁରୁତ୍ୱପୂର୍ଣ୍ଣ, ତାହା ଅନେକେ ଜାଣିନାହାନ୍ତି । "ପ୍ରବୀଣ ରାଷ୍ଟ୍ରନୀତିଜ୍ଞ ଓ ବ୍ୟବସ୍ଥାପକ ପଣ୍ଡିତ ନୀଳକଣ୍ଠ ଦାସ" ଶୀର୍ଷକ ଏକ ଗବେଷଣା ପ୍ରକଳ୍ପ ବହୁ ଦିନରୁ ପ୍ରସ୍ତାବିତ ହୋଇଥିଲା, ମାତ୍ର ତାହା ସାକାର ହୋଇପାରି ନଥିଲା । ତାହା ଆଜି ସମ୍ପୂର୍ଣ୍ଣ ହୋଇଥିବାରୁ ମୁଁ ବ୍ୟକ୍ତିଗତ ଭାବରେ ବିଶେଷ ଆନନ୍ଦିତ ଏବଂ ଓଡ଼ିଶା ବିଧାନ ସଭା ଆନୁକୂଲ୍ୟରେ ଏପରି ଏକ ପ୍ରକଳ୍ପ ରୂପାୟିତ ହୋଇଥିବାରୁ ସଂପୃକ୍ତ ସଦସ୍ୟ, କର୍ମକର୍ତ୍ତା ଓ କର୍ମଚାରୀମାନଙ୍କୁ ଅଭିନନ୍ଦନ ଜଣାଉଛି ।

1994 ମସିହାରେ ମୁଁ, ଡକ୍‌ଟର ପର୍ଶୁରାମ ମିଶ୍ର, ଅଗ୍ରଗାମୀ ଶିକ୍ଷା ପ୍ରତିଷ୍ଠାନ (Dr. P. M. Institute of Advanced Study in Education) ସମ୍ବଲପୁରରେ ଅଧ୍ୟକ୍ଷ ଦାୟିତ୍ୱରେ ଥିଲାବେଳେ ଜାତୀୟ ସ୍ତରରେ "ପଣ୍ଡିତ ନୀଳକଣ୍ଠଙ୍କ ନିଶା ଆନ୍ଦୋଳନ" ସଂପର୍କରେ ଭାରତୀୟ ବିଦ୍ୟାଭବନ, ବମ୍ବେଙ୍କ ଦ୍ୱାରା ଏକ ନିବନ୍ଧ ପ୍ରତିଯୋଗିତା ଅନୁଷ୍ଠିତ ହୋଇଥିଲା ଏବଂ ମୁଁ ସେଥିରେ ଭାଗ ନେଇ ପୁରସ୍କୃତ ହୋଇଥିଲି । ଶ୍ରୀଯୁକ୍ତ ଦୁର୍ଗାମାଧବ ମିଶ୍ର ଅବସରପ୍ରାପ୍ତ ଆଇ. ପି. ଏସ୍. ଆମ ରାଜ୍ୟ ତରଫରୁ ବିଦ୍ୟାଭବନର ସଂଯୋଜକ ଭାବରେ ଏହି ସମ୍ବାଦ ପ୍ରଥମେ ପାଇ ମୋତେ ଜଣାଇଥିଲେ । ଏଥିପାଇଁ ମୋତେ ସାଧୁବାଦ ଜଣାଇବା ସଙ୍ଗେ ସଙ୍ଗେ ସେହି ପ୍ରବନ୍ଧର ଏକ ଓଡ଼ିଆ ରୂପାନ୍ତର ତାଙ୍କ ସଂପାଦିତ "ସମାରୋହ"ରେ ପ୍ରକାଶ କରିବାକୁ ଚାହିଁଥିଲେ ଏବଂ ମୁଁ ତାଙ୍କୁ ଦେବାରେ ସେ ପତ୍ରିକାର ଚଳିତ ବର୍ଷ ରଥଯାତ୍ରା ସଂଖ୍ୟାରେ ସ୍ଥାନ ଦେଇଥିଲେ । ତାପରେ ସେ ମହାଶୟଙ୍କ ସହିତ ବିଭିନ୍ନ ସମୟରେ ପତ୍ରପତ୍ରିକା, ସାହିତ୍ୟ, ସଂସ୍କୃତି, ଧର୍ମଧାରଣା ସଂପର୍କରେ ଆଲୋଚନା ହୋଇଥାଏ । ପଣ୍ଡିତ ନୀଳକଣ୍ଠ ସ୍ମୃତି ସମିତିର ସଂପାଦକ ଭାବରେ ବିଭିନ୍ନ କାର୍ଯ୍ୟକ୍ରମ ଆୟୋଜନରେ ତାଙ୍କୁ ଦେଖିଛି । ପୂର୍ବରୁ ଜଣେ ସୁନାମଧନ୍ୟ କବି ଓ କଥାକାର ଭାବରେ ତାଙ୍କୁ ଜାଣିଥିଲି । ମାତ୍ର ନିକଟ ସଂପର୍କରେ ଆସି ତାଙ୍କର ପାଣ୍ଡିତ୍ୟ, ମହାନୁଭବତା, ଆଧ୍ୟାତ୍ମିକ ଭାବ ଓ ଉତ୍ସର୍ଗୀକୃତ ମନୋଭାବକୁ ଅଙ୍ଗେ ଲିଭେଇଲି ।

ଦିନେ ହଠାତ୍ ଜୁଲାଇମାସ 4 ତାରିଖ କିମ୍ବା 5 ତାରିଖରେ ମୋତେ ଫୋନକରି ସେ ମହାଶୟ କହିଲେ, "ଜଗନ୍ନାଥ ବାବୁ, ନୀଳକଣ୍ଠଙ୍କ ଉପରେ ଗୋଟିଏ ପୁସ୍ତକ ରଚନା କରିବାକୁ ଓଡ଼ିଶା ବିଧାନ ସଭା ତରଫରୁ ଯୋଜନା ହୋଇଛି । ମାତ୍ର ସେଥିରେ ବହୁ ବିଳମ୍ବ ହୋଇଥିବାରୁ ତାର ସଚିବ ଶ୍ରୀ ରଘୁନାଥ ମିଶ୍ର ବ୍ୟଗ୍ରତା ପ୍ରକାଶ କରୁଥିଲେ । ଆପଣଙ୍କ ନାଁ ମୁଁ କହିଛି । ଟିକିଏ ଯୋଗାଯୋଗ କରି ଏହି ପ୍ରକଳ୍ପ ସମ୍ପର୍କରେ ବୁଝନ୍ତୁ" । ମୁଁ ଯଥାଶୀଘ୍ର ସଚିବ ମହାଶୟଙ୍କ ସହିତ ଫୋନ୍‌ରେ କଥା ହୋଇଥିଲି ଏବଂ ଯଥା ସମୟରେ ତାଙ୍କ ସଚିବାଳୟ ଗବେଷଣା ଅଧିକାରୀ (Research Officer)

ଶ୍ରୀ ହରମୋହନ ପ୍ରଧାନଙ୍କ ସ୍ୱାକ୍ଷରରେ ଏକ ପତ୍ର ତା 19-7-1996ରେ ପାଇଲି । ସେହି ପତ୍ରରେ 6—7 ଟି ଅଧ୍ୟାୟରେ ଓ 150 ରୁ 200 ପୃଷ୍ଠା ମଧ୍ୟରେ ଗବେଷଣା-ଆଧାରିତ ପୁସ୍ତକଟି ରଚନା କରିବାକୁ କୁହାଗଲା । 1996 ସେପ୍‌ଟେମ୍ବର 9 ସୁଦ୍ଧା ଅର୍ଥାତ୍ ଦେଢ଼ମାସ ଭିତରେ ଏହା ପୂର୍ଣ୍ଣାଙ୍ଗ କରିବାକୁ ସୂଚନା ଦିଆଯାଇଥିବାରୁ ମୁଁ ଅନ୍ୟୁନ 3 ମାସପାଇଁ ଅନୁରୋଧ କରିଥିଲି ଏବଂ ଯଥାସମୟରେ ଅନୁକୂଳ ଉତ୍ତର ମଧ୍ୟ ପାଇଥିଲି ।

ଏହି ପ୍ରସଙ୍ଗରେ ଦିନେ ବାଚସ୍ପତି ଶ୍ରୀଯୁକ୍ତ ଚିନ୍ତାମଣି ଦ୍ୟାନସାମନ୍ତରାୟଙ୍କ ସାକ୍ଷାତ ଲାଭ କରି ଯଥେଷ୍ଟ ଉତ୍ସାହ ଓ ପ୍ରେରଣା ଲାଭ କରିଥିଲି । ବିଭିନ୍ନ ସମୟରେ ସଚିବ ଶ୍ରୀଯୁକ୍ତ ରଘୁନାଥ ମିଶ୍ର, ଆଇ. ଏ. ଏସଙ୍କୁ ଦେଖାକରି ବିଭିନ୍ନ ସମସ୍ୟା ଉପରେ ଆଲୋଚନା କରିଛି । ସେ ମହାଶୟ ଅକୁଣ୍ଠିତ ଭାବରେ ମୋତେ ସମୟ ଓ ସୁବିଧାମାନ ଦେଇ ଅନୁପ୍ରାଣିତ କରିଛନ୍ତି । ବାସ୍ତବରେ ଏପରି ପୁସ୍ତକ ରଚନା ଏକ ଗବେଷଣାମୂଳକ କାର୍ଯ୍ୟ । ନୀଳକଣ୍ଠଙ୍କ ଜୀବନ ଓ କତି ସମ୍ପର୍କରେ ଲିଖିତ ବିଭିନ୍ନ ପୁସ୍ତକ ଓ ପତ୍ରିକା ସହିତ ବିଧାନ ସଭାର Proceedings ଓ ନଥିପତ୍ର ଅଧ୍ୟୟନ ଓ ଅନୁଧ୍ୟାନ କରିବାକୁ ହେଲା । ପ୍ରାୟ 3 ମାସ କାଳ ପ୍ରତିଦିନ ବିଧାନ ସଭା ଗ୍ରନ୍ଥାଳୟରେ କଟାଇଛି । ଏ ଦିଗରେ ଗବେଷଣା ଅଧିକାରୀ ଶ୍ରୀଯୁକ୍ତ ହରମୋହନ ପ୍ରଧାନଙ୍କ ଠାରୁ ନିରବଚ୍ଛିନ୍ନ ଭାବରେ ସାହାଯ୍ୟ ଓ ସହଯୋଗ ପାଇଛି । ବିଶେଷତଃ ତାଙ୍କର ବହୁ କାର୍ଯ୍ୟ ବ୍ୟସ୍ତତା ମଧ୍ୟରେ ସେ ମୋର ପାଣ୍ଡୁଲିପି ପାଠକରି ବିଭିନ୍ନ ସୂଚନା ଓ ପରାମର୍ଶ ଦେଇ ଅନୁଗୃହୀତ କରିଛନ୍ତି । ଗ୍ରନ୍ଥାଳୟର ବରିଷ୍ଠ ଗ୍ରନ୍ଥାଗାରିକା (Senior Librarian) ଶ୍ରୀମତୀ ମଂଜୁଳା ମହାନ୍ତି, ସହକାରୀ ଗ୍ରନ୍ଥାଗାରିକ ଶ୍ରୀ ରବିନାରାୟଣ ମିଶ୍ର ଓ ଗ୍ରନ୍ଥାଗାରର ସମସ୍ତ କର୍ମଚାରୀ ମୋତେ ଏହି କାର୍ଯ୍ୟରେ ନାନାପ୍ରକାରେ ସାହାଯ୍ୟ କରିଛନ୍ତି । ଗବେଷଣା ବିଭାଗର ସହକାରୀ ସର୍ବଶ୍ରୀ ରବିନାରାୟଣ ପଲାଇ, ଆଶିଷରଂଜନ ଖୁଣ୍ଟିଆ, ପ୍ରମୁଖ ଏହି କାର୍ଯ୍ୟରେ ମୋର ସହାୟକ ହୋଇଛନ୍ତି । ଏହି ପ୍ରସଂଗରେ ଅନୁସଚିବ ଶ୍ରୀ ଦେବେନ୍ଦ୍ରନାଥ ପ୍ରଧାନଙ୍କ ଆନ୍ତରିକ ସହଯୋଗ ନିତାନ୍ତ ସ୍ମରଣୀୟ । ଓଡ଼ିଆ ଟାଇପିର ସବୁ ଅସୁବିଧା ସତ୍ତ୍ୱେ ବିଧାନ ସଭା ଅଫିସର ଟାଇପିଷ୍ଟ ସର୍ବଶ୍ରୀ ଲକ୍ଷ୍ମଣ ଦାସ, ଅକ୍ଷୟକୁମାର ନାୟକ ଓ ବିମଳପ୍ରସନ୍ନ ପଣ୍ଡା ବହୁ ଶ୍ରମ ସ୍ୱୀକାର କରି ଏହାର ପାଣ୍ଡୁଲିପି ପ୍ରସ୍ତୁତିରେ ବିଶେଷ ସାହାଯ୍ୟ କରିଛନ୍ତି । ଗବେଷଣା ଅଧିକାରୀଙ୍କ ଷ୍ଟେନୋ ଶ୍ରୀ ଘନଶ୍ୟାମ ସାହୁକଂର ସାହାଯ୍ୟ ମଧ୍ୟ ଭୁଲିହେବନାହିଁ ।

ଏହି ଅବସରରେ ଉପରୋକ୍ତ ଅନୁଚ୍ଛେଦରେ ଉଲ୍ଲେଖ କରିଥିବା ସମସ୍ତ ସୁଧୀ କର୍ମକର୍ତ୍ତା, ଅଧିକାରୀ ଓ ସହକାରୀମାନଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି । ଜୀବନର ଅପରାହ୍ନରେ ଏହି ପବିତ୍ର ଓ ଜାତୀୟ ପ୍ରକଳ୍ପର ସଂପାଦନରେ ସେମାନଙ୍କର ସହଯୋଗ ଓ ସୌହାର୍ଦ୍ଦ୍ୟ ଚିର ସ୍ମରଣୀୟ ହୋଇ ରହିବ ।

ଭୁବନେଶ୍ୱର
ତା 24-10-1996

ଜଗନ୍ନାଥ ମହାନ୍ତି

# ବିଷୟ ସୂଚୀ

ପୃଷ୍ଠା



କେନ୍ଦ୍ର ବ୍ୟବସ୍ଥାପକ ପଣ୍ଡିତ ନୀଳକଂଠ (୧୯୨୪-୧୯୪୫)
ଆବିର୍ଭାବ: ତା ୫।୮।୧୮୮୪ ତିରୋଭାବ; ତା ୬।୧୧।୧୯୬୭

କେଂଦ୍ର ବ୍ୟବସ୍ଥାପକ ନୀଳକଂଠ



ଆଗଧାଡ଼ି – ଅନନ୍ତ ଶୟନମ୍ ଆୟେଂଗାର ଓ ପଣ୍ଡିତ ନୀଳକଂଠ

ପଛଧାଡ଼ି – ରବିଶଂକର ଶୁକ୍ଳ ଓ ଶ୍ରୀକୃଷ୍ଣ ସିଂହ ପ୍ରଭୃତି



Pandit Nilakantha during the first election campaign in South Orissa

# ପ୍ରଥମ ଅଧ୍ୟାୟ

## ସମସାମୟିକ ଓଡ଼ିଶା ଓ ପଣ୍ଡିତ ନୀଳକଣ୍ଠ ଦାସଙ୍କର ସଂକ୍ଷିପ୍ତ ଜୀବନୀ

### ନୀଳକଣ୍ଠଙ୍କ ପ୍ରଚଣ୍ଡ ପ୍ରତିଭା ଓ ବହୁମୁଖୀ ବ୍ୟକ୍ତିତ୍ୱ

ପଣ୍ଡିତ ନୀଳକଣ୍ଠ ଥିଲେ ପ୍ରଚଣ୍ଡ ପ୍ରତିଭାର ଅଧିକାରୀ । ଏହି ପ୍ରତିଭାର ସୃଷ୍ଟିସୌରଭ ଥିଲେ ବହୁସ୍ତରରେ ପ୍ରସାରିତ । ତାଙ୍କର ସୃଜନଶୀଳ ପ୍ରତିଭା ଶିକ୍ଷାନୁଷ୍ଠାନ ଠାରୁ ସାରସ୍ୱତ ସାଧନା ପର୍ଯ୍ୟନ୍ତ ବିସ୍ତୃତ । ତାଙ୍କର କର୍ତ୍ତବ୍ୟନିଷ୍ଠା ଓ ଦାର୍ଶନିକ ମୂଲ୍ୟବୋଧ ସମାଜସେବା ଠାରୁ ଦେଶସେବା ପର୍ଯ୍ୟନ୍ତ ସର୍ବତ୍ର ଅଭିବ୍ୟକ୍ତ । ତାଙ୍କର ନିର୍ବ୍ୟକ୍ତିକ ଓ ବୈଜ୍ଞାନିକ ଦୃଷ୍ଟିକୋଣ ସାହିତ୍ୟ ସମାଲୋଚନା ଠାରୁ ସମାଜ ସଂସ୍କାର ପର୍ଯ୍ୟନ୍ତ ଭିନ୍ନ ଭିନ୍ନ କ୍ଷେତ୍ରରେ ଗଭୀର ମନସ୍ୱିତା ଓ ଉଗ୍ର ମତବାଦ ସୃଷ୍ଟି କରିବାରେ ସାର୍ଥକ ହୋଇପାରିଛି । ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ଓ ଦୃଢ଼ ମନୋବଳ ଯୋଗୁଁ ରାଜନୀତି ଠାରୁ ଶାସନନୀତି ପର୍ଯ୍ୟନ୍ତ ସବୁଠାରେ ସେ ଅତୁଳନୀୟ ସଫଳତା ଲାଭ କରିଛନ୍ତି । ସୁତରାଂ ନୀଳକଣ୍ଠ ଜଣେ ମହାନ ପଣ୍ଡିତ, ସ୍ୱନାମଧନ୍ୟ ସାହିତ୍ୟିକ, ଉଚ୍ଚକୋଟୀର ଦାର୍ଶନିକ, ପ୍ରବୀଣ ବ୍ୟବସ୍ଥାପକ, ବରେଣ୍ୟ ରାଜନୀତିଜ୍ଞ, ଉଗ୍ର ସମାଜ ସଂସ୍କାରକ ଓ ସର୍ବୋପରି ଓଡ଼ିଆ ସମାଜ, ସାହିତ୍ୟ ଓ ସଂସ୍କୃତିର ଜଣେ ପଥପ୍ରଦର୍ଶକ ଭାବରେ ସୁପରିଚିତ ।

ବ୍ୟକ୍ତି ସମସାମୟିକ ସମାଜର ଏକ ସ୍ୱାଭାବିକ ସୃଷ୍ଟି । ବ୍ୟକ୍ତିତ୍ୱ ତାର ପରିବେଶ ଅନୁସାରେ ହୁଏ ବିକଶିତ । ପ୍ରତିଭା ତାର ନିଜ ଜୀବନ ଓ ସମାଜ ତଥା ଜାତିର ଆବଶ୍ୟକତାନୁସାରେ ହୁଏ ରୂପାୟିତ । ତାର ସାଧନା ନିଜର ସୁବିଧା ସୁଯୋଗ ଓ ସଂକଳ୍ପାନୁସାରେ ସିଦ୍ଧିରେ ହୁଏ ପରିଣତ । ତାର ଜୀବନଚର୍ଯ୍ୟା ଓ ସଫଳତାଲାଭ ସ୍ୱୀୟ ସଂଗ୍ରାମର କୃତିତ୍ୱକୁ ନେଇ ହିଁ ସମ୍ଭବ ହୋଇଥାଏ । ଏଥିରେ ଅବଶ୍ୟ କେତେକାଂଶରେ ଅଦୃଷ୍ଟ ଓ ଅଲକ୍ଷ୍ୟର ଅସ୍ତିତ୍ୱକୁ ସ୍ୱୀକାର କରିବାକୁ ହୋଇଥାଏ । କାରଣ ସବୁ ପ୍ରତିଭା ସତ୍ତ୍ୱେ ବହୁ ବ୍ୟକ୍ତି ବିଫଳତା ଓ ନୈରାଶ୍ୟମୟ ଜୀବନ ନିର୍ବାହ କରନ୍ତି, ଅଥଚ ସ୍ୱଳ୍ପ ଓ ସାଧାରଣ ମେଧାସଂପନ୍ନ କେତେକ ମନୁଷ୍ୟ ସଫଳତାର ଶିଖର ଦେଶରେ ଉପନୀତ ହୋଇଥାନ୍ତି । ଏହାର ପଶ୍ଚାତ୍‌ରେ ସମୟର ସୁଯୋଗ ବା ଦୁର୍ଯୋଗ ଓ ପରିବେଶର ସୁବିଧା ଅସୁବିଧା କାର୍ଯ୍ୟ କରିଥାଏ ।

ଏସବୁ ସତ୍ତ୍ୱେ କୃତିମୟ ମହାପୁରୁଷ ନିଜର ସଂଗ୍ରାମ ଓ ସାଧନା ବଳରେ ଉଚ୍ଚରୁ ଉଚ୍ଚତର ସୋପାନରେ ଅଧିରୂଢ଼ ହୁଅନ୍ତି । ସେମାନଙ୍କ ପ୍ରତିଭାର ମୟୂଖ ଦାରିଦ୍ର୍ୟ ବା ଦୁର୍ଯୋଗର କୃଷ୍ଣ ବାରିଦମାଳା ମଧ୍ୟରେ ସର୍ବଦା ଆଚ୍ଛନ୍ନ ହୋଇ ରହିପାରେ ନାହିଁ । ସେହି ଉଜ୍ଜ୍ୱଳ ରଶ୍ମିଜାଳ ସହସ୍ର ଗୁଣରେ ପ୍ରତିଭାତ ହୁଏ । ଦଶଦିଗର ପ୍ରାକୃତିକ ଶ୍ୟାମଳ ସୁଷମାକୁ ସେହି ସୁନେଲି ଆଭା ମନୋହର କରି ତୋଳେ । ସେହିପରି ବ୍ୟକ୍ତି

ତାର ସମସାମୟିକ ସମାଜରୁ ସୃଷ୍ଟି ହେଲେହେଁ ପ୍ରତିଭା ବଳରେ ସମସ୍ତ ବାଧାବନ୍ଧନକୁ ଅତିକ୍ରମ କରେ, ସିଦ୍ଧିର ଶିଖରରେ ପାଦ ଦିଏ ଏବଂ ତାର ସମାଜ ଓ ଜାତିକୁ ଅପୂର୍ବ ସମୃଦ୍ଧିର ସୋପାନରେ ପହଞ୍ଚାଇ ଦିଏ ।

ପଣ୍ଡିତ ନୀଳକଣ୍ଠ ସେହିପରି ଜଣେ ମନସ୍ୱୀ ଓ ମହାପୁରୁଷ, ଯେ ତତ୍‌କାଳୀନ ସମାଜର ପ୍ରତିକୂଳ ପରିସ୍ଥିତିକୁ ଦୃଢ଼ତାର ସହିତ ସମ୍ମୁଖୀନ ହୋଇ ଅସାଧାରଣ କୃତିତ୍ୱ ଅର୍ଜନ କରିଥିଲେ ଏବଂ ଓଡ଼ିଆ ଜାତିକୁ ସ୍ୱାଧୀନ, ସ୍ୱାଭିମାନୀ ଓ ସମୃଦ୍ଧ କରି ତୋଳିଥିଲେ ।

## ସମସାମୟିକ ଓଡ଼ିଶା

**ପୃଷ୍ଠଭୂମି:**

ଊନବିଂଶ ଶତାବ୍ଦୀର ଶେଷଭାଗ । ଇଂରେଜ ଶାସନ ସମଗ୍ର ଦେଶରେ ଦୃଢ଼ୀଭୂତ ହେବା ପୂର୍ବରୁ ମୋଗଲ, ପଠାଣ, ମରାଠୀମାନଙ୍କ ଘନ ଘନ ଆକ୍ରମଣ ଓ ଅତ୍ୟାଚାରରେ ଓଡ଼ିଆ ଜାତିର ଭିତ୍ତିଭୂମି ବିପନ୍ନ । ଓଡ଼ିଆ ତାର ଭାଷା ସାହିତ୍ୟ, ଧର୍ମଧାରଣା, ସଂସ୍କୃତି ପରଂପରାକୁ ବଂଚାଇ ରଖିବା ଥିଲା ଦୁରୂହ ବ୍ୟାପାର । "ଗଙ୍ଗାଠାରୁ ଯା'ର ଗୋଦାବରୀ ବ୍ୟାପି, କୀର୍ତ୍ତିମାଳା ଯା'ର ବିରାଯେ ଅଦ୍ୟାପି" ଥିଲା କବିର କଳ୍ପନା, ଅତୀତର ଇତିହାସ ଏହି ବିସ୍ତୃତ ଅଞ୍ଚଳର ଅଧିବାସୀ ଓଡ଼ିଆ ଜାତିର ଗର୍ବ ଓ ଗୌରବ, ସେତେବେଳେ ଧୂଳିସାତ୍, ତାର ମେରୁଦଣ୍ଡ ଯେମିତି ଶତଧା ବିଖଣ୍ଡିତ । ତାର ଜୀବନ, ତାର ସ୍ୱାଭିମାନ, ତାର ଅସ୍ତିତ୍ୱ ସବୁ ସଂକଟାପନ୍ନ ।

1568 ଖ୍ରୀଷ୍ଟାବ୍ଦରୁ ଓଡ଼ିଆ ଜାତି ତାର ସ୍ୱାଧୀନତା ହରାଇ ଥିଲା । ବିଭିନ୍ନ ଶାସକଙ୍କ ହସ୍ତରେ ସେମାନଙ୍କର ପ୍ରଶାସନିକ ସୁବିଧା ପାଇଁ ଓଡ଼ିଆ ଅଞ୍ଚଳମାନ ବହୁ ଭାଗରେ ବିଚ୍ଛିନ୍ନ ହେଲା । 1803 ରେ ଇଂରେଜମାନେ ଯେଉଁ ଓଡ଼ିଆ ଅଞ୍ଚଳ ଅଧିକାର କଲେ ତାହା କେବଳ ପୁରୀ, କଟକ, ଓ ବାଲେଶ୍ୱର ଜିଲ୍ଲା ମଧ୍ୟରେ ସୀମିତ ହୋଇଥିଲା । ଇଂରେଜମାନେ ନିଜ ଶାସନର ସୁବିଧାପାଇଁ ତାକୁ ମଧ୍ୟ ବଙ୍ଗଳା ପ୍ରେସିଡ଼େନ୍‌ସୀରେ ସଂଯୋଗ କରାଇଥିଲେ । ଓଡ଼ିଆ ଅଧ୍ୟୁଷିତ ଆଉ ସବୁ ଅଞ୍ଚଳ ମାନ୍ଦ୍ରାଜ, ମଧ୍ୟପ୍ରଦେଶ ବଙ୍ଗଳା ସହିତ ମିଶି ରହିଥିଲା । ଏ ସବୁ ବିଚ୍ଛିନ୍ନାଞ୍ଚଳରେ ତ ଓଡ଼ିଆ ଭାଷା ଓ ସଂସ୍କୃତି ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇଥିଲା । ମାତ୍ର ବଙ୍ଗଳା ସହିତ ସଯୁକ୍ତ ତଥାକଥିତ ଓଡ଼ିଶାରେ ମଧ୍ୟ ତାର ନିଜସ୍ୱ ଭଷା ଓଡ଼ିଆ ଅଧିକ ବିପନ୍ନ ହୋଇପଡ଼ିଥିଲା । ଉତ୍‌କଳ ଦୀପିକା ( ତା. 13-3-1969 ) ଯଥାର୍ଥରେ ମତ ଦେଇଥିଲା "ଆମ୍ଭମାନଙ୍କ ବିଚାରେ ଏହି ଯେ ବର୍ତ୍ତମାନ ଉତ୍‌କଳ ଭାଷା ତିନିଥେଣ୍ଡିଆ କାକୁଡ଼ି ଭାଡ଼ି ପ୍ରାୟ ତୁଛାକୁ କ୍ଷତିଗ୍ରସ୍ତ ହେଉଅଛି । ଏହାର ରକ୍ଷକ ତିନି ଗଭର୍ଣ୍ଣମେଣ୍ଟ ହୋଇଅଛନ୍ତି, ଏକ ଭାଗ ବଙ୍ଗଳା ଗଭର୍ଣ୍ଣମେଣ୍ଟ ହସ୍ତେ, ଏକ ଭାଗ ମଧ୍ୟପ୍ରଦେଷ୍ଟ ଗଭର୍ଣ୍ଣମେଣ୍ଟ ହସ୍ତେ ଏବଂ ଅନ୍ୟ ଏକ ଭାଗ ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟ ହସ୍ତେ ପଡ଼ିବାରୁ ଏହାର ସର୍ବାଙ୍ଗ ସମାନରୂପେ ଗଠନ ହେଉନାହିଁ" ।

ଓଡ଼ିଆ ଜାତିର ଭାଗ୍ୟର ବିଡ଼ମ୍ବନା ଯେ, ଓଡ଼ିଶାର କୋଟକଚେରୀ ଓ ବିଦ୍ୟାଳୟ-ମାନଙ୍କରେ ଓଡ଼ିଆ ଭାଷା ପ୍ରଚଳନ ନେଇ ବଂଗାଳୀ ଓ ଓଡ଼ିଆମାନଙ୍କ ମଧ୍ୟରେ ଖୁବ୍ ତିକ୍ତ ବାତାବରଣ ଦେଖା ଦେଇଥିଲା । ଏହାକୁ ଆହୁରି ବିଶାକ୍ତ କରିବାରେ ସାହାଯ୍ୟ କରିଥିଲେ ଦୁଇଜଣ ବ୍ୟକ୍ତି । ପ୍ରଥମେ ବଂଗୀୟ ପ୍ରତ୍ନତାତ୍ତ୍ୱିକ ରାଜେନ୍ଦ୍ର ଲାଲ ମିତ୍ର ୧୨୬୪ ମସିହା ଡିସେମ୍ବର ଶେଷରେ ଓଡ଼ିଶାକୁ ଆସି କଟକ ଡିବେଟିଂଗ କ୍ଲବରେ ଭାଷଣ ଦେଇ ଓଡ଼ିଆ ଭାଷା ସାରହୀନ ଏବଂ ପରେ ଏହା ବଂଗଳାର ଏକ ଉପଭାଷା ବୋଲି ପ୍ରମାଣ କରିବାକୁ ଚେଷ୍ଟା କରିଥିଲେ । ଦ୍ୱିତୀୟ ବ୍ୟକ୍ତି ହେଲେ ବାଲେଶ୍ୱର ସରକାରୀ ବିଦ୍ୟାଳୟର ଜଣେ ପଣ୍ଡିତ କାନ୍ତିଚଂନ୍ଦ୍ର ଭଟ୍ଟାଚାର୍ଯ୍ୟ ଯେ "ଓଡ଼ିଆ ଭାଷା ସ୍ୱତନ୍ତ୍ରନୟ" ବୋଲି ଲେଖି ଓଡ଼ିଆ ଜାତି ମଧ୍ୟରେ ବିଦ୍ୟୁତ୍‌ର ସ୍ପନ୍ଦନ ସୃଷ୍ଟିକରିଥିଲେ । ସୌଭାଗ୍ୟକୁ ଜନ୍ ବୀମ୍‌ସ, ରେଭେନ୍‌ସା ପ୍ରମୁଖ ସାହେବମାନେ ଦୃଢ଼ ଯୁକ୍ତିଦେଇ ଓଡ଼ିଆ ଭାଷାର ମହତ୍ୱ ପ୍ରତିପାଦନ କରିଥିଲେ ।

ଊନବିଂଶ ଶତାବ୍ଦୀର ଅନ୍ତିମ ଭାଗରେ ବିପ୍ଳବ ଓ ଅଭ୍ୟୁଦୟର ଯୁଦ୍ଧ ଆରମ୍ଭ ହୋଇଥିଲା । ଓଡ଼ିଆ ଭାଷାର ସୁରକ୍ଷା, ସମୃଦ୍ଧି ଓ ଖଣ୍ଡ ବିଖଣ୍ଡିତ ଓଡ଼ିଆ ଅଂଚଳକୁ ମିଶାଇ ଏକ ସ୍ୱତନ୍ତ୍ର ଉତ୍କଳ ତଥା ଓଡ଼ିଶାର ଜନ୍ମଦାନ ପାଇଁ ପ୍ରସ୍ତୁତି ଆରମ୍ଭ ହୋଇଯାଇଥିଲା । ଗୌରୀଶଙ୍କର, ଫକୀର ମୋହନ, ପ୍ୟାରୀମୋହନ, ମଧୁବାବୁ ପ୍ରମୁଖ ଭାଷାଭିତିକ ପ୍ରଦେଶ ଗଠନ ଓ ଓଡ଼ିଆ ଭାଷାର ବିକାଶ ଦିଗରେ ଆପ୍ରାଣ ଉଦ୍ୟମ ଆରମ୍ଭ କରିଥିଲେ । 1903 ରେ ଉତ୍କଳ ସମ୍ମିଳନୀର ସ୍ୱପ୍ନ ଯୁବ ପ୍ରାଣରେ ଭରିଦେଲା ଅପୂର୍ବ ଜାଗରଣ ଓ ଉନ୍ମାଦନା । ଓଡ଼ିଆ ଜାତିର ସୂର୍ଯ୍ୟ ମଧୁସୂଦନ ଦାସ 1881 ମସିହାରେ ଓକିଲାତି ପାସ କରି କଟକରେ ଆଇନ ବ୍ୟବସାୟ ଆରମ୍ଭ କରିଥିଲେ । ମାତ୍ର ଓଡ଼ିଆର ଦୁର୍ଭାଗ୍ୟ ଏମିତି ଥିଲା ଯେ ଓଡ଼ିଶାର ତତ୍କାଳୀନ ହୃତପିଣ୍ଡ କଟକ କଚେରୀରେ ମଧ୍ୟ ତାଙ୍କୁ ବସିବାପାଇଁ ସ୍ଥାନଟିଏ ମିଳିନଥିଲା । ମାତ୍ର ତାଙ୍କର ତୀକ୍ଷଣ ବୁଦ୍ଧି, ଉଚ୍ଚକୋଟୀର ମାନସିକତା, ଦୃଢ ସାହସ ଓ ଓ ଉଦଗ୍ର ଦେଶପ୍ରେମ ସମସ୍ତ ବାଧାବଂଧନକୁ ଦୂରକରି ତାଙ୍କୁ ଓଡ଼ିଆ ଜାତିର ଯଥାର୍ଥ ନେତା ଭାବରେ ସମ୍ମାନିତ କରିଥିଲା ।

ମଧୁବାବୁ ଓଡ଼ିଆ ଜାତିର ଦୁରାବସ୍ଥା ଓ ହୀନମନ୍ୟତା ଦୂର କରିବାକୁ ବଜ୍ରନାଦରେ ଉଦ୍‌ବୋଧନ ଦେଇଥିଲେ । "ଉଠରେ ଉଠରେ ଉତ୍କଳ ସଂତାନ ଉଠିବୁଟୁ କେତେ ଦିନେ ? ପୂର୍ବବ ଗୌରବ, ପୁରୁବ ସାହସ ପଡ଼ିବ କି କେବେ ମନେ ?" ତାଙ୍କର ଅନ୍ତରାତ୍ମାରୁ ଝରିଯାଇଥିଲା ଆବେଗମୟ ଭାଷା

"ମାଆ ମାଆ ବୋଲି କେତେ ମୁଁ ଡ଼ାକିଲି
ମାଆକୁ ପାଇଲି ନାହିଁ
ଭାଇ ଭାଇ ବୋଲି କେତେ ମୁଁ ଡାକିଲି
ନଦେଲେ ଉତ୍ତର କେହି,

ଖୋଜିଲି ଅରଣ୍ୟେ ଜନ ସମାଜରେ
ଖୋଜିଲି ବାରିଧିତଟ
ସର୍ବତ୍ର ଦେଖିଲି ମାତା ପଦଚିହ୍ନ ନହେଲା
ମାତାର ଭେଟ ” ।

ଛିନ୍ନମସ୍ତା ଜନନୀର ଆର୍ତ୍ତନାଦ ସେ ଶୁଣିଥିଲେ ଏବଂ ସାମୟିକ ଯୁବସମାଜକୁ ଉଦବୁଦ୍ଧ କରିଥିଲେ । ସମ୍ବଲପୁର, ଗଂଜାମ ପ୍ରଭୃତି ଅଚଂଳରେ ଜାଗ୍ରତ ଓଡ଼ିଆ ଜନନାୟକ, ସାହିତ୍ୟିକ, ସାମ୍ବାଦିକ, ଆଇନଜୀବୀମାନେ ଆନ୍ଦୋଳନ ଆରମ୍ଭ କରିଦେଲେ । ସମସ୍ତ ଶାରୀରିକ ଓ ମାନସିକ କଷ୍ଟ ସ୍ୱୀକାର କରି ସେମାନେ ଓଡ଼ିଆ ଭାଷାର ସୁରକ୍ଷା ଓ ଓଡ଼ିଆ ଭାଷାଭାଷୀ ଅଂଚଳର ଏକତ୍ରୀକରଣ ପାଇଁ ସଂଗ୍ରାମ କରିଥିଲେ । ପ୍ରତିକୂଳ ପରିସ୍ଥିତିର ପ୍ରତିରୋଧ କରି ପୁଣ୍ୟ ଶ୍ଲୋକ ଓଡ଼ିଆ ନେତୃବୃଂଦ ପ୍ରେସ ପ୍ରତିଷ୍ଠା, ପୁସ୍ତକ ରଚନା, ହସ୍ତଶିଳ୍ପ ସ୍ଥାପନ, ପତ୍ରିକା ପ୍ରକାଶନ ଓ ସଭା ସମିତିର ଆୟୋଜନ ମାଧ୍ୟମରେ ଓଡ଼ିଆ ଜାତି ପ୍ରାଣରେ ନୂତନ ଉନ୍ମାଦନା ଓ ଉତ୍ତେଜନା ସୃଷ୍ଟି କରିଥିଲେ ।

ଉତ୍କଳର ପୁରପଲ୍ଲୀରେ ବିପ୍ଲବର ବାର୍ତ୍ତା ଓ ଆଗ୍ନେୟ ଉଦ୍‌ବୋଧନ ପହଞ୍ଚିଥିଲା । ଦୀର୍ଘ ସୁଷୁପ୍ତି ଓ ସ୍ଥାଣୁତ୍ୱରୁ ମୁକ୍ତିଲଭି ଓଡ଼ିଆ ଜାତି ନିଜକୁ ଏକ ଶକ୍ତିଶାଳୀ ଜାତିଭାବରେ କେବଳ ଗର୍ବ ଅନୁଭବ କଲାନାହିଁ, ନିଜର ସ୍ୱତନ୍ତ୍ର ଅସ୍ତିତ୍ୱ ଓ ସ୍ୱାଭିମାନପାଇଁ ଦୃଢ଼ସ୍ୱରରେ ଦାବି କରିବାରେ ଲାଗିଲା । ଫକୀରମୋହନ, ରାଧାନାଥ, ମଧୁସୂଦନ, ବିଶ୍ୱନାଥ, ରାମଶଂଙ୍କର, ଗୌରୀଶଙ୍କର ପ୍ରମୁଖଙ୍କର ଲେଖନୀ ଓଡ଼ିଆ ଭାଷା ଓ ସାହିତ୍ୟକୁ ସୁଦୃଢ଼ ଆସନରେ ଆସୀନ କରିବାରେ ସଫଳ ହେଲା । 1905 ର ବଂଗଭଂଗ ଓ ସ୍ୱଦେଶୀ ଆନ୍ଦୋଳନ ସମଗ୍ର ଭାରତରେ ଜାତୀୟ ଉନ୍ମାଦନା ଭରିଦେଇଥିଲା । ଓଡ଼ିଶା ମଧ୍ୟ ଏହି ମୁଖ୍ୟ ସ୍ରୋତରେ ସାମିଲ ହେଲା । ମଧୁବାବୁଙ୍କ ନେତୃତ୍ୱରେ ଏବଂ ସେ କଂଗ୍ରେସ ସମ୍ମିଳନୀମାନଙ୍କରେ ଯୋଗଦେଇ ନିଜ ପ୍ରତିଭାର ପରିଚୟ ଦେଇଥିଲେ । ମାତ୍ର ଓଡ଼ିଆ ଜାତିର ଜ୍ୱଳନ୍ତ ସମସ୍ୟା ବିଛିନ୍ନାଂଚଳର ଏକୀକରଣ ଓ ନୂତନ ଓଡ଼ିଶା ପ୍ରଦେଶ ଗଠନ କ୍ଷେତ୍ରରେ ମଧୁବାବୁ ସେଠାରେ ଆଶାନୁରୂପ ସମର୍ଥନ ଓ ସହଯୋଗ ପାଇବା ପରିବର୍ତ୍ତେ ନାନା ବିରୋଧ ଓ ଉଦାସୀନତା ଅନୁଭବ କଲେ । ତେଣୁ ଓଡ଼ିଆ ସମ୍ମିଳନୀକୁ ସୁଦୃଢ଼ କରି ସେ ସମଧର୍ମୀ ବନ୍ଧୁ ଓ କର୍ମୀମାନଙ୍କ ସହଯୋଗରେ ଓଡ଼ିଆ ଜାତିର ଲକ୍ଷ୍ୟ ହାସଲ ପାଇଁ ଲାଗି ପଡ଼ିଲେ ।

## ପଣ୍ଡିତ ନୀଳକଣ୍ଠଙ୍କ ସଂକ୍ଷିପ୍ତ ଜୀବନୀ

ମନୁଷ୍ୟର ଜନ୍ମ ଓ ଜୀବନଯାତ୍ରା ସମସାମୟିକ କାଳର ପ୍ରଭାବରେ ପ୍ରଭାବିତ ହୋଇଥାଏ । ମାତ୍ର ଯେଉଁମାନେ ମହାପୁରୁଷ ସେମାନେ ତା’ ଉପରକୁ ଉଠି ସେଥିରେ ପରିବର୍ତ୍ତନ ସାଧନ କରନ୍ତି । ସେହିପରି ପଣ୍ଡିତ ନୀଳକଣ୍ଠଙ୍କ ଜନ୍ମ ଅଗଷ୍ଟ 5, 1884

ମସିହାରେ ଏବଂ ପୁରୀ ଜିଲ୍ଲାର ସତ୍ୟବାଦୀ ଥାନା ଅନ୍ତର୍ଗତ ରକ୍ତଚିରା ନଦୀକୂଳସ୍ଥ ଶ୍ରୀରାମପୁଚନ୍ଦ୍ରପୁର ଶାସନରେ । ପିତା ତାଙ୍କର ଆନନ୍ଦ ଦାସ ଓ ମାତା ହୀରାଦେବୀ । ପିତାମାତାଙ୍କର ଅଷ୍ଟମ ଗର୍ଭରେ ସେ ଏକମାତ୍ର ପୁତ୍ର ସନ୍ତାନ । ବ୍ରାହ୍ମଣ ଶାସନର ପ୍ରାଚୀନ ସଂସ୍କାର ଓ କୁସଂସ୍କାର ମଧ୍ୟରେ ନୀଳକଣ୍ଠଙ୍କ ଜୀବନଯାତ୍ରା, ମାତ୍ର ଏହି ଯାତ୍ରାପଥରେ ସେ ବହୁ କୁପ୍ରଥା ଓ କୁସଂସ୍କାର ବିରୁଦ୍ଧରେ ସଂଗ୍ରାମ କରିଥିଲେ ।

## ବାଲ୍ୟକାଳ

ବାଲ୍ୟକାଳରୁ ସେ ବିଭିନ୍ନ ଅଭାବ ଅସୁବିଧା ବିରୁଦ୍ଧରେ ଲଢ଼େଇ କରିଥିଲେ । ପ୍ରଥମରୁ ନୀଳକଣ୍ଠଙ୍କ ପରିବାର ଧନିକ ତଥା ମଧ୍ୟବିତ୍ତ ଶ୍ରେଣୀର ଥିଲେ ହେଁ ପରେ ତାହା ନିଃସ୍ୱ ହୋଇ ଯାଇଥିଲା । ତେଣୁ ନୀଳକଣ୍ଠ ନିଜ ଆତ୍ମଜୀବନୀରେ (ପୃ. 2-3) କହିଛନ୍ତି, "ନନା ପାରିଗଲାରୁ ଧନୀଘରେ ବିଭାହେଲେ । ସେତେବେଳେ ହିସାବରେ ଜାତି ବିକିଲେ । ସେଥିପାଇଁ ଜ୍ଞାତି ଭାଇମାନେ ବଡ଼ ଘୃଣା କରୁଥିଲେ ଓ ନନାଙ୍କର ସଂଗେ ବହୁଦିନ ଖାଇବା ପିଇବା ଆଦି ସାମାଜିକ ସଂପର୍କ ବଂଦ କରି ଦେଇଥିଲେ । ତଥାପି ବଂଶ ସ୍ମୃତିରେ ଜାଗ୍ରତ ରହି ନନା ଅତି ଦାରିଦ୍ର୍ୟର ପ୍ରତିକାର କରିବାପାଇଁ ସବୁବେଳେ ବ୍ୟସ୍ତ ଥାଆନ୍ତି । ସେତେବେଳେ ଆମ ଶାସନମାନଙ୍କରେ ବ୍ରାହ୍ମଣ ନିଜେ ଚାଷ କାର୍ଯ୍ୟ କରୁନଥିଲେ କିମ୍ବା ସାକ୍ଷାତ ଭାବରେ କରାଉନଥିଲେ" । "ମାତ୍ର ନୀଳକଣ୍ଠଙ୍କ ପିତା ନିଜେ ଚାଷ କାର୍ଯ୍ୟରେ ସଂପୃକ୍ତ ହେଉଥିଲେ । ଏଥିପାଇଁ ଗ୍ରାମରେ ଓ ସମାଜରେ ସେ ଅପମାନିତ ହୋଇଥିଲେ । ମାତ୍ର ସେ ଏହାକୁ ଭ୍ରୂକ୍ଷେପ କରିନଥିଲେ । ସେ ନିଜେ ବେଶୀ ପାଠ ପଢିପାରିନଥିଲେ । ମାତ୍ର ମହାପ୍ରଭୁଙ୍କୁ ଡାକି କହିଲେ "ମହାପ୍ରଭୁ ମୋତେ ଏପରି ଗୋଟିଏ ପୁଅ ଦିଅ ଯେ କି ପାଠପଢି ବଂଶର ମର୍ଯ୍ୟାଦା ରଖିବ" । ସେ ଖୁବ୍ ଭାଂଗପ୍ରିୟ ଥିଲେ, ମାତ୍ର ପାଂଚ ବର୍ଷର ପୁଅ ନୀଳକଂଠ "ନନା ମୁଁ ପିଇବି " "ନନା ମୁଁ ଖାଇବି" କହିବାରୁ ସେ ତାଙ୍କ ଦୀର୍ଘ ଅର୍ଦ୍ଧଶତାବ୍ଦୀର ଅଭ୍ୟାସକୁ ପରିତ୍ୟାଗ କରିଥିଲେ । ମନସ୍ୱୀ ନୀଳକଣ୍ଠ ଲେଖିଛନ୍ତି "ଆଜି ମଧ୍ୟ ମୋର ସେ ଚିତ୍ର ମନେ ପଡୁଛି । ନାନା ଟିକିଏ ଚିନ୍ତିତ ହୋଇ ବସିଗଲେ । ତଳ ମହଲା ଘରୁ ବୋଉକୁ ଡାକିଲେ । ବୋଉ ଆସିଲାରୁ କୁଂଡ଼ି ବାଡ଼ି ଗଂଜେଇ ମସଲା ଥିବା ବଟୁଆସବୁ ତାକୁ ଦେଇ କହିଲେ, "ତୁ ୟାକୁ ନେ ଫିଂଗିଦେ, ନଇଲେ ଯାହାକର, ମୁଁ ଆଉ ଭାଂଗ ଖାଇଲେ ପୁଅ ପାଇବି ନାହିଁ । ଏଭାଂଗଡ଼ି ହୋଇଯିବ" । ଏ ପ୍ରାୟ ନନାଙ୍କ ତେପନ ବରଷ ବେଳର କଥା । ସେ ଅଣାନବେ ବରଷରେ 1928ରେ ମଲେ, ମାତ୍ର ସେଇଦିନଠାରୁ ସେ ଭାଂଗ ଆଉ କେବେ ସ୍ପର୍ଶ କରିନାହାନ୍ତି । କି ଦୃଢ଼ ମନୋବଳ ! ଆଧୁନିକ ପିତାମାତା ଏଥିରେ କିଛି ଶିଖିବେ କି ?

## ସମାଜ ସଂସ୍କାର ମନୋବୃତ୍ତି

ଉଗ୍ର ଜାତୀୟତା ଓ ନିଚ୍ଛକ ଓଡ଼ିଆ ସଂସ୍କୃତି ପ୍ରୀତି ଯେମିତି **ନୀଳକଣ୍ଠଙ୍କର** ଅସ୍ଥିମଜ୍ଜାଗତ ଥିଲା ଓ ତାହା ବାଲ୍ୟକାଳରେ ଅନୁଭୂତି ତଥା ଶିକ୍ଷା ଦ୍ୱାରା ପରିପୁଷ୍ଟ ହୋଇଥିଲା । ପାରଂପରିକ ପଲ୍ଲୀସଂସ୍କୃତି ଓ ପରିବେଶର ନୈସର୍ଗିକ ଶୋଭା ଓ ସଂପଦ ତାଙ୍କର ମାନସିକତାକୁ ବହୁ ଭାବରେ ପ୍ରଭାବିତ କରିଥିଲା । ଗାଁଗଣ୍ଡାର ଗ୍ରରଣ କବି, କାଳେସୀ, ପୂଜକ, ପୁରାଣ ପଣ୍ଡା, ନାଥଯୋଗୀ, ପିଲାମାନଙ୍କ ଖେଳ, ସାମାଜିକ ଆଚାର ଅନୁଷ୍ଠାନ, ପର୍ବପର୍ବାଣି ଆଦିରେ ତାଙ୍କର ଅପୂର୍ବ କୌତୂହଳ ଓ ଆନନ୍ଦ ଥିଲା । ତାଙ୍କ ସୃଜନଶୀଳ ପ୍ରତିଭାକୁ ସେସବୁ ବହୁଭାବରେ ପ୍ରଭାବିତ କରିଥିଲା । ଗ୍ରାମୀଣ ଜୀବନର ଅଭାବଅନାଟନ ଓ ଦୁଃଖଦାରିଦ୍ର୍ୟ ତାଙ୍କ ମନରେ ଗଭୀର ରେଖାପାତ କରିଥିଲା ଏବଂ ଦରଦ ସୃଷ୍ଟି କରିଥିଲା । ସେହିପରି ଗ୍ରାମ୍ୟ ଜୀବନରେ ପୂରିରହିଥିବା କୁସଂସ୍କାର ଓ କୁପ୍ରଥାଗୁଡ଼ିକ ବିରୁଦ୍ଧରେ ସେ ବାଲ୍ୟକାଳରୁ ବିଦ୍ରୋହ କରିଥିଲେ । ତାଙ୍କର ସମାଜ ସଂସ୍କାର ମନୋଭାବ, ଦୃଢ଼ତା ସତେ ଯେମିତି ରକ୍ତଗତ ଓ ପରବର୍ତ୍ତୀ ଜୀବନର ସଂଗ୍ରାମ ତା'ର ଏକ ସ୍ୱାଭାବିକ ପରିଣତି ।

## ଶିକ୍ଷାଲାଭ ଓ ବ୍ୟକ୍ତିତ୍ୱର ବିକାଶ

ନୀଳକଣ୍ଠ ଯଥାର୍ଥରେ ମନସ୍ୱୀ ଓ ବାଲ୍ୟଜୀବନରୁ ତାଙ୍କର ସ୍ମରଣ ଓ ମେଧାଶକ୍ତି ଉତ୍କୃଷ୍ଟ ପ୍ରମାଣିତ ହୋଇଥିଲା । ବିଦ୍ୟାଳୟରେ ସାଧାରଣ ଛାତ୍ରଛାତ୍ରୀମାନଙ୍କଠାରୁ ସେ ଉଚ୍ଚତର ଓ ଉନ୍ନତତର ବୌଦ୍ଧିକ ତଥା ଶିକ୍ଷାଗତ ଅଗ୍ରଗତି କରୁଥିଲେ । ଗ୍ରାମର ଭର୍ଣ୍ଣାକୁଲାର ସ୍କୁଲରୁ ମାସିକ ଚାରି ଟଙ୍କା 'ମଧ୍ୟ ଓଡ଼ିଆ ବୃତ୍ତି' ପାଇ ସେ ପୁରୀ ଜିଲ୍ଲା ସ୍କୁଲକୁ ପଢ଼ିବାକୁ ଯାଇଥିଲେ । ତାଙ୍କର ଦୃଢ଼ ମନୋବଳ ତରୁଣ ଅବସ୍ଥାରୁ ମଧ୍ୟ ସ୍ପଷ୍ଟ ହୋଇଥିଲା । ସେ ବୃତ୍ତି ପାଇବା ପୂର୍ବରୁ ତାଙ୍କ ସ୍ମୃତି ଆତ୍ମଜୀବନୀ (ପୃ.12) ରେ ଲେଖିଛନ୍ତି, "ମୁଁ ଚାଲି ଚାଲି ପୁରୀଯାଇ ସେଇ ବୋଡ଼ିଂରେ (ଜିଲ୍ଲାସ୍କୁଲର) ପହଂଚିଲି । ଜଗନ୍ନାଥ ମିଶ୍ରଙ୍କ-ଠାରୁ ପଇସାଟିଏ ଉଧାରକରି ଖଣ୍ଡିଏ ପୋଷ୍ଟକାର୍ଡ କିଣି ନନାଙ୍କୁ ଚିଠି ଲେଖିଥିଲି । ମୁଁ ବୃତ୍ତି ପାଏ ନପାଏ ମୁଁ ଏଠି ରହି ପଢ଼ିବି– ମୋତେ ଚାଉଳ ଓ ଟଙ୍କା ପଠାଅ" ।

## ଗୋପବନ୍ଧୁଙ୍କ ପ୍ରଥମ ସାନ୍ନିଧ୍ୟ

ନୀଳକଣ୍ଠ ପୁରୀ ଜିଲ୍ଲା ସ୍କୁଲରେ ଏନ୍‌ଟ୍ରାନସ୍ (ମାଟ୍ରିକ) ପଢ଼ିଲେ । ସେଇକାଳରୁ ସେ ପଣ୍ଡିତ ଗୋପବନ୍ଧୁଙ୍କୁ ଦେଖି ତାଙ୍କ ଦ୍ୱାରା ପରୋକ୍ଷରେ ପ୍ରଭାବିତ ହୋଇଥିଲେ । ସେ (1963, ପୃ. 19) ଲେଖିଛନ୍ତି, "ପୁରୀ ଜିଲ୍ଲା ସ୍କୁଲରେ ପଢ଼ିଲାବେଳେ ଥରେ ଅଧେ ବୋଡ଼ିଂରେ ଗୋପବନ୍ଧୁ ଦାସଙ୍କୁ ଦେଖିଥିଲି । ମୁଁ ଯେଉଁ ବର୍ଷ ପୁରୀ ଜିଲ୍ଲା ସ୍କୁଲରେ ଭର୍ତ୍ତି ହେଲି, ସେଇବର୍ଷ ସେ ସେଇ ସ୍କୁଲରୁ ପାଶ୍‌କରି କଟକ କଲେଜକୁ ଆସିଥିଲେ ।

ସେ ପୁରୀ ଜିଲ୍ଲା ସ୍କୁଲରେ ପଢିବାବେଳେ ତାଙ୍କର ଭାବନାଥିଲା ଏନ୍‌ଟ୍ରାନସ୍ ପାସ୍ କରିବା ଗଡ଼ଜିତିବା ଭଳି, ଗ୍ରାଜୁଏଟଂକ ସଂଖ୍ୟା ଶହେ ହେଉନଥିଲା, ଏମ୍. ଏ. ତ ହାତରେ ଗଣି ହୋଇଯାଉଥିଲେ । ଭାର୍ଗବୀନଦୀ କୂଳରେ ବସି ଗୋପବଂଧୁଙ୍କ ସହିତ ଚାରି ଜଣ ବାଲ୍ୟବଂଧୁ ଶପଥ ନେଇଥିଲେ ଦେଶସେବା ପାଇଁ । ନିଜ ଭାଷାରେ ସେ ଲେଖିଛନ୍ତି (ପୃ. 24), "ଚଂଦ୍ର ବୁଡ଼ିଗଲେ, ରାତି ବି ସକାଳ ହୋଇଆସିଲା, ଆମେ ତନ୍ମୟ । ଶେଷକୁ ଠିକ୍ ହେଲା " ଆମେ ପାଠ ପଢି ସରକାରୀ ଚାକିରୀ କରିବା ନାହିଁ । ଦେଶପାଇଁ କିଛି କରିବା । ଜନ୍ମବେଳେ ଦେଶକୁ ଯାହା ଦେଖିଥାଉ, ତା'ଠାରୁ ଉନ୍ନତ ଦେଖି ମରିବା" ।

## ପ୍ରଥମ ଉତ୍କଳ ସମ୍ମିଳନୀ

1903 ମସିହାରେ ପ୍ରଥମ ଉତ୍କଳ ସମ୍ମିଳନୀ । ମଧୁବାବୁଙ୍କ ନେତୃତ୍ୱରେ ଏହି ସମ୍ମିଳନୀର ଆୟୋଜନ କଟକରେ ହେଲା । ନୀଳକଂଣ୍ଠ ସେତେବେଳେ କିଶୋର ଓ ବିଦ୍ୟାଳୟର ଛାତ୍ର, କିନ୍ତୁ ଏହା ତାଙ୍କ ମନରେ କିପରି ଉନ୍ମାଦନା ଖେଳାଇପାରିଥିଲା ସେ ନିଜେ ତାହା ବର୍ଣ୍ଣନା କରିଛନ୍ତି (1963,ପୃ.24-25), "ତାରି ଭିତରେ ମଧୁବାବୁଙ୍କର ଚଂଚଳ ଗମନାଗମନ ଓ ଟେବୁଲ ପାଖେ ରାମଚଂଦ୍ର ଭଂଜଙ୍କର ସୌମ୍ୟବପୁ ଓ ମାର୍ଜିତ ସୁଗଂଭୀର ଓ ବିଲୋଳିତ କଣ୍ଠଧ୍ୱନୀ ସେ କିଶୋର ବୟସରେ ମୋତେ କିପରି ଭାବାନ୍ୱିତ କରିଥିଲା, ତା' କହିପାରିବି ନାଇ । ଅନୁଭବର ସେ ସ୍ମୃତିକୁ ଆଜି କାହାର ଅନୁମାନରେ ଜାଗ୍ରତ କରିବା ମୋ ପକ୍ଷରେ ସଂଭବ ନୁହେଁ । *** ସେତେବେଳେ କଟକରେ କି ଉତ୍ସାହ କି ଚଂଚଳତା ଜାତୀୟ ଜୀବନର ସେ ନବୋନ୍ମେଷ ଆଜି ମୋର ମନରେ ପ୍ରାଚୀନ ହେଲେ ମଧ୍ୟ ଜୀର୍ଣ୍ଣ ହୋଇନାହିଁ । ଜୀବନରେ ତାହାହିଁ ଯେପରିକି ମୋର ଏକ ପ୍ରଥମ ଦୀକ୍ଷା ।

## ଗୋଦାବରୀଶଙ୍କ ବନ୍ଧୁତ୍ୱ

ନୀଳକଣ୍ଠଙ୍କ ଚରିତ୍ର ଓ ବ୍ୟକ୍ତିତ୍ୱ ହାଇସ୍କୁଲରେ ଅଧ୍ୟୟନ କାଳରେ ବିଶେଷ ଗଠିତ ହୋଇଥିଲା । ପୁରୀକୁ ସେ ବର୍ଷକ ପରେ ଫେରି ପୁରୀ ଜିଲା ସ୍କୁଲରେ ପଢିଲେ । ସେଠାରେ ତାଙ୍କର ପ୍ରଥମ ବନ୍ଧୁ ହୋଇଥିଲେ ଗୋଦାବରୀଶ ସେ ନିଜ ଆତ୍ମଜୀବନୀ (ପୃ. 51-52) ରେ ନୀଳକଣ୍ଠଙ୍କ ସଂପର୍କରେ ଲେଖିଛନ୍ତି, "ବଡ଼ ଚାଟ ହେବା ଗୁଣ ତାଙ୍କର ଥିଲା । ଏକେତ ସେ ଭଲ ପଢୁଥିଲେ, ତାଙ୍କ ଶ୍ରେଣୀରେ ପ୍ରଥମ ହେଉଥିଲେ । ତାପରେ ପୁଣି ତିନି ଜଣଙ୍କ ତୁଳନାରେ ସେ ଧନୀଘରର ପିଲା । ତୃତୀୟରେ ସେ ଯୁକ୍ତି ତର୍କରେ ବେଶ ପଟୁ । ଏସବୁ କାରଣରୁ କିମ୍ବା ଅନ୍ୟ କୌଣସି କାରଣ ଯୋଗେ ସେ କ୍ଷମତା ଯେପରି ବ୍ୟବହାର କରୁଥିଲେ, ଦାୟିତ୍ୱ ମଧ୍ୟ ସେମିତି ମୁଣ୍ଡେଉଥିଲେ । ରାତିରେ ସମୁଦ୍ର ପବନରେ ଝାଉଁ ବଣରୁ ସନ ସନ ଶବ୍ଦ ଆସେ । ସେଥିରେ ମୋତେ ଡ଼ରମାଡ଼େ ଓ ନିଦ ଥରେ

ଭାଙ୍ଗି ଗଲେ ଆଉ ଲାଗେ ନାହିଁ । ସେପରି ସମୟରେ ସେ ମୋତେ କହନ୍ତି, "ମୁଁ ଚାହିଁଛି ତୁମେ ଡ଼ରନାହିଁ, ଶୋଇପଡ଼" । ମୁଁ ତାଙ୍କ ତଳ ଶ୍ରେଣୀରେ ପଢୁଥିବାରୁ ସେତେବେଳେ ତାଙ୍କ ସହିତ ମୋର ଘନିଷ୍ଠତା ଜନ୍ମି ନ ଥିଲା । ପରେ ମୁଁ ତାଙ୍କଠାରେ ଶ୍ରଦ୍ଧା, ସ୍ନେହହିଁ ବହୁତ ଅର୍ପିଛି, "କି ସୁନ୍ଦର ସାବଲୀଳ ଶୈଳୀରେ ମୁକ୍ତ ମନର ଅଭିବ୍ୟକ୍ତି : ତରୁଣ ଜୀବନର ବନ୍ଧୁତ୍ୱ କି ନିବିଡ଼ !

## ଚନ୍ଦ୍ରମୋହନଙ୍କ ଶ୍ରଦ୍ଧା ଓ ସାହାଯ୍ୟ

ସେହିପରି ସେତେବେଳେ ପୁରୀ ଜିଲା ସ୍କୁଲରେ ପ୍ରଧାନ ଶିକ୍ଷକ ଥିଲେ ପ୍ରଗତିବାଦୀ ଓ ସ୍ୱଦେଶପ୍ରେମୀ ଚନ୍ଦ୍ରମୋହନ ମହାରଣା । ତାଙ୍କ ଦୃଢ଼ ବ୍ୟକ୍ତିତ୍ୱ ଓ ସଙ୍କଳ୍ପଶକ୍ତିଦ୍ୱାରା ( Will power ) ନୀଳକଣ୍ଠ ଖୁବ୍ ପ୍ରଭାବିତ ହୋଇଥିଲେ । ତାଙ୍କ ଆଦର୍ଶରେ ସେ ନିଜ ଅକ୍ଷରକୁ ବଦଳାଇ ଦେଇଥିଲେ । ଏ ସଂପର୍କରେ ନୀଳକଣ୍ଠ କହିଛନ୍ତି, (1961 ପୃ. 32-33) ମୋର ହସ୍ତାକ୍ଷର ବଡ଼ ଖରାପ ଥିଲା । ଅକ୍ଷରଗୁଡ଼ିକ ମୋଡ଼ା ମୋଡ଼ା ହୋଇ ଅକ୍ଷର ଦେହରୁ ଲାଂଜ ମୁଣ୍ଡରୁ କୁଟିଳ ରେଖା ସବୁ ବହୁତ ବାହାରୁ ଥାଏ । ଅକ୍ଷରଗୁଡ଼ିକ ମଧ୍ୟ ବହୁତ ବକ୍ରାକୃତି ଥାଏ । ମତେ ଦିନେ ସେ କହିଲେ "ନୀଳକଣ୍ଠ, ତୁମେ ୟାକୁ ବଦଳାଇ ଦିଅ" । ସେତିକିବେଳେ ମନୁଷ୍ୟର ସଙ୍କଳ୍ପଶକ୍ତି ବିଷୟରେ ତାଙ୍କଠାରୁ ମୁଁ ପ୍ରସଙ୍ଗତଃ ଯାହା ଶୁଣିଥିଲି, ତା'ର ସ୍ମୃତି ଏବେ ମଧ୍ୟ ଜୀବନ୍ତ ଅଛି । ତହିଁ ଆରଦିନ ସଙ୍କଳ୍ପ କରି ମୁଁ ହସ୍ତାକ୍ଷର ବଦଳାଇ ବସିଲି ଚନ୍ଦ୍ରମୋହନ ବାବୁଙ୍କ ହସ୍ତାକ୍ଷରକୁ ଆଦର୍ଶକରି ନୀଳକଣ୍ଠ ଚନ୍ଦ୍ରମୋହନଙ୍କର ପ୍ରିୟ ଛାତ୍ର ଥିଲେ ଏବଂ ଶୃଙ୍ଖଳାରକ୍ଷା ଠାରୁ ଶିକ୍ଷାଦାନ ଯାଏ ସବୁଥିରେ ତାଙ୍କୁ ସଂପୃକ୍ତ କରିଥିଲେ ।

ଚନ୍ଦ୍ରମୋହନଙ୍କ ଉଦାରତା ଓ ନୀଳକଣ୍ଠଙ୍କ ସାହାସ ତଥା ଚତୁରୋକ୍ତିର ଏକ ଦୃଷ୍ଟାନ୍ତ ଏଠାରେ ପ୍ରଣିଧାନଯୋଗ୍ୟ । ଥରେ ନୀଳକଣ୍ଠ କେତେକ ସାଙ୍ଗଙ୍କୁ ନେଇ ଗୋଟିଏ ଗୀର୍ଜାର ପ୍ରାର୍ଥନା ସଭାକୁ ଯାଇଥିଲେ । ସ୍କୁଲର ପଣ୍ଡିତ ସଦାଶିବ ମିଶ୍ର ନୀଳକଣ୍ଠଙ୍କୁ ଧର୍ମଚ୍ୟୁତି ଆଶଙ୍କା କରି ପ୍ରଧାନ ଶିକ୍ଷକ ଚନ୍ଦ୍ରମୋହନଙ୍କଠାରେ ଅଭିଯୋଗ କରିଥିଲେ । ମାତ୍ର ନୀଳକଣ୍ଠ ତାଙ୍କୁ କହିଥିଲେ ଯେ, ଶ୍ରେଣୀରେ ପଢ଼ାଯାଇଥିବା (Village Blacksmith) କବିତାର ("Here's the person pray and preach") ପଦଟି ଭଲଭାବରେ ବୁଝିବା ପାଇଁ ବନ୍ଧୁମାନଙ୍କୁ ଘେନି ଗୀର୍ଜାକୁ ଯାଇଥିଲେ । ତାଙ୍କଠାରୁ ଏହି ଉତ୍ତର ପାଇ ଚନ୍ଦ୍ରମୋହନ ସନ୍ତୁଷ୍ଟ ହୋଇଥିଲେ । ମାତ୍ର ପଣ୍ଡିତେ ଏହି ବିଷୟରେ ସନ୍ତୁଷ୍ଟ ନ ହୋଇ ପରେ ନୀଳକଣ୍ଠଙ୍କୁ ପଚାରିଲେ, ତୁମେତ ସେଠି ଖ୍ରୀଷ୍ଟିଆନମାନଙ୍କୁ ଛୁଇଁଥିବ ଏଥିରେ କ'ଣ ତୁମ ଜାତି ଗଲାନାହିଁ ? ନୀଳକଣ୍ଠ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ, "ଆପଣ ଗୋରା ଇନ୍ସପେକ୍ଟର ସାହେବଙ୍କ ସଙ୍ଗେ କରମର୍ଦ୍ଦନ କଲାବେଳେ ଆପଣଙ୍କ ଜାତିଟାକୁ କ'ଣ ଘରେ ରଖି

ଆସିଥିଲେ ?" ପଣ୍ଡିତେ ଅପ୍ରତିଭ ହୋଇ କହିଥିଲେ ଯେ ସେ ଢ଼ରକୁ ଯାଇ ଅଣ୍ଟାପାଣି କରିଥିଲେ, ତେଣୁ ନୀଳକଣ୍ଠ ଉତ୍ତର ଦେଇଥିଲେ "ମତେ କହିଥିଲେ ତ ମୁଁ ଅଣ୍ଟାପାଣି କିଆଁ ବେକପାଣି କରିଥାନ୍ତି" ?

ଧର୍ମନାମରେ ପ୍ରଚଳିତ ସମସ୍ତ କୁସଂସ୍କାର ପ୍ରତି ଛାତ୍ରାବସ୍ଥାରୁ ନୀଳକଣ୍ଠଙ୍କର ଥିଲା ସହଜାତ ବିରୋଧ ଓ ସମାଲୋଚନା ଏବଂ ଜାତୀୟତା ପ୍ରତି ଥିଲା ତାଙ୍କର ଗଭୀର ନିଷ୍ଠା ଓ ଆନ୍ତରିକତା । ହରଚଣ୍ଡୀଙ୍କ ପାଇଁ ରଖା ଯାଇଥିବା ଫେଣାଏ କଦଳୀରୁ ସେ ଗୋଟିଏ ଖାଇ ଦେଇଥିଲେ, ଓ ଖ୍ରୀଷ୍ଟାନମାନଙ୍କ ଧର୍ମ ପ୍ରଚ୍ଚର ପ୍ରତି ଅନାସ୍ଥାଭାବ ପ୍ରଦର୍ଶନ କରିଥିଲେ । 1904ରେ ପୁରୀରେ ମଧୁବାବୁଙ୍କର ଏକ ବିରାଟ ସଭାରେ କେହି ସ୍ୱଦେଶୀ ପ୍ରତିଜ୍ଞା ପତ୍ରରେ ସ୍ୱାକ୍ଷର ନ କଲାବେଳେ ସେ ଏହା କରିବାରେ ଅଗ୍ରଣୀ ଥିଲେ ।

## ନୀଳକଣ୍ଠଙ୍କ ବିବାହ ଓ ସାରସ୍ୱତ ପ୍ରକାଶ

ସେତେବେଳେ ଏନ୍‌ଟ୍ରାନ୍‌ସ ପରୀକ୍ଷା ପଢ଼ିବାକୁ ଜନସାଧାରଣ ଖୁବ୍ ବଡ଼ କଥା ବୋଲି ମନେ କରୁଥିଲେ । ବିବାହପାଇଁ ପ୍ରସ୍ତାବ ମାନ ଆସୁଥିଲା । ବାଲ୍ୟ ବିବାହ ଯୁଗରେ 21 ବର୍ଷରେ ନୀଳକଣ୍ଠଙ୍କ ବିବାହ ବିଳମ୍ବିତ ହୋଇଥିଲା । ଅଧ୍ୟୟନରେ ବାଧା ଆସିବ ବୋଲି ବିବାହ କରିବାକୁ ରାଜି ନ ଥିଲେ । ଜଣେ ବ୍ରହ୍ମଚାରୀ ଦେଶ ସେବକ ଭାବରେ ଜୀବନ ନିର୍ବାହ କରିବାକୁ ମଧ୍ୟ ମନ କରିଥିଲେ । ମାତ୍ର ସେ ଥିଲେ ପିତାଙ୍କର ଏକମାତ୍ର ପୁତ୍ର, ତେଣୁ ପିତା ମାତା ତାଙ୍କ ବିବାହ ପାଇଁ ଖୁବ୍ ବ୍ୟଗ୍ର ହୋଇଥିଲେ, ବିବାହ ପାଇଁ ଧନୀ ଲୋକଙ୍କ ଅର୍ଥକୁ ସେ ପ୍ରତ୍ୟାଖ୍ୟାନ କରି କହୁଥିଲେ :—

" ଉତ୍ତମଂ ସ୍ୱାର୍ଜିତଂ ବିତ୍ତଂ
ମଧ୍ୟମଂ ପିତୃରର୍ଜିତଂ
ଅଧମଭ୍ରାତୃ ବିତ୍ତଂତ
ସ୍ତ୍ରୀ ବିତ୍ତଂ ଅଧମାଧମଂ "

ପିତା, ପୁତ୍ର ନୀଳକଣ୍ଠଙ୍କ ଯୁକ୍ତି ବୁଝିପାରିଥିଲେ, ମାତ୍ର ଶୀଘ୍ର ବିବାହ କରିବାକୁ ତାଙ୍କୁ ରାଜି କରାଇବା ପାଇଁ ଗୋପବନ୍ଧୁଙ୍କୁ ବାରମ୍ବାର ଅନୁରୋଧ କଲେ । ଶେଷରେ 1905 ମସିହା ଫେବୃଆରୀ 5 ତାରିଖରେ ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ ତାଙ୍କର ବିବାହ କରାଗଲା । ସେ ସାତମଙ୍ଗଳା ବାସି କଟକ ଯାଇ ଏନ୍‌ଟ୍ରାନସ ପରୀକ୍ଷା ଦେଇଥିଲେ । ପରୀକ୍ଷାରେ କୃତିତ୍ୱ ଅର୍ଜନ କରି ସେ ରେଭେନସା କଲେଜରେ ଏଫ୍. ଏ. ( ଆଇ. ଏ ) ଶ୍ରେଣୀରେ ନାମ ଲେଖାଇଲେ । ଏହି ସମୟରେ ନୀଳକଣ୍ଠଙ୍କ ପ୍ରଥମ ସାହିତ୍ୟକ ରଚନା " ଉତ୍କଳ ସାହିତ୍ୟରେ" ଆତ୍ମପ୍ରକାଶ କରିଥିଲା । ପୁରୀରେ ଏନ୍‌ଟ୍ରାନସ ଛାତ୍ର ଥିଲାବେଳେ ସେଇ ଲେଖାଟି ( ସାମନ୍ତ ଚନ୍ଦ୍ରଶେଖରଙ୍କ ସଂପର୍କରେ ) ଗୋପବନ୍ଧୁ ପ୍ରମୁଖଙ୍କ ଦ୍ୱାରା ପ୍ରଶଂସିତ

ହୋଇଥିଲା । ଏହି ଲେଖାଟିର ପ୍ରକାଶନ ସଂପର୍କରେ ନୀଳକଣ୍ଠ ଲେଖିଛନ୍ତି, ଲେଖାଟି ବିଶ୍ୱନାଥ କରଙ୍କୁ ଦେବି କିପରି, ବିଗୃରୁଥାଏ, ଦେଇପାରୁନଥାଏ, ସାଙ୍ଗରେ କଲେଜରେ ପଦ୍ମଚରଣ ପଟନାୟକ ପଢୁଥାନ୍ତି । ତାଙ୍କର ବିଶ୍ୱନାଥ କରଙ୍କ ଘରୁ ଭାରି ଗତାଗତ ଥାଏ — — — ମୁଁ ପଦ୍ମଚରଣ ପଟନାୟକଙ୍କୁ ବହୁଦିନପରେ ମୋ ଲେଖାଟି ପଢାଇଲି । ସେ କହିଲେ, ସେ ନେଇ ବିଶ୍ୱନାଥ କରଙ୍କୁ ଦେବେ । ସେ ବିଶ୍ୱନାଥ କରଙ୍କୁ ଦେବା ପାଇଁ ମୋ ଲେଖାଟି ନେଇଗଲେ । କେତେଦିନ ପରେ ଲେଖାଟି ଉତ୍କଳ ସାହିତ୍ୟ କାଗଜରେ ବାହାରି ପଡିଲା । ସେଦିନ ମୋ ମନରେ ଯାହା ହୋଇଥିଲା 'ତା' ଲେଖି ହେବ ନାହିଁ । ମଧୁସୁଦନ ରାଓ ମଧ୍ୟ ଏହି ଲେଖାଟିକୁ ପଢି ନୀଳକଣ୍ଠଙ୍କୁ ଆଶୀର୍ବାଦ ଦେଇଥିଲେ । ତେଣୁ କଲେଜ ଜୀବନରୁ ତାଙ୍କର ସାହିତ୍ୟକ ବ୍ୟକ୍ତିତ୍ୱର ବିକାଶ ଘଟିଥିଲା ।

### ଉଚ୍ଚଶିକ୍ଷାର ସମାପ୍ତି

1907 ମସିହାରେ ସେ ଆଇ. ଏ. ପରୀକ୍ଷାରେ କୃତିତ୍ୱ ହାସଲ କରି ମେୟୋବୃତ୍ତି ପାଇ ବି. ଏ. ଅଧ୍ୟୟନ କଲେ । ଗୋପବନ୍ଧୁଙ୍କ ଘନିଷ୍ଠ ସଂପର୍କରେ ଆସି ୟଙ୍ଗ ଉତ୍କଳ ଆସୋସିଏସନ ନାମରେ ଏକ ଅନୁଷ୍ଠାନ ଗଢିଥିଲେ । ଗୋପବନ୍ଧୁଙ୍କ ସହିତ ବନ୍ୟାଞ୍ଚଳରେ ରିଲିଫ କାର୍ଯ୍ୟ କରିଥିଲେ । ଏନଟ୍ରାନସ ପାସ୍ କରିଥିବା କୃତୀ ଛାତ୍ରମାନଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ସ୍ନାତକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ 30 ଟଙ୍କା ବୃତ୍ତି ଲାଭ କଲେ । ଏମ୍. ଏ. ଓ ଆଇନ ଅଧ୍ୟୟନ ପାଇଁ ସେ କଲିକତା ଗଲେ । ଏହା ପୂର୍ବରୁ 1909 ମସିହାରେ ସେ ଗୋପବନ୍ଧୁଙ୍କ ସହିତ ମିଳି ସତ୍ୟବାଦୀକୁ ଶ୍ରୀରାମଚନ୍ଦ୍ରପୁରଠାରୁ ଭର୍ଣ୍ଣାକୁଳର ସ୍କୁଲକୁ ଆଣି ଗୋଟିଏ ମାଇନର ସ୍କୁଲ ପ୍ରତିଷ୍ଠା କରିଥିଲେ । କଲିକତା ବିଶ୍ୱବିଦ୍ୟାଳୟରୁ ଏମ୍. ଏ. ପାସ୍ କରି 1911 ମସିହାରେ ଓକିଲାତି ପଢା ଅଧାରୁ ଓଡିଶାକୁ ଫେରିଆସିଥିଲେ ।

## ସତ୍ୟବାଦୀ ବନବିଦ୍ୟାଳୟ

### ଗୋପବନ୍ଧୁଙ୍କର ମାନସସନ୍ତାନ

ସତ୍ୟବାଦୀର ବନବିଦ୍ୟାଳୟ ଗୋପବନ୍ଧୁଙ୍କର ମାନସ ସନ୍ତାନ ହୋଇଥିଲେ ହେଁ ପଞ୍ଚସଖାଙ୍କ ସକ୍ରୀୟ ସହଯୋଗ ଫଳରେ ଏହା ଏକ ସାର୍ଥକ ମଣିଷ ତିଆରି କାରଖାନା ରୂପରେ ଗଢି ଉଠିଥିଲା । ଜାତୀୟ ଉନ୍ମାଦନାରୁ ଏହାର ସୃଷ୍ଟି ଓ ଯୁବସମାଜକୁ ସୁଶିକ୍ଷିତ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ପ୍ରାଣରେ ସ୍ୱଦେଶପ୍ରେମ, କର୍ମନିଷ୍ଠା ସ୍ୱାବଲମ୍ବନଶୀଳତା ସ୍ୱାଧୀନଚିନ୍ତାଧାରା ଆଦି ସଦ୍‌ଗୁଣଗୁଡ଼ିକର ବିକାଶ ସାଧନ ଏହାର ଲକ୍ଷ୍ୟ । ଶାନ୍ତି, ମୈତ୍ରୀ ଓ ପ୍ରଗତି ପଟଭୂମିରେ ମହାଜାତୀୟତା ତଥା ଆନ୍ତର୍ଜାତୀୟତାର ମହାନ ଆଦର୍ଶ ସୃଷ୍ଟି ଏହି ବନବିହାରର ଥିଲା ମୁଖ୍ୟ ଆଭିମୁଖ୍ୟ ।

## ନୀଳକଣ୍ଠଙ୍କ ଶ୍ରମ ଓ ସାଧନା

1911 ଅକ୍ଟୋବର ମାସରେ ନୀଳକଣ୍ଠ ସତ୍ୟବାଦୀ ବନବିଦ୍ୟାଳୟରେ ଜଣେ ଶିକ୍ଷକ ଭାବରେ ଯୋଗଦେଇ ପରେ ପ୍ରଧାନ ଶିକ୍ଷକ ଭାବରେ ଏହାକୁ ପ୍ରାଣବନ୍ତ ଅନୁଷ୍ଠାନ ଭାବରେ ଗଢିଥିଲେ । ତାଙ୍କର କଠୋର ଶୃଂଖଳାଜ୍ଞାନ, ସମୟାନୁବର୍ତ୍ତିତା, ଦୃଢଚରିତ୍ରବତ୍ତା ଓ ଗଭୀର କର୍ମନିଷ୍ଠା ନିକଟରେ କୌଣସି ପ୍ରିୟାପ୍ରୀତି, ଗୁରୁଭକ୍ତିର ସ୍ଥାନ ନଥିଲା । ଏହି ସଂପର୍କରେ ଗୋଟିଏ ଘଟଣା ନୀଳକଣ୍ଠ ନିଜ ଆତ୍ମଜୀବନୀରେ ଲେଖି ବିଶେଷ ମନସ୍ତାପ କରିଛନ୍ତି । " ପଣ୍ଡିତ ଶ୍ରୀ ମଧୁସୂଦନ ମିଶ୍ର ସେ ମୋର ମଧ୍ୟ ବାଲ୍ୟଗୁରୁ......ମୁଁ ତାଙ୍କର ଶିଷ୍ୟ, ତଥାପି ସତ୍ୟବାଦୀ ବିଦ୍ୟାଳର ସେଥିପାଇଁ ତାଙ୍କର କେବେ କୌଣସି ନିଷ୍ଠା ବା ଶୃଖଂଳାରେ ଟିକିଏ ହେଲେ ଶିଥିଳତା ମୁଁ ଦେଖିନାଇ । ଦିନକ କଥା ଆଜିମନେ ପଡିଗଲେ ପ୍ରାଣର ପୁରୁଣା ଆଘାତ ନୂଆ ହୋଇଉଠୁଛି । ବଡ ଆପଣେ ବୃଦ୍ଧ ହୋଇ ଆସିଥିଲେ, ଭୋଜନ ପରେ ଗ୍ରାମରୁ ଆସନ୍ତି ଅଧମାଇଲିରୁ ବେଶି । ଶ୍ରେଣୀରେ ପଢାଇଲା ବେଳେ ଥରେ ଦୁଇଥର ଘୁମାଇବାର ଦେଖିଲି । କିନ୍ତୁ ନକହି ବସିବାପାଇଁ ହାତଥିବା ଚଉକିଟି କାଢିଆଣି ଗୋଟିଏ ଟୁଲ ଦେବା ପାଇଁ ତହିଁ ଆରଦିନଠାରୁ ବ୍ୟବସ୍ଥା କରିଦେଲି । ସେ କିନ୍ତୁ ନିର୍ବିକଳ୍ପ-ଟୁଲରେ ଆସି ବସିଲେ, ପଢାଇଲେ" ( ଆତ୍ମଜୀବନୀ, 1886 ପୃ–82 ) ନୀଳକଣ୍ଠଙ୍କର କି କଠୋର କର୍ତ୍ତବ୍ୟନିଷ୍ଠା । ଗୁରୁଙ୍କୁ କଷ୍ଟଦେଇ ତାଙ୍କ ମନରେ ସତେ କି ଅନ୍ତର୍ଦାହ !!

## ଏକ ଗୁରୁକୂଳ ଆଶ୍ରମ

ଛାତ୍ର ଓ ଶିକ୍ଷକଙ୍କଠାରୁ ନୈତିକ ଦାୟିତ୍ୱ ଓ କର୍ତ୍ତବ୍ୟରେ ଅନୁପ୍ରାଣିତ କରି ସତ୍ୟବାଦୀ ବନବିଦ୍ୟାଳୟକୁ ଏକ ଗୁରୁକୂଳ ଆଶ୍ରମରେ ପରିଣତ କରିଥିଲେ । ନୀଳକଣ୍ଠ ଥିଲେ ଏହି ଗୁରୁକୂଳର କୁଳପତି ଓ ସମସ୍ତଙ୍କ ମଧ୍ୟରେ ଗ୍ରାମ୍ୟ ସଂହତି ଓ ପ୍ରୀତିର ବାତାବରଣ ସୃଷ୍ଟି କରିଥିଲେ । ଏହି ପ୍ରସଙ୍ଗରେ ଛାତ୍ରାବାସରେ ପଂକ୍ତିଭୋଜନରେ ଗୋଟିଏ ଘଟଣା ନୀଳକଣ୍ଠ ନିଜେ ଉଲ୍ଲେଖ କରିଛନ୍ତି ( 1964, ପୃ–64 ) ରକ୍ଷଣଶୀଳ ବ୍ରାହ୍ମଣମାନଙ୍କୁ ସେ ଉତ୍ତର ଦେଇଥିଲେ " କୂଳଗୃହର ସମସ୍ତ ଅନ୍ତେବାସୀଙ୍କର ମୁଁ କୁଳପତି । ସୁବିଧା ଥିଲେ ମୋର ପତ୍ନୀ ନିଜ ପୁତ୍ର ରୂପେ ସେମାନଙ୍କୁ ରନ୍ଧି ଖାଇବାକୁ ଦିଅନ୍ତା । ମୁଁ ଏହି ପୁତ୍ରମାନଙ୍କ ମଧ୍ୟରେ ବର୍ଣ୍ଣ, ଧର୍ମ ଭେଦ କରି ପାରିବି ନାହିଁ, କ୍ଷମାକରନ୍ତୁ," ଏହିପରି କେତେକ ବିଷୟରେ ରକ୍ଷଣାଶୀଳମାନେ କ୍ରୁଦ୍ଧ ଓ ଉତ୍କ୍ଷିପ୍ତ ହୋଇ ବନବଦ୍ୟାଳୟକୁ ଅଗ୍ନିଦାହ କରିଥିଲେ ।

## ଏଯୁଗର ନାଳଂଦା

ଏହିପରି ବିଭିନ୍ନ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ବନବିଦ୍ୟାଳୟ ଖୁବ୍ ଆକର୍ଷଣୀୟ ହୋଇ ଉଠିଥିଲା । ସହସ୍ରାଧିକ ଥିଲେ ଏହାର ଛାତ୍ରସଂଖ୍ୟା ଏବଂ ରଥଯାତ୍ରା, ଉତ୍କଳ

ସମ୍ମିଳନୀ ପରେ ସାଧାରଣ ସମାବେଶରେ ସେମାନେ ସ୍ୱେଚ୍ଛାସେବୀ ଭାବରେ କାର୍ଯ୍ୟ-କରି ସୁନାମ ଅର୍ଜନ କରିଥିଲେ । ମଧୁବାବୁଙ୍କ ଭାଷାରେ ଏହା ଥିଲା ଏଯୁଗର ଏକ "ନାଳନ୍ଦା", ଛାତ୍ର ଶିକ୍ଷକ ସଂପର୍କ ଥିଲା ଅତିଘନିଷ୍ଠ ଓ ନୈସର୍ଗିକ । ଏହା ଜଣେ ଛାତ୍ର ଶ୍ରୀ ଚନ୍ଦ୍ରଶେଖର ମିଶ୍ର ପିତାଙ୍କ ଦେହାନ୍ତ ହେବାରେ ନୀଳକଣ୍ଠଙ୍କ ପ୍ରବୋଧନା "ସତ୍ୟବାଦୀରେ ସାତ ବର୍ଷ" ଶୀର୍ଷକ ପୁସ୍ତକ (ପୃ 37-3୪) ରେ ଲେଖିଛନ୍ତି, ''ନିୟତିର ଇଚ୍ଛାରେ ଯେତେବେଳେ ଯାହା ଘଟେ, ଯିଏ ତାହା ସହିପାରେ, ସେହି ଏକା ମନୁଷ୍ୟ । ମନୁଷ୍ୟ କାହାର ମରଣରେ ବିବ୍ରତ ହୁଏ କାରଣ ମୃତ ବ୍ୟକ୍ତିଠାରୁ ସେ ଆଉ ସାହାଯ୍ୟ ପାଇବ ନାହିଁ । ସ୍ତ୍ରୀ, ପୁରୁଷ ପାଇଁ, ପୁତ୍ରକନ୍ୟା ପିତାଙ୍କ ପାଇଁ, ବନ୍ଧୁ ବନ୍ଧୁପାଇଁ ରୋଦନ କରେ କେବଳ ସ୍ୱାର୍ଥଯୋଗୁଁ, କିନ୍ତୁ ସର୍ବହରା, ବଜ୍ରହୃଦୟ ଲୋକ ନିଜ ପରିଶ୍ରମ ଓ ନିଜ ସମ୍ବଳ ଘଟି ଯେ ନିଜ ପରିବାରର ବନ୍ଧୁବାନ୍ଧବମାନଙ୍କର ଆଶ୍ରିତ ବ୍ୟକ୍ତି ବର୍ଗର ପୋଷକ ଓ ପାଳକ, ଏହା ଭଗବାନଙ୍କର ଅପୂର୍ବଦାନ । ସିଂହବଳ ଘେନି ସଂସାରରେ ଅବତୀର୍ଣ୍ଣ ହେବାର ସୁବିଧା ତୋତେ ଭଗବାନ ଦେଇଛନ୍ତି ।"

## ସାହିତ୍ୟ ଓ ସଂସ୍କୃତିର ପବିତ୍ର ପୀଠ

ସତ୍ୟବାଦୀ ବନବିହାର କେବଳ ଶିକ୍ଷାଦାନ ଓ ଶିକ୍ଷଣର କେନ୍ଦ୍ର ନଥିଲା । ଏହାଥିଲା ସାହିତ୍ୟ ଓ ସଂସ୍କୃତିର ଏକ ପବିତ୍ର ପୀଠ । ଅନେକ ସମୟରେ ସାହିତ୍ୟିକ ଆଲୋଚନା, ସଭାସମିତି ଆଦି ଅନୁଷ୍ଠିତ ହେଉଥିଲା ଏବଂ ''ସତ୍ୟବାଦୀ" ସାହିତ୍ୟ ପତ୍ରିକା ଓ "ସମାଜ" ସମ୍ବାଦପତ୍ର ପ୍ରକାଶିତ ହେଉଥିଲା । 'ସତ୍ୟବାଦୀ'ରେ" ଉଚ୍ଚକୋଟୀର ସାହିତ୍ୟ, ସଂସ୍କୃତି ଓ ରାଜନୀତି ଚିନ୍ତାଧାରା ସମ୍ବଳିତ ସଂଦର୍ଭ ଓ ବିଗ୍ଭରବିମର୍ଶ ସ୍ଥାନ ପାଉଥିଲା । ଏହି ପତ୍ରିକାର ସଂପାଦନା ଦାୟିତ୍ୱ ଥିଲା ନୀଳକଣ୍ଠଙ୍କର ଏବଂ ସେ ଓ ଗୋପବନ୍ଧୁ ଏଥିରେ ସଂପାଦକୀୟ ଲେଖିବା ସହିତ ଆବଶ୍ୟକତାନୁସାରେ ବହୁ ପ୍ରବନ୍ଧ ମଧ୍ୟ ପ୍ରକାଶ କରୁଥିଲେ । "ସମାଜ" ଜାତୀୟ ଜୀବନର ସମସ୍ୟା ଓ ସମାଧାନକୁ ନେଇ ଆତ୍ମପ୍ରକାଶ କରୁଥିଲା । ତେବେ ଯାହା ହେଉ "ସତ୍ୟବାଦୀ" ପତ୍ରିକାଟି ସତ୍ୟବାଦୀ ବନବିଦ୍ୟାଳୟ ସହିତ ଲୋପ ପାଇଲା । ମାତ୍ର "ସମାଜ" ଆମ ସମାଜକୁ ଧରି ବିକଶିତ ହୋଇ ଚ୍ଚଳିଛି ।

## ଏକ ନିଷ୍ପାପର ପରୀକ୍ଷା

ଏହି ବନବିଦ୍ୟାଳୟକୁ ଦେଶର ବିଭିନ୍ନ ଅଂଚଳରୁ ବହୁ ଗଣ୍ୟମାନ୍ୟ ପରିଦର୍ଶକ ଆସି ଏଠାର ଶିକ୍ଷା ପ୍ରଣାଳୀ ଓ ପରିଚ୍ଚଳନାରେ ବିଶେଷ ପ୍ରୀତ ଓ ଅଭିଭୂତ ହୋଇଥିଲେ । 1917 ଏପ୍ରିଲ 17 ତାରିଖରେ ଓଡ଼ିଶା–ବିହାର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ଏଡ଼ୱାର୍ଡ଼ ଗେଟ୍ ଏହାକୁ ପରିଦର୍ଶନକରି ମୁକ୍ତାକାଶ ଶିକ୍ଷାଦାନ ବ୍ୟବସ୍ଥାଦ୍ୱାରା ଖୁବ୍ ମୁଗଧ ହୋଇଥିଲେ ଏବଂ ଶିକ୍ଷକମାନଙ୍କର ତ୍ୟାଗ ଓ ଛାତ୍ରମାନଙ୍କ ଶୃଙ୍ଖଳା, କ୍ରୀଡ଼ାକୌଶଳ ଆଦିର ବିଶେଷ ପ୍ରଶଂସା କରିଥିଲେ । ଜୁନ 2 ତାରିଖ 1917 ରେ କଲିକତାର କୁଳପତି ସାର୍ ଆଶୁତୋଷ

ମୁଖାର୍ଜି ଏହି ବିଦ୍ୟାଳୟ ପରିଦର୍ଶନ କରି ଏହାର ମାନସିକ, ନୈତିକ ଓ ଦୈହିକ କ୍ଷେତ୍ରରେ ବହୁମୁଖି କାର୍ଯ୍ୟକଳାପର ଭୂୟସୀ ପ୍ରଶଂସା କରିଥିଲେ । 1921 ମାର୍ଚ୍ଚ ମାସରେ ମହାତ୍ମାଗାନ୍ଧୀ ମଧ୍ୟ ଏହି ବିଦ୍ୟାଳୟ ପରିଦର୍ଶନ କରି ନିଜର ( Young India ) ପତ୍ରିକାରେ ପ୍ରକାଶ କରିଥିଲେ, "ପଣ୍ଡିତ ଗୋପବନ୍ଧୁଙ୍କର ଏହି ବିଦ୍ୟାଳୟ ପ୍ରକୃତରେ ଦର୍ଶନୀୟ । ଏହା ସାକ୍ଷୀଗୋପାଳଠାରେ ଅବସ୍ଥିତ । ଏଠାରେ ଶିକ୍ଷକ ଓ ଛାତ୍ରଙ୍କ ଗହଣରେ ମୁଁ ଏକ ପ୍ରୀତିପୂର୍ଣ୍ଣ ଦିନ ଅତିବାହିତ କରିଛି । ମୁକ୍ତ ଆକାଶ ତଳେ ଶିକ୍ଷାଦାନର ଏକ ନିଷ୍ଠାପର ପରୀକ୍ଷା ଏଠି ଚାଲେ । ତେବେ ମନୁଷ୍ୟର ତ୍ୟାଗର ଏକ ସୀମା ଅଛି । ଏଠାରେ ଅଧିକାଂଶ କର୍ମୀ ସମାଜରେ ଦରିଦ୍ରତମ ଶ୍ରେଣୀର" ।

## ଅଦୃଶ୍ୟ ହେଲେ ବି ଜୀବନ୍ତ

ଅଧ୍ୟାପକ ଚିନ୍ତାମଣି ଦାଶ ଯଥାର୍ଥରେ କହିଛନ୍ତି, "ଆଦ୍ୟର ଅନ୍ତଥାଏ, ଉତ୍‌ଥାନର ପତନ ଥାଏ, ଉତ୍ପତିର ବିଲୟ ଥାଏ ଏହା ଚିରନ୍ତନ ସତ୍ୟ । ଚାଳଘର ପରିବର୍ତ୍ତେ ସ୍କୁଲପାଇଁ କୋଠାଘର ତିଆରିହେଲା । ସ୍କୁଲ ଲାଇବ୍ରେରୀ ପୁଣି ଗଢିଉଠି ସ୍କୁଲ ତଥା ଶ୍ରେଣୀ ଲାଇବ୍ରେରୀମାନ ଖୋଲାହେଲା । ସମାଜ ସଂସ୍କାରରୂପକ ନିଶା ଆନ୍ଦୋଳନ ପୂର୍ଣ୍ଣାଂଗ ହୋଇ ପୂର୍ଣ୍ଣତଃ ଜୟଯୁକ୍ତ ହେଲା । ସାହିତ୍ୟ ସାଧନାର ଶୀର୍ଷସ୍ଥାନ ଅଧିକାର କଲା । ସାରା ଦେଶରେ ସତ୍ୟବାଦୀର ଜୟଗାନ ଉଚ୍ଛୁଳିତ ହେଲା । ଏହିପରି ସତ୍ୟବାଦୀ ଯୁଗର କବି ଓ ଲେଖକମାନଙ୍କର କୃତିତ୍ୱର ପରାକାଷ୍ଠା ବିଚାରକୁ ଆଣିଲେ ମନେହୁଏ ନୀଳକଣ୍ଠ ହେଉଛନ୍ତି ଏମାନଙ୍କ ମଧ୍ୟରେ ଅଗ୍ରଣୀ । ଏହାଙ୍କର ସାହିତ୍ୟ ସମୁଚ୍ଚକୋଟୀ ସ୍ପର୍ଶ କରି ଉଜ୍ଜ୍ୱଳ ହୋଇରହିଛି" । (ମନୀଷୀ ନୀଳକଣ୍ଠ-ପୃ. ୪୨-୪୩) ପଣ୍ଡିତ ନୀଳକଣ୍ଠ ତାଙ୍କ "ଆତ୍ମଜୀବନୀ" (ପୃ. ୬୩) ରେ କହିଛନ୍ତି, "ସତ୍ୟବାଦୀ ସ୍କୁଲ ମୋ ପ୍ରତି ଏବେବି ଇତିହାସ ନୁହେଁ" । ଅର୍ଥାତ ରକ୍ତଦେଇ ଓ ପ୍ରାଣ ଢ଼ାଳି ଗଢିଥିବା ବନବିଦ୍ୟାଳୟ ସଂପ୍ରତି ଅଦୃଶ୍ୟ ହେଲେବି ଏକ ଜୀବନ୍ତ ଅନୁଷ୍ଠାନ, ତାର ଆତ୍ମା ଓଡ଼ିଆ ଜାତିର ଜୀବନକୁ ଏବେବି ଅନୁପ୍ରାଣିତ ଓ ଅନୁରଞ୍ଜିତ କରେ ।

## ଓଡ଼ିଆ ଭାଷା ଓ ସାହିତ୍ୟରେ ଅଧ୍ୟାପକ ଓ ଗବେଷଣା

ପୂର୍ବରୁ ଭାରତୀୟ ଭାଷାଗୁଡ଼ିକର ବିକାଶ କଲିକତା ବିଶ୍ୱବିଦ୍ୟାଳୟର ଏକ କର୍ତ୍ତବ୍ୟବୋଲି ସ୍ୱୀକୃତି ହୋଇଥିଲେ ହେଁ, ବାସ୍ତବ କ୍ଷେତ୍ରରେ ସାର ଆଶୁତୋଷ ମୁଖାର୍ଜି ଏହାର କୁଳପତି ହେଲାପରେ ଏହି ଲକ୍ଷ୍ୟ ସାକାର ହୋଇଥିଲା । ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ, ବିଶ୍ୱବିଦ୍ୟାଳୟ ଶିକ୍ଷାରେ ଭାରତୀୟ ଭାଷା ଓ ସାହିତ୍ୟକୁ ଯଥାର୍ଥ ସ୍ଥାନ ଦେଲେ ଭାରତର ଜାତୀୟ ଏକତା ଓ ଜାତୀୟ ପୁନର୍ଜାଗରଣ ସମ୍ଭବ ହେବ । ସାର୍ ଆଶୁତୋଷ ମୁଖାର୍ଜି 1906 ରୁ 1914 ପର୍ଯ୍ୟନ୍ତ ପ୍ରଥମଥର ଓ 1921 ରେ ଦ୍ୱିତୀୟ ଥର କୁଳପତି ହୋଇ ଏହି ସ୍ୱପ୍ନକୁ ସାର୍ଥକ କରିଥିଲେ । କବିଗୁରୁ ରବୀନ୍ଦ୍ରନାଥ ଯଥାର୍ଥରେ

କହିଥିଲେ,"ଆଶୁତୋଷଙ୍କଠାରୁ ହିଁ ବାହାରୁଥିଲା । ପ୍ରତିଶ୍ରୁତିର ଯାଦୁକରୀ ବାଣୀ । ସେ ଥିଲେ ସାହସୀ, ସ୍ୱପ୍ନଦ୍ରଷ୍ଟା ସ୍ୱପ୍ନଦେଖିବାର ଦୁଃସାହସ ତାଙ୍କର ଥିଲା । କାରଣ ସଂଗ୍ରାମ ପାଇଁ ତାଙ୍କର ଥିଲା ଅଦମ୍ୟ ଶକ୍ତି ଓ ଜୟଲାଭର ଥିଲା ଦୃଢ଼ ବିଶ୍ୱାସ" । ତାଙ୍କର ବଳବତୀ ଇଚ୍ଛା ତାଙ୍କୁ ଲକ୍ଷ୍ୟ ପଥରେ ଆଗେଇ ନେଉଥିଲା । ଅମଲାତାନ୍ତ୍ରିକ ନିଷ୍ପ୍ରାଣ କାରଖାନାର ଲୌହଛାଞ୍ଚ ସେ କାଳର ବିଶ୍ୱବିଦ୍ୟାଳୟରେ ଏକ ଜୀବନ୍ତ ହୃଦୟ ସଂଯୋଗ କରିବାର ସ୍ୱପ୍ନକୁ ସେହି କେବଳ ସଫଳ କରି ପାରିଥିଲେ ।

ସୋନପୁର (ସୁବର୍ଣ୍ଣପୁର)ର ମହାରାଜା ସାର ବୀରମିତ୍ରୋଦୟ ସିଂହଦେଓ କେ.ସି. ଆଇ. ଓଡ଼ିଆ ସ୍ନାତକୋତ୍ତର ଶ୍ରେଣୀ ପରିଚାଳନା ଓ ନିଜନାମରେ ଓଡ଼ିଆ ଚେୟାର ଖୋଲିବା ପାଇଁ ଅକାତରେ ଅର୍ଥ ସାହାଯ୍ୟ କରିଥିଲେ । ଏହି ପ୍ରସଂଗରେ ତତ୍‌କାଳୀନ ଭାରତୀୟ ଭାଷା ବିଭାଗର ଅଧ୍ୟାପକ ବିଜୟଚନ୍ଦ୍ର ମଜୁମ୍‌ଦାର ଲେଖିଥିଲେ, "କଲିକତା ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର କଳା ଶ୍ରେଣୀରେ ଓଡ଼ିଆ ଭାଷାକୁ ଏମ୍. ଏ ପାଠ୍ୟକ୍ରମ ଅନ୍ତର୍ଭୁକ୍ତ କରିବାପାଇଁ ସୋନପୁର ମହାରାଜା ନିଜନାମରେ ଏକ ଅଧ୍ୟାପକ ପଦ ସୃଷ୍ଟି କରିଅଛନ୍ତି ...... ଏହିବଦାନ୍ୟତା ଅନ୍ୟ ସମସ୍ତଙ୍କ ପାଇଁ ଏକ ଦୃଷ୍ଟାନ୍ତହୋଇ ରହିବ, "କୁଳପତି ସାର ଆଶୁତୋଷ ମୁଖାର୍ଜି ମଧ୍ୟ ତାଙ୍କ ସମାବର୍ତ୍ତନ ଅଭିଭାଷଣ (University of Calcutta Convocation Address Vol. V, 1915—1923) ଏହି ବିଷୟ ଖୁବ୍ ଆନନ୍ଦର ସହିତ ଉଲ୍ଲେଖ କରିଥିଲେ ।

ସୋନପୁର ମହାରାଜାଙ୍କ ଅର୍ଥ ସାହାଯ୍ୟରେ ବିଜୟଚନ୍ଦ୍ର ମଜୁମ୍‌ଦାର ତିନି ଖଣ୍ଡରେ ଓଡ଼ିଆ ସାହିତ୍ୟର ପ୍ରତିନିଧିମୂଳକ ରଚନାର ସଂଚୟନ (Typical selections from Oriya Literature) ପ୍ରକାଶ କରିଥିଲେ । 1917—1919 ରେ ସତ୍ୟବାଦୀ ବନବିଦ୍ୟାଳୟର ନୀଳକଂଠ କେତେକାଂଶରେ ମୁକ୍ତ ହୋଇଥିଲେ ଏବଂ 1919 ପୁରୀ ଜିଲ୍ଲାର ଦୁର୍ଭିକ୍ଷ ରିପୋର୍ଟ ପ୍ରକାଶ କରିବା କାର୍ଯ୍ୟରେ ତାଙ୍କର କଲିକତା ରହଣୀ ସମୟରେ ଏଠା ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷଙ୍କ ସହିତ ଯୋଗାଯୋଗ କରିପାରିଥିଲେ । ସାର ଆଶୁତୋଷଂକ ଅନୁରୋଧକ୍ରମେ 1920 ମସିହା ସେପ୍ଟେମ୍ବର 21 ତାରିଖରେ ଅଧ୍ୟାପକ ପଦରେ ସେ ଯୋଗଦେଇଥିଲେ । ନୀଳକଂଠ ଖୁବ୍ ସ୍ୱଳ୍ପସମୟପାଇଁ ଏହି ପଦରେ ରହି 1921 ମସିହା ଜାନୁଆରୀ 6 ତାରିଖରେ ସେଠାରୁ ବିଦାୟ ଗ୍ରହଣ କରିଥିଲେ । ଏହି ପ୍ରସଂଗରେ ପଣ୍ଡିତ ନୀଳକଂଠଙ୍କ ନିଜ ଉକ୍ତି ଉଲେଖଯୋଗ୍ୟ । ସେ (ଗୋପବନ୍ଧୁ) କଥା ପ୍ରସଂଗରେ ମତେ କହିଲେ, "ମୁଁ ଯାଉଛି ଅସହଯୋଗ ଆନ୍ଦୋଳନରେ ଯୋଗଦେବି । ତୁମେ ଯାଅ, ସତ୍ୟବାଦୀ ସ୍କୁଲର ନେତୃତ୍ୱ ଗ୍ରହଣକରି ସେହିଠାରେ ରହ" କଥାଟା ମତେ କିପରି ଲାଗିଲା । ମୁଁ କହିଲି "ଜୀବନରେ ସମସ୍ତେ ଏକ ନାଆରେ ବସିଥାଇଁ । ଆଉ ସ୍କୁଲ ଲୋଭ କାହିଁକି ? ଆପଣ ଯାହା କରିବାକୁ ବିଚାରିଛନ୍ତି, ମୁଁ ସେଇଆ କରିବି ; ମୋର ଇଚ୍ଛା ଆମ୍ଭେମାନେ ସମସ୍ତେ ସେଇଆ କରିବୁ, " ଆଉ ଏ ବିଷୟରେ ସେଦିନ

ବିଶେଷ କଥା ହେଲାପରି ମନେ ହେଉନାହିଁ । "ସମ୍ଭବତଃ ନୀଳକଣ୍ଠ ସତ୍ୟବାଦୀ ବନବିଦ୍ୟାଳୟପ୍ରତି ସେତେବେଳକୁ ଖୁବ୍ ବୀତସ୍ପୃହ ହୋଇଥିଲେ । ତେଣୁ ସେ ସେଠାକୁ ନଫେରି ସମ୍ବଲପୁରକୁ ନିଜର ନୂତନ କର୍ମକ୍ଷେତ୍ର ଭାବରେ ଗଢିଥିଲେ ।

## ସାରସ୍ୱତ ସୃଷ୍ଟି ଓ ପ୍ରକାଶନ

କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଭାବରେ ନୀଳକଂଠ ସେଇ ସ୍ୱଳ୍ପକାଳ ମଧ୍ୟରେ ସାହିତ୍ୟ ଅଧ୍ୟାପନା ଓ ଗବେଷଣା କ୍ଷେତ୍ରରେ ବିଶେଷ ସାଫଲ୍ୟ ଅର୍ଜନ କରି ପାରିଥିଲେ । ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ତାଙ୍କ ଜୀବନର ବ୍ରତ ଥିଲା, ଏବଂ ସାମନ୍ତ ଚନ୍ଦ୍ରଶେଖର, ରାଧାନାଥ, ଫକିରମୋହନ ପ୍ରମୁଖଙ୍କ ସାରସ୍ୱତ ଅବଦାନ ସଂପର୍କରେ ସଂଦର୍ଭ ରଚନା କରିଥିଲେ । "ଓଡ଼ିଆ ସାହିତ୍ୟର କ୍ରମପରିଣାମ" "ଆତ୍ମଜୀବନୀ" ଆଦି ମହାର୍ଘ ରଚନାରେ ଉଚ୍ଚକୋଟୀର ମନସ୍ୱିତା ଓ ଅନୁସନ୍ଧିତ୍ସାର ସୂଚନା ଦେଇଛନ୍ତି । ଏହା ପୂର୍ବରୁ ତାଙ୍କର "ଖାରବେଳ", "ଦାସନାୟକ", "କୋଣାର୍କେ" ପ୍ରଭୃତି କାବ୍ୟ ଓ "ଆର୍ଯ୍ୟଜୀବନ" ନାମକ ପ୍ରସିଦ୍ଧ ନିବନ୍ଧ ଗ୍ରନ୍ଥ ପ୍ରକାଶିତ ହୋଇଥିଲା । ଓଡ଼ିଶାର ଶିଶୁ ସମାଜପାଇଁ "ପିଲାଙ୍କ ଭାଗବତ", "ପିଲାଙ୍କ ରାମାୟଣ" ଓ "ପିଲାଙ୍କ ମହାଭାରତ" ଲେଖି ଅନନ୍ୟ ପ୍ରତିଭାର ପରିଚୟ ଦେଇଥିଲେ । ଯଥାର୍ଥ ଭାବରେ କୁହାଯାଇଛି ନୀଳକଣ୍ଠ ସ୍ମାରକୀ, 1972 ପୃ.5) "ସାହିତ୍ୟରେ ଶିଶୁମାନଙ୍କ ଲାଗି ଗଦ୍ୟ ପୁସ୍ତକ ରଚନା ଏହା ହିଁ ଓଡ଼ିଶାରେ ବୋଧହୁଏ ପ୍ରଥମ । ଏହାପରେ ମଧ୍ୟ ଉତ୍ତର ଜୀବନରେ କୋମଳମତି ବାଳକବାଳିକାମାନଙ୍କ ପାଇଁ ସେ ଯେଉଁ କେତେକ କବିତା ପ୍ରଣୟନ କରିଥିଲେ, ତାହା ତାଙ୍କ ଶିଶୁପ୍ରୀତିର ପରିଚୟ ଦେବା ସଂଗେସଂଗେ ପାଣ୍ଡିତ୍ୟର ଶୀର୍ଷସ୍ଥାନରେ ରହି ଜଣେ ବ୍ୟକ୍ତି ପିଲାଙ୍କପାଇଁ ଏପରି ଭାବପୂର୍ଣ୍ଣ କଥା ସରସ ଓ ସୁନ୍ଦର ଭାଷାରେ ଯେ ବ୍ୟକ୍ତ କରିପାରେ ଏହା କମ୍ ଆଶ୍ଚର୍ଯ୍ୟର କଥା ନୁହେଁ ! ନୀଳକଣ୍ଠ ଓଡ଼ିଆ ସାହିତ୍ୟକୁ ବହୁଭାବରେ ସତେ ସମୃଦ୍ଧ କରିଯାଇଛନ୍ତି ।

# ସକ୍ରିୟ ରାଜନୀତିରେ ଯୋଗଦାନ

## ସମ୍ବଲପୁରଠାରେ ପ୍ରତ୍ୟକ୍ଷ ରାଜନୀତିର ଶୁଭାରମ୍ଭ ଓ ସଂଗଠନ

1921 ମସିହାରେ ଗାନ୍ଧିଜୀଙ୍କ ଆହ୍ୱାନରେ ଅସହଯୋଗ ଆନ୍ଦୋଳନ ଏକ ବନାଗ୍ନିପରି ସମଗ୍ର ଦେଶରେ ଅପୂର୍ବ ଉତ୍ତେଜନା ସୃଷ୍ଟିକରି ସ୍ୱଳ୍ପ ସମୟରେ ନିର୍ବାପିତ ହୋଇଥିଲା । ମାତ୍ର ଭାରତର ମୁକ୍ତିପାଇଁ ସେହି ଆଗ୍ନେୟ ଆହ୍ୱାନ ଯୁବ ଓ ତରୁଣ ପ୍ରାଣରେ ଯେଉଁ ଉନ୍ମାଦନା ସୃଷ୍ଟି କରିଥିଲା, ତାର ତୁଳନା ନାହିଁ ।

ପଣ୍ଡିତ ନୀଳକଣ୍ଠ ୧୯୨୧ ମସିହା ଜାନୁଆରୀ ୬ ତାରିଖରେ ଗୋପବନ୍ଧୁ ଓ ସମ୍ବଲପୁରର କଲେଜ ଛାତ୍ର ଭାଗୀରଥି ମିଶ୍ରଙ୍କ ସହିତ କଲିକତା ଛାଡ଼ି ରେଳରେ ସମ୍ବଲପୁର ଆଗମନ କଲେ। ତା' ପରଦିନ 7 ତାରିଖ ଠାରୁ ହେଲା ନୀଳକଣ୍ଠଙ୍କର ପ୍ରତ୍ୟକ୍ଷ ରାଜନୈତିକ ଜୀବନର ଶୁଭାରମ୍ଭ । ତାଙ୍କ ଆତ୍ମଜୀବନୀରେ ସେ ଲେଖିଛନ୍ତି, "ଏବେ ସମ୍ବଲପୁର ଷ୍ଟେସନରେ ଲୋକେ ଅପେକ୍ଷା କରିଛନ୍ତି, ଲୋକେ ମଧ୍ୟ ଖଣ୍ଡିଏ ମଟରକାର ଆଣିଥିଲେ । ସେଇଠାରୁ ବିରାଟ ଶୋଭା ଯାତ୍ରାରେ ସମସ୍ତ ସମ୍ବଲପୁର ବୁଲିଥିଲୁ । ଦ୍ୱାରେଦ୍ୱାରେ ଅଭ୍ୟର୍ଥନା, ଫୁଲମାଳ, କିଏ ଚନ୍ଦନ ଦେଉ, ମୁଣ୍ଡରେ ଗୁଲାଲ ପକାଉଥାଏ ଓ ଛଡା ନଡ଼ିଆ ଆଣି ମୁଣ୍ଡରେ ଲଗାଉ ଥାଏ । ଯୁବକମାନେ ଆସି ମୁଣ୍ଡରେ ଚନ୍ଦନ ସିନ୍ଦୂର ଦେଉଥାନ୍ତି । ସେ ଶୋଭାଯାତ୍ରାର ଦୃଶ୍ୟ ଭୁଲିବାର ନୁହେଁ । ଜୟଧ୍ୱନିର ସ୍ୱର ବରାବର ଉଠୁଥାଏ... ଗୋପବନ୍ଧୁବାବୁ ବୋଧହୁଏ, ସେହିଦିନ ସନ୍ଧ୍ୟାକୁ ଚାଲିଆସିଲେ । ......ମୋର ପ୍ରଥମ କାର୍ଯ୍ୟ ହେଉଛି, ଚନ୍ଦ୍ରଶେଖର ବେହେରା ଓ ଧରଣୀଧର ମିଶ୍ର ପ୍ରଭୃତିଙ୍କୁ ଘେନି ସମ୍ବଲପୁର ଜିଲ୍ଲାର କଂଗ୍ରେସ କାର୍ଯ୍ୟ ଓ ସଙ୍ଗେସଙ୍ଗେ ସମ୍ବଲପୁରରେ ଜାତୀୟ ବିଦ୍ୟାଳୟ ଆରମ୍ଭ କରିବା ( ନୀଳକଣ୍ଠ ଗ୍ରନ୍ଥାବଳୀ ଭାଗ ପୃ. 128 ) ।

ଗୋପବନ୍ଧୁଙ୍କ ଅଧ୍ୟକ୍ଷତାରେ ଗଠିତ ଉତ୍କଳ କଂଗ୍ରେସର କାର୍ଯ୍ୟକାରୀ ସମିତିରେ ନୀଳକଣ୍ଠ ସଭ୍ୟରହି ସମ୍ବଲପୁର ଜିଲ୍ଲାରେ କଂଗ୍ରେସର ସ୍ୱାଧୀନତା ଆନ୍ଦୋଳନକୁ ସଂଗଠିତ କରିଥିଲେ । ସତ୍ୟବାଦୀ ଢ଼ାଞ୍ଚାରେ ଗୋଟିଏ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କରି ପାଠପଢ଼ା ସଙ୍ଗେ ସଙ୍ଗେ ସମାଜ ସେବା କାର୍ଯ୍ୟ ମଧ୍ୟ କରୁଥିଲେ । "ସେବା" ନାମରେ ଏକ ସାପ୍ତାହିକ ସମ୍ବାଦପତ୍ର ପ୍ରକାଶ କରି ତା' ମାଧ୍ୟମରେ ସ୍ୱାଧୀନତା ସଂଗ୍ରାମର ସଂଦେଶ ପ୍ରଚାର କରିଥିଲେ। "ସ୍ୱରାଜ ଭାୟା ଅଲବତ୍ ହୋଗା, ଛୋଡ଼କେ ଆଓ ଗୋଲାମି" ଆହ୍ୱାନରେ ସମ୍ବଲପୁର ସ୍କୁଲ ପିଲା ଓ କଚେରୀର କର୍ମଚାରୀମାନେ ନିଜ ନିଜ ଅନୁଷ୍ଠାନ ବର୍ଜନ କଲେ । ସେହି ଆନ୍ଦୋଳନ ଏତେ ତୀବ୍ର ହେଲା ଯେ , କଲିକତାର ପ୍ରସିଦ୍ଧ ଇଂରେଜ ଦୈନିକ "ଷ୍ଟେଟ୍‌ସମ୍ୟାନ୍"ରେ ତାର ବିସ୍ତୃତ ବିବରଣୀ ପ୍ରକାଶପାଇ ସମଗ୍ର ଦେଶରେ ଅପୂର୍ବ ଆଲୋଡ଼ନ ସୃଷ୍ଟିକରିଥିଲା । ନଅ ମାସର ଏହି ଆନ୍ଦୋଳନମୂଳକ କାର୍ଯ୍ୟକଳାପରେ ନୀଳକଣ୍ଠଙ୍କୁ ସର୍ବଶ୍ରୀ ଚନ୍ଦ୍ରଶେଖର ବେହେରା, ରାମନାରାୟଣ ମିଶ୍ର, ଅନନ୍ତରାମ ସୂପକାର ପ୍ରମୁଖ ବିଶେଷ ସହାୟକ ହୋଇଥିଲେ ।

## ନୀଳକଣ୍ଠଙ୍କ କାରାବରଣ

ଅସହଯୋଗ ଆନ୍ଦୋଳନରେ ସକ୍ରିୟ ଯୋଗଦାନ ଯୋଗୁଁ ପ୍ରଥମେ ନୀଳକଣ୍ଠ କାରାବରଣ କରିଥିଲେ । 1923 ରେ ଗାନ୍ଧିଜୀଙ୍କ ଓଡ଼ିଶା ପଦଯାତ୍ରାରେ ସେ ସହଯାତ୍ରୀ ଥିଲେ ଏବଂ ଗୋପବନ୍ଧୁଙ୍କ ପରାମର୍ଶକ୍ରମେ ସତ୍ୟବାଦୀ ବନବିଦ୍ୟାଳୟକୁ ନିମନ୍ତ୍ରଣ କରିଥିଲେ । 1923 ମସିହାରେ ହଜାରିବାଗ ଜେଲରେ ଆଚାର୍ଯ୍ୟ କୃପାଳିନୀ ଓ ଡ଼କ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ସହିତ ଏକତ୍ର ରହିଥିଲେ ଏବଂ ବିଭିନ୍ନ ବୌଦ୍ଧିକ ଆଲୋଚନାରେ ସକ୍ରିୟ ଭାଗନେଇ ସେ

ସବୁରି ଦୃଷ୍ଟି ଆକର୍ଷଣ କରିଥିଲେ । ସେ ବରିଷ୍ଠ ରାଜନୀତିଜ୍ଞମାନଙ୍କ ସହିତ ଯୁକ୍ତିତର୍କ କରି ନିଜର ମତ ପ୍ରକାଶ କରିବାରେ ପଶ୍ଚାତ୍‌ପଦ ହେଉ ନ ଥିଲେ । ଏମିତିକି ସେ ବାପୁଜୀ ଓ ଗୋପବନ୍ଧୁଙ୍କୁ ମଧ୍ୟ ସମାଲୋଚନା କରିବାକୁ କୁଣ୍ଠିତ ହେଉନଥିଲେ । ଯାହା ଠିକ୍ ମନେ କରୁଥିଲେ, ସେ ଦୃଢ଼ଭାବରେ ରୋକଠୋକ୍ ଭାଷାରେ ପ୍ରକାଶ କରୁଥିଲେ । ତାଙ୍କର ଅକୁତୋଭୟ ଓ ସତ୍ ସାହସ ଅନନ୍ୟ ଥିଲା ।

## ସମାଜସଂଗଠନ କାର୍ଯ୍ୟକ୍ରମ

1922 ଫେବୃଆରୀ 5 ତାରିଖରେ ଯୁକ୍ତ ପ୍ରଦେଶ (ଉତ୍ତର ପ୍ରଦେଶ)ର ଚୌରୀଚୌରା ପୋଲିସ ଥାନାରେ ଘଟିଥିବା ହିଂସାକାଣ୍ଡର ପ୍ରତିବାଦ ସ୍ୱରୂପ ଗାନ୍ଧିଜୀ ଅସହଯୋଗ ଆନ୍ଦୋଳନ ବନ୍ଦ କରି ଦେଇଥିଲେ । ଏହାଦ୍ୱାରା ସ୍ୱରାଜ୍ୟ ବର୍ଷକ ମଧ୍ୟରେ ମିଳିବାର ଯେଉଁ ଉଜ୍ଜ୍ୱଳ ଆଶା ଉଦ୍ଦୀପିତ ହୋଇଥିଲା, ତାହା ଲିଭିଗଲା । ଜାତୀୟ ଆନ୍ଦୋଳନ ଜୁଆରରେ ଯେମିତି ବିରାଟ ଭଟ୍ଟା ପଡ଼ିଗଲା । ଅହିଂସା ନୀତିରେ ଗାନ୍ଧିଜୀ ଅଟଳ ଥିଲେ ଓ ତାଙ୍କ ନିର୍ଦ୍ଦେଶରେ କଂଗ୍ରେସ ନୂତନ ନୀତି ଘୋଷଣା କଲା । ଜନତାଙ୍କ ମଧ୍ୟରେ ଚରଖା ବା ସୂତାକଟାର ପ୍ରଚଳନ, ମୌଳିକ ଶିକ୍ଷାର ପ୍ରସାର, ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା, ମାଦକ ଦ୍ରବ୍ୟ ବର୍ଜନ ଆଦି ଏହି ନୂତନ ନୀତିରେ ସ୍ଥାନ ପାଇଲା । ବ୍ୟକ୍ତି ବିଶେଷଙ୍କୁ ଆଇନ ଅମାନ୍ୟ ଆନ୍ଦୋଳନରେ ଯୋଗ ଦେବାକୁ କୁହାଗଲା । ଇଂରେଜ ସରକାର ଗାନ୍ଧିଜୀଙ୍କୁ କାରାରୁଦ୍ଧ କରିବାରୁ ବହୁ ବିଶିଷ୍ଟ ନେତା ବ୍ୟକ୍ତିଗତ ଭାବରେ ଆଇନ ଅମାନ୍ୟକରି ଜେଲ ଗଲେ ।

## ପରିବର୍ତ୍ତନବାଦୀ ଚିନ୍ତାଧାରା

1923 ମସିହାରେ କଂଗ୍ରେସ ପ୍ରାୟ ଦୁଇଟି ବର୍ଗରେ ବିଭକ୍ତ ହୋଇଗଲା । ଯେଉଁମାନେ କଂଗ୍ରେସର ଗତାନୁଗତିକ, ଧୀରସ୍ଥିର ଓ ସତ୍ୟ ଅହିଂସାଭିତ୍ତିକ ଆନ୍ଦୋଳନ କରିବାକୁ ଚାହିଁଲେ ସେମାନେ ହେଲେ ପରିବର୍ତ୍ତନ ବିରୋଧି (No-changer) ବା ନରମପନ୍ଥୀ ଏବଂ ଏଥିରେ ନେତୃତ୍ୱ ନେଲେ ରାଜ ଗୋପାଳଚାରୀ ବା ରାଜାଜୀ, ମୌଲାନା ଆନ୍‌ସାରୀ, କେ. ଆର. ଆୟଙ୍ଗାର, ରାଜେନ୍ଦ୍ର ପ୍ରସାଦ ପ୍ରମୁଖ । ଯେଉଁମାନେ ନିର୍ବାଚନରେ ଯୋଗଦେଇ ବ୍ୟବସ୍ଥାପକ ସଭାଗୁଡ଼ିକୁ ଯାଇ ସରକାରୀ ଅମଲାତନ୍ତ୍ର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ଚାହିଁଲେ, ସେମାନେ ହେଲେ ପରିବର୍ତ୍ତନବାଦୀ (Pie-changer) ଏବଂ ଏମାନଙ୍କ ମଧ୍ୟରେ ପଣ୍ଡିତ ମୋତିଲାଲ ନେହେରୁ, ଚିତ୍ତରଞ୍ଜନ ଦାସ, ହାକିମ୍ ଆଜମାଲ୍ ଖାଁ, ବିଠଲଭାଇ ପଟେଲ ପ୍ରମୁଖ ପ୍ରଧାନ । କଂଗ୍ରେସର ସାଧାରଣ ଅଧିବେଶନରେ ମତପାର୍ଥକ୍ୟ ଘଟିଲା ଏବଂ କଂଗ୍ରେସର ତତ୍‌କାଳୀନ ସଭାପତି ଚିତ୍ତରଂଜନ ଦାସ ଓ ସଂପାଦକ ମୋତିଲାଲ ନେହେରୁ ନିଜ ନିଜ ପଦରୁ ଇସ୍ତଫା ଦେଲେ । ସେମାନଙ୍କ ପରିବର୍ତ୍ତନବାଦୀ ଚିନ୍ତାଧାରା ସଂଖ୍ୟାଗରିଷ୍ଠ ସଭ୍ୟଙ୍କ ଦ୍ୱାରା ଗୃହିତ ହେବାରୁ ପରିବର୍ତ୍ତନବାଦୀମାନେ ଗରମ ପନ୍ଥାରେ

ଦୃଢ଼ ବିଶ୍ୱାସରଖି 1923 ଜାନୁଆରୀ ମାସରେ "ସ୍ୱରାଜ୍ୟ ଦଳ" ଗଠନ କଲେ । ସେହି ବର୍ଷ ସେପେଟ୍ମ୍ବର ମାସରେ ମୌଲାନାଆବୁଲକାଲାମ ଆଜାଦଙ୍କ ଅଧ୍ୟକ୍ଷତାରେ କଂଗ୍ରେସର ଏକ ସ୍ୱତନ୍ତ୍ର ଅଧିବେଶନ ବସି ଉଭୟଙ୍କ ଉଦ୍ୟମରେ ଆପୋଷ ସମାଧାନର ବାଟ ବାହାର କଲା । ସ୍ଥିର ହେଲା ଯେ, ଯେଉଁମାନେ ବ୍ୟବସ୍ଥାପକ ସଭାରେ ପ୍ରବେଶ କରିବାକୁ ଚାହିଁବେ ସେମାନେ ତାହା ସ୍ୱଇଚ୍ଛାରେ ନିର୍ବାଚନରେ ଭାଗ ନେଇପାରିବେ । ଏହି ପରିପ୍ରେକ୍ଷୀରେ ନୀଳକଂଠ ହଜାରିବାଗ ଜେଲରୁ ଖଲାସ ହୋଇ ନିର୍ବାଚନରେ ରାଜନୀତିରେ ଯୋଗଦେଲେ । ଗୋପବନ୍ଧୁ ମଧ୍ୟ ଏଥିପାଇଁ ପରାମର୍ଶ ଦେଇଥିଲେ ବୋଲି ନୀଳକଂଠ ଲେଖିଛନ୍ତି ।

## ନିର୍ବାଚନରେ ଜୟଯୁକ୍ତ

ସ୍ୱରାଜ ଦଳରେ ଯୋଗଦେଇ ନୀଳକଂଠ ଏହି ନିର୍ବାଚନରେ ଜୟଯୁକ୍ତ ହେଲେ ଏବଂ 1914 ଜାନୁଆରୀରେ ପ୍ରଥମ କେନ୍ଦ୍ର ଆସେମ୍ବ୍ଲିରେ ପ୍ରବେଶ କଲେ ଅଧ୍ୟାପକ ତଥା ବୁଦ୍ଧିଜୀବୀ ଭାବରେ ସେ ବିଶେଷ ସମ୍ମାନ ଓ ଶ୍ରଦ୍ଧାଭାଜନ ହୋଇଥିଲେ । ସେ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ କାଉନ୍ସିଲର ସଭ୍ୟ ଥିଲେ । ବିଧାୟକ ସଭାର ନେତା ମୋତିଲାଲ 1924 ମସିହାରେ ପଣ୍ଡିତ ନୀଳକଂଠଙ୍କୁ ଦଳର ଅନ୍ୟତମ ସଂପାଦକରୂପେ ମନୋନୀତ କରିଥିଲେ । 1935 ମସିହାରେ ଶ୍ରୀ ବୁଲାଭାଇ ଦେଶାଇ ଏହି ସଭାର ନେତା ନିର୍ବାଚିତ ହୋଇ ନୀଳକଂଠଙ୍କୁ ଏହି ପଦରେ ମଧ୍ୟ ଅବସ୍ଥାପିତ କରିଥିଲେ । ଗୁରୁତ୍ୱପୂର୍ଣ୍ଣ ପ୍ରସଂଗରେ ସୁଚିନ୍ତିତ ମତ ପ୍ରଦାନକରି କେନ୍ଦ୍ର ବିଧାନସଭାରେ ତାଙ୍କର ପ୍ରାଧାନ୍ୟ ମଧ୍ୟ ସ୍ୱୀକୃତ ହୋଇଥିଲା । ବିଶେଷତଃ 1929 ମସିହାରେ ଲୁଣ କର ଓ ସାଧାରଣ ନିରାପତ୍ତା ଆଇନ୍ ବିରୁଦ୍ଧରେ ତାଙ୍କର ପ୍ରଦତ୍ତ ଭାଷଣ ଗଭୀର ଜ୍ଞାନ, ଦୃଢ଼ ଯୁକ୍ତିଯୁକ୍ତତା ଓ ଖୁବ୍ ସତ୍‌ସାହସର ପ୍ରମାଣ ଦିଏ ।

## ସ୍ୱତନ୍ତ୍ର ଓଡ଼ିଶା ଗଠନ

1926 ମସିହା ନିର୍ବାଚନରେ ନୀଳକଂଠ ବିପୁଳ ସମର୍ଥନଲାଭ କରି ଦ୍ୱିତୀୟଥର ପାଇଁ କେନ୍ଦ୍ରବ୍ୟବସ୍ଥାପକ ସଭାକୁ ନିର୍ବାଚିତ ହୋଇଥିଲେ । ସମସ୍ତ ଓଡ଼ିଆ ଭାଷାଭାଷୀ ଅଂଚଳର ଏକତ୍ରୀକରଣପାଇଁ 1927 ମସିହା ଫେବୃଆରୀ 8 ତାରିଖରେ ଏକ ବେସରକାରୀ ବିଲ୍ ଆଗତ କରିଥିଲେ ଏବଂ 1903 ରୁ ଚାଲିଥିବା ଜନ ଆନ୍ଦୋଳନ, ତାର ଯୁକ୍ତିଯୁକ୍ତତା ଓ ସରକାରୀ ସ୍ତରରେ ଏ ସବୁର ଅବହେଳା ସଂପର୍କରେ କହି ବଜ୍ର ନିର୍ଘୋଷରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ପାଇଁ ଦାବି ଜଣାଇଥିଲେ । ଏହି ପ୍ରସ୍ତାବ ଗୃହୀତ ହେବା ଫଳରେ ନୂତନ ରାଜ୍ୟ ଗଠନର ପଥ ସୁଗମ ହୋଇଥିଲା । 1932 ରେ ପୁରୀଠାରେ ଯେଉଁ ଜାତୀୟ କଂଗ୍ରେସର ଅଧିବେଶନ ହେବାରଥିଲା, ତାର ଅଭ୍ୟର୍ଥନା ସମିତିରେ ସେ ସଭାପତି ହୋଇଥିଲେ । ମାତ୍ର ସରକାର କଂଗ୍ରେସକୁ ବେଆଇନ ଘୋଷଣା କରିବାରୁ ତାଙ୍କୁ ଜେଲକୁ ଯିବାକୁ ପଡ଼ିଥିଲା । ଏଥି ପୂର୍ବରୁ ଦେଶ ମିଶ୍ରଣପାଇଁ ଯେଉଁ ସର୍ବଦଳୀୟ କମିଟି

ଗଠିତ ହୋଇଥିଲା, ନୀଳକଂଠ ତାର ସଭାପତି ହୋଇଥିଲେ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନପାଇଁ ଓଡ଼ନେଲ କମିଟିକୁ ସେ ଦୀର୍ଘ ୪୦ ପୃଷ୍ଠାର ଗୋଟିଏ ସ୍ମାରକ ପତ୍ର (Memorandum) ପ୍ରଦାନ କରିଥିଲେ । ମାତ୍ର ସେ ଜେଲରେ ଥିବାରୁ ଓଡ଼ନେଲ କମିଟି ଆଗରେ ସାକ୍ଷ୍ୟ ଦେଇ ପାରିନଥିଲେ ଏବଂ କୃଷ୍ଣଚନ୍ଦ୍ର ଗଜପତି, ଗୋଦାବରୀଶ ମିଶ୍ର, ଲିଂଗରାଜ ପାଣିଗ୍ରାହି, ନିରଂଜନ ପଟ୍ଟନାୟକ, ଭୁବନାନଂଦ ଦାସ, ରାଜକୃଷ୍ଣ ବୋଷ ପ୍ରମୁଖ ଏହି କ୍ଷେତ୍ରରେ ସକ୍ରିୟ ସହଯୋଗ କରିଥିଲେ । 1934 ମସିହାରେ ସ୍ୱତନ୍ତ୍ର ଉତ୍କଳ ଗଠନର ପ୍ରଥମ ଓ ପ୍ରଧାନ ନିର୍ମାତା ମଧୁସୂଦନଙ୍କ ଦେହାନ୍ତ ହେଲାବେଳେ ନୀଳକଂଠଙ୍କ ଉପରେ ସେ ଦୃଢ଼ ଆସ୍ଥା ଜ୍ଞାପନ କରିଥିଲେ । 1936 ମସିହା ଏପ୍ରିଲ ପହିଲାରେ ପୁରୀ, କଟକ, ବାଲେଶ୍ୱର, ସମ୍ବଲପୁର ଓ ଗଂଜାମ ସଂଗେ ଜୟପୁରକୁ ମିଶାଇ ଓଡ଼ିଶା ପ୍ରଦେଶ ଗଠିତ ହେଲା ।

## ସାମ୍ବାଦିକ ଜୀବନ

1928 ଜୁନ୍ ମାସରେ ଉତ୍କଳମଣି ଗୋପବନ୍ଧୁଙ୍କର ମୃତ୍ୟୁ ହେଲା । "ସମାଜ" ର ସଂପାଦନା ଦାୟିତ୍ୱ ନୀଳକଂଠଙ୍କ ଉପରେ ନ୍ୟସ୍ତ ହୋଇଥିଲା ମାତ୍ର କେଉଁ ପରିସ୍ଥିତିରେ ତାଙ୍କୁ ଏହି ଦାୟିତ୍ୱରୁ ହଠାତ୍ ଅବ୍ୟାହତି ଦିଆଗଲା, ତାହା ଜଣା ନଥିଲେ ସୁଦ୍ଧା ନୀଳକଂଠଙ୍କ ନିଜ ଭାଷାରେ ତାଙ୍କ ମନର ଖେଦ ସ୍ପଷ୍ଟ ହେଉଛି । "ଗୋପବନ୍ଧୁ ବାବୁଙ୍କ ମୃତ୍ୟୁବେଳକୁ ପ୍ରେସ କଟକରେ ଥିଲା । ସାପ୍ତାହିକ ପତ୍ର "ସମାଜ" ସେଥିରୁ ପ୍ରକାଶ ପାଉଥିଲା । କହିଦିଏଁ—ସେହିଠାରୁ ଗୋପବଂଧୁ ବାବୁଙ୍କ ମଲାଉତ୍ତାରୁ କେତେ ଦିନ ମୁଁ "ସମାଜ" ସଂପାଦକରୂପେ ସମାଜ ପ୍ରେସରୁ ଅତିରୂଢ଼ ଭାବରେ ବାହାର କରି ଦିଆ ହୋଇଥିଲି । (ଆତ୍ମଜୀବନୀ, 1986 ପୃ 149)

ପୂର୍ବରୁ ସେ "ସତ୍ୟବାଦୀ" ମାସିକ ପତ୍ରର ସଂପାଦକ ଗୋପବନ୍ଧୁଙ୍କୁ ସଂପାଦନାରେ ସାହାଯ୍ୟ କରୁଥିଲେ । 1933 ମସିହାରେ ତାଙ୍କ ସଂପାଦନାରେ "ନବଭାରତ" ପ୍ରକାଶିତ ହେଲା । ଏହା ଓଡ଼ିଆ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଏକ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଥିଲା । ମାତ୍ର "ନାନା ଅଭାବ ଅସୁବିଧାରେ 1945 ପର୍ଯ୍ୟନ୍ତ ଚାଲି ଶେଷରେ ଏହା ବଂଦ ହୋଇଯାଇଥିଲା" । "ସାପ୍ତାହିକ ଲୋକମତ" ର ମଧ୍ୟ ସେ ସଂପାଦନା କରିଥିଲେ । ସତ୍ୟବାଦୀ ବନ ବିଦ୍ୟାଳୟର ଶିକ୍ଷକ ଜୀବନରେ ମଧ୍ୟ ସମ୍ବାଦପତ୍ରପାଇଁ ଲେଖିବାର ଅଭ୍ୟାସ ଥିଲା । ସମ୍ବଲପୁର ରହଣିକାଳ ମଧ୍ୟରେ "ସେବା" ପତ୍ରିକା ପ୍ରକାଶ କରିଥିଲେ ।

## ଆସେମ୍ବ୍ଲି ନିର୍ବାଚନ

1936 ମସିହାରେ ନୂତନ ଓଡ଼ିଶା ପ୍ରଦେଶ ଗଠିତ ହେବାରୁ ଆସେମ୍ବ୍ଲି ନିର୍ବାଚନ କରାଗଲା । ନୀଳକଂଠଙ୍କ ଅକ୍ଳାନ୍ତ ପରିଶ୍ରମ ଫଳରେ ବିଭିନ୍ନ ଘାତ ପ୍ରତିଘାତ ସତ୍ତ୍ୱେ କଂଗ୍ରେସ ଦଳର ପ୍ରାୟ ସମସ୍ତ ପ୍ରାର୍ଥୀ ଜୟଯୁକ୍ତ ହୋଇଥିଲେ । ଏହାଦ୍ୱାରା ଜାତୀୟସ୍ତରରେ

ଓଡ଼ିଶାର ଗୌରବ ଯଥେଷ୍ଟ ବୃଦ୍ଧି ପାଇଥିଲା ଏବଂ ମଧ୍ୟ ପ୍ରଦେଶରେ ନିର୍ବାଚନ ପ୍ରଚାର ଲାଗି ତାଙ୍କୁ ନିମନ୍ତ୍ରଣ କରାଯାଇଥିଲା । ମାତ୍ର ନେତାମାନଙ୍କ ମଧ୍ୟରେ ସଂକୀର୍ଣ୍ଣ ସ୍ୱାର୍ଥପରତା ଓ ଦଳାଦଳି ଖୁବ୍ ତୀବ୍ର ହୋଇଥିଲା ଏବଂ ଭାରତରେ ଓଡ଼ିଶାର ପ୍ରଥମ କଂଗ୍ରେସ ମନ୍ତ୍ରୀମଣ୍ଡଳ ଶ୍ରୀ ବିଶ୍ୱନାଥ ଦାସଙ୍କ ପ୍ରଧାନମନ୍ତ୍ରୀତ୍ୱରେ ଗଠିତ ହୋଇଥିଲା । 1939 ପ୍ରଦେଶ କଂଗ୍ରେସ ନିର୍ବାଚନରେ ନୀଳକଂଠ ଜୟଯୁକ୍ତ ହୋଇ ଉତ୍କଳ କଂଗ୍ରେସ ସଭାପତି ହେଲେ ଏବଂ ମନ୍ତ୍ରୀମଣ୍ଡଳ ଉପରେ ଦଳର ପ୍ରାଧାନ୍ୟ ବିସ୍ତାର କରିବାକୁ ଚେଷ୍ଟା କରିଥିଲେ । ମାତ୍ର କ୍ଷମତା ଓ ଅର୍ଥ ବଳରେ ନୀଳକଂଠଙ୍କ ସମସ୍ତ ଉଦ୍ୟମ ପଣ୍ଡ ହୋଇଥିଲା ।

## ଦ୍ୱିତୀୟ ମହାଯୁଦ୍ଧ

1939 ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଲାଗିଗଲା ଏବଂ ଭାରତ ସେଥିରେ ଯୋଗଦେଲା ବୋଲି ଗଭର୍ଣ୍ଣର ଜେନେରାଲ ଲର୍ଡ ଲିନ୍‌ଲିଥ୍‌ଗୋ ଘୋଷଣା କରିଦେଲେ । ଭାରତୀୟ ନେତାମାନଙ୍କ ବିନା ପରାମର୍ଶରେ ଏପରି ଘୋଷଣା କରିଥିବାରୁ ଏହାର ପ୍ରତିବାଦରେ ପ୍ରାଦେଶିକ କଂଗ୍ରେସ ସରକାରମାନେ ଇସ୍ତଫା ଦେଲେ । ଯୁଦ୍ଧରେ ଇଂରେଜମାନଙ୍କୁ ସମର୍ଥନ ଜଣାଇବା ସଂପର୍କରେ ଭାରତୀୟ ନେତାମାନଙ୍କ ମଧ୍ୟରେ କ୍ରମେ ଖୁବ୍ ମତ ପାର୍ଥକ୍ୟ ଘଟିଲା । ସୁଭାଷ ଚଂଦ୍ର ବୋଷ ଫରଓ୍ୱାର୍ଡବ୍ଲକ୍ ଗଢିଲେ ଓ ଉତ୍କଳ ଯୁବ ସମ୍ମିଳନୀରେ ଯୋଗଦେବାକୁ କଟକ ଆସିଲେ । ପଣ୍ଡିତ ନୀଳକଂଠ ଉତ୍କଳ କଂଗ୍ରେସର ସଭାପତି ଥାଇ ସୁଭାଷ ବୋଷଙ୍କୁ ସମ୍ବର୍ଦ୍ଧନା ଜଣାଇବାରେ ନେତୃତ୍ୱ ନେଇଥିଲେ । ପରେ ନୀଳକଂଠ କଂଗ୍ରେସ ସଭାପତି ପଦ ତ୍ୟାଗ କରି ସୁଭାଷଙ୍କ ଫରଓ୍ୱାର୍ଡବ୍ଲକ୍‌ରେ ଯୋଗ ଦେଲେ । ସୁଭାଷଙ୍କ ପରାମର୍ଶକ୍ରମେ ଗୋଦାବରୀଶଙ୍କ ସାହାଯ୍ୟରେ ପାରଳାଖେମୁଣ୍ଡି ମହାରାଜା ମିଳିତ ମନ୍ତ୍ରୀମଣ୍ଡଳ ଗଠନ କଲେ । ନୀଳକଂଠ ଜାତୀୟ ଯୁଦ୍ଧସାମ୍ମୁଖ୍ୟର ସଭାପତି ହେଲେ । ଏ ସଂପର୍କରେ ଡକ୍ଟର ହରେକୃଷ୍ଣ ମହତାବ "ନୀଳକଂଠ ସ୍ମାରକୀ" (1982, ପୃ.10) ରେ ଲେଖିଛନ୍ତି "ଗାନ୍ଧିଜୀଙ୍କ ଅହିଂସାତ୍ମକ ଆନ୍ଦୋଳନକୁ ସୁଭାଷ ଚଂଦ୍ର ବୋଷ ଯେତେବେଳେ ଆହ୍ୱାନ କରି ନିଜର ସ୍ୱକୀୟ କାର୍ଯ୍ୟକ୍ରମ ଆରମ୍ଭ କଲେ ପଣ୍ଡିତ ନୀଳକଣ୍ଠ ସୁଭାଷ ବାବୁଙ୍କର ଜଣେ ଦୃଢ଼ ସମର୍ଥକ ଥିଲେ । ସେହି କାର୍ଯ୍ୟକ୍ରମରେ ସେ କଂଗ୍ରେସ ଛାଡ଼ିଲେ ଏବଂ ଯୁଦ୍ଧକାଳୀନ ପରିସ୍ଥିତିରେ ଏକ ଅଣ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନରେ ପୁରୋଧା ହେଲେ" ।

## ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା

ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପରେ ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ବିଭିନ୍ନ ଦିଗରେ ଉଦ୍ୟମ କରିଥିଲେ ନୀଳକଣ୍ଠ । ପୂର୍ବରୁ ବ୍ୟବସ୍ଥା ସଭାରେ ଓ ପରେ "ନବ ଭାରତ" ପତ୍ରିକାରେ ଏହି ସଂପର୍କରେ ବହୁ ଲେଖା ଓ ସଂପାଦକୀୟ ପ୍ରକାଶ କରିଥିଲେ । ତାଙ୍କ ପରାମର୍ଶକ୍ରମେ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ଏଥିପାଇଁ ଗୋଟିଏ ସମିତି ଗଠନ କରିଥିଲେ ଏବଂ ସେଥିରେ ନୀଳକଣ୍ଠଙ୍କୁ ଅଧ୍ୟକ୍ଷ କରାଯାଇଥିଲା । ମାତ୍ର ଏହି ସମିତିର ରିପୋର୍ଟ

ପାଇ କୌଣସି ନିଷ୍ପତ୍ତି ନେବା ପୂର୍ବରୁ ଉକ୍ତ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଇଥିଲେ ଏବଂ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ବିଳମ୍ବିତ ହୋଇଥିଲା । ମିଳିତ ମନ୍ତ୍ରୀମଣ୍ଡଳ ଗଠନ ପରେ ଏହି ରିପୋର୍ଟ ନ ମିଳିବାରୁ ଅନ୍ୟ ଏକ ରିପୋର୍ଟ ଭିତ୍ତିରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା 1943ରେ । 1955 ଅଗଷ୍ଟ ମାସରେ ନୀଳକଣ୍ଠ ଉପକୁଳପତି ଭାବରେ ମନୋନୀତ ହୋଇ ଦୀର୍ଘ ସାତ ବର୍ଷ କାଳ ଏହି ପଦରେ ରହିଥିଲେ । ଓଡ଼ିଶାରେ ଉଚ୍ଚ ଶିକ୍ଷାର ପ୍ରସାର କ୍ଷେତ୍ରରେ ବିଭିନ୍ନ ପଦକ୍ଷେପ ନେଇଥିଲେ । ପୁଣି ସେହି ବର୍ଷ ଡିସେମ୍ବର ମାସରେ ଅନୁଷ୍ଠିତ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ଅଗାଧ ପାଣ୍ଡିତ୍ୟ ନିମନ୍ତେ ତାଙ୍କୁ ଡି. ଲିଟ୍. ଉପାଧି ପ୍ରଦାନ କରାଯାଇଥିଲା ।

## ସକ୍ରିୟ ରାଜନୀତିରୁ ପାଂଚ ବର୍ଷପାଇଁ ବିରତି

ଦ୍ୱିତୀୟ ବିଶ୍ୱଯୁଦ୍ଧ ମଧ୍ୟରେ ସୁଭାଷ ବୋଷ ଭାରତରୁ ଅନ୍ତର୍ଦ୍ଧାନ ହେଲେ ଏବଂ ବହୁ ବୀରତ୍ୱପୂର୍ଣ୍ଣ କୃତୀତ୍ୱ ପ୍ରଦର୍ଶନ କରି ଗୋଟିଏ ବିମାନ ଦୁର୍ଘଟଣାରେ ନିହତ ହେଲେ । ଏହି ଯୁଦ୍ଧରେ ମିତ୍ରପକ୍ଷ ତଥା ଇଂରେଜ ସରକାରଙ୍କର ଜୟ ହେଲା । ଯୁଦ୍ଧ ବିରତି ପରେ 1945 ମସିହାରେ କଂଗ୍ରେସ ନେତାମାନେ ମୁକ୍ତ ହେଲେ ଓ ତା' ପରବର୍ଷ ପୁଣି ନିର୍ବାଚନ ହେଲା । ନୀଳକଣ୍ଠ ଏହି ନିର୍ବାଚନରେ ପ୍ରାର୍ଥୀ ନହୋଇ ସାକ୍ଷୀଗୋପାଳରୁ ପଣ୍ଡିତ ଲିଙ୍ଗରାଜଙ୍କ ପ୍ରାର୍ଥୀତ୍ୱକୁ ସମର୍ଥନ ଜଣାଇଥିଲେ । 1946ରୁ 1951 ପର୍ଯ୍ୟନ୍ତ ନୀଳକଣ୍ଠ ସକ୍ରିୟ ରାଜନୀତିରୁ ଅଲଗା ରହି ସାହିତ୍ୟ ସେବାରେ ନିଜକୁ ଉତ୍ସର୍ଗ କରିଥିଲେ । ଏହି ସମୟ ମଧ୍ୟରେ "ଓଡ଼ିଆ ସାହିତ୍ୟର କ୍ରମପରିଣାମ" (1 ମ ଓ 2 ୟ ଭାଗ) ଓ "ସଂସ୍କୃତ ଓ ସଂସ୍କୃତି" ପୁସ୍ତକ ପ୍ରକାଶିତ ହୋଇଥିଲା ।

## ପୁଣି ସକ୍ରିୟ ରାଜନୀତିରେ ପ୍ରବେଶ

1951 ମସିହାରେ ନୀଳକଣ୍ଠ ବନ୍ଧୁ ଗୋଦାବରୀଶଙ୍କୁ ନେଇ ସ୍ୱାଧୀନ ଜନସଂଘ ଦଳ ଗଠନ କଲେ । 1952 ନିର୍ବାଚନରେ ସେମାନେ ନିଜ ନିଜ ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହୋଇ ବହୁ ପ୍ରତିକୂଳ ପରିସ୍ଥିତିରେ ଜୟଲାଭ କଲେ । ବିଧାନ ସଭାରେ ଗଠନମୂଳକ ସମାଲୋଚନା କରି ନୀଳକଣ୍ଠ ଓ ଗୋଦାବରୀଶ ସବୁରି ବିଶ୍ୱାସ ଓ ପ୍ରଶଂସାଭାଜନ ହୋଇଥିଲେ । ଏମିତିକି ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ନୀଳକଣ୍ଠଙ୍କର ବହୁ ପ୍ରସ୍ତାବ ଗ୍ରହଣ କରି ନେଇଥିଲେ ଏବଂ ପରେ ସେଥିପାଇଁ ତାଙ୍କଠାରେ କୃତଜ୍ଞତା ପ୍ରକାଶ କରି ଆଶୀର୍ବାଦ କାମନା କରିଥିଲେ । ତେଣୁ ଶ୍ରୀଯୁକ୍ତ ଚୌଧୁରୀ ନୀଳକଣ୍ଠଙ୍କୁ କଂଗ୍ରେସକୁ ଫେରାଇ ଆଣିବାପାଇଁ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କୁ ଅନୁରୋଧ କରିଥିଲେ । ଜାତୀୟ କଂଗ୍ରେସର ସଭାପତି ଭାବରେ ଜବାହରଲାଲ ନୀଳକଣ୍ଠଙ୍କୁ ଲେଖିଥିଲେ (1955 ମାର୍ଚ୍ଚ 25 ତାରିଖ) "ଆପଣ ଅତୀତରେ କଂଗ୍ରେସର ଜଣେ ସ୍ତମ୍ଭ ସ୍ୱରୂପ ଥିଲେ । 15 ବର୍ଷ ତଳେ ଆପଣ ଯେତେବେଳେ ଏହାକୁ ଛାଡ଼ିଗଲେ ମୁଁ ଓ ଅନ୍ୟମାନେ ବିଶେଷ ଦୁଃଖିତ ହୋଇଥିଲୁ । ଏବେ

ଆପଣ କଂଗ୍ରେସକୁ ଫେରିଆସି ଆପଣଙ୍କର ବିଜ୍ଞ ପରାମର୍ଶ ଦେଇ ଆମ୍ଭମାନଙ୍କୁ ସାହାଯ୍ୟ କଲେ ମୁଁ ବାସ୍ତବରେ ଖୁସି ହେବି" । ଏହି ଚିଠି ଦେଖାଇ ନୀଳକଂଠ ଏଥିପାଇଁ ତାଙ୍କ ଭୋଟରମାନଙ୍କର ମତ ଲୋଡ଼ିଥିଲେ ଏବଂ ସେମାନଙ୍କର ସମ୍ମତି ନେଇ ସେ କଂଗ୍ରେସକୁ ପ୍ରତ୍ୟାବର୍ତ୍ତନ କରିଥିଲେ 1955 ମଇ ମାସରେ ।

## ବିଧାନସଭା ବାଚସ୍ପତି

ଶ୍ରୀ ନବକୃଷ୍ଣ ଚୌଧୁରୀ ସଂସଦୀୟ ରାଜନୀତିରେ ଆସ୍ଥା ହରାଇ 1956 ରେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । 1956 ମସିହାରେ ଡକ୍ଟର ମହତାବ ବମ୍ବେରୁ ଆସି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । ନୀଳକଂଠ 1957 ନିର୍ବାଚନରେ କଂଗ୍ରେସ ସଭ୍ୟ ରୂପେ ବିଧାନ ସଭାକୁ ନିର୍ଦ୍ୱନ୍ଦରେ ଆସିଥିଲେ ଏବଂ ସେଇ ବର୍ଷ ମଇ 27 ତାରିଖରେ ବିଧାନ ସଭାର ବାଚସ୍ପତି ପଦରେ ନିର୍ବାଚିତ ହୋଇଥିଲେ । ବିଧାନ ସଭା ତାଙ୍କ ପୂର୍ବରୁ ସ୍ୱରାଷ୍ଟ୍ର ବିଭାଗ ଅଧୀନରେ ରହିଥିଲା । ସେ ବିଧାନ ସଭାପାଇଁ ସ୍ୱାଧୀନତା ଓ ସାର୍ବଭୌମତା ଦାବି କରିଥିଲେ । ଏଥିପାଇଁ ଗୋଟିଏ ସବ୍‌କମିଟି ଗଠିତ ହୋଇ ବିଷୟଟିର ବିଚାର କଲେ । ମାତ୍ର କୌଣସି ନିଷ୍ପତ୍ତି ନିଆଯାଇ ପାରିଲା ନାହିଁ । ତେଣୁ ନୀଳକଣ୍ଠ କହିଲେ "ମହତାବ, ତୁମେ ବୁଝିବା ଉଚିତ ଯେ ବିଧାନ ସଭାର ଚାବି ମୋ ହାତରେ । ଏ ବିଷୟ ସିଦ୍ଧାନ୍ତ ନ ହେବାଯାଏ, ତୁମେ ଆସେମ୍ବ୍ଲି ବୈଠକ ଡ଼ାକାଇପାରିବ ନାହିଁ" । ବସ୍ତୁତଃ ଆଜିର ବିଧାନ ସଭା ଭବନ ଉଦ୍‌ଘାଟନ (ତା 16-2-1961ରିଖ) ବେଳକୁ ଏହାହି ଥିଲା ମହାନ୍ ଉପହାର ଏବଂ ଏହି ଅବସରରେ ନୀଳକଣ୍ଠ କହିଥିଲେ "ମତେ ଆମ ବିଧାନ ସଭାକୁ ଉପଯୁକ୍ତ ସ୍ଥାନ ଓ ମର୍ଯ୍ୟାଦା ଦେବା ନିମନ୍ତେ ପ୍ରାୟ 2 ବର୍ଷ ଉଦ୍ୟମ କରିବାକୁ ପଡ଼ିଥିଲା" ।

1961 ମସିହା ଜୁନ୍ 25 ତାରିଖରେ ମହତାବ ମନ୍ତ୍ରୀମଣ୍ଡଳ ଭାଂଗିଲା ଏବଂ ମନ୍ତ୍ରୀମଣ୍ଡଳ ଭାଂଗିଲେ ବାଚସ୍ପତି ମଧ୍ୟ ବିଦାୟ ନେଉଥିଲେ । ନୀଳକଂଠ ଏହି ପରଂପରା ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ ଏବଂ ଏହାକୁ ଭୁଲ ବୋଲି ପ୍ରତିପାଦନ କଲେ । ଫଳତଃ ଏହି ପରଂପରାରେ ପରିବର୍ତ୍ତନ ଘଟିଥିଲା ଏବଂ ନୀଳକଣ୍ଠ 1961 ଜୁଲାଇ ପର୍ଯ୍ୟନ୍ତ ବାଚସ୍ପତି ପଦରେ ରହିଥିଲେ ।

ଏହି ସମୟ ମଧ୍ୟରେ ତାଙ୍କୁ ଭାରତ ସରକାରଙ୍କ ଦ୍ୱାରା "ପଦ୍ମଭୂଷଣ" ଉପାଧି ପ୍ରଦାନ କରାଯାଇଥିଲା (1967) ଏବଂ ସେ ନବପ୍ରତିଷ୍ଠିତ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ପଦ ମଣ୍ଡନ କରିଥିଲେ ।

## ସକ୍ରିୟ ରାଜନୀତିରୁ ଅବସର ଓ ସାହିତ୍ୟ ସାଧନା

ବାଚସ୍ପତି ପଦରୁ ଅବ୍ୟାହତି ନେଲା ପରେ ନୀଳକଣ୍ଠ ସକ୍ରିୟ ରାଜନୀତିରୁ ଅବସର ନେଇଥିଲେ । ମହତାବ ମନ୍ତ୍ରୀମଣ୍ଡଳ ଭାଂଗିଯିବା ପରେ 1961ରେ ନିର୍ବାଚନ ହେଲା ଏବଂ

ନୀଳକଂଠ କଂଗ୍ରେସ ପ୍ରାର୍ଥୀ ରୂପେ ମନୋନୀତ ହେଲେ ନାହିଁ । "ଈଶ୍ୱର ଯାହା କରନ୍ତି ମଙ୍ଗଳ ପାଇଁ" ନ୍ୟାୟରେ ନୀଳକଣ୍ଠ ସାରସ୍ୱତ ସାଧନାରେ ମନୋନିବେଶ କଲେ । ପ୍ରବଳ ଅଧ୍ୟୟନ ସ୍ପୃହା ଓ ସାହିତ୍ୟ ରଚନା ଅନୁରାଗ ପ୍ରସୂତ କେତୋଟି ମହାର୍ଘ ସୃଷ୍ଟିରେ ସେ ଓଡ଼ିଆ ଭାଷା ଓ ସାହିତ୍ୟକୁ ସମୃଦ୍ଧ କରିପାରିଛନ୍ତି ।

ଏହି ସମୟରେ ତାଙ୍କର "ଆତ୍ମଜୀବନୀ" ପୁସ୍ତକ ଲେଖା ଯାଇଥିଲା ଏବଂ 1963ରେ ପ୍ରକାଶିତ ହୋଇ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଥିଲା । ଊନବିଂଶ ଶତାବ୍ଦୀର ଶେଷ ଭାଗରୁ ବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧ ପର୍ଯ୍ୟନ୍ତ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଓ ରାଜନୈତିକ ଜୀବନର ଏକ ନିଛକ ଚିତ୍ର ଏଥିରୁ ଉପଲବ୍ଧ ହୋଇଥାଏ । 1963 ମସିହାରେ ତାଙ୍କ ରଚନାବଳୀର ପ୍ରଥମ ଖଣ୍ଡ ଓ 1965 ରେ ଦ୍ୱିତୀୟ ଖଣ୍ଡ ପ୍ରକାଶିତ ହୋଇଥିଲା ।

## ଉତ୍ତର ଜୀବନରେ ସମ୍ମାନ ଓ ସମ୍ବର୍ଦ୍ଧନା

ପଣ୍ଡିତ ନୀଳକଣ୍ଠ ତାଙ୍କ ଅନ୍ତିମ ଜୀବନରେ ବହୁ ସାହିତ୍ୟିକ ସଂସ୍ଥା ଦ୍ୱାରା ସମ୍ମାନିତ ଓ ସମ୍ବର୍ଦ୍ଧିତ ହୋଇଥିଲେ । 1961 ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଡକ୍ଟର ହରେକୃଷ୍ଣ ମହତାବ ଏକ ସମ୍ବର୍ଦ୍ଧନା ସଭାର ଆୟୋଜନ କରି ମାନପତ୍ରରେ ଉଲ୍ଲେଖ କରିଥିଲେ, "ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ବଳରେ ବିଶ୍ୱ ସଭ୍ୟତା ସହିତ ଭାରତୀୟ ସଭ୍ୟତାର ଯୋଗସୂତ୍ର ସ୍ଥାପନ କରି ଓ ଭାରତୀୟ ସଭ୍ୟତାରେ ଉତ୍କଳୀୟ ସଭ୍ୟତାର ସାମୀପ୍ୟ ଓ ସୌସାଦୃଶ୍ୟ ପ୍ରତିପାଦନ କରି, ଆପଣ ସାମୂହିକ ଭାବରେ ଉତ୍କଳର ତଥା ଭାରତର ଗୌରବ ପ୍ରତିପାଦନରେ ବିଶେଷ ଯତ୍ନଶୀଳ ହୋଇଅଛନ୍ତି" । ଅଶୀତିତମ ଜନ୍ମ ଦିବସରେ ଉତ୍କଳ ସାହିତ୍ୟ ସମାଜ ତରଫରୁ ଶ୍ରୀରାମଚନ୍ଦ୍ର ଭବନରେ ନୀଳକଣ୍ଠଙ୍କର ଏକ ତୈଳଚିତ୍ର ଉନ୍ମୋଚନ ଏବଂ ତାଙ୍କର ନିରାମୟ ଓ ଦୀର୍ଘ ଜୀବନ କାମନା କରାଯାଇଥିଲା ।

ଶେଷ ଜୀବନରେ ନୀଳକଣ୍ଠ ଦୀର୍ଘଦିନ ଶଯ୍ୟାଶାୟୀ ହୋଇ ରହିଲେ । 1967 ନଭେମ୍ବର 6 ତାରିଖ ସୋମବାର କାର୍ତ୍ତିକ ଶୁକ୍ଳ ପଂଚମୀ ଦିନ 4 ଘଟିକାରେ ସେ ଇହଲୀଳା ସାଙ୍ଗ କରିଥିଲେ । ମୃତ୍ୟୁ ଶଯ୍ୟାରେ ମଧ୍ୟ ତାଙ୍କ ନୟନରେ ଥିଲା ଉଜ୍ଜ୍ୱଳ ଦୀପ୍ତି ଓ ଶୀର୍ଣ୍ଣ କଳେବରରେ ଥିଲା ଦୀର୍ଘ ସାଧନାମୟ ଜୀବନର କ୍ଳାନ୍ତି । ସ୍ୱତନ୍ତ୍ର ଦଳର ନେତା ଓ ମୁଖ୍ୟମନ୍ତ୍ରୀ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଆଦେଶରେ ଓଡ଼ିଶା ସରକାରଙ୍କ ତରଫରୁ ପଣ୍ଡିତଜୀଙ୍କୁ ରାଷ୍ଟ୍ରୀୟ ମର୍ଯ୍ୟାଦା ଦିଆଯାଇ ଶେଷକୃତ୍ୟ ସମାପିତ ହୋଇଥିଲା । ଏକ ପ୍ରଚଣ୍ଡ ପ୍ରତିଭା ଓ ବହୁମୁଖୀ ବ୍ୟକ୍ତିତ୍ୱର ଚିର ଅବସାନ ଘଟିଲା । ମାତ୍ର ଜଣେ ନିଛକ ସାରସ୍ୱତ ସାଧକ, ସାମ୍ବାଦିକ, ସ୍ୱାଧୀନତା ସଂଗ୍ରାମୀ, ବ୍ୟବସ୍ଥାପକ, ସୁବକ୍ତା, ସଂସ୍କାରକ ଓ ପ୍ରାଜ୍ଞ ପଣ୍ଡିତଜୀ ଭାବରେ ସେ ଚିରସ୍ମରଣୀୟ ହୋଇ ରହିବେ ।

# ଦ୍ୱିତୀୟ ଅଧ୍ୟାୟ

## ପ୍ରବୀଣ ରାଷ୍ଟ୍ରନୀତିଜ୍ଞ ଓ ବ୍ୟବସ୍ଥାପକ ନୀଳକଣ୍ଠ

ରାଜନୀତି ତଥା ରାଷ୍ଟ୍ରନୀତି:—

ପଣ୍ଡିତ ନୀଳକଣ୍ଠ ଥିଲେ ଜଣେ ପ୍ରବୀଣ ଓ ପ୍ରତିଭାଶାଳୀ ରାଷ୍ଟ୍ରନୀତିଜ୍ଞ । ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଅନ୍ୟତମ ପଟପୂରେଗଧା ନୀଳକଣ୍ଠ ଓଡ଼ିଆ ଜାତିର ସ୍ୱାର୍ଥରକ୍ଷା ପାଇଁ ତାଙ୍କର ନିରବଚ୍ଛିନ୍ନ ଉଦ୍ୟମ ଓ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ସମ୍ମିଶ୍ରଣ ତଥା ସ୍ୱତନ୍ତ୍ର ଓଡ଼ିଶାର ଜନ୍ମପାଇଁ ଦ୍ୱାର ସଂଗ୍ରାମ ସତ୍ତ୍ୱେ, ସେ ଥିଲେ ଯଥାର୍ଥରେ ଜଣେ ଭାରତୀୟ ରାଷ୍ଟ୍ରନୀତିଜ୍ଞ । ନିଜର ଅବହେଳିତ ଜନ୍ମଭୂମି ଓଡ଼ିଶାର ସର୍ବାଙ୍ଗୀନ ବିକାଶ କାମନା କରିବା ଥିଲା ତାଙ୍କ ପକ୍ଷେ ନିତାନ୍ତ ସ୍ୱାଭାବିକ । ଉତ୍କଳ ସମ୍ମିଳନୀର ପ୍ରଧାନ ଆଭିମୁଖ୍ୟ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ସେ ପ୍ରାଦେଶିକ ଓ ଜାତୀୟ ସ୍ତରରେ ନିର୍ଭୀକ ଯୋଦ୍ଧା ଓ ସମର୍ଥ ସେନାନୀ ଭାବରେ କାର୍ଯ୍ୟ କରିଛନ୍ତି । ସେଥିପାଇଁ ଉତ୍କଳଗୌରବ ମଧୁସୂଦନ ନିଜର ମୃତ୍ୟୁ ଶଯ୍ୟାରେ ଆଶା ପ୍ରକାଶ କରିଥିଲେ "ମୋ ପରେ ନୀଳକଣ୍ଠ ହିଁ ଓଡ଼ିଶା ପାଇଁ ସବୁକାମ କରିବ" ।

ରାଷ୍ଟ୍ରନୀତି, ରାଜନୀତିର ଊର୍ଦ୍ଧ୍ୱରେ

ରାଷ୍ଟ୍ରନୀତି ରାଜନୀତିର ଊର୍ଦ୍ଧ୍ୱରେ ଓ ଏହା ବିଜ୍ଞାନସମ୍ମତ, ନିରପେକ୍ଷ, ନିସ୍ୱାର୍ଥପର ଓ ବିସ୍ତୃତ । ସାମ୍ପ୍ରତିକ ସ୍ଥିତିରେ ଆମେ ବହୁ ରାଜନୀତିଜ୍ଞଙ୍କୁ ଦେଖୁ, ମାତ୍ର କ୍ୱଚିତ ରାଷ୍ଟ୍ରନୀତିଜ୍ଞ ଥାନ୍ତି । ପୁଣି ଗତାନୁଗତିକ ରୀତିରେ ରାଜନୀତି କରିବା ଏ ଦେଶର ଏକ ସାଧାରଣ ପ୍ରଥା ଏଥିପାଇଁ ଅଧିକାଂଶ ରାଜନୀତିଜ୍ଞ ଦୁର୍ନୀତି ଓ ବ୍ୟଭିଚାର କରିବାକୁ ମଧ୍ୟ ପଶ୍ଚାତ୍‌ପଦ ହେଉନାହାନ୍ତି । ସଂକୀର୍ଣ୍ଣ ସ୍ୱାର୍ଥପାଇଁ ସେମାନେ ଜନସାଧାରଣ ତଥା ଜାତିର ସ୍ୱାର୍ଥକୁ ବଳି ଦେବାକୁ ଆଗେଇ ଯାଉଛନ୍ତି । ସ୍ୱାଧୀନତା ସଂଗ୍ରାମ ସମୟରେ ଓ ପରବର୍ତ୍ତୀ କାଳରେ ଯେଉଁ କେତେକ ରାଷ୍ଟ୍ରନୀତିଜ୍ଞ ରାଜନୀତି କରୁଥିଲେ ଏବଂ ଆଞ୍ଚଳିକ ତଥା ଜାତୀୟ ସ୍ତରରେ ଯୁକ୍ତିଯୁକ୍ତ ଓ ବିଚାରସିଦ୍ଧ ପନ୍ଥା ଗ୍ରହଣ କରି ନିର୍ମଳ ଓ ଉଚ୍ଚ ଆଦର୍ଶପାଇଁ ଜୀବନ ନିର୍ବାହ କରିଥିଲେ, ସେମାନଙ୍କ ମଧ୍ୟରେ ନୀଳକଣ୍ଠ ଅନ୍ୟତମ ।

ନେତା, ନୀତ ନୁହେଁ

ଯେଉଁ ରାଷ୍ଟ୍ରନୀତିଜ୍ଞମାନେ ଯଥାର୍ଥରେ ରାଜନୀତିର ସୀମିତ ଓ ସଂକୀର୍ଣ୍ଣ ଗଣ୍ଡି ମଧ୍ୟରୁ ନିଜକୁ ଉଠାଇନେଇ ଜାତୀୟ ବିକାଶ ପାଇଁ ନିସ୍ୱାର୍ଥପର ଭାବରେ ନିଷ୍ଠାପର କାର୍ଯ୍ୟକରନ୍ତି, ସେମାନେ ନେତା । ସେମାନଙ୍କୁ କୌଣସି ନିର୍ଦ୍ଦିଷ୍ଟ ସଂପ୍ରଦାୟ ତଥା ଅଞ୍ଚଳର ନେତା ବୋଲି କହିବା ଅନ୍ୟାୟ, ସେମାନେ ରାଜନୀତିର ଗଡ୍ଡାଳିକା ପ୍ରବାହରେ ନିଜକୁ ହଜାଇ ନ ଦେଇ

ନିଜର ବିବେକାନୁମୋଦିତ ଓ ବୁଦ୍ଧିଦୀପ୍ତ ବିଗ୍ରର ଉପସ୍ଥାପନ କରନ୍ତି ଦୃଢ଼ ସାହାସ ଓ ଅକୁତୋଭୟର ସହିତ । ସେମାନେ ତେଣୁ ରାଜନୀତିକୁ ନିୟନ୍ତ୍ରଣ କରନ୍ତି, ନିଜେ ତାଦ୍ୱାରା ନିୟନ୍ତ୍ରିତ ହୋଇ ନ ଥାନ୍ତି । ନିଜର ମୌଳିକ ଚିନ୍ତାଧାରାକୁ ସେମାନେ ବଜାୟ ରଖନ୍ତି । ନୀଳକଣ୍ଠ ସୁତରାଂ ଦୃଢ଼ ଭାବରେ କହୁଥିଲେ "ମୁଁ ନେତା ହେବି, ନୀତ ହେବି ନାହିଁ" ।

ରାଷ୍ଟ୍ରନୀତିଜ୍ଞ ଦେଶ ଓ ଜାତିର ମଙ୍ଗଳ ନମନ୍ତେ ଯୁକ୍ତିସିଦ୍ଧ ଓ ବିଜ୍ଞାନସମ୍ମତ ପନ୍ଥା ବାଛି ନିଅନ୍ତି । ଗଭୀର ଆତ୍ମବିଶ୍ୱାସ, ପ୍ରଖର ଧୀଶକ୍ତି, ତ୍ୟାଗ, କର୍ମନିଷ୍ଠା ଓ ଚରିତ୍ରବତ୍ତା ବଳରେ ସେ ସମସ୍ତଙ୍କ ମନରେ ଗଭୀର ରେଖାପାତ କରନ୍ତି । ଗୋପବନ୍ଧୁଙ୍କ ଦିଗଦର୍ଶନ ଓ ପ୍ରେରଣା ଯୋଗୁଁ ସେ ସମସ୍ତ ସୁବିଧାସୁଯୋଗ, ବିଳାସବ୍ୟସନ ଛାଡ଼ି ସତ୍ୟବାଦୀ ବନବିଦ୍ୟାଳୟରେ କୁଳପତି ତଥା ଶିକ୍ଷକ ହୋଇଥିଲେ ହେଁ ମହାତ୍ମାଗାନ୍ଧି ଯେତେବେଳେ ଅସହଯୋଗ ଆନ୍ଦୋଳନପାଇଁ ଆହ୍ୱାନ ଦେଲେ ସେ ସେଥିରେ ଯୋଗଦେବାକୁ ଆଗେଇ ଯାଇଥିଲେ । କଲିକତା ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଭାବରେ କାର୍ଯ୍ୟକରି ବ୍ୟକ୍ତିଗତ ସୁଖ ଓ ସନ୍ତୋଷ/ ନିର୍ଦ୍ଦିଷ୍ଟ ବେତନ ଓ ସାହିତ୍ୟିକ ଚର୍ଚ୍ଚା ଓ ଗବେଷଣାରେ ଜଳାଞ୍ଜଳି ଦେଇ ପୁଣି ଗୋପବନ୍ଧୁଙ୍କ ପରାମର୍ଶ (ଆତ୍ମଜୀବନୀ ପୃ.122) "ସତ୍ୟବାଦୀରେ ନେତୃତ୍ୱ ଗ୍ରହଣ କରି ସେଠାରେ ରହ" —ଗ୍ରହଣ କରି ସେ ଶଂକଟମୟ ଓ ସଂଗ୍ରାମୀ ଜୀବନ ଗ୍ରହଣ କରିଥିଲେ ।

## ବ୍ୟତିକ୍ରମହିଁ ବିଶେଷତ୍ୱ

ନୀଳକଣ୍ଠ ଥିଲେ ଆଜନ୍ମ ନେତା ଓ ରାଷ୍ଟ୍ରନୀତି ଥିଲା ତାଙ୍କର ବ୍ରତ । ଏଥିପାଇଁ ସେ ବହୁ ବିରୋଧ, ବାଧା ଓ ପ୍ରତିହିଂସାର ସମ୍ମୁଖୀନ ହୋଇଛନ୍ତି । ମାତ୍ର ସର୍ବତ୍ର ଓ ସବୁ ସ୍ତରରେ ସେ ନିଜର ଦୃଢ଼ ମନୋବଳ, ସାହସ ଓ ଆତ୍ମବିଶ୍ୱାସର ପରିଚୟ ଦେଇଛନ୍ତି । ସେ ଦିଗରେ ସେ କାହାର-ଶତ୍ରୁ ମିତ୍ର, ସଖା ସହକର୍ମୀ, ଗୁରୁ ଗୁରୁଜନ-ମତ ଓ ପରାମର୍ଶକୁ ମଧ୍ୟ ଭ୍ରୁକ୍ଷେପ କରୁନଥିଲେ । କେତେକ କ୍ଷେତ୍ରରେ ସେ ଗୋପବନ୍ଧୁଙ୍କୁ ମଧ୍ୟ ତାଙ୍କ ରଚନା ଓ କାର୍ଯ୍ୟର ତ୍ରୁଟି ଦେଖାଇ ଦେଇଛନ୍ତି ଏବଂ ସୂତାକଟା ନେଇ ଗାଂଧୀଜୀଙ୍କ ସହିତ ବିତର୍କ କରିବାକୁ ମଧ୍ୟ ପଛାଇ ନଥିଲେ । କାରଣ ତାଙ୍କର ବିଶ୍ୱାସ ଥିଲା—ଏହାଦ୍ୱାରା ଦେଶବାସୀଙ୍କର ଆର୍ଥିକ ଉନ୍ନତି ହୋଇପାରିବନାହିଁ । ଆତ୍ମଜୀବନୀରେ ନୀଳକଣ୍ଠ ଲେଖିଛନ୍ତି "ମୋର ସେତେବେଳକୁ ଆଉଯୁକ୍ତିଛାଡ଼ି (Belief) ରେ ଭୁଲିବା ପାଇଁ ଅବସ୍ଥା ଚହଲି ଆସିଥିଲା । ମୁଁ ସେଠାରୁ ନମସ୍କାର କରି ଉଠି ଆସିଲି ।" ବ୍ୟତିକ୍ରମ ଯେମିତି ଥିଲା ନୀଳକଣ୍ଠଙ୍କର ବ୍ୟକ୍ତିତ୍ୱର ବିଶେଷତ୍ୱ ! ମୌଳିକ ଚିନ୍ତାଧାରା ତାଂକ ଜୀବନର ଧର୍ମ ।

ଜାତୀୟ ସ୍ତରରେ ଯେତେବେଳେ ନରମପନ୍ଥୀ ଓ ଗରମପନ୍ଥୀ ତଥା ପରିବର୍ତ୍ତନ ବିରୋଧୀ ଓ ପରିବର୍ତ୍ତନବାଦୀ ନାମରେ ଦୁଇଟି ମତ ପ୍ରକାଶ ପାଇଲା ଏବଂ କଂଗ୍ରେସ ମଧ୍ୟ ଦୁଇଭାଗରେ ବିଭକ୍ତ ହେବାକୁ ବସିଲା, ସେତେବେଳେ ସେ ନିଜକୁ ପରିବର୍ତ୍ତନବାଦୀଙ୍କ ସହିତ

ସାମିଲ କରିଥିଲେ । ତତ୍‌କାଳୀନ ଜମିଦାର, ରାଜା ମହାରାଜା ପ୍ରମୁଖ ନ୍ୟସ୍ତସ୍ୱାର୍ଥଗୋଷ୍ଠୀ ବିରୁଦ୍ଧରେ ସଂଗ୍ରାମ କରି ସେ କଂଗ୍ରେସର ମୋଟ ୩୭ ଜଣଙ୍କ ମଧ୍ୟରୁ ୩୬ ଜଣଙ୍କୁ ନିର୍ବାଚନରେ ଜୟଯୁକ୍ତ କରାଇ ମନ୍ତ୍ରୀମଣ୍ଡଳ ଗଢ଼ିଲେ । ଲୌହମାନବ ସର୍ଦ୍ଦାର ପଟେଲ ସ୍ୱତଃସ୍ଫୁର୍ତ୍ତ ଭାବରେ କହିଥିଲେ—ଧନ୍ୟ ଓଡ଼ିଶା, ଆଗେଇଚାଲ । ଭାରତର ଅନ୍ୟମାନେ ତୁମ୍ଭମାନଙ୍କୁ ଅନୁସରଣ କରିବେ (Bravo Orissa, go ahead, Rest of India will follow you) ରାଜନୀତି କ୍ଷେତ୍ରରେ ଏହା ଥିଲା ନୀଳକଣ୍ଠଙ୍କର ଦୁଃସାହାସ ଓ ଦୂରଦୃଷ୍ଟି ।

## ନୂତନ ଆହ୍ୱାନ

1929 ମସିହା ଫେବ୍ରୁଆରୀ 4 ତାରିଖ । କେନ୍ଦ୍ର ବ୍ୟବସ୍ଥାପକ ସଭାରେ ଜନସାଧାରଣ ନିରାପତ୍ତା ବିଲ୍ ( Public Safety Bill ) କୁ ବିରୋଧକରି ସେ ବ୍ୟକ୍ତିଗତ ସ୍ୱାଧୀନତା ଉପରେ ବିଶେଷ ଗୁରୁତ୍ୱ ଦେଇଥିଲେ । ଇଂରେଜରାଜତ୍ୱ କାଳରେ ସଂଖ୍ୟାଧିକ ଧନିକ ଓ ପୁଂଜିପତି ଶ୍ରେଣୀ ଏହି ଆଇନସଭାରେ ପ୍ରତିନିଧିତ୍ୱ କରୁଥିଲେ । ଚିରବିପ୍ଳବୀ ନୀଳକଣ୍ଠ ଅତ୍ୟନ୍ତ ନିର୍ଭୀକ ଭାବରେ ଘୋଷଣା କରିଥିଲେ "ମୁଁ କହୁଛି ସାମ୍ୟବାଦ ଆସିଛି । ଏହା ଆସୁ ଆମେ ଏଠାରେ ତା'ର ମୁକାବିଲା କରିବା ( I say communism has come, let it come and we are here to face it. )" ସାମ୍ୟବାଦର କୋକୁଆଭୟରେ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ଚିନ୍ତିତହୋଇ ବ୍ୟକ୍ତି ସ୍ୱାଧୀନତା ଓ ସମ୍ମାନରେ ଆଂଚ ଆଣିଲା ବେଳେ ସେ ଏହି ବୀରବାଣୀ ଶୁଣାଇଥିଲେ । ଅତୀତର ପରଂପରା ଓ ଶୁଷ୍କ ଗତାନୁଗତିକତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଥିଲା ନୀଳକଣ୍ଠଙ୍କ ସ୍ୱଭାବ, ନୂତନକୁ ଆବାହନ କରିବା ଥିଲା ତାଙ୍କର ଧର୍ମ । ନୂତନ ଆଦର୍ଶକୁ ଆହ୍ୱାନ କରିବା ଥିଲା ତାଙ୍କର ନୀତି ।

## ଅନିର୍ବାଣ ଆଲୋକ ସ୍ତମ୍ଭ

ଏହିପରି ଜୀବନ ସାରା ନୀଳକଣ୍ଠ ଦୃଢ଼ ସାହସ ଓ ଆତ୍ମବିଶ୍ୱାସ ଦେଖାଇଛନ୍ତି । ସଂକୀର୍ଣ୍ଣ ସ୍ୱାର୍ଥପରତା ଓ ଗତାନୁଗତିକ ଧର୍ମ ଧାରଣାର ବିରୋଧ କରି ସେ ନିଜର ନିଷ୍ଠା, ସାଧୁତା ଅକୁତୋଭୟ ଓ ଧୀଶକ୍ତିର ପରିଚୟ ଦେଇଛନ୍ତି । ତେଣୁ ସେ ଉତ୍କଳର ଉନ୍ନତି ପାଇଁ ସଂଗ୍ରାମ କଲେହେଁ ମହାଜାତୀୟତା, ଭାରତୀୟ ସଂସ୍କୃତି ଓ ସଭ୍ୟତାର ମହନୀୟତା ଉପରେ ସର୍ବଦା ଗୁରୁତ୍ୱ ଦେଇ ଆସିଛନ୍ତି । ସଂପ୍ରତିକ ରାଜନୀତିର ଊର୍ଦ୍ଧ୍ୱରେ ସେ ଆସୀନ । ରାଷ୍ଟ୍ରନୀତି ତାଙ୍କର ଜୀବନର ଧର୍ମ ଓ ବ୍ରତ । ଶେଷନିଶ୍ୱାସ ତ୍ୟାଗ କରିବାପାଏ ସେ ଏହି ନୀତି ଓ କୃତିରେ ଦୃଢ଼ପ୍ରତିଜ୍ଞ ଥିଲେ ଏବଂ ସବୁ ବାଧାବଂଧନ ଅତିକ୍ରମ କରି ସମସ୍ତ ଭେଦଭାବ ଭୁଲି ସେ ଜାତୀୟ ସ୍ୱାର୍ଥ ଓ ବିକାଶ ପାଇଁ କାର୍ଯ୍ୟ କରିଛନ୍ତି । ସେ ତେଣୁ ଜଣେ ସାଧାରଣ ବ୍ୟକ୍ତି ନୁହଁନ୍ତି, ସେ ଗୋଟିଏ ଅନିର୍ବାଣ ଆଲୋକ ସ୍ତମ୍ଭ !

## କେନ୍ଦ୍ର ବ୍ୟବସ୍ଥାପକ ସ୍ତରରେ ନୀଳକଣ୍ଠଙ୍କ ଯୋଗଦାନ

### ଦୁର୍ଗତର ବନ୍ଧୁ

ଭାରତର ସ୍ୱାଧୀନତା ସଂଗ୍ରାମ ମଧ୍ୟରେ ଶାସନସଂସ୍କାର ଏକ ପ୍ରଧାନ ପଦକ୍ଷେପ ସ୍ୱରୂପ । 1919 ମସିହାରେ କେନ୍ଦ୍ରବ୍ୟବସ୍ଥାପକ ସଭାରେ ଭାରତୀୟମାନଙ୍କର ପ୍ରତିନିଧିତ୍ୱ ପାଇଁ ନିଷ୍ପତ୍ତି ନିଆଯାଇଥିଲା । ସେହି ନିଷ୍ପତ୍ତି ଉପରେ କଂଗ୍ରେସ ଦଳରେ ମତପାର୍ଥକ୍ୟ ଘଟିବା ଓ ପରିବର୍ତ୍ତନବିରୋଧୀ ତଥା ପରିବର୍ତ୍ତନପନ୍ଥୀ ନାମରେ ଦୁଇଟି ଗୋଷ୍ଠୀ ସୃଷ୍ଟିହେବା ସଂପର୍କରେ ପୂର୍ବରୁ ସୂଚନା ଦିଆଯାଇଛି । ତେବେ ନୀଳକଣ୍ଠ ବିଶିଷ୍ଟ ପରିବର୍ତ୍ତନପନ୍ଥୀ ଭାବରେ କେନ୍ଦ୍ର ବ୍ୟବସ୍ଥାପକ ସଭାରେ ଦୀର୍ଘ ଦୁଇ ଦଶନ୍ଧି (1924 ରୁ 1945) ଧରି ସଭ୍ୟ ଭାବରେ ନିର୍ବାଚିତ ହୋଇ ନିଜର ପ୍ରତିଭା ଓ ବାଗ୍ମୀତାର ପରାକାଷ୍ଠା ଦେଖାଇଛନ୍ତି । ଏହି ସମୟରେ ସେ ରାଷ୍ଟ୍ରନୀତିଜ୍ଞ ଭାବରେ ନିଜର ପ୍ରକୃତ ପରିଚୟ ଦେଇ ରାଜ୍ୟ ତଥା ଜାତିର ସମସ୍ୟାଗୁଡ଼ିକ ସଂପର୍କରେ ସୁଚିନ୍ତିତ ମତାମତ ଦେଇଥିଲେ । ଆଞ୍ଚଳିକ ଘଟଣା ଠାରୁ ଆନ୍ତର୍ଜାତିକ ଘଟଣା ଉପରେ ଆଲୋଚନା କରି ସେ ଗଭୀର ବିଦ୍‌ବତ୍ତା, ବିଶ୍ଳେଷଣାତ୍ମକ ଚିନ୍ତା, ବିସ୍ତୃତ ଆଗ୍ରହ, ନିର୍ବ୍ୟକ୍ତିକ୍ ନିରପେକ୍ଷତା ଓ ଦୃଢ଼ ସାହାସର ପରିଚୟ ଦେଇଛନ୍ତି । ସେତେବେଳେ ନିର୍ବାଚନ ସାବାଳକ ଭିତ୍ତିରେ ଅନୁଷ୍ଠିତ ନହୋଇ ଶିକ୍ଷା ଓ ସମ୍ପତ୍ତିର ଏକ ମାନକୁ ଗ୍ରହଁ କରାଯାଇଥିଲା । ତେଣୁ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କ ଦ୍ୱାରା ବ୍ୟବସ୍ଥାପକ ସଭ୍ୟମାନେ ନିର୍ବାଚିତ ହେଉଥିଲେ । ଏପରିଭାବରେ ସଂକୀର୍ଣ୍ଣ ଓ ସ୍ୱାର୍ଥପର ଭିତ୍ତିରେ ତାଙ୍କୁ ନିର୍ବାଚନ କରାଗଲେ ମଧ୍ୟ ନୀଳକଣ୍ଠ ନିଜ ବିବେକ ଓ ବିଗ୍ରରବୃଦ୍ଧି ଅନୁସାରେ ସର୍ବଦା କାର୍ଯ୍ୟ କରୁଥିଲେ । ଦୁର୍ବଳ, ଦରିଦ୍ର ଓ ଦୁର୍ଗତ ଜନସାଧାରଣଙ୍କ ସ୍ୱାର୍ଥରକ୍ଷା ପାଇଁ ସେ ସର୍ବଦା କାର୍ଯ୍ୟ କରୁଥିଲେ ।

### କେନ୍ଦ୍ରବ୍ୟବସ୍ଥାପକ ସଭାର ସଭ୍ୟ

ପ୍ରଥମ କେନ୍ଦ୍ର ଆସେମ୍ବ୍ଲି ବା ବ୍ୟବସ୍ଥାପକ ସଭାରେ ମୋଟ ସଭ୍ୟ ସଂଖ୍ୟା ଥିଲା ମାତ୍ର 143 । ସେମାନଙ୍କ ମଧ୍ୟରୁ ନିର୍ବାଚିତ ସଭ୍ୟ ହେଲେ 103 ଓ ମନୋନୀତ ସଭ୍ୟ ହେଲେ 40 । ଏହି ମନୋନୀତ ସଭ୍ୟଙ୍କ ମଧ୍ୟରୁ ସାଧାରଣ ନିର୍ବାଚନ-ମଣ୍ଡଳୀରୁ 30 ଜଣ ମୁସଲମାନ ଓ 2 ଜଣ ଶିଖ୍ ପ୍ରତିନିଧି, 7 ଜଣ ଜମିଦାର ପ୍ରତିନିଧି, 9 ଜଣ ଗୋରା ସାହେବଙ୍କ ପ୍ରତିନିଧି, 4 ଜଣ ବଣିକ ପ୍ରତିନିଧି ରହୁଥିଲେ । ଯଦିଓ ନିର୍ବାଚିତ ପ୍ରତିନିଧିମାନେ ଏକଜୁଟ ହୋଇ ସରକାରଙ୍କୁ ପରାସ୍ତ କରିପାରୁଥିଲେ, ତା'ର ପ୍ରଭାବ ବିଶେଷ କିଛି ନଥିଲା । କାରଣ ଲୋକମାନଙ୍କ ପାଖରେ ଅପଦସ୍ତ ହେଲେହିଁ ସରକାରଙ୍କୁ ଇସ୍ତଫାଦେବାକୁ ପଡୁନଥିଲା ବରଂ ବ୍ୟବସ୍ଥାପକ ସଭାରେ

ଗ୍ରହଣ ହେଉଥିବା ବିଲ୍ ସ୍ୱତନ୍ତ୍ର ଅଧିକାର ବଳରେ ଆଇନରେ ପରିଣତ ହୋଇପାରୁଥିଲା । ଦୃଷ୍ଟାନ୍ତ ସ୍ୱରୂପ, 1927ରେ ଇଂରେଜ ସରକାର 17 ଥର ଏହି ସଭାଦ୍ୱାରା ପରାସ୍ତ ହୋଇଥିଲେ ସୁଦ୍ଧା ବଡ଼ଲାଟଙ୍କ ସ୍ୱତନ୍ତ୍ର କ୍ଷମତା ବଳରେ ସବୁସେମିତି ଚାଲିଥିଲା ।

ପଣ୍ଡିତ ନୀଳକଣ୍ଠ ଓ ସ୍ୱାମୀ ଭୁବନାନନ୍ଦ ଦାସ ଓଡ଼ିଶାରୁ ସ୍ୱରାଜ୍ୟଦଳ ପକ୍ଷରୁ କେନ୍ଦ୍ର ବ୍ୟବସ୍ଥାପକ ସଭାକୁ ନିର୍ବାଚିତ ହୋଇଥିଲେ । ଉଭୟ ବ୍ୟବସ୍ଥାପକ ଖୁବ୍ ଦକ୍ଷତାର ସହିତ ବ୍ୟବସ୍ଥାପକ ସଭାରେ ବିଭିନ୍ନ ଆଞ୍ଚଳିକ ଓ ଜାତୀୟ ସମସ୍ୟା ଉପରେ ଆଲୋଚନା କରୁଥିଲେ । ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକୁ ଏକ ଶାସନାଧୀନ କରିବା ଏବଂ ଜନସାଧାରଣଙ୍କ ମଙ୍ଗଳ ନିମନ୍ତେ ଇଂରେଜ ସରକାରଙ୍କୁ ସମାଲୋଚନା କରି ବିଭିନ୍ନ ସରକାରୀ ନିଷ୍ଫଳତା ଓ ଦୁର୍ନୀତିର ପ୍ରମାଣ କରିବା ଥିଲା ଉଭୟଙ୍କର କାର୍ଯ୍ୟଧାରା । ନୀଳକଣ୍ଠ ଜଣେ ଧୂରୀଣ ବ୍ୟବସ୍ଥାପକ ଭାବରେ ସମସ୍ତଙ୍କ ଦ୍ୱାରା ସମ୍ମାନିତ ହୋଇଥିଲେ ଏବଂ ବିଭିନ୍ନ କାଟ ପ୍ରସ୍ତାବ, ସଂଶୋଧନ ପ୍ରସ୍ତାବ ଆଦି ଆଣି ସଭ୍ୟ ଓ ସରକାରଙ୍କ ଦୃଷ୍ଟି ଆକର୍ଷଣ କରୁଥିଲେ । କେନ୍ଦ୍ର ବ୍ୟବସ୍ଥାପକ ସଭାର ଅନେକ ସ୍ଥାୟୀ ସମିତି ଓ ଯାଞ୍ଚ ସମିତିରେ ସେ ସଭ୍ୟ ନିର୍ବାଚିତ ହୋଇଥିଲେ । ସେ ଇଂରେଜୀରେ ସ୍ପଷ୍ଟ ଓ ଦୃଢ଼ ଭାବରେ ନିଜର ଯୁକ୍ତି ଉପସ୍ଥାପନ କରୁଥିଲେ । ବରଂ ଥରେ ଥରେ ବକ୍ତୃତା ଦୀର୍ଘ ହୋଇଯାଉଥିବାରୁ ସଂକ୍ଷେପରେ କହିବାକୁ ବାଚସ୍ପତି ପରାମର୍ଶ ଦେଉଥିଲେ ।

## କେନ୍ଦ୍ର ବ୍ୟବସ୍ଥାପକ ସଭାରେ ପ୍ରାଧାନ୍ୟ

1924 ମାର୍ଚ୍ଚ 8 ତାରିଖ । ନୀଳକଣ୍ଠ କେନ୍ଦ୍ରରେ ପ୍ରଥମ ବ୍ୟବସ୍ଥାପକ । ମାତ୍ର ସେ ଏକ ଜଟିଳ ପ୍ରଶ୍ନ ଇଂରେଜ ସରକାରଙ୍କୁ ପ୍ରଶ୍ନ କରିଥିଲେ–ପ୍ରଥମ କେନ୍ଦ୍ର ବ୍ୟବସ୍ଥାପକ ସଭାର କାର୍ଯ୍ୟକାଳ (1921 ରୁ 1923 ପର୍ଯ୍ୟନ୍ତ) ମଧ୍ୟରେ ରାଜନୈତିକ ବନ୍ଦୀମାନଙ୍କ ମୁକ୍ତିପାଇଁ କ'ଣ ଉଦ୍ୟମ ହୋଇଥିଲା କି ? କାରାଗାରରେ ସେମାନଙ୍କର ସୁବ୍ୟବସ୍ଥା କ'ଣସବୁ ହୋଇଛି ? ଏଥିରେ ସରକାର ବଡ ଅସୁବିଧାରେ ପଡି "ତଥ୍ୟସଂଗ୍ରହ ଚାଲିଛି" ବୋଲି କହିଥିଲେ । ସେହିବର୍ଷ ମାର୍ଚ୍ଚ 25 ତାରିଖରେ ରାଜବନ୍ଦୀମାନଙ୍କ ଉପରେ ହୋଇଥିବା ଅତ୍ୟାଚାର ସଂପର୍କରେ ପ୍ରଶ୍ନ ପଚାରି ଇଂରେଜ ସରକାରଙ୍କୁ ବିବ୍ରତ କରିପକାଇଥିଲେ ଏ ସଂପର୍କରେ "ତଥ୍ୟସଂଗ୍ରହ ହେଉଛି" ବୋଲି ସରକାର ସଭାକୁ ଜଣାଇଥିଲେ । 1924 ସେପ୍ଟେମ୍ବର 16 ତାରିଖରେ ରେଳଗାଡ଼ିରେ ତୃତୀୟ ଶ୍ରେଣୀରେ ଅତିରିକ୍ତ ଯାତ୍ରୀ ନେବା ଓ ରେଳଯାତ୍ରୀଙ୍କ ଅଭାବଅସୁବିଧା ବିଷୟରେ ନାନା ପ୍ରଶ୍ନ ପଚାରିଥିଲେ । ଦରିଦ୍ର ଜନସାଧାରଣଙ୍କୁ ଲୁଣମାରିବା ଅଧିକାର ଦେଇ ନଥିବାରୁ ଇଂରେଜ ସରକାରଙ୍କୁ ଖୁବ୍ ସମାଲୋଚନା କରୁଥିଲେ । ତେଣୁ 1925 ମାର୍ଚ୍ଚ 23 ତାରିଖରେ ବଜେଟ ଉପରେ ଭାଷଣଦେଇ ଓଡ଼ିଶା କପକୂଳରେ ପାରଂପାରିକ ରୀତିରେ ଲବଣ ଉତ୍ପାଦନ କରିବାକୁ ଲୋକଙ୍କୁ ସୁଯୋଗ ଦେବାକୁ ଦାବିକରିଥିଲେ । ଏହା ପରେହିଁ ଗାନ୍ଧୀଜୀଙ୍କ ଲବଣ ସତ୍ୟାଗ୍ରହ ସଙ୍ଗଠିତ ହୋଇଥିଲା ।

1925ରେ ରେଲବାଇ ପରିଚାଳନା ଓ ରାଜନୀତିକ ବନ୍ଦୀ ସଂକ୍ରାନ୍ତରେ ବହୁ ପ୍ରଶ୍ନ ପଚାରି ନୀଳକଣ୍ଠ ସରକାରୀ ସ୍ତରରେ ଚମକ ସୃଷ୍ଟି କରିଥିଲେ । ରେଲବାଇରେ ଓଡ଼ିଆଙ୍କ ନିଯୁକ୍ତି ଦେଖାଇ ସରକାରଙ୍କୁ ଭାରି ଅଡୁଆରେ ପକାଇଥିଲେ । ହିନ୍ଦୁଧର୍ମ ଓ ଦାତବ୍ୟ ଟ୍ରଷ୍ଟ ସଂପର୍କୀୟ ବିଲ ଉପରେ ନୀଳକଣ୍ଠ ନିଜର ଦୃଢ଼ ମତାମତ ପ୍ରକାଶ କରିଥିଲେ ଏବଂ ପ୍ରଥମୋକ୍ତ ବିଲ୍‌ର ଯାଞ୍ଚକମିଟିକୁ ନିର୍ବାଚିତ ହୋଇଥିଲେ । ମାତୃମଙ୍ଗଳ ବିଲ୍ ପ୍ରସଙ୍ଗରେ ନୀଳକଣ୍ଠ କହିଥିଲେ "ଆସାମ ଚା" ବଗିଚା ଆଦିରେ ଯେତେ ପୁରୁଷ ଓ ମହିଳା କାମ କରନ୍ତି, ତାର ଏକ ତତୁର୍ଥାଂଶ ଓଡିଶାରୁ ଆସିଛନ୍ତି । ଚା' ବଗିଚା ମାଲିକମାନେ ଏମାନଙ୍କ ପ୍ରତି ସଂତୋଷଜନକ ବ୍ୟବହାର କରନ୍ତି ନାହିଁ । ତେଣୁ ଶ୍ରମିକ ମଙ୍ଗଳ ଲାଗି ଆଇନ ହେବା ଉଚିତ ।

1927 ଜାନୁଆରୀ 31 ଓ ଫେବୃଆରୀ 1 ତାରିଖ ଦିନ ପଣ୍ଡିତ ନୀଳକଣ୍ଠ ସ୍ୱତନ୍ତ୍ର ଓଡ଼ିଶା ଗଠନ ସଂପର୍କରେ କହିବାରୁ ଇଂରେଜ ସରକାରଙ୍କ ସ୍ୱରାଷ୍ଟ୍ରସଭ୍ୟ ( ମନ୍ତ୍ରୀ ପରି ) ଆଲେକ୍‌ଜାଣ୍ଡାର ମୁଡିମ୍ୟାନ ଓଡିଆ ଭାଷାଭାଷୀ ଅଞ୍ଚଳଗୁଡିକର ଏକୀକରଣର ଯକ୍ତିଯୁକ୍ତତା ସ୍ୱୀକାର କରିଥିଲେ ଏବଂ ସ୍ଥାନୀୟ ସରକାରଙ୍କ ସହିତ ପରାମର୍ଶ କରି ଏବିଷୟରେ ପଦକ୍ଷେପ ନେବେ ବୋଲି ଘୋଷଣା କରିଥିଲେ । ଓଡିଆଭାଷୀ ଅଞ୍ଚଳର ଭବିଷ୍ୟତ ସଂପର୍କରେ କୌଣସି ପ୍ରସ୍ତାବ ବା ଯୋଜନା କାର୍ଯ୍ୟକାରୀ କରିବା ପୂର୍ବରୁ ଜନସାଧାରଣଙ୍କ ମତାମତ ନେବେ ବୋଲି କହିଥିଲେ । ନୀଳକଣ୍ଠଙ୍କ ଦୃଢ଼ ଯୁକ୍ତି ବଳରେ ପ୍ରଭାବିତ ହୋଇ ମୁଡିମ୍ୟାନ ସାହେବ ମଧ୍ୟ କହିଥିଲେ, "ଏକ ଶାସନାଧୀନ ନ ରହିଲେ ମଧ୍ୟ ଓଡିଆ ଲୋକଙ୍କର ଯେ ଏକ ସ୍ୱତନ୍ତ୍ର ପରଂପରା ଓ ସ୍ୱତନ୍ତ୍ର ଭାଷାଅଛି ଓ ରହିବ ଏବଂ ଓଡିଆଙ୍କର ଏକ ସ୍ୱତନ୍ତ୍ର ଲିପି ଓ ସ୍ୱତନ୍ତ୍ର ଶିଳ୍ପକଳା ମଧ୍ୟ ରହିଛି ଓ ରହିବ, ଏଥିରେ ସନ୍ଦେହର ଅବକାଶ ନାହିଁ । ତେବେ ସବୁ ଓଡିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଏକ ନୂତନ ପ୍ରଦେଶ ଗଠନ କରିବା ବିଷୟ ଆର୍ଥିକ ଅବସ୍ଥା ଦୃଷ୍ଟିରୁ ପୁଙ୍ଖାନୁପୁଙ୍ଖରୂପେ ପରୀକ୍ଷା କରି ନିଷ୍ପତ୍ତି ଗ୍ରହଣ କରାଯିବ ଏବଂ ଏସମସ୍ତର ଫଳାଫଳ ଷ୍ଟାଟ୍ୟୁଟାରୀ କମିଶନଙ୍କ ମତାମତ ପାଇଁ ପଠାଯିବ" । ବଡ଼ଲାଟଙ୍କ ଶାସନପରିଷଦର ସ୍ୱରାଷ୍ଟ୍ର ସଭ୍ୟଙ୍କ ଏହି ଅନୁକୂଳ ମତ ତତ୍‌କାଳୀନ ଅବସ୍ଥାରେ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଥିଲା ।

ଏହିପରି କହିବା ସତ୍ତ୍ୱେ ନୀଳକଣ୍ଠ 1927 ଫେବୃଆରୀ 8 ତାରିଖରେ ଇଂରେଜ ସରକାରଙ୍କ ଉପରେ ଅଧିକ ଚାପ ପକାଇବା ପାଇଁ ଏକ ମୁଲତବି ପ୍ରସ୍ତାବ ଆଗତ କରିଥିଲେ । " ଏହି ଯେ ବ୍ୟବସ୍ଥାପକ ସଭା ସମସ୍ତ ଓଡିଆଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରିବା ସଂପର୍କୀୟ ଯୋଜନା ପ୍ରକାଶ କରିବା ପାଇଁ ଆଶୁ ପଦକ୍ଷେପ ନେବାକୁ ବଡ଼ଲାଟଙ୍କୁ ସୁପାରିଶ କରୁଛି ।" ଏହି ପ୍ରସ୍ତାବଉପରେ ଦୀର୍ଘ ଆଲୋଚନା ହୋଇଥିଲା ଏବଂ ନୀଳକଣ୍ଠ ଓଡିଆ ଜାତିର ସ୍ୱାତନ୍ତ୍ର୍ୟ ଓ ସ୍ୱାଧିକାର ସଂପର୍କରେ ତାର ଅତୀତ ଐତିହ୍ୟ ଓ ଉଚ୍ଚ ପରଂପରା ଉପରେ ଆଲୋକପାତ କରିଥିଲେ । "ପଣ୍ଡିତ ନୀଳକଣ୍ଠ ଜୀବନୀ ଓ କୃତି" ବହିର ପୃଷ୍ଠା 104ରୁ 111 ପର୍ଯ୍ୟନ୍ତ ଏହି ପ୍ରସଙ୍ଗରେ ଉଦ୍ଧାର କରାଯାଇପାରେ ।

ବିଲ୍ ଆଗତ କରି ପଣ୍ଡିତ ନୀଳକଂଠ କହିଲେ, "ଏ ପ୍ରସ୍ତାବ ସରକାରଙ୍କ ପକ୍ଷରେ ଏକ ନୂଆ ବିଷୟ ନୁହେଁ—ପ୍ରାୟ ଦୀର୍ଘ 25 ବର୍ଷ ହେଲା ଏହା ଦେଶର ରାଜନୈତିକ ସମସ୍ୟା ମଧ୍ୟରେ ମୁଖ୍ୟସ୍ଥାନ ଅଧିକାର କରି ଆସିଛି । ଏହି ଆନ୍ଦୋଳନ 1903 ମସିହାରୁ ଆରମ୍ଭ ହୋଇଛି । ତତ୍କାଳୀନ ଘରୋଇ ମନ୍ତ୍ରୀ ଓଡ଼ିଆ ଅଞ୍ଚଳମାନ ଏକ ଶାସନାଧୀନ ହେବା ଆବଶ୍ୟକ ବୋଲି ସ୍ୱୀକାର କରିଥିଲେ । ଶାସନ ତାନ୍ତ୍ରିକ ସୁବିଧା ଆଳ ଦେଖାଇ ଏହାକୁ ବାରମ୍ବାର ସ୍ଥଗିତ ରଖା ଯାଇଛି । ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳମାନ ଏକ ସରକାର ଅଧୀନରେ ରଖା ଯିବ ବୋଲି ଆମକୁ ନିର୍ଭର ଜବାବ ଦିଆ ଯାଇନି, ଗୋଟିଏ ଉପପ୍ରଦେଶ ଗଢ଼ାଯିବାର ପ୍ରସ୍ତାବ ମଝିରେ ମଝିରେ ଉପସ୍ଥାପନ କରାଯାଇଛି । ମାତ୍ର ଓଡ଼ିଆମାନଙ୍କୁ ସନ୍ତୁଷ୍ଟ କରିବା ଭଳି କୌଣସି କାର୍ଯ୍ୟ ଆଜିଯାଏ ହୋଇନାଇ । ମାନ୍ୟବର ଶ୍ରୀ ସଚ୍ଚିଦା ନନ୍ଦ ସିଂହ ଗତ ବଡ଼ଲାଟ ପରିଷଦର ଅଂତିମ ପର୍ଯ୍ୟାୟରେ 1920 ମସିହାରେ ଏପରି ଏକ ପ୍ରସ୍ତାବ ଉପସ୍ଥାପିତ କରିବାରୁ ସରକାର ଏ ବିଷୟରେ ଅନୁସନ୍ଧାନ କରିବେ ବୋଲି ରାଜି ହୋଇଥିଲେ । ସମ୍ଭବତଃ ନୂତନ ଶାସନ ସଂସ୍କାର ଖସଡ଼ା କାର୍ଯ୍ୟକାରୀ ହେବା ପୂର୍ବରୁ ସରକାର କିଛି କରିବାକୁ ମନସ୍ଥ କରିଥିଲେ । କିନ୍ତୁ ନୂତନ ଶାସନ ସଂସ୍କାର ମତେ ଗଠିତ ପ୍ରଥମ ପରିଷଦର କାର୍ଯ୍ୟକାଳ ପୂରିଗଲା । ଅଥଚ ସରକାର ଏବିଷୟରେ କିଛି କଲେ ନାଇ । ଦ୍ୱିତୀୟ ପରିଷଦର ପ୍ରାରମ୍ଭରେ ମୋର ବନ୍ଧୁ ଶ୍ରୀ ଭୁବନାନନ୍ଦ ଦାସଙ୍କ ଏକ ପ୍ରଶ୍ନର ଉତ୍ତରରେ ସରକାର ମାନ୍ଦ୍ରାଜ ପ୍ରଦେଶର ଓଡ଼ିଆମାନଙ୍କ ବିଷୟ ଅନୁସନ୍ଧାନ କରିବେ ବୋଲି ରାଜି ହେଲେ, ଫିଲିପ୍ ଡ଼ଫ୍ କମିସନ ବସାଇଲେ । ଉକ୍ତ କମିସନ ଅନୁସନ୍ଧାନ କରି ରିପୋର୍ଟ ଦେଲେ, ଗଞ୍ଜାମ ଓ ବିଶାଖାପାଟଣା ଲୋକେ ଓଡ଼ିଶା ଡ଼ିଭିଜନ ସହ ମିଶିବାର ପ୍ରବଳ ଇଚ୍ଛା ପ୍ରକାଶ କରିଛନ୍ତି ।

ମୁଁ ଏଠାରେ ସ୍ପଷ୍ଟ ଜଣାଇ ଦେବାକୁ ଚାହେଁ, ବହୁ ଓଡ଼ିଆ ଅଂଚଳ ବିଭିନ୍ନ ପ୍ରଦେଶ-ମାନଙ୍କ ଅଧୀନରେ ରହିଛି ଓ ସେହି ପ୍ରଦେଶମାନଙ୍କରେ ଗୋଟିଏ ଗୋଟିଏ ସ୍ୱାର୍ଥାନ୍ୱେଷୀ ଶାସକଗୋଷ୍ଠୀ ସୃଷ୍ଟି ହୋଇଛନ୍ତି । ବଂଗ ସରକାର ସ୍ପଷ୍ଟ ଜଣାଇଛନ୍ତି ଜନଗଣନାକାରୀ ଅଫିସରମାନେ ଲୋକଙ୍କୁ ଓଡ଼ିଆ ଭାଷା ଭାଷୀ ବୋଲି ରେକର୍ଡ କରିବାକୁ ଡ଼ରୁଛନ୍ତି । କାରଣ ସେମାନଙ୍କର ଭୟ କାଳେ ଏମାନଙ୍କୁ ଓଡ଼ିଆଭାଷୀ ବୋଲି ଜନଗଣନା ରିପୋର୍ଟରେ ଲେଖିଦେଲେ ସେହି ଅଞ୍ଚଳଗୁଡ଼ିକ ଓଡ଼ିଶା ଡ଼ିଭିଜନ ସହିତ ମିଶିଯିବ । ବାସ୍ତବରେ ଜନଗଣନା ସୁପରିନ୍‌ଟେଣ୍ଡେଣ୍ଟ, ଜନଗଣନାକାରୀ ଅଫିସର ଓ ସୁପରଭାଇଜରଙ୍କର ଏକ ମିଟିଂରେ ଶୁଣିବାକୁ ପାଇଥିଲେ ଦାନ୍ତନରେ ବହୁ ଓଡ଼ିଆଭାଷୀ ଲୋକେ ରହିଥିବା ହେତୁ ଦାନ୍ତନ ବାଲେଶ୍ୱର ଜିଲ୍ଲା ସହିତ ମିଶିଯାଇପାରେ । ସର୍କଲ ଅଫିସର ଶ୍ରୀ ଏ. ଏମ୍. ଚକ୍ରବର୍ତ୍ତୀ 1921 ଜୁଲାଇ 5 ତାରିଖ ଚିଠିରେ ଜଣାଇ ଥିଲେ, ଦାନ୍ତନ ଓ ମୋହନ ପୁରରେ ଓଡ଼ିଆ ଭାଷାଭାଷୀ ଲୋକଙ୍କ ସଂଖ୍ୟା ଅଧିକ । ଆଉ ଏକ କଥା କୁହା ଯାଇଛି ଯେ ଆନ୍ଦୋଳନ ହେତୁ ଲୋକେ ଏପରି ଇଚ୍ଛା ପ୍ରକାଶ କରିଛନ୍ତି । ଏ କଥା ହୋଇପାରେ ଯେ ଯେତେବେଳେ କୌଣସି

ଏକ ଦାବି ଉପରେ ଆନ୍ଦୋଳନ ଆରମ୍ଭ କରାଯାଏ, ସେତେବେଳେ ଆନ୍ଦୋଳନର ନେତୃବର୍ଗ ଦେଶର ହିତକୁ ଦୃଷ୍ଟିରେ ରଖି ଜନମତ ସୃଷ୍ଟି କରିଥାନ୍ତି ।

'ଏବିଷୟରେ ବୁଝାଇ କହିବା ପୂର୍ବରୁ ଓଡ଼ିଶାର ସଂସ୍କୃତି, ପରଂପରା, ଐତିହ୍ୟ ଆଦି ବିଷୟରେ ମୁଁ ପରିଷଦର ସଭ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିବାକୁ ଚାହେଁ । ଏପରିକି ଗତ ବିଧାନପରିଷଦର ଜଣେ ସଭ୍ୟ ମୁଁ 'ଓଡ଼ିଶା ସଭ୍ୟ' ବୋଲି କହିବାରୁ କିଛି ବୁଝି ପାରି ନଥିଲେ । ତହରେ ମୁଁ "ବିହାର ଓ ଓଡ଼ିଶାର ସଭ୍ୟ" ବୋଲି କହିଲି । ସେତେବେଳେ ଉକ୍ତ ସଭ୍ୟ କହିଲେ "ଏ ସ୍ଥାନଟି ଆସାମ ନିକଟବର୍ତ୍ତୀ ଏକ ଅଞ୍ଚଳ" । ଗଲା ଦୁଇ ଶହ ବର୍ଷ ହେଲା ଆମ ଲୋକେ ବିଭିନ୍ନ ପ୍ରଦେଶରେ ବିଛିନ୍ନ ହୋଇ ରହିବା ଫଳରେ ସମ୍ଭବତଃ ଭାରତର ଅନ୍ୟ ପ୍ରଦେଶ ଲୋକେ ଆମର ଯଥାର୍ଥ ପରିଚୟ ପାଇ ପାରୁ ନାହାଁନ୍ତି । ଆଧୁନିକ ଓଡ଼ିଶା ତିନୋଟି ପୁରାତନ ସଂସ୍କୃତିକୁ ନେଇ ଗଠିତ ହୋଇଛି । ଯଥା :— କଳିଙ୍ଗ, ଉତ୍କଳ ଓ ଉଡ୍ର । ପୁରାତନ କଳିଙ୍ଗ ହେଲା, ଦ୍ରାବିଡ଼ ରାଜ୍ୟର ସୀମାନ୍ତରେ ଆର୍ଯ୍ୟମାନଙ୍କର ପ୍ରଥମ ଉପନିବେଶ ଏହା ଖ୍ରୀଷ୍ଟପୂର୍ବ 7ମ ଶତାବ୍ଦୀର କଥା । ଏହି କଳିଙ୍ଗ କଲିକତା ବା ତାମଲୁକ୍ ଠାରୁ ଗଞ୍ଜାମର ସୀମାନ୍ତ ଅଞ୍ଚଳ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ମଗଧ ସମ୍ରାଟ ଅଶୋକ ଏହି କଳିଙ୍ଗକୁ ଜୟ କରିବାରେ ଧର୍ମାଶୋକରେ ପରିଣତ ହୋଇଥିଲେ । କଳିଙ୍ଗର ଏକ ବଳିଷ୍ଠ ସଂସ୍କୃତି ଥିଲା । ଓଡ଼ିଶାରେ ଏବେ ଯେଉଁ ଉନ୍ନତ ଶିଳ୍ପକଳା ଫୁଟି ଉଠୁଛି, ତାହା ଆର୍ଯ୍ୟ ଶିଳ୍ପକଳାର କଳିଙ୍ଗ ସଂସ୍କରଣ ଓ ତାହା ଏବେ ମଧ୍ୟ ଓଡ଼ିଶାର ଗୁମ୍ଫା ମନ୍ଦିରମାନଙ୍କରେ ଦେଖିବାକୁ ମିଳେ । କଳିଙ୍ଗର ଲୋକେ ସମୁଦ୍ର ଡେଇଁ ଜଳଯାତ୍ରା କରିବାରେ ଖୁବ୍ ପଟୁ ଥିବା କଥା ବେଶ୍ ଜଣାଶୁଣା । ଭାରତ ଇତିହାସରେ ବିଜୟ ସିଂହଙ୍କ ନାମ ସୁପରିଚିତ । ଅବଶ୍ୟ ବିଜୟ ସିଂହଙ୍କୁ ଓଡ଼ିଶା, ବଙ୍ଗଳା , ଗୁଜରାଟ ଓ ବର୍ମା ପ୍ରତ୍ୟେକେ ନିଜ ଅଞ୍ଚଳର ଲୋକ ବୋଲି ଦାବି କରିଥାନ୍ତି । ଏଇ ବିଜୟ ସିଂହଙ୍କ ସହିତ ତାଙ୍କ ସ୍ତ୍ରୀ ଯାଇ ଶ୍ରୀଲଙ୍କାରେ ଉପନିବେଶ ସ୍ଥାପନ କରିଥିଲେ । ତାଙ୍କ ସ୍ତ୍ରୀ କିନ୍ତୁ ନିଶ୍ଚିତଭାବରେ କଳିଙ୍ଗର ରାଜ କନ୍ୟା ବୋଲି ଜଣାଯାଏ । ବର୍ମା ଓ ପୂର୍ବଭାରତୀୟ ଦ୍ୱୀପ ପୁଞ୍ଜରେ କଳିଙ୍ଗ ଲୋକେ ଉପନିବେଶ ସ୍ଥାପନ କରିଥିଲେ । ଏବର ପେଗୁର ସ୍ଥାନୀୟ ନାଁ 'ଓଶା' ଓ ଏହା ଓଡ଼ିଶାର ଅପଭ୍ରଂଶ ମାତ୍ର । ବର୍ମାର କେତେକ ମନ୍ଦିର ଓଡ଼ିଶାର ଉଦୟଗିରି ଗୁମ୍ଫା ମନ୍ଦିରର ଅନୁକରଣରେ ନିର୍ମିତ । ଓଡ଼ିଶାର ନୌ-ବାଣିଜ୍ୟ ଗତ ଶତାବ୍ଦୀର ସପ୍ତ ଦଶକ ପର୍ଯ୍ୟନ୍ତ ଚଳୁଥିଲା । ଓଡ଼ିଶାର ଉପକୂଳବର୍ତ୍ତୀ ଲବଣ ବ୍ୟବସାୟ ସରକାର ନାନା ଭାବରେ ଧ୍ୱଂସ କରି ଦେବାରେ ନୌ-ବାଣିଜ୍ୟରେ ଓଡ଼ିଆଙ୍କର ବିଶେଷତ୍ୱ ଲୋପ ପାଇଗଲା । ତଥାପି ବାଲେଶ୍ୱର ଓ ଓଡ଼ିଶାର କେତେକ କ୍ଷୁଦ୍ର ବନ୍ଦର-ମାନଙ୍କରେ ଓଡ଼ିଶା ନୌ-ବାଣିଜ୍ୟର ଭଗ୍ନାବଶେଷ ଏବେବି ଦେଖାଯାଏ ।

ଏହି କଳିଙ୍ଗ ପୁଣି ବୌଦ୍ଧ ସଂସ୍କୃତିର ପ୍ରଧାନ କେନ୍ଦ୍ର ହୋଇଥିଲା । ଏହାପରେ ଉଡ୍ର ରାଜ୍ୟ ସଭ୍ୟତା କଳିଙ୍ଗର ବୌଦ୍ଧ ସଭ୍ୟତାକୁ ଗ୍ରାସ କରି ହିନ୍ଦୁ ଧର୍ମପୀଠରେ ଏହାକୁ ପରିଣତ କରିଥିଲା । ଏହି ଉଡ୍ର ସଭ୍ୟତା ଏବେ ମଧ୍ୟ ପ୍ରଦେଶର ଦକ୍ଷିଣ -ପୂର୍ବାଞ୍ଚଳ ପର୍ଯ୍ୟନ୍ତ ବିସ୍ତୃତ

ଥିଲା । ଏବେ ଆମର ଯେଉଁ ଜଗନ୍ନାଥ ମନ୍ଦିର ଭାରତ ବିଖ୍ୟାତ ହୋଇ ରହିଚି, ତାହା ଉକ୍ତ ସଭ୍ୟତାର ହିଁ ଅବଦାନ । ଓଡ଼ିଶାର ସଂସ୍କୃତି ଏହି ଜଗନ୍ନାଥ ମନ୍ଦିର ଘେନି ନିଜକୁ ଧନ୍ୟ ମଣିଥାଏ ଯେହେତୁ ଏହି ମନ୍ଦିର ମଧ୍ୟରେ ଜାତି, ବର୍ଣ୍ଣ, ଅସ୍ପୃଶ୍ୟତା ଆଦି ଭେଦ ଭାବ ନାହିଁ । ଭାରତର ଅନ୍ୟ କୁତ୍ରାପି ଏହା ପରିଲକ୍ଷିତ ହୁଏ ନାହିଁ । ଏହାହିଁ ସ୍ପଷ୍ଟତଃ ଓଡ଼ିଆ ସଭ୍ୟତା । ଭାରତର ଧର୍ମ ବିଗ୍ରହରେ ଏବେ ଓଡ଼ିଶାର ସ୍ୱତନ୍ତ୍ର ସତ୍ତା ବିଗ୍ରହକୁ ନିଆଯାଉ ।

ସେହିପରି ପ୍ରାଚୀନ ଉତ୍କଳର ପ୍ରଭାବ ସିଂହଭୂମି ପଟୁ ଆସି ସଭ୍ୟତାର ପ୍ରବାହରେ ବହୁକିଛି ସଂଯୋଗ କରିଥିଲା । ଏଇପରି ତିନିଗୋଟି ସଭ୍ୟତାର ମିଶ୍ରଣରେ ଓଡ଼ିଶାରେ ଯେ ଏକ ପୁଷ୍କଳ ସଭ୍ୟତା ଗଢି ଉଠିଥିଲା, ତାହା ସ୍ପଷ୍ଟ । ଏହି ଓଡ଼ିଆ ସଭ୍ୟତାକୁ ଧ୍ୱଂସ କରିବା ପାଇଁ ବାରମ୍ବାର ତୀବ୍ର ଆକ୍ରମଣ କରା ଯାଉଛି ସତ,କିନ୍ତୁ ଏପରି ଏକ ବଳିଷ୍ଠ ସଭ୍ୟତା ଧ୍ୱଂସ ହେବାର ନୁହେଁ, ହୋଇପାରି ନାହିଁ ।

କେହି ଯେପରି ମନେ କରିବା ଉଚିତ ନୁହେଁ ଯେ ଏହି ବିଂଶ ଶତାବ୍ଦୀରେ ପ୍ରଥମ କରି ଆମେ ଆମକୁ ଏକ ପ୍ରଦେଶରେ ଅନ୍ତର୍ଭୁକ୍ତ କରିବା ଲାଗି ଆମର ଦାବି ଜଣାଉଛୁ । କାରଣ ଇତିହାସରେ ଓଡ଼ିଶା ଏକ ସ୍ୱତନ୍ତ୍ର ରାଜ୍ୟ ହୋଇ ବରାବର ଥିଲା, କେବଳ ଏହାର ରାଜସ୍ୱକୁ କୌଣସି ମତେ ଚଳି କରି ନୁହେଁ ଏହା ବରାବର ଏକ ସମୃଦ୍ଧିଶାଳୀ ରାଜ୍ୟଥିଲା, ନିଜର ଶିଳ୍ପକଳା, ସାହିତ୍ୟ ଓ ସଂସ୍କୃତିକୁ ଘେନି ଏକ ଖୁବ୍ ଉନ୍ନତ ଓ କ୍ଷମତାଶାଳୀ ରାଜ୍ୟ । ମେଦିନୀପୁରଠାରୁ ଗଞ୍ଜାମର ଦକ୍ଷିଣାଞ୍ଚଳ ଓ ସମୁଦ୍ର ତଟଭୂମିଠାରୁ ସିଂହଭୂମି ଓ ମଧ୍ୟ ପ୍ରଦେଶର ପୂର୍ବାଞ୍ଚଳ ପର୍ଯ୍ୟନ୍ତ ଓଡ଼ିଶା ବିସ୍ତୃତ ଥିଲା ବୋଲି ଇତିହାସରେ ଲିପିବଦ୍ଧ ହୋଇ ରହିଛି । ପୂର୍ବକାଳରେ ବିଜୟ ନଗର, ବାହାମନି ରାଜ୍ୟ ଓ ବଙ୍ଗ ଦେଶର ସୁବର୍ଣ୍ଣ ଯୁଗରେ ମଧ୍ୟ ଓଡ଼ିଶାର ସମ୍ରାଟମାନେ ନିଜର ସ୍ୱାଧୀନତା ରକ୍ଷାକରିବା ବ୍ୟତୀତ ସେମାନଙ୍କର କୃଷକ ସେନା ନେଇ ଏହି ରାଜ୍ୟମାନଙ୍କ ଅନ୍ତର୍ଦେଶ ପର୍ଯ୍ୟନ୍ତ ମାଡ଼ି ଯାଉଥିଲେ । ମୋଗଲ ସମ୍ରାଟ ଆକବର ଜଣେ ବିଚକ୍ଷଣ ରାଜନୀତିଜ୍ଞ ଥିଲେ । ସେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ରାଜ୍ୟରୂପେ ରଖିବାର ଆବଶ୍ୟକତା ବୁଝିଥିଲେ । ତେଣୁ ମୋଗଲ କାଳରେ ମଧ୍ୟ ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ହୋଇ ରହିଥିଲା । ମୁଁ ଏଠି କହି ଦେବାକୁ ଚାହେଁ ଯେ ଓଡ଼ିଶାର ମୁସଲମାନମାନେ ଅତି ସମ୍ମାନନୀୟ ଜାତି । ତେଣୁ ଓଡ଼ିଶାରେ କେବେ ହିନ୍ଦୁ ମୁସଲମାନଙ୍କ ଭିତରେ ସାଂପ୍ରଦାୟିକ ଦଙ୍ଗା ହୋଇନାଇ ।

ଏହାପରେ ଓଡ଼ିଶା ଉପରେ ବାରମ୍ବାର ଆକ୍ରମଣ କରାଯାଇଛି । ଆମକୁ ଏକ ନେନ୍ଦୁକ ସଦୃଶ ବ୍ୟବହାର କରାଯାଇଛି । ସମ୍ଭବତଃ ଇଂରେଜ ଅମଳରେ ଓଡ଼ିଶାର ଚରମ ଅଧୋଗତି ହୋଇଚି । ପଲାସୀ ଯୁଦ୍ଧର ଅଳ୍ପଦିନ ପୂର୍ବରୁ ଏହା ବଙ୍ଗଳାର ଅଂଶ ବିଶେଷ ହୋଇ ରହିଥିଲା ଓ ତା'ର କିଛି କାଳ ପୂର୍ବରୁ ଓଡ଼ିଶା ନାଗପୁର ଅଧୀନରେ ରହିଥିଲା । ଖୁବ୍ ସମ୍ଭବ, ମରହଟ୍ଟାଙ୍କ ଭୟରେ ବଙ୍ଗାଳୀ ବଣିକମାନେ ବଙ୍ଗଲାଟଙ୍କୁ

ପ୍ରଭାବିତ କରି ମରହଟ୍ଟାମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ଓଡ଼ିଶାକୁ ମରହଟ୍ଟାଙ୍କ ପାଖରେ ସମର୍ପଣ କରି ଦେଇଥିଲେ ଓ ଏହା ମଧ୍ୟ ପ୍ରଦେଶର ଅନ୍ତର୍ଭୁକ୍ତ ହେଲା । ଦ୍ୱିତୀୟ ମରହଟ୍ଟା ଯୁଦ୍ଧ ପରେ ଓଡ଼ିଶାକୁ ପୁଣି ବଙ୍ଗଳା ସହିତ ସାମିଲ କରାଗଲା । ପ୍ରସିଦ୍ଧ ଐତିହାସିକ ହଣ୍ଟର ସାହେବ ସ୍ୱୀକାର କରିଛନ୍ତି, ଓଡ଼ିଶାର ଦୈନ୍ୟ ଏବଂ ଦୁର୍ଭିକ୍ଷ ଲାଗି ଇଂରେଜ ମାନେ ହିଁ ଦାୟୀ ।

ପଣ୍ଡିତ ଦାସ କ୍ଷୋଭ ପ୍ରକାଶ କରି କହିଲେ, ଓଡ଼ିଶାକୁ ଏକ ପଣ୍ୟରୂପେ ବ୍ୟବହାର କରାଯାଇଚି । ବିଭିନ୍ନ ସମୟରେ ବିଭିନ୍ନ ପ୍ରଦେଶର ନିରାପତ୍ତା ଓ ସୁଖସୁବିଧାପାଇଁ ଓଡ଼ିଶାକୁ ଖଣ୍ଡ ବିଖଣ୍ଡିତ କରି ବିଭିନ୍ନ ପ୍ରଦେଶ ସହିତ ଯୋଡ଼ି ଦିଆଯାଇଚି । ଶେଷରେ ଏହାକୁ ବିହାର ସହିତ ଯୋ ବା ପାଇଁ ଏକ ଅପଚେଷ୍ଟା କରାଯାଇଚି । କୁହାଯାଉଚି ବିହାରକୁ ଏକ ସାମୁଦ୍ରିକ ଉପକୂଳର ସୁବିଧା ଦେବାପାଇଁ ଏପରି କରାଯାଇଚି । କିନ୍ତୁ ଏବେବି ଓଡ଼ିଶାରେ କୌଣସି ବନ୍ଦର ପ୍ରତିଷ୍ଠା କରାଯାଇଚି କି ? ଓଡ଼ିଶା ସମୁଦ୍ର ଉପକୂଳ ଅଞ୍ଚଳର ଉନ୍ନତି ନିମନ୍ତେ କୌଣସି ଉଦ୍ୟମ କରାଯାଇଚି କି ?

ବିହାର ସହିତ ସମସ୍ତ ସଂପର୍କ ଛିନ୍ନ କରି ଦେବାକୁ ଚାହାନ୍ତି କି ବୋଲି ମଧ୍ୟ ପ୍ରଦେଶର ଜଣେ ସଭ୍ୟଙ୍କ ପ୍ରଶ୍ନର ଉତ୍ତରରେ ପଣ୍ଡିତ ଦାସ କହିଲେ, ଆମେ ଆସାମ ବା ମଧ୍ୟ ପ୍ରଦେଶ ଭଳି ଏକ ସ୍ୱତନ୍ତ୍ର ପ୍ରଦେଶ ହୋଇ ରହିବାକୁ ଚାହୁଁ । ଲୋକସଂଖ୍ୟା ଏବଂ ଆୟ ଦୃଷ୍ଟିରୁ ଓଡ଼ିଶା ସହିତ ପ୍ରାୟ ସମାନ ହେଲେ ମଧ୍ୟ ଆସାମକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରାଗଲା । ସ୍ୱତନ୍ତ୍ର ହାଇକୋର୍ଟ ଓ ବିଶ୍ୱବିଦ୍ୟାଳୟ ନ ଥାଇ ମଧ୍ୟ ଆସାମ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ସ୍ୱୀକୃତି ପାଇଚି । ଅତୀତରେ ଓଡ଼ିଶା ନିଜର ସ୍ୱତନ୍ତ୍ର ବଜାୟ ରଖିଥିବା କଥା ମୁଁ ପୂର୍ବରୁ ଦର୍ଶାଇଚି । ମାତ୍ର ପ୍ରାୟ ଦୁଇ ଶହ ବର୍ଷ ହେଲା ଇଂରେଜ ସରକାରଙ୍କ କାରସାଦିରୁ ଏହାକୁ ବିଭିନ୍ନ ପ୍ରଦେଶ ସହିତ ଯୋଡ଼ି ଦିଆଯାଇଚି । ତେଣୁ ଏବେ ଆର୍ଥିକ ଦୁର୍ଗତିର ଆଶଙ୍କା ସତ୍ତ୍ୱେ ଆମେ ଏକ ସ୍ୱତନ୍ତ୍ର ପ୍ରଦେଶ ଚାହିଁବା ସ୍ୱାଭାବିକ । ତେବେ, ଯେହେତୁ ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳର ଏକତ୍ରୀକରଣ ନିମନ୍ତେ ଏଠି ଆଲୋଚନା ଚାଲିଛି, ତେଣୁ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠନ କରିବା ବିଷୟ ମୁଁ ଏଠାରେ ଉଠାଉ ନାଇ । ମାତ୍ର ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ହିଁ ଆମର ଲକ୍ଷ୍ୟ ।

ପଣ୍ଡିତ ଦାସ ଭାଷଣ ପ୍ରସଙ୍ଗରେ ଉଲ୍ଲେଖ କରିଥିଲେ ଯେ ବିହାର ଭିତରେ ଓଡ଼ିଶା ଡିଭିଜନର ଆକାର ବୃଦ୍ଧି କରିବାପାଇଁ ବାରମ୍ବାର ଏହିପରି କୁହାଯାଉଛି ଓ ପ୍ରସ୍ତାବମାନ ଅଣାଯାଇଚି । ବିହାର ଓ ଓଡ଼ିଶା ବ୍ୟବସ୍ଥା ପରିଷଦରେ 1921ରେ ଏହିପରି ଏକ ପ୍ରସ୍ତାବ ଆସି କାଟ ଖାଇଯାଇଥିଲା । କିନ୍ତୁ ଏହି ପ୍ରସ୍ତାବରେ ଟିକିଏ ପରିବର୍ତ୍ତନ କରି "ବିହାର ଓ ଓଡ଼ିଶା ଶାସନାଧୀନ"ରେ ଓଡ଼ିଶା ଡିଭିଜନର ବିଚ୍ଛିନାଞ୍ଚଳର ଏକତ୍ରୀକରଣ ପ୍ରସ୍ତାବ ଆସିଲାବେଳେ ତାହା ଗୃହୀତ ହୋଇଗଲା । ତେଣୁ ଏଠି

ସଂଶୋଧନ ପ୍ରସ୍ତାବରେ ଏକ ଶାସନାଧୀନରେ ରହିବା କଥା କହିଲବେଳେ ମୁଁ ଓଡ଼ିଶାକୁ ବିହାର ଓ ଓଡ଼ିଶା ଅଧୀନରେ ରହିବା ସ୍ୱତନ୍ତ୍ର ପ୍ରଦେଶ ହୋଇ ରହିବା କଥାରେ ଛନ୍ଦି ହୋଇ ନାଇ । ସ୍ୱତନ୍ତ୍ର ପ୍ରଦେଶ ହିଁ ଆମର ପରବର୍ତ୍ତୀ ଅଭିଳାଷ ।

ପଣ୍ଡିତ ଦାସ ବୁଝାଇଥିଲେ ଯେ ଯଦି ଅନ୍ୟ କୌଣସି ପ୍ରଦେଶ ସହିତ ପରୀକ୍ଷାମୂଳକଭାବେ ଓଡ଼ିଶାକୁ ଯୋଡ଼ିବା କଥା ହୁଏ, ତେବେ ତାକୁ ମଧ୍ୟ ପ୍ରଦେଶ ସହିତ ସଂଲଗ୍ନ କରିବା ଉଚିତ । କାରଣ କଟକରୁ ସମ୍ବଲପୁର ଦେଇ ପରିକଳ୍ପିତ ରେଳ ଲାଇନ ଯୋଗେ ନାଗପୁର ସହିତ ଯୋଗାଯୋଗ ସ୍ଥାପନ କରାଯାଇପାରିବ । ଏହାଛଡ଼ା ବିଶାଖାପାଟଣା ବନ୍ଦର ପାଇବାରେ ଆମର ଅନ୍ୟ ଏକ ସୁବିଧା ମଧ୍ୟ ହେବ । ତାହା ଯଦି ନ ହୁଏ, ବଙ୍ଗଳା ସହିତ ମଧ୍ୟ ଆମକୁ ମିଶାଇ ଦିଆଯାଇପାରେ । ତଦ୍ୱାରା ହାଇକୋର୍ଟ ଓ ବିଶ୍ୱବିଦ୍ୟାଳୟର ସୁବିଧା ଛଡ଼ା ଓଡ଼ିଶାର ଯେ କୌଣସି ସ୍ଥାନରୁ 12 ଘଣ୍ଟାରେ ରାଜଧାନୀ କଲିକତାରେ ପହଞ୍ଚି ହେବ । ବିହାର ସହିତ ଆମକୁ ସଂଯୁକ୍ତ କରି ରଖିବାରେ କି ମାଧୁର୍ଯ୍ୟ (Charm) ଅଛି, ମୁଁ ବୁଝିପାରୁନାଇ । ରାଜଧାନୀ ପାଟଣା ଆମଠାରୁ ବହୁ ଦୂରରେ । ପୁଣି ଇତିହାସରେ ବଙ୍ଗଳା କିମ୍ବା ମଧ୍ୟ ପ୍ରଦେଶ ଛଡ଼ା ଅନ୍ୟ କୌଣସି ପ୍ରଦେଶ ସଙ୍ଗେ ଆମକୁ କେବେ ରଖାଯାଇ ନ ଥିବା କଥା, ମୁଁ ଆଗରୁ ଦର୍ଶାଇଚି । 1911ରୁ ବଙ୍ଗ ବିଚ୍ଛେଦ ରଦ୍ଦ କରି ବିହାରକୁ ଟିକିଏ ସୁବିଧା ଦେବାପାଇଁ ଆମକୁ ବିହାର ଅଧୀନରେ ରଖାଯାଇଚି । ତଥାପି ଯଦି ସରକାର ଆମକୁ ବିହାର ଅଧୀନରେ ରଖିବାକୁ ଚାହୁଁଥାନ୍ତି ଓ ତହିଁରେ ଆମେ ଆମର ଭାଗ୍ୟ ଆଦରିବାକୁ ବାଧ୍ୟ ହେଉଁ, ତେବେ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରିତ କରି ବିହାର ଅଧୀନରେ ରଖନ୍ତୁ । ଆମେ ବର୍ତ୍ତମାନ ଏ ଇଂରେଜ ସରକାରଙ୍କର ଅଧୀନରେ ଗୋଟିଏ ମୃତଜାତି ରୂପେ ରହିଚୁ । ଏପରି ପରିସ୍ଥିତିରେ କେଉଁ ପ୍ରଦେଶରେ ରହିବୁ ତାହା ଲେଡ଼ିବାର ଅବକାଶ ଏବେ ଆମର ନାହିଁ । କେବଳ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରିବାକୁ ଆମେ ଏଠି ଏବେ ଚାହିଁଚୁ, ତାହା ନ ହେବା ପର୍ଯ୍ୟନ୍ତ ଆମେ ଆନ୍ଦୋଳନରୁ କ୍ଷାନ୍ତ ହେବୁନାଇ । ଶାନ୍ତ ହେବୁ ନାଇ ।

ଗୋଟିଏ ଉପପ୍ରଦେଶ ପ୍ରସ୍ତାବ ମଧ୍ୟ ଉଠିଛି—ମୁଁ କିମ୍ବା ମାନ୍ୟବର ଘରୋଇ ବିଭାଗ ସଭ୍ୟ, ଏହା ବାସ୍ତବରେ କ'ଣ ବୁଝୁନାହୁଁ । ଗୋଟିଏ ପ୍ରଦେଶକୁ ଉପପ୍ରଦେଶ କହିବା ଅସଂଗତ, ( Somewhat odd) । ଉପପ୍ରଦେଶ ବୋଇଲେ ଗୋଟିଏ ହାଇକୋର୍ଟ ଓ ବିଶ୍ୱବିଦ୍ୟାଳୟ ବିହୀନ ଏକ ପ୍ରଦେଶ ବୋଲି ମୁଁ ବୁଝେ । ଏ ସମସ୍ତ ଖର୍ଚ୍ଚ ତୁଲାଇବା ଆମ ପ୍ରଦେଶର ଆର୍ଥିକ ଅବସ୍ଥା ଦୃଷ୍ଟେ ସଂଭବ ନୁହେଁ ବୋଲି କୁହାଯାଉଥିଲେ ହେଁ ହାଇକୋର୍ଟ ଓ ବିଶ୍ୱବଦ୍ୟାଳୟ ସମେତ ସବୁର ଖର୍ଚ୍ଚ ଆମେ କୌଣସି ମତେ ତୁଲାଇ ପାରିବୁ ବୋଲି ମୋର ଦୃଢ଼ ମତ । କିନ୍ତୁ ଆମ ଭାଗ୍ୟନିୟଂତାମାନେ ଏହା ସମ୍ଭବ ନୁହେଁ ବୋଲି ଯଦି ଦେଖନ୍ତି, ତେବେ ଆସାମ ସଦୃଶ ଗୋଟିଏ ପ୍ରଦେଶ

ଆମକୁ ଦିଆଯାଉ । ଉପପ୍ରଦେଶ କେବଳ ନାମତଃ ଅପମାନ ସୂଚକ ନୁହେଁ, ତଦ୍ୱାରା ଆମକୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିବ ବୋଲି ଆମ ଲୋକଙ୍କର ଆଶଙ୍କା ।

ଏହାପରେ ପଣ୍ଡିତଜୀଙ୍କର ସମସ୍ତ ଓଡ଼ିଆ ଭାଷାଭଷୀ ଅଞ୍ଚଳକୁ ଓଡ଼ିଶା ଡିଭିଜନ ସହିତ ଏକତ୍ରକରି ବିହାର ଓଡ଼ିଶା ଅଧୀନରେ ରଖିବା ପ୍ରସ୍ତାବ ଗୃହୀତ ହୋଇଥିଲା ।

ନୀଳକଣ୍ଠଙ୍କ ପ୍ରସ୍ତାବକୁ ସମର୍ଥନ କରି ତା 19-2-1927ରେ ପଣ୍ଡିତ ଗୋପବନ୍ଧୁ "ସମାଜ" ରେ 'ଦେଶ ମିଶ୍ରଣ ପ୍ରସଙ୍ଗ' ଶିରୋନାମାରେ ଏକ ଅଗ୍ରଲେଖା ଲେଖିଥିଲେ । ତାହା ହେଲା, "ପଣ୍ଡିତ ନୀଳକଣ୍ଠ ଦାସ ବେଳକାଳ ଉଣ୍ଡି ଦେଶ ମିଶ୍ରଣ ପ୍ରସ୍ତାବ ବଡ଼ଲାଟ ସଭାରେ ଆଣିଥିଲେ । ମୁଡ଼ିମ୍ୟାନ ସାହେବ ଅଳ୍ପ ଦିନ ତଳେ ଓଡ଼ିଶା ବୁଲି ଯାଇଛନ୍ତି । ଓଡ଼ିଶାର କେତେ ଲୋକଙ୍କ ମୁହଁରୁ ଓଡ଼ିଆମାନଙ୍କ ଆପତ୍ତି ଅଭିଯୋଗ-ମାନ ଶୁଣି ଯାଇଛନ୍ତି ।" × × × ନୀଳକଣ୍ଠଙ୍କୁ ଜବାବ ଦେଇ ମୁଡ଼ିମ୍ୟାନ ସାହେବ ତାଙ୍କର ଓଡ଼ିଶା ଆସିଥିବା କଥା ମଧ୍ୟ କହିଲେ । ଓଡ଼ିଆଙ୍କର ସ୍ୱତନ୍ତ୍ର ଶିଳ୍ପ, ସଭ୍ୟତା ଜାତୀୟତା ମଧ୍ୟ ସ୍ୱୀକାର କଲେ । × × × ଏତେ ଦିନ ସରକାର ଯାହା ଭଲ ରୂପେ ବୁଝିଲା ଏବଂ ଓଡ଼ିଆ ସମସ୍ୟାର ଏକ ମାତ୍ର ପ୍ରତିକାର ବୋଲି ଯେ ମାନିଲା ତାହା ଭାଗ୍ୟର କଥା । ନୀଳକଣ୍ଠ Sub-Provinceର କଥା ନ ଉଠାଇ ଦେଶ ମିଶ୍ରଣ ପ୍ରସଙ୍ଗକୁ ଜଟିଳ ନ କରିବା ଠିକ୍ ହୋଇଛି । + + + "ଶୀଘ୍ର ଦେଶ ମିଶ୍ରଣର ବ୍ୟବସ୍ଥା ନ ହେଲେ ଓଡ଼ିଆ ଶାନ୍ତ ଓ କ୍ଷାନ୍ତ ହେବ ନାହିଁ ବୋଲି ପଣ୍ଡିତ ନୀଳକଣ୍ଠ ଟାଣରେ ଯାହା ବଡ଼ଲାଟ ସଭାରେ କହିଲେ ଓଡ଼ିଆମାନେ ତହିଁର ପ୍ରମାଣ ଦେବା ଲାଗି ଆଜହୁଁ ପସ୍ତୁତ ହେବା ଉଚିତ ।"

ଖାଲି ସେତିକି ନୁହେଁ—"ପଣ୍ଡିତ ନୀଳକଣ୍ଠଙ୍କର ଏ ସଂପର୍କୀୟ ଲେଖା ବାହାରର ପତ୍ରପତ୍ରିକା ମାନଙ୍କରେ ବାହାରିଲେ ପଣ୍ଡିତ ଗୋପବନ୍ଧୁ ତାଙ୍କ ନୀଳକଣ୍ଠଙ୍କ କୃତି ସବୁ କାଠଯୋଡ଼ି କୂଳଠାରୁ ଆରମ୍ଭ କରି କଟକ ସହର ତମାମ ବୁଲି ବୁଲି ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଦେଖାଇ ପଢ଼ାଇ ମଧ୍ୟ ଗର୍ବ ଅନୁଭବ କରୁଥିଲେ । ନୀଳକଣ୍ଠଙ୍କ ଭାଷାରେ ମୃତ୍ୟୁ ପୂର୍ବରୁ ଗୋପବନ୍ଧୁ ବାବୁ ମୋ କାର୍ଯ୍ୟର ବଡ଼ ଆଗ୍ରହ ଓ ଆଦର ପ୍ରକାଶ କରୁଥିବାର ମୁଁ ଜାଣେ ।"

1929 ମସିହାରେ ଜାମସେଦପୁର ଟିଣପଟା କାରଖାନାରେ ଶ୍ରମିକ ଆନ୍ଦୋଳନ ଚାଲିଥିଲା। ନୀଳକଣ୍ଠ ଏହି ସମସ୍ୟାର ସମାଧାନପାଇଁ ଇସ୍ପାତ ସୁରକ୍ଷା ଆଇନ, 1927 ରେ ଏକ ସଂଶୋଧନୀ ପ୍ରସ୍ତାବ ଆଣି କହିଥିଲେ (ତା 24-9-1929), "ଧର୍ମଘଟ ଘେନି ସେଠାରେ ଶ୍ରମିକଙ୍କ ଉପରେ ଘୋର ଅତ୍ୟାଚାର କରାଯାଉଛି । ଫଳତଃ ଭାରତୀୟ କରଦାତାଙ୍କର କ୍ଷତିକରି ଏହି ସଂସ୍ଥାକୁ ସ୍ୱତନ୍ତ୍ର ସୁବିଧା ଦେବାର ଆବଶ୍ୟକତା ଆଉ ନାହିଁ ।" କଂଗ୍ରେସ

ତରଫରୁ ବ୍ୟବସ୍ଥାପକ ସଭାର ନେତା ମଧ୍ୟ ଏହି ପ୍ରସ୍ତାବକୁ ସମର୍ଥନ କରିଥିଲେ ଏବଂ ଏହି ପ୍ରସ୍ତାବ 51-42 ଭୋଟରେ ଗୃହୀତ ହୋଇଥିଲା । ଏହା ଥିଲା ନୀଳକଣ୍ଠଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ବିଜୟ ଏବଂ ଏଥିରେ ସରକାର ପରାସ୍ତ ହୋଇଥିଲେ । ସେହିବର୍ଷ ନୀଳକଣ୍ଠ ଅର୍ଥ ବିଲ୍‌ର ସମାଲୋଚନା କରି ଏକ ସଂଶୋଧନ ପ୍ରସ୍ତାବ ଆଗତ କରି କହିଥିଲେ, "ଲବଣ ହିଁ ମୁଖ୍ୟତଃ ଏହି ଅର୍ଥବିଲ୍ ଉପରେ ଆପତ୍ତିର କାରଣ" କର ଏକ ପୋଲ୍‌ଟ୍ୟାକସ ବା ଏକ ଜିଜିଆକର । ଏହା ଫଳରେ ଖାଦ୍ୟ ଉପରେ ଟିକସ ବସାଯାଉଛି । ଫଳତଃ ଦରୀଦ୍ରତମ ବ୍ୟକ୍ତିହିଁ ବିଶେଷ କଷ୍ଟଭୋଗ କରିବ । ଲବଣରୁ ରାଜସ୍ୱ ଉଠାଇବା ଉଚିତ ନୁହେଁ । ଅର୍ଥ ବିଲ୍‌ରେ ଯେଉଁ ଟିକସ ବସାଇବାର ପ୍ରସ୍ତାବ ରହିଛି ସେହି ଟିକସ ଏ ଦେଶରେ ଉତ୍ପାଦିତ ଲବଣ ଉପରେ ବସା ନଯାଇ ବିଦେଶରୁ ଆମଦାନୀ କରାଯାଉଥିବା ଲବଣ ଉପରେ ବସାଯିବା ଉଚିତ । ଏଥିରୁ ଭାରତୀୟ ଅର୍ଥନୀତିରେ ନୀଳକଣ୍ଠଙ୍କର ଗଭୀର ଜ୍ଞାନଥିବା ସ୍ପଷ୍ଟ ହୁଏ ଏବଂ ଏହି ମତକୁ କଂଗ୍ରେସ ସଭ୍ୟମାନେ କରତାଳି ଦ୍ୱାରା ସମର୍ଥନ କରିଥିଲେ ।

1936 ମାର୍ଚ୍ଚ 23 ତାରିଖରେ ସୁବାଷ ବୋଷଙ୍କ ଭାରତକୁ ଆସିବା ଉପରେ ଥିବା କଟକଣାକୁ ଉଠାଇଦେବା ଲାଗି ନୀଳକଣ୍ଠ ଏକ ମୁଲତବୀ ପ୍ରସ୍ତାବ ଆଗତ କରିଥିଲେ । ଏହି ପ୍ରସଙ୍ଗରେ ଶ୍ରୀଯୁକ୍ତ ଜିନ୍ନା ଓ ତାଙ୍କ ସମର୍ଥକଗଣ ନିରପେକ୍ଷ ରହିଲେ ହେଁ, ପ୍ରସ୍ତାବଟି 65-56 ଭୋଟରେ ଗୃହୀତ ହୋଇଥିଲା । ସେହି ବର୍ଷ ଏପ୍ରିଲ 14 ତାରିଖରେ ନୀଳକଣ୍ଠ ଏକ ପ୍ରସ୍ତାବ ଆଣି କ୍ଷୁଦ୍ରଶିଳ୍ପ ଓ କୁଟୀର ଶିଳ୍ପ ସଂସ୍ଥାମାନଙ୍କ କ୍ଷେତ୍ରରେ କରଭାର ଲଘବ କରିବା ଓ କେତେକ ସରକାରୀ ସାହାଯ୍ୟ ଦେବାକୁ ଯୁକ୍ତି କରିଥିଲେ । ସରକାରଙ୍କ ଘୋର ବିରୋଧ ସତ୍ତ୍ୱେ ଏହି ପ୍ରସ୍ତାବ କିନ୍ତୁ ଗୃହୀତ ହୋଇଥିଲା । ଏହା ବ୍ୟତୀତ ସେ ଲାଖ ଟିକସ ସଂଶୋଧନ ବିଲ୍, ଭାରତୀୟ ଶୁଳ୍କବିଲ୍, ଆର୍ଯ୍ୟ ବିବାହ ବୈଧୀକରଣ ବିଲ୍, ଭାରତୀୟ କଂପାନୀ ବିଲ୍ ପ୍ରଭୃତିରେ ବହୁ ଗୁରୁତ୍ୱପୂର୍ଣ୍ଣ ମତାମତ ଦେଇଥିଲେ ।

## ଓଡ଼ିଶାର ଆର୍ଥିକବସ୍ଥାର ଉନ୍ନତିପାଇଁ ଦାବି

1935 ଅର୍ଥବିଲ୍ ଉପରେ ଆଲୋଚନା କରି ନୀଳକଣ୍ଠ ଓଡ଼ିଶାକୁ କିପରି ଅବହେଳା କରାଯାଉଛି, ତାର ଏକ ସ୍ପଷ୍ଟ ଚିତ୍ର ପଦାନ କରିଥିଲେ । ଓଡ଼ିଶାର ମୟୂରଭଞ୍ଜ ଓ କେନ୍ଦୁଝରରେ ଉତ୍କୃଷ୍ଟ ଲୌହ ସମ୍ପଦ ଥିଲେ ସୁଦ୍ଧା ଓଡ଼ିଶାର ବିକାଶରେ ସାହାଯ୍ୟ ନକରି ତାକୁ ଦରିଦ କରାଯାଇଛି ବୋଲି ମତଦେଇ ସେ କହିଥିଲେ (ତା 13-5-1935) "ଏହି ସରକାର ଓଡ଼ିଶାକୁ ବିଗତ ଦେଢ଼ଶହ ବର୍ଷ ହେଲା ଅବହେଳା କରି ଆସିଛନ୍ତି ଏବଂ ଓଡ଼ିଶାର ସ୍ୱାର୍ଥ-ପ୍ରତି କୌଣସି ଦୃଷ୍ଟି ଦେଇନାହାନ୍ତି । ଫଳରେ ଓଡ଼ିଶା ଏବେ ଏକ ଦରିଦ୍ର ପ୍ରଦେଶରେ ପରିଣତ ହୋଇଛି । ............................ ସରକାରଙ୍କ ତରଫରୁ ଓଡ଼ିଶାକୁ 25—30 ଲକ୍ଷ ଟଙ୍କା ସାହାଯ୍ୟ ଦିଆଯିବାର କଥା କହିଲାବେଳେ ଆପଣମାନେ ଉପହାସ କରୁଛନ୍ତି । କିନ୍ତୁ ମୁଁ ଏ ଟଙ୍କା ପାଇଁ ଦାବି କଲାବେଳେ ଏହା ଯେ ଆମର

ଯୁକ୍ତିଯୁକ୍ତ ପାଉଣା, ଏହା ଜଣାଇବାକୁ ଚାହେଁ । ମୁଁ ସର୍ବଦା ଏଥିଲାଗି ସାହାଯ୍ୟ ଚାହୁଁଛି, କାରଣ ଆମେ ଦରିଦ୍ର ଓ ସେଥିଲାଗି ଆମକୁ ରକ୍ଷା କରିବାପାଇଁ ଆମେ ତାର ମୂଲ୍ୟ ଦେଇଆସୁଛୁ । ଆମ ପ୍ରଦେଶରେ କୌଣସି ଶିଳ୍ପ ନାହିଁ । ଏଠି କେତେକ ଶିଳ୍ପ କାରଖାନା ବସାନ୍ତୁ, ମୁଁ ଖୁସିହେବି ।" ଛିନ୍ନମସ୍ତା ଜନନୀର କ୍ରନ୍ଦନ ସତେ ଯେମିତି ମଧୁବାବୁଙ୍କ ପରି ନୀଳକଣ୍ଠ ଶୁଣିପାରିଥିଲେ ଏବଂ ଏପରି ଆବଗେର ସହିତ ତା'ର ପ୍ରତିକାର ଦାବି କରିଥିଲେ ।

ଯୁଗଯୁଗର ଶୋଷଣ ଓ ଅବହେଳା ହିଁ ଓଡ଼ିଶାର ଅର୍ଥନୈତିକ ଅଧୋଗତି ପାଇଁ ଦାୟୀ ବୋଲି ନୀଳକଣ୍ଠ ଅନୁଭବ କରିଥିଲେ । ତେଣୁ ସେ କେନ୍ଦ୍ର ବ୍ୟବସ୍ଥାପକ ସଭାରେ ନିରନ୍ତର ଏହି ଅଭାବ ଅସୁବିଧାମାନ ଦର୍ଶାଇ ଆଶୁ ପଦକ୍ଷେପ ନେବାପାଇଁ ଇଂରେଜ ସରକାରଙ୍କୁ ଜଣାଇଥିଲେ । ଏହି ପ୍ରସଙ୍ଗରେ ସେ କହିଥିଲେ, "ଆମ ପ୍ରଦେଶରେ କୌଣସି ଶିଳ୍ପ କାରଖାନା ନାହିଁ । ସର୍ବଦା ବନ୍ୟା ହେତୁ କୃଷି ଉତ୍ପାଦନ ହ୍ରାସ ହେଉଛି ଏବଂ ତା'ଫଳରେ ବାରମ୍ବାର ଦୁର୍ଭିକ୍ଷ ପଡୁଛି । ତେଣୁ ଓଡ଼ିଶା ପ୍ରତି ଏବେ ସ୍ୱତନ୍ତ୍ର ଦୃଷ୍ଟି ଦିଆଯିବା ଆବଶ୍ୟକ ଏବଂ ଏକ ସ୍ୱତନ୍ତ୍ର ଅନୁଷ୍ଠାନ ଗଢ଼ାଯାଇ ଓଡ଼ିଶାର ଉତ୍ପନ୍ନ ଦ୍ରବ୍ୟର କିଣା ବିକାର ସୁବିଧା କରାଯିବା ଲୋଡ଼ା ।" "କି ଦୂରଦୃଷ୍ଟି" ! ଓଡ଼ିଶାର ଆର୍ଥିକାବସ୍ଥାର ଉନ୍ନତିପାଇଁ କି ଆକୁଳତା !!

## ରେଲବାଇ ଓ ଯୁଦ୍ଧନୀତି ଉପରେ ମତାମତ

1939 ଫେବୃୟାରୀ 16 ତାରିଖରେ ନୀଳକଣ୍ଠ ରେଲବାଇ ବଜେଟ ଉପରେ ଆଲୋଚନା ଆରମ୍ଭ କରିବାର ଗୌରବ ଲାଭ କରିଥିଲେ । ତାଙ୍କ ସୁଦୀର୍ଘ ଭାଷଣରେ ସେ ରେଲବାଇର କ୍ରୟନୀତିର ତୀବ୍ର ସମାଲୋଚନା କରି କହିଥିଲେ, "ରେଲବାଇର ଯେଉଁ 20 କୋଟି ଟଙ୍କାର ଜିନିଷ କ୍ରୟ କରାଯାଇଛି, ସେଥିରେ ଭାରତ ତିଆରି ଜିନିଷର ପରିମାଣ ଅତି କମ୍ ଏବଂ ଏହା ଦିନକୁଦିନ କମିବାରେ ଲାଗିଛି । ସରକାରଙ୍କ ପରିଚାଳିତ ରେଲବାଇ ସଂସ୍ଥା 1932-33 ରୁ ଶତକଡ଼ା 58.1 ଭାଗରୁ 62.9 ଭାଗ ପର୍ଯ୍ୟନ୍ତ ପଦାର୍ଥ ବିଦେଶରୁ କ୍ରୟ କରୁଛନ୍ତି ।" ଟାଟା କଂପାନୀରୁ ରେଲବାଇ ଧାରଣାଗୁଡିକ କିଣାଯିବାର ସେ ଘୋର ସମାଲୋଚନା କରିଥିଲେ ଏବଂ ରାଜତନ୍ତ୍ରର ଶୋଷଣ ନୀତିକୁ ଖୁବ୍ କଟାକ୍ଷପାତ କରିଥିଲେ ।

ନୀଳକଣ୍ଠ ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ଇଂରେଜମାନଙ୍କୁ ସମର୍ଥନ କରିଥିଲେ ହେଁ କଠୋର ସମାଲୋଚନା ମଧ୍ୟ କରିବାକୁ ପଛାଇ ନ ଥିଲେ । କଂଗ୍ରେସ ତେଣୁ ତାଙ୍କୁ ନିନ୍ଦା କରିଥିଲା । ମାତ୍ର ସେ ତାକୁ ଭ୍ରୂକ୍ଷେପ ନ କରି 1941 ମାର୍ଚ୍ଚ 28 ତାରିଖରେ କେନ୍ଦ୍ର ବ୍ୟବସ୍ଥା ସଭାରେ ଆଗତ ସଭିକ୍ ଗାର୍ଡ ସଂଶୋଧନ ପ୍ରସ୍ତାବକୁ ସମର୍ଥନ କରି କହିଥିଲେ, "ଓଡ଼ିଶା ହେଉଛି, ଇଂରେଜ ସରକାରଙ୍କ ଏକ ଅବହେଳିତ ଅଞ୍ଚଳ । ଯୁଦ୍ଧ ଆରମ୍ଭ ହେଲାପରେ ମୁଁ ସ୍ୱୀକାର କରୁଛି ଯେ ଚରଖା ଓ ଅହିଂସା ନୀତି ଉପରୁ ମୋର ବିଶ୍ୱାସ

ତୁଟିଯାଉଛି । ଅହିଂସା ଦ୍ୱାରା ଯେ ଆମ ଦେଶ ରକ୍ଷା କରାଯାଇ ପାରିବନାହିଁ ଏହା ମୋ ପରି ଅନେକ ମଧ୍ୟ ଏବେ ଅନୁଭବ କଲେଣି । ଏହି ପରିସ୍ଥିତିରେ ମୁଁ ଓଡ଼ିଶା କଂଗ୍ରେସ ସଭାପତି ପଦରୁ ଇସ୍ତଫା ଦେଲି ଏବଂ ସରକାରଙ୍କ ସହ ସହଯୋଗ କରିବାକୁ ଆସିଲି । ମୋର ଏପରି କମିଟିରେ ଯୋଗଦବା କିଛି ନୂଆକଥା ନୁହେଁ, ଯେହେତୁ ପ୍ରଥମ ବିଶ୍ୱଯୁଦ୍ଧ ବେଳେ ଗାନ୍ଧିଜୀ ମଧ୍ୟ ଇଂରେଜଙ୍କ ଯୁଦ୍ଧ ଉଦ୍ୟମରେ ସାହାଯ୍ୟ କରିଥିଲେ । ବର୍ତ୍ତମାନ ଯୁଦ୍ଧ ସମୟରେ ଆମ ଦେଶ ରକ୍ଷା ପାଇଁ ଯାହାସବୁ ଲୋଡ଼ା ତାହା ବୁଝିନେବା ଉଚିତ ଏବଂ ସେସବୁରେ ତାଲିମ ଦେବା ଉଚିତ । ତା'ହେଲେ ଯୁଦ୍ଧପରେ ମଧ୍ୟ ଦେଶ ରକ୍ଷାପାଇଁ ଆମେ ପ୍ରସ୍ତୁତ ରହିପାରିବା । ଏହି ପରିସ୍ଥିତିରେ ଆମର ଯୁବକମାନଙ୍କୁ ସୈନ୍ୟ ବିଭାଗରେ ପ୍ରବେଶ କରାଇ ଯଦି ଶିକ୍ଷିତ କରାନଯାଏ, ଯୁଦ୍ଧରେ ଯେତେ ଅର୍ଥର ଅପବ୍ୟୟ ହେଉଛି, ସେଥିରୁ ଆମେ କିଛି ଲାଭ ଉଠାଇ ପାରିବୁ ନାହିଁ ବୋଲି ବୁଝାଯିବ ।" ନୀଳକଣ୍ଠଙ୍କ ବିଗ୍ୱର ଓ ପରାମର୍ଶ କି ଦୂରଦୃଷ୍ଟି ଆଧାରିତ ସତେ !

1945 ମସିହାରେ କେନ୍ଦ୍ର ବ୍ୟବସ୍ଥାପକ ସଭାର କାର୍ଯ୍ୟକାଳ ସରିଆସିଲା । ନୀଳକଂଠ ଖାଦ୍ୟ ଓ ସ୍ୱଦେଶତ୍ୟାଗ ସ୍ଥାୟୀ ସମିତିର ସଭ୍ୟ ନିର୍ବାଚିତ ହୋଇଥିଲେ । ପୂର୍ବବର୍ଷପରି ରେଲବାଇ ବଜେଟ ଉପରେ ଗୁରୁତ୍ୱପୂର୍ଣ୍ଣ ଅଂଶଗ୍ରହଣ କରି ସ୍ଥାନୀୟ ଜନସାଧାରଣଙ୍କୁ ରେଲବାଇ ନିଯୁକ୍ତି ନ ଦେବାରୁ କଟୁ ସମାଲୋଚନା କରିଥିଲେ । ସେ ତେଣୁ ଓଡ଼ିଆ ଓ ଶିଖ ସଂପ୍ରଦାୟର ଯୁବକମାନଙ୍କୁ ଏଥିରେ ନିଯୁକ୍ତି ଦେବାକୁ ଦୃଢ଼ ଦାବି ଜଣାଇଥିଲେ । ପୂର୍ବରୁ 1943 ମସିହାରେ "ସଗୋତ୍ର ବିବାହ ଓ ବୈଧୀକରଣ" ବିଲ୍ ଉପରେ ନିଜର ସ୍ପଷ୍ଟ ମତ ଦେଇ କହିଥିଲେ, 'ହିନ୍ଦୁ ଧର୍ମ ତଥା ହିଂଦୁମାନଙ୍କୁ ପରିଚାଳିତ କରୁଥିବା ନୀତିରେ ସରକାର ହସ୍ତକ୍ଷେପ କରିବା ଉଚିତ ନୁହେଁ । ମୁଁ କୌଣସି ଆଇନ ପାସ୍ କରିବାର ବିରୋଧୀ ନୁହେଁ । ମାତ୍ର ପଣ୍ଡିତମାନଙ୍କୁ ସମାଲୋଚନା କରି ସମାଜ ଓ ଧର୍ମର ବିଶୃଙ୍ଖଳା ସୃଷ୍ଟି କରିବାର କି ଆବଶ୍ୟକତା ରହିଛି ମୁଁ ବୁଝିପାରୁ ନାହିଁ ।" ନିଜେ ସେ ଧର୍ମ ଓ ସମାଜରେ ସଂସ୍କାର ଗ୍ୱହିଁଲେ ହେଁ ଅହେତୁକ ଭାବରେ ଏହା କରିବାକୁ ସେ ଆପତ୍ତି କରିଛନ୍ତି ।

## ଜାତୀୟ ମାନ୍ୟତାପ୍ରାପ୍ତ ବ୍ୟବସ୍ଥାପକ

ଦୀର୍ଘ 22 ବର୍ଷ କେନ୍ଦ୍ର ବ୍ୟବସ୍ଥାପକ କାର୍ଯ୍ୟକାଳ ମଧ୍ୟରୁ ନୀଳକଂଠ ସର୍ବାଧିକାଳ ପାଇଁ ଏହାର ସଭ୍ୟ ଥିଲେ ଏବଂ ରାଜ୍ୟ ସ୍ତରୀୟ, ଜାତୀୟ ସ୍ତରୀୟ ଓ ଆନ୍ତର୍ଜାତୀୟ ସ୍ତରୀୟ ବହୁ ସମସ୍ୟା ଓ ଘଟଣା ଉପରେ ନିଜର ଗୁରୁତ୍ୱପୂର୍ଣ୍ଣ ମନ୍ତବ୍ୟ ଦେଇଥିଲେ । ସେ ନିଜର ବହୁମୁଖୀ ବ୍ୟକ୍ତିତ୍ୱ, ଗଭୀର ପାଣ୍ଡିତ୍ୟ ଓ ବିଚକ୍ଷଣ ପାରଦର୍ଶିତା ବଳରେ ଦଳ ମତ ନିର୍ବିଶେଷରେ ସମସ୍ତଙ୍କୁ ପ୍ରଭାବିତ କରିଥିଲେ । ସେ ବ୍ୟବସ୍ଥାପକ ସଭାର ବିଭିନ୍ନ ସମିତିରେ ସଭ୍ୟ ନିର୍ବାଚିତ ହୋଇ ସରକାରୀ ନୀତି ଓ କାର୍ଯ୍ୟର କଟୁ ସମାଲୋଚନା କରୁଥିଲେ । ବହୁ ତଥ୍ୟସମ୍ବଳିତ, ଦୂରଦୃଷ୍ଟିସଂପନ୍ନ ଓ ଓଜସ୍ୱିନୀ ଭାଷଣ ଦେଇ ସେ ଇଂରେଜ ସଭ୍ୟ

ଓ ଅଧିକାରୀମାନଙ୍କୁ ମୁଗ୍‌ଧ କରୁଥିଲେ । ବ୍ୟବସ୍ଥାପକ ସଭାର ବିଶେଷ କ୍ଷମତା ନ ଥିଲେ ହେଁ ନୀଳକଂଠ ଇଂରେଜ ସରକାରଙ୍କୁ ଅସୁବିଧାରେ ପକାଇ ପାରୁଥିଲେ ବିଭିନ୍ନ ମୁଲତବୀ ଓ କାଟ ତଥା ସଂଶୋଧନୀ ପ୍ରସ୍ତାବ ମାଧ୍ୟମରେ ।

ନୀଳକଂଠ ଜଣେ ଚିନ୍ତାନାୟକ, ଦେଶସେବକ ଓ ନିର୍ଭୀକ ନେତା ହୋଇଥିବାରୁ ସେ ଯାହା କହୁଥିଲେ ନିଜର ଅଭିଜ୍ଞତା, ସମ୍ବେଦନଶୀଳତା, ଆତ୍ମପ୍ରତ୍ୟୟ ଓ ନିଷ୍ଠାର ସହିତ । ସତ୍ୟ କହିବାରେ ସେ ତିଳେହେଲେ ପଶ୍ଚାତ୍‌ପଦ ହେଉ ନଥିଲେ ଏବଂ ନିଜ ବିବେକର ନିର୍ଦ୍ଦେଶରେ ପରିଚାଳିତ ହେଉଥିଲେ । ସେଥିପାଇଁ ଅନେକ ସମୟରେ ସେ ନିଜ ଦଳର ନିର୍ଦ୍ଦେଶ ବା ନିଜ ଗୁରୁଙ୍କ ଉପଦେଶକୁ ମଧ୍ୟ ମାନି ନାହାନ୍ତି । ଏଥିରେ ତୁଚ୍ଛ ଦାମ୍ଭିକତା ଓ ଅହମିକା ନଥିଲା, ଥିଲା ସ୍ୱୀୟ ବିଚାରସିଦ୍ଧ ଚିନ୍ତାଧାରା, ଦୃଢ଼ ଆତ୍ମବିଶ୍ୱାସ ଓ ଅକୁତୋଭୟ । ସେ ସେଥିପାଇଁ ବହୁ ଅସୁବିଧା ଓ ବାଧାବିଘ୍ନର ସମ୍ମୁଖୀନ ହୋଇଥିଲେ ହେଁ ସତ୍ୟ, ନ୍ୟାୟ, ଓ ଜନମଂଗଳପାଇଁ ସେସବୁ ବରଣ କରିଥିଲେ । ଭାରତୀୟ ଧର୍ମ ଧାରଣା, ସଭ୍ୟତା ଓ ସଂସ୍କୃତିର ରକ୍ଷାପାଇଁ, ଜାତୀୟ ବିକାଶ ଓ ନିରାପତ୍ତା ନିମନ୍ତେ ସେ କେନ୍ଦ୍ର ବ୍ୟବସ୍ଥାପକ ସଭାରେ ନିଜର ଦୃଢ଼ ମତ ଉପସ୍ଥାପନ କରୁଥିଲେ । ସର୍ବୋପରି ଅବହେଳିତ ଓଡ଼ିଆ ଜାତିର ସ୍ୱାଧୀନତା, ସ୍ୱାଭିମାନ ଓ ପ୍ରଗତିପାଇଁ ସେ ଥିଲେ ସର୍ବଦା ଯତ୍ନଶୀଳ ଓ ସଚେତନ । ତେଣୁ କେନ୍ଦ୍ରରେ ମଧ୍ୟ ଏଥିପାଇଁ ସେ ନିରନ୍ତର ସଂଗ୍ରାମ କରିଥିଲେ ଓ ସମର୍ଥ ସାରଥୀ ଭାବରେ ଓଡ଼ିଶାର ନେତୃତ୍ୱ ନେଇଥିଲେ ।

# ତୃତୀୟ ଅଧ୍ୟାୟ

## ଓଡ଼ିଶା ବିଧାନ ସଭା : ଏକ ସଂକ୍ଷିପ୍ତ ଇତିହାସ

ଦୀର୍ଘଦିନର ସଂଗ୍ରାମ ପରେ ଓଡ଼ିଶା 1936 ମସିହା ଏପ୍ରିଲ ପହିଲାରେ ଏକ ସ୍ୱତନ୍ତ୍ର ପ୍ରଦେଶ ଭାବରେ ଜନ୍ମ ନେଲା । ବିହାର, ଓଡ଼ିଶା, ମାନ୍ଦ୍ରାଜ ଓ କେନ୍ଦ୍ରୀୟ ମଧ୍ୟ-ପ୍ରଦେଶରୁ ଓଡ଼ିଆ ଭାଷାଭାଷୀ ଅଂଚଳଗୁଡ଼ିକୁ ମିଶାଇ ଭାରତ ସରକାରଙ୍କ ଓଡ଼ିଶା ଗଠନ ଆଦେଶ ବଳରେ ଏହା ରୂପାୟିତ ହେଲା । 1937 ମସିହା ମାର୍ଚ୍ଚ ଶେଷ ପର୍ଯ୍ୟନ୍ତ ଲାଟ-ସାହେବଙ୍କ ବ୍ୟକ୍ତିଗତ ଶାସନ (Personal Rule of the Governor) ଅଧୀନରେ ଓଡ଼ିଶା ପ୍ରଦେଶକୁ ରଖାଗଲା । ପ୍ରଦେଶର ପ୍ରଶାସନରେ ଲାଟସାହେବଙ୍କୁ ସାହାଯ୍ୟ କରିବା ପାଇଁ 20 ଜଣ ସଭ୍ୟଙ୍କୁ ନେଇ ଏକ ଉପଦେଷ୍ଟା ପରିଷଦ ଗଠିତ ହୋଇଥିଲା ।

### ପ୍ରଥମ ପ୍ରାକ୍-ସ୍ୱାଧୀନତାକାଳୀନ ବିଧାନ ସଭା, 1937

ଭାରତ ସରକାରଙ୍କ ଆଇନ, 1935 ଅନୁସାରେ ଓଡ଼ିଶା ବିଧାନ ସଭାର ମୋଟ ସଭ୍ୟ ସଂଖ୍ୟାଥିଲା ୬0 ଏବଂ ସେମାନଙ୍କ ମଧ୍ୟରୁ 4 ଜଣ ମନୋନୀତ ହେଉଥିଲେ । 1937 ମସିହା ଜାନୁଆରୀ 1୪ରୁ 23 ତାରିଖ ପର୍ଯ୍ୟନ୍ତ ସୀମିତ ଭୋଟାଧିକାର ଅନୁସାରେ ନିର୍ବାଚନ କରାଯାଉଥିଲା । ପୂର୍ବରୁ କୁହାଯାଇଛି ଯେ ଏହି ସୀମିତ ଭୋଟାଧିକାର ଶିକ୍ଷା, କ୍ଷମତା ଓ ଅର୍ଥବଳ ଅନୁଯାୟୀ ସ୍ଥିରୀକୃତ ହେଉଥିଲା । ତେଣୁ ଅଧିକ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ଯଥା ଧନୀ, ଜମିଦାର, ବଣିକ, ରାଜା, ମହାରାଜା ପ୍ରମୁଖ ଏହି ନିର୍ବାଚନରେ ଅଧିକ ସୁଯୋଗ ପାଉଥିଲେ । ଇଂରେଜ ସରକାରଙ୍କ ଛତ୍ରଛାୟାରେ ସେମାନେ କେବଳ ନିରାପଦ ନ ଥିଲେ, ଅର୍ଥ ଓ କ୍ଷମତା ବଳରେ ସେମାନେ ବଳୀୟାନ ଥିଲେ । ପକ୍ଷାନ୍ତରରେ କଂଗ୍ରେସ ତରଫରୁ ଯେଉଁ ପ୍ରାର୍ଥୀମାନେ ସୀମିତ ସଂଖ୍ୟାରେ ନିର୍ବାଚନରେ ଭାଗ ନେଉଥିଲେ, ସେମାନେ ଇଂରେଜ ସରକାରଙ୍କ ବିରାଗଭାଜନ ତ ହେଉଥିଲେ, ଅର୍ଥାଭାବର ସମ୍ମୁଖୀନ ହେବା ସଂଗେ ସଂଗେ କ୍ଷମତା ସେମାନଙ୍କର ପ୍ରତିକୂଳ ଥିଲା ।

ପଣ୍ଡିତ ନୀଳକଂଠ ଦାସ "ଓଡ଼ିଶା ଆସେମ୍ବ୍ଲିର ଆଦି ନିର୍ବାଚନ" ଶୀର୍ଷକ ନିବଂଧ (ନୀଳକଂଠ ସ୍ମାରକୀ, 19୪2 ପୃ.124) ରେ ଲେଖିଛନ୍ତି, " 1936 ମସିହାର ଭାରତୀୟ ସାଧାରଣ ନିର୍ବାଚନବେଳେ ମୁଁ ଉତ୍କଳ ପ୍ରାଦେଶିକ କଂଗ୍ରେସର ସଭାପତି ଥିଲି । ଏହା ପୂର୍ବରୁ ଟିକିଏ ଇତିହାସ ଅଛି । " 1935 ମସିହା ଭାରତ ଶାସନ ଆଇନ ଅନୁସାରେ ନିର୍ବାଚନ ହୋଇଥିଲା । ମାତ୍ର ତାହାର ଫଳାଫଳକୁ ନେଇ ଇଂରେଜ ସରକାର ତାଙ୍କ ଲକ୍ଷ୍ୟ ପୂରଣ କରିପାରିଲେ ନାହିଁ । ନୀଳକଂଠ ତେଣୁ ଲେଖିଛନ୍ତି, "ଫଳରେ ତା' ହୋଇପାରି ନ ଥିଲା ଓ ପ୍ରାଦେଶିକ ନିର୍ବାଚନ ହେବାର ସ୍ଥିର ହେଲା । ....... ଏହି ଦୂରାଗ୍ରହ ଭିତରେ ଅନ୍ୟାନ୍ୟ ପ୍ରଦେଶ ପରି ଓଡ଼ିଶାରେ ମଧ୍ୟ ନିର୍ବାଚନ ଉଦ୍ୟମ କରିବାକୁ ହୋଇଥିଲା

ମାତ୍ର ଓଡ଼ିଶାର ରାଜନୀତିଜ୍ଞମାନେ ଅତି ସଂଦେହରେ ଥିଲେ । ପ୍ରଥମ କଥା—ରାଜା, ଜମିଦାର ପ୍ରଭୃତିଂକ ବିରୁଦ୍ଧରେ ଲଢ଼ି ଜୟୀ ହେବାର ସେମାନଙ୍କର ଭରସା ନଥିଲା । କଂଗ୍ରେସର କେତେକ ପ୍ରଧାନ ରାଜନୀତିଜ୍ଞ ଏକଥା ମଧ୍ୟ ପ୍ରକାଶ କରିଥିଲେ । ଦ୍ୱିତୀୟ କଥା— ଅନୁଗୁଳ, ସମ୍ବଲପୁର ଓ କୋରାପୁଟ ପ୍ରଭୃତି ଇଂରେଜ ସରକାରଙ୍କ ହସ୍ତମୁଦି ମାହାଲମାନଙ୍କରେ ପଶି ଭୋଟ ସଂଗ୍ରହ କରିବା ପାଇଁ କେତେକଙ୍କର ସାହସ ହେଉନଥିଲା । ସଭାପତି ଭାବରେ ଏହିପରି ଏକ ଗୋଲକଧନ୍ଦାରେ ପଡ଼ିଥିଲେ ହେଁ, ମୁଁ ଅତି ଦୃଢ଼ ଭାବରେ କଂଗ୍ରେସର ନିର୍ବାଚନ ଓଡ଼ିଶାରେ କରିବି ଓ କୃତକାର୍ଯ୍ୟ ହେବି ବୋଲି ବାହାରିଥିଲି" । କି ଦୃଢ଼ ମନୋବଳ ଓ କର୍ମନିଷ୍ଠା !

ନୀଳକଣ୍ଠ ମଧ୍ୟ କହିଛନ୍ତି ଅର୍ଥର ଏକାନ୍ତ ଅଭାବ ଓ ଲୋକମାନଙ୍କର ଭୟ ନିର୍ବାଚନ କ୍ଷେତ୍ରରେ ପ୍ରଥମ ଓ ପ୍ରଧାନ ପ୍ରତିବନ୍ଧକ ହୋଇଥିଲା । କଂଗ୍ରେସ ପ୍ରାର୍ଥୀମାନଙ୍କୁ ଚାନ୍ଦା ଓ ଭୋଟ ଦେବାକୁ ମଧ୍ୟ ସେମାନେ ପଛାଉଥିଲେ । ସ୍ୱର୍ଗତ ବୁଲାଭାଇ ଦେଶାଇ ଓ ଗୋବିନ୍ଦବଲ୍ଲଭ ପନ୍ଥ ଭାରତୀୟ କଂଗ୍ରେସ ପାର୍ଲାମେଣ୍ଟାରୀ ଦଳର ଯଥାକ୍ରମେ ସଭାପତି ଓ ଉପସଭାପତି ଥିଲେ । ଦିନେ ସିମଲାରେ ସେମାନଙ୍କ ସହିତ ନୀଳକଣ୍ଠ ଥିଲାବେଳେ ମାତ୍ର 6 ହଜାର ଟଙ୍କା ନିର୍ବାଚନ ଖର୍ଚ୍ଚ ପାଇଁ ମାଗିଥିଲେ । ବୁଲାଭାଇଙ୍କୁ ଏ ଅର୍ଥ ଅପସନ୍ଦ ଲାଗିଲା । ସେ ଗୋବିନ୍ଦବଲ୍ଲଭଙ୍କୁ ଡାକି କହିଲେ "ଏମାନେ ତ ନିର୍ବାଚନଟାକୁ ବଡ ସହଜ କାମ ବୋଲି ମନେ କରନ୍ତି । ନୀଳକଣ୍ଠ ଦାସ ମତେ ଗୋଟିଏ ସାପ୍ତାହିକ ପ୍ରଚାରପତ୍ର ପାଇଁ 3 ହଜାର ଓ ନିର୍ବାଚନ ଖର୍ଚ୍ଚ ପାଇଁ ମାତ୍ର ଆଉ 3 ହଜାର ଟଙ୍କା ମାଗୁଛନ୍ତି ।"

ନୀଳକଣ୍ଠ ଏଥିରେ ଲଜ୍ଜିତ ହୋଇଥିଲେ । ମାତ୍ର ଏଇ 6 ମାସ ହଜାର ଟଙ୍କା ସହିତ ଆଉ ଦୁଇ ହଜାର ଟଙ୍କା ଓ ଓଡ଼ିଶାରେ କଂଗ୍ରେସ ସଭାପତି ଜବାହାରଲାଲଙ୍କୁ ବୁଲାଇ ସେ ଆଉ ପ୍ରାୟ ଦୁଇ ହଜାର ଟଙ୍କା ଆୟ କରିଥିଲେ । ଓଡ଼ିଶା କଂଗ୍ରେସରୁ ମୋଟ 37 ଜଣ ପ୍ରାର୍ଥୀ ଉକ୍ତ ନିର୍ବାଚନରେ ଠିଆ ହୋଇଥିଲେ ଏବଂ ଏମାନଙ୍କ ମଧ୍ୟରୁ 36 ଜଣ ନିର୍ବାଚିତ ହୋଇଥିଲେ । କେବଳ ଧର୍ମଶାଳାର ପ୍ରାର୍ଥୀ କୌଣସି ବିଶେଷ କାରଣରୁ ପରାସ୍ତ ହୋଇଥିଲେ । ନୀଳକଣ୍ଠ ତେଣୁ ଲେଖିଛନ୍ତି, "ଏବଂ ନିର୍ବାଚନ ଓ ସେତେବେଳର ଜୟପୁର, ପାରଳା ଓ କନିକା ପ୍ରଭୃତିଙ୍କ ନେତୃତ୍ୱରେ ଗଢା ହୋଇଥିବା ରାଜା ଓ ଜମିଦାରଙ୍କ ଦଳ ଛଡା ଅନ୍ୟ ରାଜନୀତିକ ଦଳ ବୋଲି ପ୍ରାୟ କିଛି ନଥିଲା" ।

1937 ବିଧାନ ସଭାକୁ କଂଗ୍ରେସ ଦଳରୁ 36 ଜଣ ପାରଳା ମହାରାଜାଙ୍କ ଜାତୀୟ ଦଳ 13 ଜଣ ଓ ନିଖିଳ ଓଡିଶା ମିଳିତ ଦଳ ଓ ଅନ୍ୟମାନଙ୍କ ମଧ୍ୟରୁ 6 ଜଣ ନିର୍ବାଚିତ ହୋଇଥିଲେ । ଶ୍ରୀ ବିଶ୍ୱନାଥ ଦାଶ କଂଗ୍ରେସ ଦଳର ନେତା ନିର୍ବାଚିତ ହୋଇଥିଲେ ।

ଏହି କ୍ଷେତ୍ରରେ ଚକ୍ରାନ୍ତ କରି କିପରି ନୀଳକଣ୍ଠଙ୍କୁ ତାଙ୍କ ପ୍ରାପ୍ୟ ପ୍ରଧାନମନ୍ତ୍ରୀତ୍ୱରୁ ବଞ୍ଚିତ କରାଯାଇଥିଲା, ତା'ର ଏକ କରୁଣ ଚିତ୍ର ସେ ନିଜେ ପ୍ରଦାନ କରିଛନ୍ତି ତାଙ୍କର ଅନନୁକରଣୀୟ ଭାଷା ଶୈଳୀରେ (ଆତ୍ମଜୀବନୀ, 1963 ପୃ—201-202), "ମୁଁ ସେତେବେଳେ ଉତ୍କଳ ପ୍ରାଦେଶିକ କଂଗ୍ରେସର ସଭାପତି ଥିଲି । ମୋର ଉଦ୍ୟମରେ ଓଡ଼ିଶାରେ କଂଗ୍ରେସ ଅଧିକ ସଂଖ୍ୟାରେ ବିଧାନ ସଭକୁ ନିର୍ବାଚିତ ହେଲା । 60ଟି ଆସନରୁ 36ଟି କଂଗ୍ରେସ ପାଇଲେ। ଏଇ 36 ଜଣ କଂଗ୍ରେସ ସଭ୍ୟଙ୍କ ମଧ୍ୟରୁ 20 ଜଣ ମତେ ଦଳର ନେତା ନିର୍ବାଚିତ କରିବାର ଇଚ୍ଛା ପ୍ରକାଶ କରିଥିଲେ। ମୁଁ ଆସେମ୍ବ୍ଲିକୁ ଠିଆ ହେଲେ ଅନ୍ୟମାନଙ୍କୁ ନିର୍ବାଚିତ କରାଇବାର ଅସୁବିଧା ହେବ ବୋଲି ମୁଁ ଠିଆ ହୋଇନଥିଲି । ଦଳର ନେତା ନିର୍ବାଚିତ ହୋଇ ମୁଁ କେନ୍ଦ୍ରରୁ ଇସ୍ତଫା ଦେଇ ପ୍ରଦେଶ ଆସେମ୍ବ୍ଲିକୁ ପୁଣି ଠିଆହେବା କଥା ହେଲା । ମାତ୍ର ଏଇ ସମୟରେ ନିର୍ବାଚିତ ସଭ୍ୟମାନଙ୍କ ମଧ୍ୟରୁ କେତେଜଣ ଗୋଟିଏ ଚକ୍ରାନ୍ତ ଆରମ୍ଭ କରିଦେଲେ । ସ୍ୱାମୀ ବିଚିତ୍ରାନନ୍ଦଙ୍କୁ ଧରି ଆସେମ୍ବ୍ଲି ଦଳର ଗୋଟିଏ ରୁଲ କମିଟି (Rule Committee) ହେଲା । ସେଇ କମିଟିରେ ରୁଲ କରି ଦିଆଗଲା ଯେ ଆସେମ୍ବ୍ଲି ଦଳ ବାହାରୁ କେହି ଦଳର ନେତା ହୋଇ ପାରିବେ ନାହିଁ । ସେ ଚକ୍ରାନ୍ତ ଓଡ଼ିଶା ରାଜନୀତିର ଗୋଟିଏ ଅଂଶ, ତେଣୁ ସେ ବିଷୟ ଅଧିକ କହିବା ଦରକାର ନାହିଁ । 36 ଜଣ କଂଗ୍ରେସ ସଭ୍ୟରୁ 21 ଜଣଙ୍କ ସମର୍ଥକମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଏଇ 20ଟି ଭୋଟ ବିଶ୍ୱନାଥ ଦାସଙ୍କୁ ଦେଇଦେଲେ । ସେ ନେତା ହେଲେ, କିନ୍ତୁ ତାଙ୍କ ସହିତ କଥା ହେଲା ଯେ ରୁଲ ବଦଳାଇ ମୋତେ ପ୍ରଧାନମନ୍ତ୍ରୀ କରି ଆଣିବେ ଓ ନିଜେ ଜଣେ ମନ୍ତ୍ରୀ ହେବେ। ମାତ୍ର ନିର୍ବାଚନ ଫଳରେ ମୁଁ ପ୍ରଧାନମନ୍ତ୍ରୀ ହୋଇ ପାରିଲି ନାହିଁ। ବିଶ୍ୱନାଥ ଦାସ ନିର୍ବାଚିତ ହେବା ପରେ ପରେ ସେଇ ଚକ୍ରାନ୍ତର ଗୋଟିଏ ଅଂଶ ହୋଇଗଲେ "।

କଂଗ୍ରେସ ଉଚ୍ଚ କର୍ମକର୍ତ୍ତାଙ୍କ ନିର୍ଦ୍ଦେଶ ଫଳରେ ଶ୍ରୀ ଦାସ ମନ୍ତ୍ରୀମଣ୍ଡଳ ଗଠନ କରିବାକୁ ଅନିଚ୍ଛା ପ୍ରକାଶ କରି ଜଣାଇଲେ ଯେ ଲାଟ୍‌ସାହେବ ତାଙ୍କୁ ଭରସା ଦିଅନ୍ତୁ ଯେ "ସେ ସାମ୍ବିଧାନିକ କାର୍ଯ୍ୟକଳାପରେ ମନ୍ତ୍ରୀମଣ୍ଡଳଙ୍କ ଉପଦେଶକୁ ତଳେ ପକାଇ ଦେବେ ନାହିଁ ଏବଂ ସ୍ୱତନ୍ତ୍ର କ୍ଷମତା ପ୍ରୟୋଗ କରି ସେମାନଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରିବେ ନାହିଁ"। ମାତ୍ର ଲାଟ୍ ପ୍ରଦେଶର ଶାସନକର୍ତ୍ତା ଭାବେ ତତ୍‌କାଳୀନ ସାମ୍ବିଧାନିକ ବ୍ୟବସ୍ଥା ଅନୁସାରେ ଏପରି କିଛି ପ୍ରତିଶ୍ରୁତି ଦେବାକୁ ପ୍ରସ୍ତୁତ ନଥିଲେ । ସୁତରାଂ ସଂଖ୍ୟାଗରିଷ୍ଠ ଦଳର ନେତା ସରକାର ଗଢ଼ିବାକୁ ଅସ୍ୱୀକାର କରିବାରୁ ଏବଂ ଇଂରେଜ ସରକାର ଯେନତେନ ପ୍ରକାରେଣ ନୂତନ ସମ୍ବିଧାନକୁ ସମୟାନୁସାରେ କାର୍ଯ୍ୟକାରୀ କରିବାକୁ ବଦ୍ଧପରିକର ହୋଇଥିବାରୁ ପ୍ରଦେଶର ଗଭର୍ଣ୍ଣର ପାରଳାଖେମୁଣ୍ଡି ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେଓଙ୍କୁ 1937 ଏପ୍ରିଲ ପହିଲା ଦିନ ପ୍ରଧାନମନ୍ତ୍ରୀ (ସେତେବେଳେ ମୁଖ୍ୟମନ୍ତ୍ରୀଙ୍କୁ ଏମିତି କୁହାଯାଉଥିଲା) ଭାବରେ ନିଯୁକ୍ତ କରିଥିଲେ । ତାଙ୍କ ବ୍ୟତୀତ ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ ଓ ମୌଲବୀ ଲତିଫୁର ରହମନ ଆଉ ଦୁଇଜଣ ମନ୍ତ୍ରୀ ଭାବରେ ମନୋନୀତ ହୋଇଥିଲେ ।

କ୍ରମେ ରାଜନୈତିକ ଅବସ୍ଥାରେ ପରିବର୍ତ୍ତନ ଘଟିଥିଲା ଏବଂ ଇଂରେଜ ସରକାରଙ୍କ ସହିତ କଂଗ୍ରେସ ଦଳର ଏକ ବୁଝାମଣା ହୋଇଥିଲା । ଏହା ଫଳରେ ବଡଲାଟ୍ ଘୋଷଣା କରିଥିଲେ ଯେ ପ୍ରାଦେଶିକ ଲାଟ୍ ଯଥେଚ୍ଛା ଭାବରେ ତାଙ୍କର ସ୍ୱତନ୍ତ୍ର କ୍ଷମତା ପ୍ରୟୋଗ କରିବେ ନାହିଁ । ତେଣୁ ମଧ୍ୟବର୍ତ୍ତୀକାଳୀନ ମନ୍ତ୍ରୀମଣ୍ଡଳ 1937 ମସିହା ଜୁଲାଇ 13 ତାରିଖରେ ଇସ୍ତଫା ଦେଇଥିଲେ ଏବଂ ଜୁଲାଇ 19 ତାରିଖରେ ବିଶ୍ୱନାଥ ଦାସ ପ୍ରଦେଶର ପ୍ରଧାନମନ୍ତ୍ରୀ ହୋଇ ସରକାର ଗଢିଥିଲେ । ତେଣୁ ପ୍ରଥମ କଂଗ୍ରେସୀ ମନ୍ତ୍ରୀମଣ୍ଡଳରେ ମଧ୍ୟ 3 ଜଣ ସଭ୍ୟ ଥିଲେ ଏବଂ ଅନ୍ୟ ଦୁଇଜଣ ମନ୍ତ୍ରୀ ହେଲେ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଓ ଶ୍ରୀ ବୋଧରାମ ଦୁବେ ।

1937 ଜୁଲାଇ 26 ଓ 27 ତାରିଖରେ ପ୍ରଥମ ବିଧାନ ସଭାର ସଭ୍ୟମାନେ ଶପଥପାଠ କରିଥିଲେ ଏବଂ କଟକ ରେଭେନ୍‌ସା କଲେଜ ହଲ୍‌ରେ 1937 ମସିହା ଜୁଲାଇ 28 ତାରିଖ ଦିନ ପ୍ରଥମ ଐତିହାସିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ସେହିଦିନ ଶ୍ରୀ ମୁକୁନ୍ଦ ପ୍ରସାଦ ଦାସ ଓ ଶ୍ରୀ ନନ୍ଦ କିଶୋର ଦାସ ବାଚସ୍ପତି ଓ ଉପବାଚସ୍ପତି ଭାବରେ ଯଥାକ୍ରମେ ନିର୍ବାଚିତ ହୋଇଥିଲେ । ବରିଷ୍ଠ ବ୍ୟବସ୍ଥାପକ ବାବୁ ବିଚିତ୍ରାନନ୍ଦ ଦାସ ବିଧାନ ସଭାର ସଭ୍ୟ ଭାବରେ ଏହି ବାଚସ୍ପତି ନିର୍ବାଚନ ପରିଚାଳନା କରିଥିଲେ ।

1939 ନଭେମ୍ବର 4 ତାରିଖରେ ଲୋକପ୍ରତିନିଧିମାନଙ୍କ ବିନା ପରାମର୍ଶରେ ଇଂରେଜ ସରକାର ଦ୍ୱିତୀୟ ବିଶ୍ୱଯୁଦ୍ଧରେ ସାମିଲ ହୋଇଥିବାରୁ ତାର ପ୍ରତିବାଦରେ ଏହି କଂଗ୍ରେସୀ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଇଥିଲେ । ଗଭର୍ଣ୍ଣର 1939 ନଭେମ୍ବର 6 ତାରିଖରେ ମନ୍ତ୍ରୀମଣ୍ଡଳର ଇସ୍ତଫାପତ୍ର ଗ୍ରହଣ କରିଥିଲେ ଏବଂ ସେହିଦିନଠାରୁ ପ୍ରଦେଶର ଶାସନଭାର ପ୍ରତ୍ୟକ୍ଷ ଭାବରେ ନିଜେ ଗ୍ରହଣ କରିଥିଲେ । କିନ୍ତୁ ବିଧାନ ସଭାକୁ ନିଲମ୍ବିତ ସଜୀବତା ( Suspended animation )ରେ ରଖାଯାଇଥିଲା ।

1941 ମସିହା ନଭେମ୍ବର 24 ତାରିଖରେ ଏକ ମିଳିତ ମନ୍ତ୍ରୀମଣ୍ଡଳ ଗଠିତ ହୋଇଥିଲା ଏବଂ ଏଥିରେ ପାରଳା ମହାରାଜା ପ୍ରଧାନମନ୍ତ୍ରୀ ଏବଂ ପଣ୍ଡିତ ଗୋଦାବରୀଶ ମିଶ୍ର ଓ ମୌଲବୀ ଅବଦୁସ ସୋଭନ ଖାଁ ଅନ୍ୟ ଦୁଇଜଣ ମନ୍ତ୍ରୀ ଭାବରେ ସରକାର ଗଠନ କରିଥିଲେ । ପୁଣି ମିଳିତ ମନ୍ତ୍ରୀମଣ୍ଡଳର ଅଂଶୀଦାରମାନଙ୍କ ମଧ୍ୟରେ ମତପାର୍ଥକ୍ୟ ଘଟି 1944 ଜୁନ୍ 20 ତାରିଖରେ ପ୍ରଧାନମନ୍ତ୍ରୀ ଇସ୍ତଫାପତ୍ର ଦେଲେ ଏବଂ ତାହା 1944 ଜୁନ୍ 29 ତାରିଖରେ ଗୃହୀତ ହୋଇଥିଲା । ସେହିବର୍ଷ ଜୁନ୍ 30 ତାରିଖଠାରୁ ଓଡ଼ିଶା ଗଭର୍ଣ୍ଣରଙ୍କ ପ୍ରତ୍ୟକ୍ଷ ଶାସନାଧୀନ ହେଲା । ବିଧାନ ସଭାର ସର୍ବମୋଟ୍ 10ଟି ଅଧିବେଶନ ଏବଂ ଏଥିରେ 187ଟି ବୈଠକ ବସିଥିଲା । 1945 ସେପ୍‌ଟେମ୍ବର 14 ତାରିଖରେ ବିଧାନ ସଭା ଭଙ୍ଗ କରି ଦିଆଯାଇଥିଲା ।

ପଣ୍ଡିତ ନୀଳକଣ୍ଠ ଏହି ମିଳିତ ମନ୍ତ୍ରୀମଣ୍ଡଳର ଗଠନ ଓ ବିଘଟନର ପୃଷ୍ଠଭୂମି ସଂପର୍କରେ ଲେଖିଛନ୍ତି, "ଏତିକି ବେଳକୁ ଜିନ୍ନାଙ୍କ ନେତୃତ୍ୱରେ ମୁସ୍‌ଲିମ୍ ଲିଗ୍‌ଙ୍କ ପ୍ରସିଦ୍ଧ "ଲାହୋର ପ୍ରସ୍ତାବ" 1940 ମାର୍ଚ୍ଚରେ ପ୍ରକାଶ ପାଇଲା । ପ୍ରସ୍ତାବ ହେଉଛି – ଭାରତ ଦି' ଭାଗକର । ହିନ୍ଦୁ ଭାରତ ହିନ୍ଦୁକୁ ଛାଡ଼ । ମୁସ୍‌ଲିମ୍ ଭାରତ ବା ପାକିସ୍ଥାନ ମୁସଲମାନଙ୍କୁ ଛାଡ଼," (Quit India) ଶେଷକୁ ଏଇ ହେଲା ଫଳ ବା ପରିଣାମ । ଜବାହରଲାଲଙ୍କ ମୁସଲମାନଙ୍କ ପ୍ରତି ରାଜନୀତିକ ବ୍ୟବହାର ଆମକୁ ତଥା ସୁଭାଷ ଓ ସୁଭାଷପନ୍ଥୀଙ୍କୁ କେବେ ସନ୍ତୋଷ ଦେଇନଥିଲା । ଏବେ ସୁଭାଷ ଡାକି ପଠାଇଲେ ଆମଙ୍କୁ – ମୁଁ, ଗୋଦାବରୀଶ ମିଶ୍ରେ ଓ ଯଦୁମଣି ମଙ୍ଗରାଜ କଲିକତା ଗଲୁଁ । ସେ କହିଲେ ଲିଗ୍ ମୁସଲମାନଙ୍କ ସଙ୍ଗେ କୋଆ-ଲିସନ ସରକାର ଛଡ଼ା ଗତି ନାଁଇ । ......ମତାନ୍ଧ କଂଗ୍ରେସୀମାନେ ଏଥିରେ ଆମକୁ ଦେଶ-ଦ୍ରୋହୀ ବୋଲି କହିବେ । ସେଥିପାଇଁ ସବୁ ବାମପନ୍ଥୀଙ୍କୁ ଧରି ସମାନ୍ତରାଳ ସରକାର ଗଢିବାପାଇଁ ରହିବେ 'ଫରଓ୍ୱାର୍ଡ଼ ବ୍ଲକ' । ସେଇଦିନ ସେଇଠାରେ – ସେଇ ୨୪/2 ଏଲଗିନ୍ ରୋଡ଼ରେ ସୁଭାଷ କହିଲେ, "ତେବେ ଗୋଦାବରୀଶବାବୁ ଓ ଯଦୁମଣି ଯା'ନ୍ତୁ ଓଡ଼ିଶା ଲିଗ୍‌କୁ ଧରି କୋଆଲିସନ ମନ୍ତ୍ରୀମଣ୍ଡଳ ଗଢିବେ । ନୀଳକଣ୍ଠ ବାବୁ, ନିଖିଳ ଭାରତ ଫରଓ୍ୱାର୍ଡ଼ ବ୍ଲକକୁ ଯାଆନ୍ତୁ" । ଗୋଦାବରୀଶ ଓ ଯଦୁମଣି ସେଥିରେ ଜମା ମଙ୍ଗିଲେ ନାହିଁ । ସେଠୁ ଦିବାକରଙ୍କୁ ଟେଲିଗ୍ରାମ ହେଲା । ତହିଁ ପରଦିନ ସଂଧ୍ୟାକୁ ସେ ପହଞ୍ଚିଲେ । ସେ ଗଲେ ନିଖିଳ ଭାରତ ଫରଓ୍ୱାର୍ଡ଼ ବ୍ଲକକୁ, ସେଥିରେ ସେ ଏବେ ଅଛନ୍ତି । ଆମେ ତିନିହେଁ ଆସି ଓଡ଼ିଶା ମୁସ୍‌ଲିମ୍ ଲିଗ୍ ସେକ୍ରେଟାରୀ ସୋଭାନ ଖାଁଙ୍କୁ ଧରି ମନ୍ତ୍ରୀମଣ୍ଡଳ ଗଢ଼ିଲୁ" ।

ଭାରତ ସରକାରଙ୍କ ପ୍ରଚାର ବିଭାଗ ଅଧ୍ୟକ୍ଷ ବି. ଉଇଲିୟମସ୍ ଏହି ବିଷୟଟିକୁ ହିନ୍ଦୁ-ମୁସଲମାନ ସମସ୍ୟା ସମାଧାନର ବାଟ ବୋଲି କହି ପ୍ରଶଂସା କଲେ । ନିଖିଳ ଭାରତ ଫରଓ୍ୱାର୍ଡ ବ୍ଲକର ନାଗପୁର ଅଧିବେଶନରେ ଆମ ମିଳିତ ମନ୍ତ୍ରୀମଣ୍ଡଳକୁ ଅଭିନନ୍ଦନ କରାଗଲା । ମାତ୍ର ଏହା ପଛେ ପଛେ ଆସିଲା ଘୋର ବିପର୍ଯ୍ୟୟ, ଯାହାକୁ ନୀଳକଣ୍ଠ ସଂକ୍ଷେପରେ ଲେଖିଛନ୍ତି, "ହୁଏତ ଏହାର ଫଳରେ, ଶରତ ବୋଷ କୋଡାଇ କେନାଲରେ ବନ୍ଦୀ ହେଲେ ଓ କିଛିଦିନ ପରେ ସୁଭାଷ ଅନ୍ତର୍ଦ୍ଧାନ ହେଲେ । କ'ଣ ପାଇଁ କିଏ କହିବ ? ଏହାପରେ ମୁଁ ଦେଖିଲି ଆଉ ମତାନ୍ଧ କଂଗ୍ରେସକୁ ବୁଝାଇବା ଧ୍ୱଂସି ହେବ ନାହିଁ । ଏ କଂଗ୍ରେସ ଏ ଭାରତକୁ ଦୁଇଭାଗ ନକରି ଛାଡିବ ନାଁ । ତେଣୁ ମୁଁ ମିଳିତ ମନ୍ତ୍ରୀ-ମଣ୍ଡଳ ଭାଙ୍ଗିଦେବାକୁ ବାହାରିଲି (ନୀଳକଣ୍ଠ ସ୍ମାରକୀ, 1982, ପୃ. 129-130) ।

ସେତେବେଳେ ବିଧାନ ସଭାର ସ୍ୱତନ୍ତ୍ର ସଚିବାଳୟ ନଥିଲା ଏବଂ ଓଡ଼ିଶା ସରକାରଙ୍କ ଆଇନ୍ ବିଭାଗ ଦାୟିତ୍ୱରେ ଏହାର ପ୍ରଶାସନ ରହିଥିଲା । ଏହାପରେ ଓଡ଼ିଶା ପ୍ରଦେଶ ଦୁଇଥର ଗଭର୍ଣ୍ଣରଙ୍କ ପ୍ରତ୍ୟକ୍ଷ ଶାସନାଧୀନ ହୋଇ ରହିଥିଲା, 1939 ନଭେମ୍ବର 6 ତାରିଖରୁ 1941 ନଭେମ୍ବର 24 ତାରିଖ ଏବଂ 1944 ଜୁନ୍ 30 ତାରିଖରୁ 1945 ସେପ୍ଟେମ୍ବର 14 ତାରିଖ ପର୍ଯ୍ୟନ୍ତ ।

## ଦ୍ୱିତୀୟ ପ୍ରାକ୍-ସ୍ୱାଧୀନତାକାଳୀନ ବିଧାନ ସଭା

ଏହି ବିଧାନ ସଭାକୁ ସଂଯୋଗ-ବିଧାନ ସଭା (Link Assembly) କୁହାଯାଏ । ଦ୍ୱିତୀୟ ପ୍ରାଦେଶିକ ବିଧାନ ସଭା ପାଇଁ ନିର୍ବାଚନ 1946 ଏପ୍ରିଲ 4ରୁ 9 ଯାଏଁ ଅନୁଷ୍ଠିତ ହୋଇଥିଲା । ନବନିର୍ବାଚିତ ସଭ୍ୟଗଣ 1946 ମଇ 27 ତାରିଖରେ ଶପଥ ଗ୍ରହଣ କରିଥିଲେ । ସେହିଦିନ ରେଭେନ୍‌ସା କଲେଜ ହଲରେ ବିଧାନ ସଭାର ପ୍ରଥମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । କଂଗ୍ରେସ ଦଳ ନିର୍ଦ୍ୱନ୍ଦରେ ଲାଭ କରିଥିବା 36 ଟି ଆସନ ସହିତ ମୋଟ୍ 47ଟି ଆସନରେ ବିଜୟୀ ହୋଇଥିଲେ । ବିଭିନ୍ନ ଦଳ ବିଧାନ ସଭାରେ ନିମ୍ନଲିଖିତ ସଂଖ୍ୟାରେ ଆସନ ଲାଭ କରିଥିଲେ–

| | |
|---|---|
| ମୋଟ୍ ଆସନ ସଂଖ୍ୟା | 60 |
| କଂଗ୍ରେସ | 47 |
| ମୁସ୍‌ଲିମ୍ ଲିଗ୍ | 4 |
| କମ୍ୟୁନିଷ୍ଟ | 1 |
| ସ୍ୱାଧୀନ | 4 |
| ମନୋନୀତ ସଭ୍ୟ | 4 |

ପ୍ରଧାନମନ୍ତ୍ରୀଙ୍କ ଉପଦେଶକ୍ରମେ 4 ଜଣ ସଭ୍ୟ ବିଧାନ ସଭାକୁ ମନୋନୀତ ହେଉଥିଲେ । ଡକ୍ଟର ହରେକୃଷ୍ଣ ମହତାବ କଂଗ୍ରେସ ଦଳର ନେତା ନିର୍ବାଚିତ ହୋଇ 1946 ଏପ୍ରିଲ 23 ତାରିଖରେ ମନ୍ତ୍ରୀମଣ୍ଡଳ ଗଠନ କରିଥିଲେ । ସର୍ବଶ୍ରୀ ନବକୃଷ୍ଣ ଚୌଧୁରୀ, ପଣ୍ଡିତ ଲିଂଗରାଜ ମିଶ୍ର, ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଓ ରାଧାକୃଷ୍ଣ ବିଶ୍ୱାସରାୟ ଏହି ମନ୍ତ୍ରୀମଣ୍ଡଳରେ ସଭ୍ୟ ମନୋନୀତ ହୋଇଥିଲେ । ମାତ୍ର କେନ୍ଦ୍ର ମନ୍ତ୍ରୀମଣ୍ଡଳରେ ଯୋଗ ଦେବାପାଇଁ ଡକ୍ଟର ମହତାବ 1950 ମସିହା ମଇ 12 ତାରିଖରେ ଇସ୍ତଫା ଦେଇଥିଲେ ଏବଂ ସ୍ୱର୍ଗୀୟ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଭାବରେ ଉକ୍ତଦିନ ଦାୟିତ୍ୱ ଗ୍ରହଣ କରିଥିଲେ ।

ଶ୍ରୀ ଲାଲମୋହନ ପଟ୍ଟନାୟକ ଓ ଶ୍ରୀମତୀ ଏ. ଲକ୍ଷ୍ମୀବାଇ ବିଧାନ ସଭାରେ ଯଥାକ୍ରମେ ବାଚସ୍ପତି ଓ ଉପବାଚସ୍ପତି ଭାବରେ ନିର୍ବାଚିତ ହୋଇଥିଲେ 1946 ମସିହା ମଇ 29 ତାରିଖରେ । ବିଧାନ ସଭାର ବରିଷ୍ଠ ସଭ୍ୟ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଏମାନଙ୍କ ନିର୍ବାଚନ ପରିଚାଳନା କରିଥିଲେ ।

ଏଠାରେ ଏହା ଉଲ୍ଲେଖଯୋଗ୍ୟ ଯେ 1948 ଜାନୁୟାରୀ ପହିଲା ଦିନ ଗଡ଼ଜାତ ରାଜ୍ୟଗୁଡ଼ିକ ଓଡ଼ିଶା ପ୍ରଦେଶ ସହିତ ମିଶିଥିଲେ । ଓଡ଼ିଶା ପ୍ରଶାସନ ଆଦେଶାନୁସାରେ ( In pursuance of the Administration of Orissa Order ) ଗୋଟିଏ ବିଧାନ ସଭା "ଓଡ଼ିଶା ଗଡ଼ଜାତ ବିଧାନ ସଭା" ନାମରେ 36 ଜଣ ସଭ୍ୟଙ୍କୁ ନେଇ ଗଠିତ ହୋଇଥିଲା । ଏଥିରେ 25 ଟି ଗଡ଼ଜାତରୁ ଗଭର୍ଣ୍ଣରଙ୍କ ମନୋନୀତ 31 ଜଣ ସଭ୍ୟ ଅନ୍ତର୍ଭୁକ୍ତ । ଏହି କାର୍ଯ୍ୟନିର୍ବାହୀ ପରିଷଦ ଗଡ଼ଜାତଗୁଡ଼ିକର ପ୍ରଶାସନରେ ଲାଟ୍, ମୁଖ୍ୟ ପ୍ରଶାସକ ଓ ସ୍ୱତନ୍ତ୍ର କମିସନରଙ୍କୁ ସାହାଯ୍ୟ ଓ ଉପଦେଶ ଦେବାକୁ ଗଠିତ ହୋଇଥିଲା ।

ଓଡ଼ିଶା ସହିତ ସମୁଦାୟ 26ଟି ଗଡ଼ଜାତ ମିଶ୍ରଣ ପରେ 1949 ଅକ୍ଟୋବର ମାସରେ ଏହିସବୁ ଅଂଚଳର ମୋଟ୍ 31 ଜଣ ଲୋକ ପ୍ରତିନିଧି ପ୍ରଦେଶର ମୁଖ୍ୟ ଶାସନକର୍ତ୍ତା ତଥା ଗଭର୍ଣ୍ଣରଙ୍କ ଦ୍ୱାରା ମନୋନୀତ ହେଉଥିଲେ । ଏହା ଫଳରେ 1949 ମସିହାରେ ବିଧାନ ସଭାର ସର୍ବମୋଟ୍ ସଭ୍ୟ ସଂଖ୍ୟା 60 ରୁ 91 କୁ ବୃଦ୍ଧିପ୍ରାପ୍ତ ହୋଇଥିଲା । ଏହାପରେ 1948 ଜାନୁୟାରୀ ପହିଲାରୁ 1949 ଅକ୍ଟୋବର ପର୍ଯ୍ୟନ୍ତ ଦୁଇଟି ବିଧାନ ସଭା ରହିଥିଲା । ସେହି ଦୁଇଟି ହେଲା ପ୍ରାଦେଶିକ ବିଧାନ ସଭା ଓ ଓଡ଼ିଶା ଗଡ଼ଜାତମାନଙ୍କର ବିଧାନ ସଭା ।

1946 ମସିହା ସେପ୍ଟେମ୍ବର 30 ତାରିଖରେ କଟକରୁ ଭୁବନେଶ୍ୱରକୁ ଓଡ଼ିଶାର ରାଜଧାନୀ ସ୍ଥାନାନ୍ତର ନିମନ୍ତେ ବିଧାନ ସଭାରେ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା । 1948 ମସିହାରେ ଓଡ଼ିଶା ସରକାରଙ୍କ ସ୍ୱରାଷ୍ଟ୍ର ବିଭାଗ ଅଧୀନରେ ବିଧାନ ସଭା ପ୍ରଶାସନ ନିମନ୍ତେ ଏକ ସ୍ୱତନ୍ତ୍ର ବିଭାଗ ଗଠିତ ହୋଇଥିଲା । ଗଡ଼ଜାତଗୁଡ଼ିକର ମିଶ୍ରଣ ଓ ସେଗୁଡ଼ିକରୁ 31 ଜଣ ପ୍ରତିନିଧି ବିଧାନ ସଭାରେ ଯୋଗଦାନ କଲାପରେ ନୂଆ ରାଜଧାନୀ ଭୁବନେଶ୍ୱରଠାରେ ନବଗଠିତ ବିଧାନ ସଭାର ଐତିହାସିକ ଅଧିବେଶନ 1949 ଅକ୍ଟୋବର 10, 11 ଓ 12 ତାରିଖ ଏହି 3 ଦିନ ଅନୁଷ୍ଠିତ ହୋଇଥିଲା ଏବଂ ଏହାପରେ ପୁଣି କଟକକୁ ବିଧାନ ସଭା ସ୍ଥାନାନ୍ତରିତ ହୋଇଥିଲା । ଏହି ବିଧାନ ସଭାର ମୋଟ୍ 14ଟି ଅଧିବେଶନ, 223 ଟି ବୈଠକ ବସିଥିଲା ଏବଂ ଏହା 1952 ଫେବୃୟାରୀ 20 ତାରିଖରେ ଭାଂଗିଯାଇଥିଲା ।

## ଭାରତୀୟ ସଂବିଧାନ ଅନୁସାରେ ପ୍ରଥମ ବିଧାନ ସଭା, 1952

ସ୍ୱାଧୀନତା ଲାଭପରେ ଭାରତର ନୂତନ ସଂବିଧାନ ରଚିତ ହୋଇ 19.9 ଜାନୁୟାରୀ 26 ତାରିଖରୁ କାର୍ଯ୍ୟକାରୀ ହେଲା । ଏହି ସଂବିଧାନ ଅନୁସାରେ ଓଡ଼ିଶାର ବିଧାନ ସଭାରେ ମୋଟ୍ ସଭ୍ୟ ସଂଖ୍ୟା ହେଲା 140 । ସାର୍ବଜନୀନ ସାବାଳକ ଭୋଟାଧିକାର ଭିତ୍ତିରେ 1951 ଡ଼ିସେମ୍ବର 20 ତାରିଖରୁ 1952 ଜାନୁୟାରୀ 24 ତାରିଖ ପର୍ଯ୍ୟନ୍ତ ଦୀର୍ଘ 31 ଦିନ ଧରି ସ୍ୱାଧୀନ ଭାରତର ପ୍ରଥମ ନିର୍ବାଚନ ସଂଗଠିତ ହେଲା । ଏହି ନିର୍ବାଚନର ଫଳାଫଳ ଅନୁସାରେ 1952 ମସିହାରେ ଗଠିତ ପ୍ରଥମ ବିଧାନ ସଭାରେ ବିଭିନ୍ନ ରାଜନୈତିକ ଦଳ ନିମ୍ନଲିଖିତ ଭାବରେ ଆସନ ଲାଭ କରିଥିଲେ—

| | | |
|---|---|---|
| କଂଗ୍ରେସ | .. | 67 |
| ଗଣତନ୍ତ୍ର | .. | 31 |
| ସମାଜବାଦୀ | | 10 |
| ସାମ୍ୟବାଦୀ | | 7 |
| ଫରୱାର୍ଡ ବ୍ଲକ | .. | 1 |
| ସ୍ୱାଧୀନ | | 24 |
| ମୋଟ୍ | .. | 140 |

1952 ମାର୍ଚ୍ଚ 4 ତାରିଖରେ ପ୍ରଥମ ବିଧାନ ସଭାର ସଭ୍ୟମାନେ ଶପଥ ଗ୍ରହଣ କରିଥିଲେ । ରାଜା ଶ୍ରୀ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ ବିଧାନ ସଭାର ଜଣେ ବରିଷ୍ଠ ସଭ୍ୟ ଭାବରେ ଅନ୍ୟ ସମସ୍ତଙ୍କର ଶପଥ ପାଠ କରାଇଥିଲେ । ନୂତନ ରାଜଧାନୀ ଭୁବେନେଶ୍ୱର, ସର୍ଦ୍ଦାର ପଟେଲ ହଲ୍‌ରେ ଉକ୍ତ ଦିନ ଏହି ବିଧାନ ସଭାର ପ୍ରଥମ ଅଧିବେଶନ ବସିଥିଲା । ଶ୍ରୀ ନବକୃଷ୍ଣ ଚୌଧୁରୀ ସଂଖ୍ୟାଗରିଷ୍ଠ ଦଳର ନେତା ଭାବରେ ନିର୍ବାଚିତ ହୋଇ 1952 ଫେବୃୟାରୀ 20 ତାରିଖଠାରୁ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇଥିଲେ । ବ୍ୟକ୍ତିଗତ କାରଣରୁ ନବକୃଷ୍ଣ ବାବୁ 1956 ଅକ୍ଟୋବର 19 ତାରିଖରେ ଇସ୍ତଫା ଦେଇଥିଲେ ଏବଂ ଡଃ. ହରେକୃଷ୍ଣ ମହତାବ ଉକ୍ତଦିନ ମୁଖ୍ୟମନ୍ତ୍ରୀ ଭାବରେ ରାଜ୍ୟ ଶାସନଭାର ଗ୍ରହଣ କରିଥିଲେ ।

ଶ୍ରୀ ଶଙ୍କାକର ସୂପକାର ଗଣତନ୍ତ୍ର ଦଳ ପକ୍ଷରୁ ଏହି ବିଧାନ ସଭାରେ ବିରୋଧୀ ଦଳ ଭାବରେ ନିର୍ବାଚିତ ହୋଇଥିଲେ । ଏହି ବିଧାନ ସଭାର ମୋଟ୍ ୨ଟି ଅଧିବେଶନ ବସିଥିଲା ମୋଟ୍ 356 ଟି କାର୍ଯ୍ୟକାରୀ ଦିବସରେ । 1957 ମାର୍ଚ୍ଚ 4 ତାରିଖରେ ପ୍ରଥମ ବିଧାନ ସଭା ଭାଙ୍ଗି ଯାଇଥିଲା । ଶ୍ରୀ ନନ୍ଦ କିଶୋର ଦାସ ଓ ମୌଲବୀ ମହମଦ୍ ହନିଫ ଯଥାକ୍ରମେ ବାଚସ୍ପତି ଓ ଉପବାଚସ୍ପତି ରୂପେ 1952 ମାର୍ଚ୍ଚ 6 ଓ ୪ ତାରିଖରେ ନିର୍ବାଚିତ ହୋଇଥିଲେ ।

## ଦ୍ୱିତୀୟ ବିଧାନ ସଭା, 1957

ଦ୍ୱିତୀୟ ବିଧାନ ସଭା ପାଇଁ ସାଧାରଣ ନିର୍ବାଚନ 1957 ମସିହା ଫେବୃୟାରୀ 24 ତାରିଖରୁ ମାର୍ଚ୍ଚ 12 ତାରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥିଲା । ନବନିର୍ବାଚିତ ସଭ୍ୟଗଣ 1957 ଏପ୍ରିଲ୍ 10 ଓ 11 ତାରିଖରେ ଶପଥ ନେଇଥିଲେ ଏବଂ ସେମାନଙ୍କୁ ବରିଷ୍ଠ ସଭ୍ୟ ଶ୍ରୀ ନନ୍ଦ କିଶୋର ଦାସ ଶପଥ ପାଠ କରାଇଥିଲେ । 1957 ମଇ 27 ତାରିଖରେ ପ୍ରଥମ ଅଧିବେଶନ ଆହୂତ ହୋଇଥିଲା ଏବଂ ସ୍ୱରାଷ୍ଟ୍ର ବିଭାଗଠାରୁ ବିଧାନ ସଭାର ପ୍ରଶାସନକୁ ସଂପୂର୍ଣ୍ଣଭାବରେ ସ୍ୱତନ୍ତ୍ର ତଥା ସ୍ୱାଧୀନ କରିବାପାଇଁ ଦାବି କରାଯାଇଥିଲା । 1957 ଡିସେମ୍ବର 11 ତାରିଖରେ ବିଧାନ ସଭାର ଏକ ସ୍ୱାଧୀକାର ପ୍ରସ୍ତାବ ଗୃହୀତ ହୋଇ ଏହି ବିଷୟର ଅନୁଧ୍ୟାନ କରି ରିପୋର୍ଟ ଦେବାକୁ ଏକ ସମିତି ଗଠନ କରାଯାଇଥିଲା । ବିଧାନ ସଭାରେ ଏହି ସମିତିଠାରୁ ପ୍ରାପ୍ତ ରିପୋର୍ଟ ଉପରେ ବିସ୍ତୃତ ଆଲୋଚନା କରାଯାଇଥିଲା ଏବଂ 1958 ମସିହା 26 ତାରିଖରେ ସ୍ୱରାଷ୍ଟ୍ର ବିଭାଗର ଆଦେଶ ନମ୍ବର 203596 ଅନୁସାରେ ଏକ ସ୍ୱତନ୍ତ୍ର ବିଧାନ ସଭା ସଚିବାଳୟ ଗଠିତ ହୋଇଥିଲା ।

1957ର ଏହି ଦ୍ୱିତୀୟ ବିଧାନ ସଭାରେ ବିଭିନ୍ନ ଦଳର ଆସନ ସଂଖ୍ୟା ନିମ୍ନପ୍ରକାରେ ହୋଇଥିଲା—

| | |
|---|---|
| କଂଗ୍ରେସ | 56 |
| ଗଣ ପରିଷଦ | 51 |
| ପ୍ରଜାସମାଜବାଦୀ ଦଳ | 11 |
| ସାମ୍ୟବାଦୀ | 9 |
| ସ୍ୱାଧୀନ | 13 |
| ମୋଟ୍ .. | 140 |

ସର୍ବବୃହତ ଏକକ ଦଳର ନେତା ଭାବରେ ଡଃ. ହରେକୃଷ୍ଣ ମହତାବଙ୍କୁ 1957 ଏପ୍ରିଲ 6 ତାରିଖରେ ମୁଖ୍ୟମନ୍ତ୍ରୀରୂପେ ନିଯୁକ୍ତି କରାଯାଇଥିଲା ଏବଂ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହ ଦେଓଙ୍କୁ ବିରୋଧୀଦଳ ନେତା ଭାବରେ ଘୋଷଣା କରାଯାଇଥିଲା । ମାତ୍ର ସଂଖ୍ୟାନ୍ୟୁନ ଦଳର ସରକାର ଅସ୍ଥିର ହେବାରୁ କଂଗ୍ରେସ-ଗଣତନ୍ତ୍ର ପରିଷଦ 1959 ମଇ 22 ତାରିଖରେ ଏକ ମିଳିତ ମନ୍ତ୍ରୀମଣ୍ଡଳ ଗଠନ କରାଯାଇଥିଲା । ଭାଗୀଦାର ଦଳ ମଧ୍ୟରେ ବିଶେଷତଃ କଂଗ୍ରେସ ଦଳରେ ମତଭେଦ ଘଟିବାରୁ ଉକ୍ତ ମିଳିତ ମନ୍ତ୍ରୀମଣ୍ଡଳ 1961 ମସିହା ଫେବୃୟାରୀ 21 ତାରିଖରେ ଇସ୍ତଫା ଦେଇଥିଲେ । ସୁତରାଂ 1961 ମସିହା ଫେବୃୟାରୀ 25 ତାରିଖରେ ରାଜ୍ୟରେ ପ୍ରଥମ ଥର ପାଇଁ ରାଷ୍ଟ୍ରପତି ଶାସନ ଜାରି ହୋଇଥିଲା । ଦ୍ୱିତୀୟ ବିଧାନ ସଭା ମୋଟ୍ 7ଟି ଅଧିବେଶନରେ 254ଟି କାର୍ଯ୍ୟ ଦିବସ ଥିଲା ଏବଂ 1961 ଫେବୃୟାରୀ 25 ତାରିଖରେ ଏହା ଭାଙ୍ଗି ଯାଇଥିଲା । ପଣ୍ଡିତ ନୀଳକଣ୍ଠ ଦାସ 1957 ମଇ 27 ତାରିଖରେ ବିଧାନ ସଭାର ବାଚସ୍ପତି ଓ ସେହିବର୍ଷ ମଇ 29 ତାରିଖରେ ଉପବାଚସ୍ପତି ଭାବରେ ଶ୍ରୀ ଯଦୁମଣି ମଙ୍ଗରାଜ ନିର୍ବାଚିତ ହୋଇଥିଲେ । ବିଧାନ ସଭାକୁ ସ୍ୱତନ୍ତ୍ର କରାଇବାରେ ଓ ବିଧାନସଭା ଭାଙ୍ଗିଗଲେ ସୁଦ୍ଧା ବାଚସ୍ପତି ଇସ୍ତଫା ନଦେଇ ରହିବାର ପରଂପରା ସୃଷ୍ଟି କରିବାରେ ନୀଳକଣ୍ଠ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଥିଲେ । ଏ ସଂପର୍କରେ ପରବର୍ତ୍ତୀ ଅଧ୍ୟାୟରେ ବିଶେଷ ଆଲୋଚନା କରାଯିବ ।

## ତୃତୀୟ ବିଧାନ ସଭା, 1961

ବିଧାନ ସଭା ପାଇଁ ସ୍ୱତନ୍ତ୍ର ଓ ସ୍ଥାୟୀ ଗୃହ ନଥିଲା । 1961 ମସିହା ଆରମ୍ଭରୁ ଆଜିର ବିଧାନ ସଭା ଭବନଟିର ନିର୍ମାଣ ସମାପ୍ତ ହୋଇଥିଲା । ଏହାର ଆୟତନ 47 ହଜାର ବର୍ଗଫୁଟ ଓ ଏଥିରେ ସେତେବେଳେ ପ୍ରାୟ 25 ଲକ୍ଷ ଟଙ୍କା ବ୍ୟୟ କରାଯାଇଥିଲା । 1961 ଫେବୃୟାରୀ 12 ତାରିଖରେ ତତ୍କାଳୀନ ଉପରାଷ୍ଟ୍ରପତି ଡ଼କ୍ଟର ସର୍ବପଲ୍ଲୀ ରାଧାକ୍ରିଷ୍ଣନନ୍ଙ୍କ ଦ୍ୱାରା ଏହି ଭବନ ଉନ୍ମୋଚିତ ହୋଇଥିଲା । 1961 ଜୁନ୍ 2 ରୁ 8 ତାରିଖ ଯାଏ ତୃତୀୟ ବିଧାନ ସଭା ପାଇଁ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ଅନୁଷ୍ଠିତ ହୋଇଥିଲା । ଏହି ବିଧାନ ସଭାପାଇଁ ହୋଇଥିବା ନିର୍ବାଚନରେ ଜୟଲାଭ କରିଥିବା ସଭ୍ୟ ସଂଖ୍ୟା (ବିଭିନ୍ନ ରାଜନୈତିକ ଦଳର) ନିମ୍ନଲିଖିତ ପ୍ରକାରେ ହୋଇଥିଲା—

| | | |
|---|---|---|
| କଂଗ୍ରେସ | .. | 82 |
| ଗଣତନ୍ତ୍ର ପରିଷଦ୍ | .. | 37 |
| ପ୍ରଜାସମାଜବାଦୀ ଦଳ | .. | 11 |
| ଭାରତୀୟ ସାମ୍ୟବାଦୀ ଦଳ | .. | 4 |
| ସ୍ୱାଧୀନ | .. | 6 |
| ମୋଟ୍ | .. | 140 |

ନବନିର୍ବାଚିତ ସଭ୍ୟଗଣ 1961 ମସିହା 26 ଓ 27 ତାରିଖରେ ଶପଥ ଗ୍ରହଣ କରିଥିଲେ । ତୃତୀୟ ବିଧାନସଭା ଏହାର ପ୍ରଥମ ଅଧିବେଶନଠାରୁ ଅର୍ଥାତ୍ 1961 ଅଗଷ୍ଟ 21 ତାରିଖଠାରୁ ନୂତନ ଭବନରେ ଅନୁଷ୍ଠିତ ହେଉଛି । ସଂଖ୍ୟାଗରିଷ୍ଠ ଦଳର ନେତା ଶ୍ରୀ ବିଜୟାନନ୍ଦ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହୋଇଥିଲେ ଏବଂ 1961 ମସିହା ଜୁନ୍ 23 ତାରିଖରୁ ନୂତନ ମନ୍ତ୍ରୀମଣ୍ଡଳ ଗଠନ କରିଥିଲେ । ସେ କାମରାଜ ଯୋଜନାରେ ଦଳୀୟ ସଙ୍ଗଠନ କାର୍ଯ୍ୟପାଇଁ ଇସ୍ତଫା ଦେବାରୁ ଶ୍ରୀ ବୀରେନ ମିତ୍ର ଓ ତାଙ୍କପରେ ଶ୍ରୀ ସଦାଶିବ ତ୍ରିପାଠୀ ଯଥାକ୍ରମେ 1963 ଅକ୍ଟୋବର 2 ତାରିଖରୁ ଓ 1965 ଫେବୃୟାରୀ 21 ତାରିଖଠାରୁ ମୁଖ୍ୟମନ୍ତ୍ରୀ ହୋଇଥିଲେ । ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଏହି ସମୟରେ ବିରୋଧୀ ଦଳର ନେତା ଭାବରେ ମନୋନୀତ ହୋଇ କାର୍ଯ୍ୟ କରିଥିଲେ ଏହି ବିଧାନସଭାର ମୋଟ 11ଟି ଅଧିବେଶନ ଓ 335 ଟି ବୈଠକ ଦିବସ ( Sitting days ) ହୋଇଥିଲା । 1967 ମାର୍ଚ୍ଚ ପହିଲାରେ ଏହି ବିଧାନସଭାର କାର୍ଯ୍ୟକାଳ ପୂରିଯାଇଥିଲା ।

ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ଓଡ଼ିଶା ହାଇକୋର୍ଟର ପୂର୍ବତନ ପ୍ରଧାନ ବିଚାରପତି ଏହି ବିଧାନସଭାର ବାଚସ୍ପତି ଓ ଶ୍ରୀ ଲୋକନାଥ ମିଶ୍ର ଉପବାଚସ୍ପତି ଭାବରେ ନିର୍ବାଚିତ ହୋଇ କାର୍ଯ୍ୟ କରିଥିଲେ ।

## ଚତୁର୍ଥ ବିଧାନସଭା, 1967

ଚତୁର୍ଥ ବିଧାନସଭା ପାଇଁ 1967 ଫେବୃୟାରୀ 21 ତାରିଖରେ ନିର୍ବାଚନ ଅନୁଷ୍ଠିତ ହୋଇଥିଲା ଏବଂ ଏଥିରେ ବିଭିନ୍ନ ଦଳର ପ୍ରାର୍ଥୀ ନିମ୍ନପ୍ରକାରେ ଜୟଲାଭ କରି ବିଧାନସଭାର ସଭ୍ୟ ହୋଇଥିଲେ :—

| | | |
|---|---|---|
| ସ୍ୱତନ୍ତ୍ର | | 49 |
| ଜନ କଂଗ୍ରେସ | .. | 26 |
| କଂଗ୍ରେସ | | 31 |
| ପ୍ରଜାସମାଜବାଦୀ ଦଳ | | 21 |
| ଭାରତୀୟ ସାମ୍ୟବାଦୀ ଦଳ | | 7 |
| ଭାରତୀୟ ସାମ୍ୟବାଦୀ ଦଳ (ମାର୍କସ୍) | | 1 |
| ଏସ. ଏସ୍. ଦଳ | | 2 |
| ସ୍ୱାଧୀନ | | 3 |
| ମୋଟ | .. | 140 |

1967 ମାର୍ଚ୍ଚ 17 ତାରିଖରେ ନବନିର୍ବାଚିତ ସଭ୍ୟମାନେ ଶପଥ ଗ୍ରହଣ କରିଥିଲେ 1967 ମାର୍ଚ୍ଚ 13 ତାରିଖରେ ଏହି ବିଧାନସଭାର ପ୍ରଥମ ଅଧିବେଶନ ବସିଥିଲା । ଭାରତୀୟ ସ୍ୱତନ୍ତ୍ର ଦଳ ସହିତ ଗଣତନ୍ତ୍ର ପରିଷଦରେ ମିଶ୍ରଣ ଘଟିଥିଲା ଏବଂ ଏହାପରେ ଶ୍ରୀ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଏକ ନୂତନ ଆଂଚଳିକ ଦଳ 'ଜନ କଂଗ୍ରେସ' ଦଳ ଗଠିତ ହୋଇଥିଲା । ଉଭୟ ସ୍ୱତନ୍ତ୍ର ଓ ଜନ କଂଗ୍ରେସ ଦଳ ମିଶି ମିଳିତ ସରକାର ଗଠନ କରିଥିଲେ ଏବଂ ସ୍ୱତନ୍ତ୍ର ଦଳର ନେତା ସ୍ୱର୍ଗୀୟ ଆର. ଏନ୍. ସିଂହଦେଓ ମୁଖ୍ୟମନ୍ତ୍ରୀ ହୋଇଥିଲେ । କଂଗ୍ରେସ ଦଳର ନେତା ଶ୍ରୀ ସଦାଶିବ ତ୍ରିପାଠୀ ଏହି ଚତୁର୍ଥ ବିଧାନସଭାରେ ବିରୋଧୀ ଦଳର ନେତା ଭାବରେ ଘୋଷିତ ହୋଇ କାର୍ଯ୍ୟ କରିଥିଲେ ।

ସଂପୃକ୍ତ ଭାଗୀଦାର ଦଳ ଦୁଇଟି ମଧ୍ୟରେ ମତ ପାର୍ଥକ୍ୟ ହେବାରୁ 1971 ଜାନୁୟାରୀ 9 ତାରିଖରେ ମିଳିତ ସରକାରର ପତନ ଘଟିଥିଲା । ମୁଖ୍ୟମନ୍ତ୍ରୀଙ୍କ ଇସ୍ତଫା ଦାନ ପରେ ଏକ ସାଂବିଧାନିକ ସମସ୍ୟାର ଉଦ୍ଭବ ହୋଇଥିଲା । ରାଜ୍ୟପାଳ ମୁଖ୍ୟମନ୍ତ୍ରୀଙ୍କ ଇସ୍ତଫା ୧୯୭୧ ମସିହା ଜାନୁୟାରୀ 9 ତାରିଖ ଦିନ ରାତି ସାଢ଼େ ୪ ଟାରୁ ଗ୍ରହଣ କଲେ । କିନ୍ତୁ ରାଷ୍ଟ୍ରପତିଂକ ଶାସନ 1971 ଜାନୁୟାରୀ 11 ତାରିଖଠାରୁ ଜାରି କରାଗଲା । ତେଣୁ ଦିନକରୁ ଅଧିକ କାଳ ରାଜ୍ୟ ରାଜ୍ୟପାଳଙ୍କ ପ୍ରତ୍ୟକ୍ଷ ଶାସନାଧୀନ ରହିଥିଲା ଏବଂ ଏହା ସେତେବେଳେ କେତେକ ସାଂବିଧାନିକ ପ୍ରଶ୍ନ ଉଠାଇଥିଲା । ବିଧାନସଭା 1971 ଜାନୁୟାରୀ 23 ରେ ଭାଂଗିବା ଯାଏ ନିଲଂବିତ ସଜୀବତା (Suspended animation) ମଧ୍ୟରେ ରଖାଯାଇଥିଲା । ଚତୁର୍ଥ ବିଧାନସଭାର ମୋଟ ୧୦ଟି ଅଧିବେଶନ ଅନୁଷ୍ଠିତ ହୋଇଥିଲା ଏବଂ 197ଟି ବୈଠକ ଦିବସ ହୋଇଥିଲା । 1971 ଜାନୁୟାରୀ 23 ତାରିଖରେ ବିଧାନସଭାଟିର ପତନ ଘଟିଥିଲା । ଶ୍ରୀ ନନ୍ଦକିଶୋର ମିଶ୍ର ଓ ଶ୍ରୀ ହରିହର ବାହିନୀପତି ଯଥାକ୍ରମେ ବାଚସ୍ପତି ଓ ଉପବାଚସ୍ପତି ରୂପେ ନିର୍ବାଚିତ ହୋଇ ବିଧାନସଭା କାର୍ଯ୍ୟ କରିଥିଲେ । 1969 ମସିହାରେ କଂଗ୍ରେସ ଦଳ ବିଭାଜିତ ହୋଇଥିଲା । ଶ୍ରୀ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଏକ ଆଂଚଳିକ ଦଳ ଉତ୍କଳ କଂଗ୍ରେସ ସଂଗଠିତ ହୋଇଥିଲା ।

## ପଞ୍ଚମ ବିଧାନସଭା, 1971

1971 ମସିହା ମାର୍ଚ୍ଚ 5 ତାରିଖରେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ଅନୁଷ୍ଠିତ ହୋଇଥିଲା । ଓଡ଼ିଶା ବିଧାନସଭାରେ ବିଭିନ୍ନ ଦଳର ସାମର୍ଥ୍ୟ ନିମ୍ନ ପ୍ରକାରେ ହୋଇଥିଲା :—

| | | |
|---|---|---|
| ଭାରତୀୟ ଜାତୀୟ କଂଗ୍ରେସ | .. | 51 |
| ସ୍ୱତନ୍ତ୍ର | | 36 |
| ଉତ୍କଳ କଂଗ୍ରେସ | | 33 |
| ପି. ଏସ୍. ପି. | | 4 |

| | | |
|---|---|---|
| ସି. ପି. ଆଇ | .. | 4 |
| ସି. ପି. ଆଇ. (ଏମ୍) | .. | 2 |
| ଭାରତୀୟ ଜାତୀୟ କଂଗ୍ରେସ (ଓ) | | 1 |
| ଜନ କଂଗ୍ରେସ | .. | 1 |
| ଝାଡ଼ଖଣ୍ଡ | .. | 4 |
| ସ୍ୱାଧୀନ | .. | 4 |
| ମୋଟ | .. | 140 |

ନବନିର୍ବାଚିତ ସଭ୍ୟଗଣ 1971 ଏପ୍ରିଲ 9 ଓ 10 ତାରିଖରେ ଶପଥ ଗ୍ରହଣ କରିଥିଲେ । ପଂଚମ ବିଧାନସଭାର ପ୍ରଥମ ଅଧିବେଶନ 1971 ମଇ 3 ତାରିଖରେ ଆହୂତ ହୋଇଥିଲା । ସ୍ୱତନ୍ତ୍ର ଦଳ ସହିତ ଉତ୍କଳ କଂଗ୍ରେସ ମିଶି ମିଳିତ ମନ୍ତ୍ରୀମଣ୍ଡଳ ଗଢିଥିଲେ ଏବଂ ଏଥିରେ ଶ୍ରୀ ବିଶ୍ୱନାଥ ଦାସ ମୁଖ୍ୟମନ୍ତ୍ରୀ ହୋଇଥିଲେ । 1971 ମସିହା ଏପ୍ରିଲ 9 ତାରିଖରେ ମୁଖ୍ୟମନ୍ତ୍ରୀ ନିଯୁକ୍ତ ହୋଇଥିଲେ ଏବଂ ସେତେବେଳେ ସେ ବିଧାନସଭାର ସଭ୍ୟ ନ ଥିଲେ । ରାଉରକେଲା ନିର୍ବାଚନମଣ୍ଡଳୀରୁ ସେ ସ୍ୱାଧୀନ ପ୍ରାର୍ଥୀ ଭାବରେ ଠିଆ ହୋଇ ଉପନିର୍ବାଚନ ରେ ଜୟଯୁକ୍ତ ହୋଇଥିଲେ । ଶାସକ ଦଳରୁ ଅନେକ ସଭ୍ୟ ଇସ୍ତଫା ଦେବାରୁ ସରକାରଙ୍କ ପତନ ଘଟିଥିଲା ଏବଂ 1972 ଜୁନ୍ 14 ତାରିଖରେ ଇସ୍ତଫା ଦେଇଥିଲେ ।

ଶ୍ରୀମତୀ ନଂଦିନୀ ଶତପଥୀ କଂଗ୍ରେସ ଦଳର ନେତାଭାବରେ 1972 ଜୁନ୍ 14 ତାରିଖରେ ନୂଆ ସରକାର ଗଠନ କରିଥିଲେ ଏବଂ 1973 ମାର୍ଚ୍ଚ 3 ତାରିଖ ଯାଏ ତାଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ଶାସନ ଚାଲିଥିଲା । ଶାସନ ଦାୟିତ୍ୱ ନେଲାବେଳେ ଶ୍ରୀମତୀ ଶତପଥୀ ବିଧାନସଭାର ସଭ୍ୟ ନ ଥିଲେ । ତେଣୁ ଗୋଟିଏ ଉପନିର୍ବାଚନରେ କଟକ ନଗରୀ ନିର୍ବାଚନମଣ୍ଡଳୀରୁ ଠିଆହୋଇ ବିଜୟ ଲାଭ କଲେ । 1972 ଜୁନ୍ 14 ତାରିଖରେ ଶ୍ରୀ ବିନାୟକ ଆଚାର୍ଯ୍ୟ କଂଗ୍ରେସ (ଆଇ) ଦଳର ନେତା ଭାବରେ ବିରୋଧୀ ଦଳର ନେତା ଘୋଷିତ ହୋଇଥିଲେ । ଶ୍ରୀ ଆର. ଏନ୍. ସିଂହଦେଓ (ସ୍ୱତନ୍ତ୍ର) 1972 ଜୁନ୍ 14 ତାରିଖରୁ ବିରୋଧୀ ଦଳର ନେତା ଘୋଷିତ ହୋଇ 1973 ଫେବୃୟାରୀ 9 ତାରିଖ ଯାଏ ସେହି ପଦରେ ରହିଥିଲେ । ପୁଣି ପ୍ରଗତି ବିଧାୟକ ଦଳ (Pragati Legislature Party) ନାମରେ ଏକ ନୂଆ ଦଳ ମୁଣ୍ଡ ଟେକି ଥିଲା ଏବଂ ତାହା ଉତ୍କଳ କଂଗ୍ରେସ , ସ୍ୱତନ୍ତ୍ର ଦଳ ଓ ଅନ୍ୟମାନଙ୍କୁ ନେଇ ଗଠିତ ହୋଇଥିଲା । ଶ୍ରୀ ବିଜୁ ପଟ୍ଟନାୟକ ଏହି ପ୍ରଗତିଦଳର ନେତ ଭାବରେ ବିରୋଧୀ ଦଳର ନେତା ଘୋଷିତ ହୋଇଥିଲେ । ସେ ଏହି ପଦରେ 1973 ଫେବୃୟାରୀ 9 ତାରିଖରୁ 1973 ମାର୍ଚ୍ଚ 3 ତାରିଖ ପର୍ଯ୍ୟନ୍ତ ରହିଥିଲେ । କଂଗ୍ରେସ (ଆଇ) ଦଳରୁ କେତେକ ସଭ୍ୟ ଦଳ ପରିବର୍ତ୍ତନ କରିବାରୁ ସରକାରଙ୍କର ପତନ ଘଟିଥିଲା ଏବଂ 1973 ମାର୍ଚ୍ଚ 3 ତାରିଖରେ ରାଜ୍ୟରେ ରାଷ୍ଟ୍ରପତି ଶାସନ ଜାରି ହୋଇଥିଲା ।

ଏହି ବିଧାନସଭାରେ ବହୁ ଦଳବଦଳ ଓ ନୂତନ ଦଳ ଗଠନ ତଥା ସମିଶ୍ରଣ ଘଟିଥିବାରୁ ସର୍ବଦା ବିଭିନ୍ନ ଦଳର ସାମର୍ଥ୍ୟରେ ହ୍ରାସ ବୃଦ୍ଧି ପରିଲକ୍ଷିତ ହୋଇଥିଲା । ଏହି ପଞ୍ଚମ ବିଧାନସଭାର ମୋଟ ପାଞ୍ଚୋଟି ଅଧିବେଶନ ବସିଥିଲା । 97 ଟି ବୈଠକ ଦିବସ ହୋଇଥିଲା । 1973 ମାର୍ଚ୍ଚ 3 ତାରିଖରେ ଏହି ବିଧାନସଭାକୁ ଭାଂଗି ଦିଆଯାଇଥିଲା । ଶ୍ରୀ ନଂଦ କିଶୋର ମିଶ୍ର ଓ ଶ୍ରୀ ନାରାୟଣ ବୀରବର ସାମନ୍ତ ଯଥାକ୍ରମେ ବାଚସ୍ପତି ଓ ଉପବାଚସ୍ପତି ରୂପେ ନିର୍ବାଚିତ ହୋଇ ବିଧାନସଭା ପରିଚାଳନା କରିଥିଲେ ।

## ଷଷ୍ଠ ବିଧାନସଭା, 1974

ନିର୍ବାଚନମଣ୍ଡଳୀଗୁଡ଼ିକର ସୀମା ପୁନଃନିର୍ଦ୍ଧାରଣ ହେବାଫଳରେ ବିଧାନସଭାର ମୋଟ ସଭ୍ୟସଂଖ୍ୟା 140 ରୁ 147 କୁ ବୃଦ୍ଧିପ୍ରାପ୍ତ ହୋଇଥିଲା । 1974 ଫେବୃୟାରୀ 24 ତାରିଖରେ ଷଷ୍ଠ ବିଧାନସଭାପାଇଁ ନିର୍ବାଚନ ସଂପାଦିତ ହୋଇଥିଲା ଏବଂ ନବନିର୍ବାଚିତ ସଭ୍ୟଗଣ 1974 ମାର୍ଚ୍ଚ 11 ତାରିଖରେ ଶପଥ ଗ୍ରହଣ କରିଥିଲେ । ଏହି ଷଷ୍ଠ ବିଧାନସଭାରେ ବିଭିନ୍ନ ଦଳର ସଭ୍ୟସଂଖ୍ୟା ନିମ୍ନପ୍ରକାର ଥିଲା :—

| | | |
|---|---|---|
| ଭାରତୀୟ ଜାତୀୟ କଂଗ୍ରେସ | .. | 69 |
| ସ୍ୱତନ୍ତ୍ର ଦଳ | | 21 |
| ଉତ୍କଳ କଂଗ୍ରେସ | .. | 35 |
| ଝାଡ଼ଖଣ୍ଡ | | 1 |
| ସି. ପି. ଆଇ. | | 7 |
| ସି. ପି. ଆଇ. (ମାର୍କସ୍) | .. | 3 |
| ଜନ କଂଗ୍ରେସ | .. | 1 |
| ଏସ୍. ଓ. ପି. | .. | 2 |
| ସ୍ୱାଧୀନ | | 7 |
| ଶୂନ୍ୟସ୍ଥାନ | .. | 1 |
| ମୋଟ | | 147 |

1974 ସାଧାରଣ ନିର୍ବାଚନରେ ଚିଲିକା ବିଧାନସଭା ନିର୍ବାଚନମଣ୍ଡଳୀରୁ କେହି ପ୍ରାର୍ଥୀପତ୍ର ଦାଖଲ କରିନଥିଲେ । 1974 ମାର୍ଚ୍ଚ 6 ତାରିଖରେ ମନ୍ତ୍ରୀମଣ୍ଡଳ ଗଠିତ ହୋଇଥିଲା । ଶ୍ରୀ ବିଜୁ ପଟ୍ଟନାୟକ ପ୍ରଗତି ଦଳର ନେତା ଭାବରେ 1974 ମାର୍ଚ୍ଚ 19 ତାରିଖରୁ ବିରୋଧୀ ଦଳର ନେତା ଭାବରେ ଘୋଷିତ ହୋଇ 1974 ଡ଼ିସେମ୍ବର 10 ତାରିଖ ଯାଏଁ ସେହି ପଦରେ ରହିଥିଲେ ।

1974 ଜୁଲାଇ 7 ତାରିଖରେ ଭାରତୀୟ ଜାତୀୟ କଂଗ୍ରେସଦଳରୁ ଉପନିର୍ବାଚନରେ ପ୍ରାର୍ଥୀ ହୋଇ ଚିଲିକା ନିର୍ବାଚନମଣ୍ଡଳୀରୁ ବିଧାନସଭାକୁ ସଭ୍ୟ ନିର୍ବାଚିତ ହୋଇଥିଲେ । 1974 ମସିହାର ଶେଷଭାଗରେ ଭାରତୀୟ ଲୋକଦଳ ନାମରେ ଏକ ସର୍ବଭାରତୀୟ ଦଳ ଜନ୍ମଲାଭ କରିଥିଲା । ଏଥିରେ 7ଟି ଦଳ ଯଥା ଉତ୍କଳ କଂଗ୍ରେସ, ସ୍ୱତନ୍ତ୍ର ଓ ଏସ୍. ଏସ୍. ପି. ଯୋଗଦାନ କରିଥିଲେ । 1974 ଡ଼ିସେମ୍ବର 10 ତାରିଖରେ ପ୍ରଗତି ବିଧାୟକ ଦଳର ନାମ ଭାରତୀୟ ଲୋକଦଳ ହୋଇଥିଲା । ଶ୍ରୀ ବିଜୁ ପଟ୍ଟନାୟକ ଭାରତୀୟ ଲୋକଦଳର ନେତା ଭାବରେ ବିରୋଧୀ ଦଳର ନେତା ନିର୍ବାଚିତ ତଥା ଘୋଷିତ ହୋଇଥିଲେ । ଶ୍ରୀ ପଟ୍ଟନାୟକ ଏହି ପଦରେ 1977 ମାର୍ଚ୍ଚ 24 ତାରିଖ ଯାଏଁ ରହିଥିଲେ ।

1977 ଆରମ୍ଭରୁ ଭାରତୀୟ ଲୋକଦଳ, କଂଗ୍ରେସ (ଓ) ଓ ସୋସାଲିଷ୍ଟ ଦଳଙ୍କୁ ନେଇ ଜନତା ଦଳ ଗଠିତ ହେଲା । 1977 ମାର୍ଚ୍ଚ 31 ତାରିଖରେ ବିଧାନସଭାରେ ଜନତା ବିଧାୟକ ଦଳ ଗଠନ ବିଷୟ ଘୋଷଣା କରାଗଲା । ଶ୍ରୀ ରାମପ୍ରସାଦ ମିଶ୍ର ଜନତା ବିଧାୟକ ଦଳର ନେତା ଭାବରେ ବିରୋଧୀ ଦଳର ନେତା ଘୋଷିତ ହୋଇ ୧୯୭୭ ଏପ୍ରିଲ 30 ତାରିଖ ଯାଏଁ ଏହି ପଦରେ ରହିଥିଲେ । ଶ୍ରୀମତୀ ଶତପଥୀ 1976 ଡ଼ିସେମ୍ବର 16 ତାରିଖରେ ଇସ୍ତଫା ଦେଇଥିଲେ ଏବଂ ଓଡ଼ିଶା 1976 ଡ଼ିସେମ୍ବର 29 ତାରିଖରୁ ରାଷ୍ଟ୍ରପତି ଶାସନାଧୀନ ହୋଇଥିଲା । ମାତ୍ର ବିଧାନସଭାକୁ ନିଲମ୍ବିତ ସଜୀବତା ଅବସ୍ଥାରେ ରଖାଯାଇଥିଲା । ଶ୍ରୀ ବିନାୟକ ଆଚାର୍ଯ୍ୟ, ଶ୍ରୀମତୀ ଶତପଥୀଙ୍କ ପରିବର୍ତ୍ତେ କଂଗ୍ରେସ ଦଳର ନେତା ନିର୍ବାଚିତ ହୋଇ 1976 ଡ଼ିସେମ୍ବର 29 ତାରିଖରୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ ଏବଂ ସେ ଏହି ପଦରେ 1977 ଏପ୍ରିଲ 30 ତାରିଖ ଯାଏଁ ରହିଥିଲେ । 1977 ଏପ୍ରିଲ 30ରୁ ଜୁନ୍ 26 ତାରିଖ ଯାଏଁ ଓଡ଼ିଶା ପୁଣି ରାଷ୍ଟ୍ରପତି ଶାସନାଧୀନ ହୋଇ ରହିଥିଲା । ଶ୍ରୀ ବ୍ରଜମୋହନ ମହାନ୍ତି ଓ ଶ୍ରୀ ଚିନ୍ତାମଣି ଜେନା ଯଥାକ୍ରମେ ବାଚସ୍ପତି ଓ ଉପବାଚସ୍ପତି ପଦରେ ରହିଥିଲେ । ଏହି ଷଷ୍ଠ ବିଧାନସଭାର 9 ଟି ଅଧିବେଶନ ଓ 150ଟି ବୈଠକ ଦିବସ ହୋଇଥିଲା ଏବଂ 1977 ଏପ୍ରିଲ 30 ତାରିଖରେ ଏହା ଭାଙ୍ଗିଯାଇଥିଲା ।

## ସପ୍ତମ ବିଧାନସଭା, 1977

1977 ଜୁନ୍ 10 ତାରିଖରେ ସପ୍ତମ ବିଧାନସଭାପାଇଁ ନିର୍ବାଚନ କରାଯାଇଥିଲା । ଏବଂ ବିଧାନସଭାରେ ନିମ୍ନଲିଖିତ ପ୍ରକାରେ ବିଭିନ୍ନ ଦଳର ସ୍ଥିତି ହୋଇଥିଲା :—

| | | |
|---|---|---|
| ଜନତା | .. | 110 |
| କଂଗ୍ରେସ | | 26 |
| ସି.ପି.ଆଇ. | | 1 |
| ସି.ପି.ଆଇ.(ମୋର୍କ୍ସ) | .. | 1 |
| ସ୍ୱାଧୀନ | .. | 9 |
| | ମୋଟ | 147 |

1977 ଜୁନ୍ 26 ତାରିଖରେ ନବନିର୍ବାଚିତ ସଦସ୍ୟମାନେ ଶପଥ ଗ୍ରହଣ କରିଥିଲେ ଏବଂ ଏହି ବିଧାନସଭାର ପ୍ରଥମ ଅଧିବେଶନ 1977 ଜୁଲାଇ 20 ତାରିଖରେ ଆହୁତ ହୋଇଥିଲା । ଶ୍ରୀ ନୀଳମଣି ରାଉତରାୟ ଜନତା ଦଳର ନେତା ନିର୍ବାଚିତ ହୋଇ 1977 ଜୁନ୍ 26 ତାରିଖରୁ ମୁଖ୍ୟମନ୍ତ୍ରୀ ପଦରେ ସ୍ଥାପିତ ହୋଇଥିଲେ । ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ କଂଗ୍ରେସ ବିଧାୟକ ଦଳର ନେତା ନିର୍ବାଚିତ ହୋଇ ବିରୋଧୀ ଦଳର ନେତାଭାବରେ 1978 ଫେବୃୟାରୀ 20 ତାରିଖଯାଏ ଏହି ପଦରେ ରହିଥିଲେ । 1978ରେ କଂଗ୍ରେସ ଦଳରେ ପୁଣି ବିଭାଜନ ଘଟିବାରୁ ଭାରତୀୟ ଜାତୀୟ କଂଗ୍ରେସ(ଆଇ) ଦଳ 1978 ଫେବୃୟାରୀ 20 ତାରିଖରୁ ଏକ ବିଧାୟକ ଦଳ ଭାବରେ ସ୍ୱୀକୃତ ହୋଇଥିଲା ଏବଂ ଏହାର ନେତା ଶ୍ରୀ ବୃନ୍ଦାବନ ନାୟକ ବିରୋଧୀ ଦଳର ନେତା ଭାବରେ ଘୋଷିତ ହୋଇଥିଲେ । କଂଗ୍ରେସର ଆଉ ଏକ ବିଭାଜିତ ଦଳ କଂଗ୍ରେସ(ୟୁ) ଭାବରେ ପରିଚିତ ହୋଇଥିଲା ।

1979 ସେପ୍ଟେମ୍ବର 13 ତାରିଖରେ ଜନତା ଦଳ ମଧ୍ୟ ବିଭାଜିତ ହୋଇଥିଲା ଏବଂ 28 ଜଣ ସଭ୍ୟଙ୍କୁ ନେଇ ଗଠିତ ଜନତା(ଓ) ବିଧାୟକ ଦଳ ସ୍ୱୀକୃତ ହୋଇ ଏହାର ନେତା ଶ୍ରୀ ପ୍ରହ୍ଲାଦ ମଲ୍ଲିକଙ୍କୁ 1979 ସେପ୍ଟେମ୍ବର 3 ତାରିଖରେ ବିରୋଧୀ ଦଳର ନେତା ଭାବରେ ଘୋଷଣା କରାଯାଇଥିଲା । ସେ ଏହି ପଦରେ 1980 ଫେବୃୟାରୀ 13 ତାରିଖ ପର୍ଯ୍ୟନ୍ତ ରହିଥିଲେ । ଜନତା(ଓ) ବିଧାୟକ ଦଳ ପୁଣି ଜନତା ବିଧାୟକ ଦଳ ଭାବରେ ନାମିତ ହେଲା ଏବଂ ଶାସନ କରୁଥିବା ଜନତାଦଳ ଲୋକଦଳ ବିଧାୟକ ଦଳ ଭାବରେ ନାମିତ ହେଲା । ଶ୍ରୀ ଅନନ୍ତ ନାରାୟଣ ସିଂହଦେଓ ଜନତା ବିଧାୟକ ଦଳର ନେତା ହେବାରୁ ବିରୋଧୀ ଦଳର ନେତାଭାବରେ ଘୋଷିତ ହୋଇଥିଲେ ।

ଶ୍ରୀ ସତ୍ୟପ୍ରିୟ ମହାନ୍ତି ଓ ଶ୍ରୀ ସୁରେନ୍ଦ୍ର ନାଥ୍ ନାୟକ ଯଥାକ୍ରମେ ସପ୍ତମ ବିଧାନସଭାର ବାଚସ୍ପତି ଓ ଉପବାଚସ୍ପତି ଘୋଷିତ ହୋଇଥିଲେ । ଓଡ଼ିଶାରେ ପୁଣି 1980 ଫେବୃୟାରୀ 17 ତାରିଖରେ ରାଷ୍ଟ୍ରପତି ଶାସନ ଜାରି ହୋଇଥିଲା ଏବଂ ବିଧାନସଭାକୁ ଭାଙ୍ଗିଦିଆଯାଇଥିଲା । ଏହି ବିଧାନସଭାର ମୋଟ 9ଟି ଅଧିବେଶନ ଓ 150ଟି ବୈଠକ ଦିବସ ହୋଇଥିଲା ଏବଂ 1980 ଫେବୃୟାରୀ 17 ତାରିଖରେ ଏହି ବିଧାନ ସଭାକୁ ଭାଙ୍ଗି ଦିଆଯାଇଥିଲା ।

## ଅଷ୍ଟମ ବିଧାନସଭା, 1980

ଅଷ୍ଟମ ବିଧାନସଭାପାଇଁ 1980 ମସିହା ମଇ 31 ତାରିଖରେ ନିର୍ବାଚନ ସଂଗଠିତ ହୋଇଥିଲା ଏବଂ 1980 ଜୁନ୍ 9 ତାରିଖରେ ନୂତନ ବିଧାନସଭା ଗଠିତ ହୋଇଥିଲା । ଜଣେ ପ୍ରାର୍ଥୀଙ୍କ ମୃତ୍ୟୁ ଯୋଗୁଁ ନିମାପଡ଼ା ନିର୍ବାଚନମଣ୍ଡଳୀରେ ନିର୍ବାଚନ କାର୍ଯ୍ୟ ସ୍ଥଗିତ ରଖାଯାଇଥିଲା । 1980 ଜୁନ୍ 11 ଓ 12 ତାରିଖରେ ନବନିର୍ବାଚିତ ସଭ୍ୟଗଣ ଶପଥ ଗ୍ରହଣ କରିଥିଲେ ଏବଂ ଶ୍ରୀ ପ୍ରସନ୍ନ କୁମାର ଦାଶ ଅସ୍ଥାୟୀ ବାଚସ୍ପତି ରୂପେ କାର୍ଯ୍ୟ କରିଥିଲେ । ଏହି ବିଧାନ ସଭାର ପ୍ରଥମ ଅଧିବେଶନ 1980 ଜୁନ୍ 30 ତାରିଖରେ ଅନୁଷ୍ଠିତ ହୋଇଥିଲା । ଅଷ୍ଟମ ବିଧାନସଭାରେ ବିଭିନ୍ନ ଦଳର ସ୍ଥିତି ନିମ୍ନପ୍ରକାରେ ହୋଇଥିଲା :—

| | | |
|---|---|---|
| କଂଗ୍ରେସ (ଆଇ) | .. | 117 |
| ଜନତା (ଏସ୍) | .. | 13 |
| ଜନତା (ଜେ. ପି.) | .. | 3 |
| ସି. ପି. ଆଇ. | .. | 4 |
| କଂଗ୍ରେସ (ୟୁ) | .. | 2 |
| ସ୍ୱାଧୀନ | .. | 7 |
| ଶୂନ୍ୟସ୍ଥାନ | .. | 1 |
| ମୋଟ | .. | 147 |

ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ କଂଗ୍ରେସ (ଆଇ) ର ନେତା ଭାବରେ 1980 ଜୁନ୍ 9 ତାରିଖରେ ମୁଖ୍ୟମନ୍ତ୍ରୀ ହୋଇଥିଲେ । ସେତେବେଳେ ସେ ବିଧାନ ସଭାର ସଭ୍ୟ ନ ଥିଲେ ଏବଂ ଆଠଗଡ ନିର୍ବାଚନମଣ୍ଡଳୀରୁ ଏକ ଉପନିର୍ବାଚନରେ ଜୟଲାଭକରି ସଭ୍ୟଭାବରେ ନିର୍ବାଚିତ ହୋଇଥିଲେ ।

ଶ୍ରୀ ବିଜୁ ପଟ୍ଟନାୟକ ଏକ ସମୟରେ କେନ୍ଦ୍ରାପଡ଼ା ପାର୍ଲାମେଣ୍ଟ ନିର୍ବାଚନମଣ୍ଡଳୀରୁ ଓ ପାଟକୁରା ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇଥିଲେ । 1980 ମସିହା ଜୁନ୍ 11 ତାରିଖରେ ସେ କେନ୍ଦ୍ରାପଡ଼ା ନିର୍ବାଚନମଣ୍ଡଳୀରୁ ଇସ୍ତଫା ଦେଇ ବିଧାନ ସଭାର ଜଣେକ ସଭ୍ୟ ଭାବରେ ରହିବାକୁ ଗ୍ରହିଁଥିଲେ । ଶ୍ରୀ ରସାନନ୍ଦ ସାହୁ ଆଠଗଡ଼ ନିର୍ବାଚନମଣ୍ଡଳୀର କଂଗ୍ରେସ ସଭ୍ୟ ପଦରୁ ଇସ୍ତଫା ଦେଇଥିଲେ । 1980 ଅକ୍ଟୋବର 7 ତାରିଖରେ ଏବଂ ତାଙ୍କ ସ୍ଥାନରେ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉପନିର୍ବାଚନରେ ନିର୍ବାଚିତ ହୋଇ ବିଧାନ ସଭାର ସଭ୍ୟ ହୋଇଥିଲେ । ନିମାପଡ଼ା ଉପନିର୍ବାଚନରେ ମଧ୍ୟ କଂଗ୍ରେସ ଦଳ ଓ ପାଟକୁରା ନିର୍ବାଚନମଣ୍ଡଳୀରୁ ଜନତା (ସି. ଏସ୍.) ଦଳ ପ୍ରାର୍ଥୀ ଜୟଲାଭ କରି ବିଧାନ ସଭାର ସଭ୍ୟ ହୋଇଥିଲେ । ଶ୍ରୀ ସୋମନାଥ ରଥ ତା 12-6-1980 ରିଖ ଓ ଶ୍ରୀ ହିମାଂଶୁ ଶେଖର ପାଢ଼ୀ ତା 2-7-1980 ରିଖରେ ଯଥାକ୍ରମେ ବାଚସ୍ପତି ଓ ଉପବାଚସ୍ପତି ନିର୍ବାଚିତ ହୋଇଥିଲେ । 1984 ଫେବୃଆରୀ 11 ତାରିଖରେ ଶ୍ରୀ ରଥ ଇସ୍ତଫା ଦେଇ ମନ୍ତ୍ରୀମଣ୍ଡଳରେ ଯୋଗଦାନ କରିବାରୁ ଶ୍ରୀ ପ୍ରସନ୍ନ କୁମାର ଦାଶ 1984 ଫେବୃଆରୀ 22 ତାରିଖରୁ ବାଚସ୍ପତି ନିର୍ବାଚିତ ହୋଇ ବିଧାନ ସଭାର କାର୍ଯ୍ୟ ନିର୍ବାହ କରିଥିଲେ ।

ଦୁର୍ଭାଗ୍ୟକୁ ସେତେବେଳେ କୌଣସି ବିରୋଧୀ ଦଳ ବିଧାନ ସଭାରେ ଆବଶ୍ୟକ ସଂଖ୍ୟକ ଆସନ ଲାଭ କରି ନ ଥିଲେ । ତେଣୁ କୌଣସି ଦଳର ନେତାଙ୍କୁ ବିରୋଧୀ ଦଳ ନେତା ଭାବରେ ଘୋଷଣା କରାଯାଇ ନ ଥିଲା । ଲୋକ ଦଳରୁ 2 ଜଣ ସଭ୍ୟ ଇସ୍ତଫା ଦେବା ପରେ ଉକ୍ତ ଦଳ ବିଧାନ ସଭାର ମାତ୍ର 11 ଟି ଆସନ ଲାଭ କରିଥିଲେ । ଜନତା ( ସି. ଏସ୍. ) ତଥା ଲୋକଦଳ ଓ ଜନତା (ଜେ. ପି.) ମିଶି ଗୋଟିଏ ନୂଆ ଦଳ ଜନତା ବିଧାୟକ ଦଳ ଗଠନ କରିଥିଲେ ଏବଂ ଏହି ଦଳର 14 ଜଣ ସଭ୍ୟ ବିଧାନ ସଭାରେ ରହିବାରୁ 1983 ଫେବୃଆରୀ 23ରୁ ଶ୍ରୀ ଶରତ ଚନ୍ଦ୍ର ଦେବ ନେତା ନିର୍ବାଚିତ ହୋଇଥିଲେ ଏବଂ ତାଙ୍କୁ ବିରୋଧୀ ଦଳ ନେତା ଭାବରେ ଘୋଷଣା କରାଯାଇଥିଲା । 1984 ସେପ୍ଟେମ୍ବର 5 ତାରିଖରେ ଗଣତାନ୍ତ୍ରିକ ସାମ୍ୟବାଦୀ ଦଳ (Democratic Socialistic Party) ଗଠିତ ହେଲା ଓ କଂଗ୍ରେସରୁ ଇସ୍ତଫା ଦେଇଥିବା ଦୁଇ ଜଣ ସଭ୍ୟଙ୍କୁ ନେଇ ଏହି ଦଳ ବିଧାନ ସଭାର ପ୍ରତିନିଧିତ୍ୱ କରିଥିଲେ । ଅଷ୍ଟମ ବିଧାନ ସଭାର ମୋଟ ଦଶଟି ଅଧିବେଶନ ବସିଥିଲା ଏବଂ 176ଟି ବୈଠକ ଦିବସରେ ଏହାର କାର୍ଯ୍ୟ ସମ୍ପାଦିତ ହୋଇଥିଲା । 1985 ମାର୍ଚ୍ଚ 9 ତାରିଖରେ ଏହି ବିଧାନ ସଭା ଭାଙ୍ଗି ଯାଇଥିଲା ଏବଂ ଉକ୍ତ ଦିନ ମୁଖ୍ୟମନ୍ତ୍ରୀ ତାଙ୍କ ମନ୍ତ୍ରୀମଣ୍ଡଳ ସହିତ ଇସ୍ତଫା ଦେଇଥିଲେ ।

## ନବମ ବିଧାନ ସଭା, 1985

ନବମ ବିଧାନ ସଭା ପାଇଁ ସାଧାରଣ ନିର୍ବାଚନ 1985 ମାର୍ଚ୍ଚ 5 ତାରିଖରେ ଅନୁଷ୍ଠିତ ହୋଇଥିଲା । ମାତ୍ର କାକଟପୁର ଓ କେନ୍ଦୁଝର ଏ ଦୁଇଟି ନିର୍ବାଚନମଣ୍ଡଳୀର ପ୍ରାର୍ଥୀଙ୍କ ମୃତ୍ୟୁ ଯୋଗୁଁ ମୋଟ 147 ମଧ୍ୟରୁ 145ଟି ନିର୍ବାଚନମଣ୍ଡଳୀରେ ନିର୍ବାଚନ କରାଯାଇଥିଲା । ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉଭୟ ଆଠଗଡ଼ ଓ ଖୋର୍ଦ୍ଧା ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇଥିବାରୁ ସେ 1985 ମାର୍ଚ୍ଚ 15 ତାରିଖରେ ଖୋର୍ଦ୍ଧାରୁ ଇସ୍ତଫା ଦେଇଥିଲେ । ନବମ ବିଧାନ ସଭାରେ ବିଭିନ୍ନ ଦଳ କେତୋଟି ଲେଖାଏଁ ଆସନ ଲାଭ କରିଥିଲେ ତାହା ନିମ୍ନୋକ୍ତ ବିବରଣୀରୁ ଜଣାପଡ଼ିବ ।

| | | |
|---|---|---|
| ଭାରତୀୟ ଜାତୀୟ କଂଗ୍ରେସ | | 117 |
| ଜନତା ଦଳ | .. | 19 |
| ଭାରତୀୟ କମ୍ୟୁନିଷ୍ଟ ଦଳ | | 1 |
| ଭାରତୀୟ ଜନତା ଦଳ | .. | 1 |
| ସ୍ୱାଧୀନ | | 7 |
| ଶୂନ୍ୟସ୍ଥାନ | | 2 |
| ମୋଟ | .. | 147 |

ନୂତନ ବିଧାନ ସଭା 1985 ମସିହା ମାର୍ଚ୍ଚ 9 ତାରିଖରେ ଗଠିତ ହେଲା । କଂଗ୍ରେସ ବିଧାୟକ ଦଳର ନେତା ଭାବରେ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବରେ 1985 ମସିହା ମାର୍ଚ୍ଚ 10 ତାରିଖରେ ଶପଥ ଗ୍ରହଣ କରିଥିଲେ । 1985 ମସିହା ମାର୍ଚ୍ଚ 12 ତାରିଖରେ 5 ଜଣ କ୍ୟାବିନେଟ୍ ମନ୍ତ୍ରୀ ଓ 10 ଜଣ ରାଷ୍ଟ୍ରମନ୍ତ୍ରୀ ଭାବରେ ଶପଥ ନେଇଥିଲେ । ଶ୍ରୀ ଶ୍ରଦ୍ଧାକର ସୂପକାର ବରିଷ୍ଠ ସଭ୍ୟ ଭାବରେ ଏହି ଶପଥ ପାଠ ଉତ୍ସବରେ ଅଧ୍ୟକ୍ଷତା କରିଥିଲେ ।

1985 ମସିହା ମାର୍ଚ୍ଚ 13 ତାରିଖରେ ନବ ନିର୍ବାଚିତ ସଭ୍ୟଗଣ ଶପଥ ପାଠ କରିଥିଲେ । ନବମ ବିଧାନ ସଭାର ପ୍ରଥମ ଅଧିବେଶନ 1985 ମାର୍ଚ୍ଚ 14 ତାରିଖରେ ଅନୁଷ୍ଠିତ ହୋଇ ଶ୍ରୀ ପ୍ରସନ୍ନ କୁମାର ଦାଶଙ୍କୁ ବାଚସ୍ପତି ରୂପେ ଓ ଶ୍ରୀ ଚିନ୍ତାମଣି ଦ୍ୟାନ ସାମନ୍ତରାୟଙ୍କୁ 1985 ମାର୍ଚ୍ଚ 18 ତାରିଖରେ ଉପବାଚସ୍ପତି ରୂପେ ନିର୍ବାଚିତ କରାଯାଇଥିଲା । ଜନତା ଦଳର ନେତା ଶ୍ରୀ ବିଜୁ ପଟ୍ଟନାୟକ 1985 ମାର୍ଚ୍ଚ 22 ତାରିଖ ଦିନ ବିରୋଧୀ ଦଳ ନେତା ରୂପେ ଘୋଷିତ ହୋଇଥିଲେ ।

1985 ମସିହା ଏପ୍ରିଲ 24 ତାରିଖ ଉପନିର୍ବାଚନରେ କାକଟପୁର ଓ କେଉଁଝରର ନିର୍ବାଚନମଣ୍ଡଳୀ ପାଇଁ ଜନତା ଦଳ ପ୍ରାର୍ଥୀ ଓ ଖୋର୍ଦ୍ଧା ନିର୍ବାଚନମଣ୍ଡଳୀ ପାଇଁ ଜଣେ ସ୍ୱାଧୀନ ପ୍ରାର୍ଥୀ ଜୟଯୁକ୍ତ ହୋଇଥିଲେ । ରାଇରଙ୍ଗପୁର ନିର୍ବାଚନମଣ୍ଡଳୀର କଂଗ୍ରେସ ସଭ୍ୟ ଶ୍ରୀ ଭବେନ୍ଦ୍ରନାଥ ମାଝୀ 1986 ମାର୍ଚ୍ଚ 3 ରେ ମୃତ ହେବାରୁ ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀ ଜନତା ଦଳ ପକ୍ଷରୁ 1986 ନଭେମ୍ବର 23 ତାରିଖରେ ଅନୁଷ୍ଠିତ ଉପନିର୍ବାଚନରେ ଜୟଯୁକ୍ତ ହୋଇଥିଲେ । ସେହିପରି ଟିଟିଲାଗଡ଼ ନିର୍ବାଚନମଣ୍ଡଳୀ କଂଗ୍ରେସ ସଭ୍ୟ ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାନନ୍ଦଙ୍କ ମୃତ୍ୟୁ ଘଟିଥିଲା (18-5-1989) । ଶ୍ରୀ ଭଜମନ ବେହେରା, ତାଳଚେର ନିର୍ବାଚନମଣ୍ଡଳୀ, କଂଗ୍ରେସ ସଭ୍ୟ ଦଳ ବିରୋଧୀ ଆଇନ ଅନୁସାରେ ସଭ୍ୟପଦରୁ ବଞ୍ଚିତ ହୋଇଥିଲେ (15-1-1989), ଗୋବିନ୍ଦପୁର ନିର୍ବାଚନମଣ୍ଡଳୀର ସ୍ୱାଧୀନ ସଭ୍ୟ ଇସ୍ତଫା ଦେଇଥିଲେ (15-9-1989) । ଆଉ 4 ଜଣ ବିଧାନ ସଭା ସଭ୍ୟଙ୍କ ମଧ୍ୟରୁ 3 ଜଣ ଜନତା ଦଳର ଓ ଜଣେ ସ୍ୱାଧୀନ ସଭ୍ୟ 1989 ଡିସେମ୍ବର 6 ଓ 7 ତାରିଖରେ ଇସ୍ତଫା ଦେଇଥିଲେ, ଯେହେତୁ ସେମାନେ ନବମ ଲୋକସଭା ପାଇଁ 1984 ନଭେମ୍ବର ସାଧାରଣ ନିର୍ବାଚନରେ ଜୟଯୁକ୍ତ ହୋଇଥିଲେ । ସେମିତି ଦେଓଗଡ଼ କଂଗ୍ରେସ ସଭ୍ୟ ଶ୍ରୀ ରାଜ କିଶୋର ପ୍ରଧାନ ଓ ପାଲଲହଡ଼ା କଂଗ୍ରେସ ସଭ୍ୟ ଶ୍ରୀ ବିଜୁଧେନ୍ଦ୍ର ପ୍ରତାପ ଦାସ ନିଜ ନିଜ ପଦରୁ 1989 ଡିସେମ୍ବର 30 ତାରିଖରେ ଇସ୍ତଫା ଦେଇଥିଲେ ।

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ 1989 ଡିସେମ୍ବର 7 ତାରିଖରେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ ଓ ଉକ୍ତ ଦିନଠାରୁ ଶ୍ରୀ ହେମାନନ୍ଦ ବିଶ୍ୱାଳ ମୁଖ୍ୟମନ୍ତ୍ରୀ ହୋଇଥିଲେ । ଏହି ବିଧାନ ସଭା ସର୍ବମୋଟ 11ଟି ଅଧିବେଶନରେ ଓ 188 ଟି ବୈଠକ ଦିବସରେ କାର୍ଯ୍ୟ ନିର୍ବାହ କରିଥିଲେ ଏବଂ 1990 ମାର୍ଚ୍ଚ 3 ତାରିଖରେ ଭାଙ୍ଗିଯାଇଥିଲା ।

## ଦଶମ ବିଧାନ ସଭା, 1990

1990 ଫେବୃଆରୀ 27 ତାରିଖରେ ସାଧାରଣ ନିର୍ବାଚନ ଅନୁଷ୍ଠିତ ହୋଇ ଦଶମ ବିଧାନ ସଭା ପାଇଁ ନିର୍ବାଚନ କରିଥିଲା । ଏଇ ନିର୍ବାଚନର ଫଳାଫଳ ଅନୁସାରେ ବିଧାନ ସଭାରେ ବିଭିନ୍ନ ଦଳର ସଭ୍ୟ ସଂଖ୍ୟା ନିମ୍ନୋକ୍ତ ପ୍ରକାରେ ଦିଆଗଲା :—

| | | |
|---|---|---|
| ଜନତା ଦଳ | .. | 123 |
| ଭାରତୀୟ ଜାତୀୟ କଂଗ୍ରେସ | | 10 |
| ବି. ଜେ. ପି. | | 2 |
| ସି. ପି. ଆଇ. (ମାର୍କସ) | | 1 |

| | | |
|---|---|---|
| ସି. ପି. ଆଇ. | | 5 |
| ସ୍ୱାଧୀନ | .. | 6 |
| ମୋଟ | | 147 |

1990 ମାର୍ଚ୍ଚ ପହିଲାରେ ଧାମନଗର ନିର୍ବାଚନମଣ୍ଡଳୀର ସଭ୍ୟ ମୃତ୍ୟୁବରଣ କରିଥିଲେ । 1990 ଏପ୍ରିଲ୍ 29 ତାରିଖରେ ଅନୁଷ୍ଠିତ ଉପନିର୍ବାଚନରେ ଜନତା ଦଳ ସଭ୍ୟ ନିର୍ବାଚିତ ହୋଇଥିଲେ ।

1990 ମାର୍ଚ୍ଚ 3ରେ ନୂତନ ବିଧାନ ସଭା ଗଠିତ ହୋଇଥିଲା । ଜନତାଦଳ ନେତା ଶ୍ରୀ ବିଜୁ ପଟ୍ଟନାୟକ 1990 ମାର୍ଚ୍ଚ 5 ତାରିଖରେ ମୁଖ୍ୟମନ୍ତ୍ରୀ ଭାବରେ ଦାୟିତ୍ୱ ଗ୍ରହଣ କରିଥିଲେ । ଶ୍ରୀ ଘାସିରାମ ମାଝୀ ବରିଷ୍ଠ ସଭ୍ୟ ଭାବରେ ଉକ୍ତ ଶପଥ ଉତ୍ସବରେ ଅଧ୍ୟକ୍ଷତା କରିଥିଲେ । ସେ ନୂତନ ସଭ୍ୟମାନଙ୍କୁ 1990 ମାର୍ଚ୍ଚ 6 ଓ 7 ତାରିଖରେ ଶପଥ ପାଠ କରାଇଥିଲେ । 1990 ମାର୍ଚ୍ଚ 9 ତାରିଖରେ ଶ୍ରୀ ଯୁଧିଷ୍ଠିର ଦାସ ବାଚସ୍ପତି ନିର୍ବାଚିତ ହୋଇଥିଲେ ଏବଂ 1990 ମାର୍ଚ୍ଚ 22 ତାରିଖରେ ଶ୍ରୀ ପ୍ରହ୍ଲାଦ ଦୋରା ଉପବାଚସ୍ପତି ନିର୍ବାଚିତ ହୋଇଥିଲେ । 1990 ମାର୍ଚ୍ଚ 28 ତାରିଖରେ ବହଳଦା ଓ ବାଙ୍ଗିରୀପୋଷି ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ସଭ୍ୟଦ୍ୱୟ ଶପଥ ଗ୍ରହଣ କରିଥିଲେ । 1990 ମାର୍ଚ୍ଚ 12ରୁ 29 ପର୍ଯ୍ୟନ୍ତ ଦଶମ ବିଧାନ ସଭାର ପ୍ରଥମ ଅଧିବେଶନ ବସିଥିଲା ।

ଏହି ସମୟରେ କୌଣସି ବିରୋଧୀ ଦଳ ବିଧାନ ସଭାରେ ଆବଶ୍ୟକ ସଂଖ୍ୟାରେ ଆସନ ଲାଭ କରିନଥିବାରୁ କୌଣସି ନେତାଙ୍କୁ ବିରୋଧୀ ଦଳରେ ନେତାରୂପେ ସ୍ୱୀକୃତି ମିଳିନଥିଲା । ଭଣ୍ଡାରୀପୋଖରୀର ଶ୍ରୀ ଅର୍ଜୁନ ଚରଣ ସେଠୀ ଓ ପୁରୀର ଶ୍ରୀ ବ୍ରଜ କିଶୋର ତ୍ରିପାଠୀ (ଉଭୟ ଜନତା ଦଳ) ଯଥାକ୍ରମେ 1991 ମସିହା ଜୁନ୍ 30 ଓ 1991 ମସିହା ଜୁଲାଇ ପହିଲାରେ ଇସ୍ତଫା ଦେଇଥିଲେ ଏବଂ ଦଶମ ଲୋକସଭାପାଇଁ ସାଧାରଣ ନିର୍ବାଚନରେ ପାର୍ଲାମେଣ୍ଟକୁ ନିର୍ବାଚିତ ହୋଇଥିଲେ ।

1991 ଅଗଷ୍ଟ 24 ତାରିଖରେ ବିଜେପୁର ନିର୍ବାଚନମଣ୍ଡଳୀରେ ଜନତା ଦଳରୁ ବିଧାନ ସଭା ସଭ୍ୟ ଶ୍ରୀ ନିକୁଞ୍ଜ ବିହାରୀ ସିଂହ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ । ତେଣୁ 1991 ନଭେମ୍ବର 16 ତାରିଖରେ ଭଣ୍ଡାରୀପୋଖରୀ, ପୁରୀ ଓ ବିଜେପୁର ନିର୍ବାଚନ-ମଣ୍ଡଳୀ ପାଇଁ ଉପନିର୍ବାଚନ ଅନୁଷ୍ଠିତ ହୋଇ ତିନୋଟିଯାକ ସ୍ଥାନରୁ ଜନତା ଦଳ ପ୍ରାର୍ଥୀମାନେ ଜୟଯୁକ୍ତ ହୋଇ ବିଧାନ ସଭାର ସଭ୍ୟ ହୋଇଥିଲେ ।

1991 ସେପ୍‌ଟେମ୍ବର 19 ତାରିଖରେ ସି. ପି. ଆଇ ( ଏମ୍ ) ଦଳରୁ ନିର୍ବାଚିତ ବିଧାନ ସଭା ସଦସ୍ୟ ସ୍ୱାଧୀନ ଭାବରେ ବିଧାନ ସଭାରେ କାର୍ଯ୍ୟ କରିବେ ବୋଲି ଜଣାଇଥିଲେ । ପରେ ଓଡ଼ିଶା କମ୍ୟୁନିଷ୍ଟ ଦଳର ସଭ୍ୟ ଭାବରେ ସେ କାର୍ଯ୍ୟ କରିବେ ବୋଲି 1992 ମାର୍ଚ୍ଚ 4 ତାରିଖରେ ଜଣାଇଥିଲେ । ସମ୍ବିଧାନର ଧାରା 190 ( 3 ) ଅନୁସାରେ ତା 7-1-1992 ରେ ଶ୍ରୀ ସୁଦାମ ଚନ୍ଦ୍ର ମରାଣ୍ଡିଙ୍କୁ ବାଙ୍ଗିରୀପୋଷି ନିର୍ବାଚନମଣ୍ଡଳୀର ସଭ୍ୟ ପଦରୁ 3 ବର୍ଷ ପାଇଁ ବଞ୍ଚିତ କରାଗଲା । 1992 ଏପ୍ରିଲ 2 ତାରିଖରେ ମାଲକାନଗିରି ନିର୍ବାଚନମଣ୍ଡଳୀର ନିର୍ବାଚିତ ସଦସ୍ୟ ଶ୍ରୀ ନାକା କାନାୟାଙ୍କର ମୃତ୍ୟୁ ଘଟିବାରୁ 1992 ଜୁନ୍ 4 ତାରିଖରେ ଅନୁଷ୍ଠିତ ଉପନିର୍ବାଚନରେ ଶ୍ରୀ ଅରବିନ୍ଦ ଢାଲି ଭାରତୀୟ ଜନତା ଦଳ ପ୍ରାର୍ଥୀ ଭାବରେ ଜୟଯୁକ୍ତ ହୋଇ ବିଧାନ ସଭା ସଭ୍ୟ ହୋଇଥିଲେ । 1992 ଅକ୍‌ଟୋବର 17 ତାରିଖରେ ଶ୍ରୀ ତ୍ରିନାଥ ନାୟକ ( ହିନ୍ଦୋଳ ନିର୍ବାଚନମଣ୍ଡଳୀ ପ୍ରତିନିଧି ଓ ରାଷ୍ଟ୍ରମନ୍ତ୍ରୀ ) ଙ୍କ ମୃତ୍ୟୁ ଘଟିବାରୁ ତା-19-5-1993 ରେ ଉପନିର୍ବାଚନ କରାଯାଇଥିଲା ଏବଂ ସେଥିରେ ଜନତା ଦଳ ପ୍ରାର୍ଥୀ ଭାବରେ ଶ୍ରୀମତୀ ପ୍ୟାଟ ନାଏକ ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ । ତା 1-12-1994 ରେ ଭାରତୀୟ ସମ୍ବିଧାନର ଦଶମ ତଫସିଲ ଅନୁସାରେ ସଭ୍ୟ ପଦରୁ ଶ୍ରୀ କୁମାର ବେହେରା ( ଭଟଲି ସଂରକ୍ଷିତ ନିର୍ବାଚନମଣ୍ଡଳୀର ପ୍ରତିନିଧି ) ଅଯୋଗ୍ୟ ବିବେଚିତ ହେଲେ ।

ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଚିଲିକା ନିର୍ବାଚନମଣ୍ଡଳୀର ସଭ୍ୟ ଓ ଶ୍ରୀ ଜଗନ୍ନାଥ ମଲ୍ଲିକ ଯାଜପୁର ସଂରକ୍ଷିତ ( ତଫସିଲଭୁକ୍ତ ଜାତି ) ନିର୍ବାଚନମଣ୍ଡଳୀର ସଭ୍ୟ ସେମାନଙ୍କ ସଭ୍ୟ ପଦରୁ ଇସ୍ତଫା ଦେଇଥିଲେ ଏବଂ ବାଚସ୍ପତି ଯଥାକ୍ରମେ ତା 6-11-1994 ଓ ତା 16-11-1994 ରେ ସେମାନଙ୍କ ଇସ୍ତଫାପତ୍ର ଗ୍ରହଣ କରିଥିଲେ । ଜନତା ଦଳ ପ୍ରାଥମିକ ସଭ୍ୟ ପଦରୁ ବାହାର କରିଦେବା ଫଳରେ ସର୍ବଶ୍ରୀ ଶରତ ଚନ୍ଦ୍ର ପାଇକରାୟ (କଟଣୀ), ଚନ୍ଦ୍ରମାଧବ ମିଶ୍ର ( ସାକ୍ଷୀଗୋପାଳ ) ଓ ଉମାବଲ୍ଲଭ ରଥ ( ପୁରୀ ) 1995 ଜାନୁୟାରୀ 25 ତାରିଖରେ ସ୍ୱାଧୀନ ସଭ୍ୟ ଭାବରେ ବିଧାନ ସଭାରେ ରହିଥିଲେ । ବିଧାନ ସଭା ସର୍ବମୋଟ 17ଟି ଅଧିବେଶନରେ ଓ 239ଟି ବୈଠକ ଦିବସରେ କାର୍ଯ୍ୟ ନିର୍ବାହ କରିଥିଲେ ଏବଂ 1995 ମାର୍ଚ୍ଚ 15 ତାରିଖରେ ଏହାକୁ ଭାଙ୍ଗି ଦିଆଯାଇଥିଲା ।

## ଏକାଦଶ ବିଧାନ ସଭା, 1995

ସଂପ୍ରତି ଆମ ରାଜ୍ୟରେ ଏକାଦଶ ବିଧାନ ସଭା କାର୍ଯ୍ୟ ନିର୍ବାହ କରୁଛନ୍ତି ଏବଂ ଏଥିପାଇଁ ସାଧାରଣ ନିର୍ବାଚନ 1995 ମାର୍ଚ୍ଚ 7 ରେ 71ଟି ନିର୍ବାଚନମଣ୍ଡଳୀ ଓ ସେହି ବର୍ଷ ମାର୍ଚ୍ଚ 9 ତାରିଖରେ 76ଟି ନିର୍ବାଚନମଣ୍ଡଳୀ ପାଇଁ ସମାହିତ ହୋଇଥିଲା । ଏହି

ନିର୍ବାଚନ ଫଳାଫଳ ଅନୁସାରେ ଏକାଦଶ ବିଧାନ ସଭାର ବିଭିନ୍ନ ଦଳର ଆସନ ସଂଖ୍ୟା ନିମ୍ନୋକ୍ତ ପ୍ରକାରେ ହୋଇଥିଲା:—

| | | |
|---|---|---|
| ଭାରତୀୟ ଜାତୀୟ କଂଗ୍ରେସ | .. | 80 |
| ଜନତା ଦଳ | .. | 46 |
| ଭାରତୀୟ ଜନତା ଦଳ | .. | 9 |
| ଝାରଖଣ୍ଡ ମୁକ୍ତି ମୋର୍ଚ୍ଚା | | 4 |
| ଝାଡ଼ଖଣ୍ଡ ଲୋକ ଦଳ | | 1 |
| ସି. ପି. ଆଇ. | .. | 1 |
| ସ୍ୱାଧୀନ | .. | 6 |
| ମୋଟ | .. | 147 |

1995 ମାର୍ଚ୍ଚ 15 ତାରିଖରେ ଏକାଦଶ ଓଡ଼ିଶା ବିଧାନ ସଭା ଗଠିତ ହୋଇଥିଲା । ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଭାରତୀୟ ଜାତୀୟ କଂଗ୍ରେସ ବିଧାୟକ ଦଳର ନେତା ଭାବରେ ଉକ୍ତ ଦିନ ମନ୍ତ୍ରୀମଣ୍ଡଳ ଗଠନ କରିଥିଲେ । ସେହିଦିନ ବିଧାୟକ ଶ୍ରୀ ବସନ୍ତ ବିଶ୍ୱାଳ ଓ ଶ୍ରୀ ହେମାନନ୍ଦ ବିଶ୍ୱାଳ, ଉପମୁଖ୍ୟମନ୍ତ୍ରୀ ଭାବରେ ଶପଥ ଗ୍ରହଣ କରିଥିଲେ ଏବଂ ଶ୍ରୀ କାହ୍ନୁ ଚରଣ ଲେଙ୍କା, ବିଧାୟକ ଓ ଶ୍ରୀ ରାମଚନ୍ଦ୍ର ଉଲ୍ଲାକା, ବିଧାୟକ, କ୍ୟାବିନେଟ୍ ମନ୍ତ୍ରୀ ଭାବରେ ଶପଥ ପାଠ କରିଥିଲେ ।

ଶ୍ରୀ ଘାସିରାମ ମାଝି, ବିଧାନ ସଭାର ବରିଷ୍ଠ ବିଧାୟକ ଭାବରେ ଶପଥପାଠ ଉତ୍ସବରେ ଅଧ୍ୟକ୍ଷତା କରିଥିଲେ । ସେ 20,21 ଓ 23 ମାର୍ଚ୍ଚ, 1995 ରେ ନବ ନିର୍ବାଚିତ ସଦସ୍ୟଙ୍କ ଶପଥ ପାଠ କରାଇଥିଲେ । ଶ୍ରୀ କିଶୋର ଚନ୍ଦ୍ର ପଟେଲ ଏହି ଏକାଦଶ ବିଧାନ ସଭାର ବାଚସ୍ପତିଭାବରେ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥିଲେ (ତା 22-3-1995 ରେ) । 1995 ମସିହା ମାର୍ଚ୍ଚ 28 ତାରିଖରେ ଶ୍ରୀ ଚିନ୍ତାମଣି ଦ୍ୟାନସାମନ୍ତରା ଉପବାଚସ୍ପତି ପଦରେ ନିର୍ବାଚିତ ହୋଇ ଅବସ୍ଥାପିତ ହୋଇଥିଲେ ।

1995 ମାର୍ଚ୍ଚ 23 ତାରିଖରେ ଜନତା ଦଳ ବିଧାୟକ, ଦଳ ତରଫରୁ ଶ୍ରୀ ବିଜୁ ପଟ୍ଟନାୟକ ବିରୋଧୀ ଦଳ ନେତା ଘୋଷିତ ହୋଇଥିଲେ । ଶ୍ରୀ ହରିହର ସାହୁ, ଓଡ଼ିଶା ବିଧାନ ସଭାର ସଭ୍ୟ (ବେଗୁନିଆ ନିର୍ବାଚନମଣ୍ଡଳୀ ପ୍ରତିନିଧି) ନିଜ ଆସନରୁ ଇସ୍ତଫା ଦେଇଥିଲେ ଏବଂ ସେଠାରୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ

ଉପ ନିର୍ବାଚନରେ ପତିଦ୍ୱନ୍ଦ୍ୱିତା କରି ଜୟଯୁକ୍ତ ହୋଇଥିଲେ । ଶ୍ରୀ ସାହୁଙ୍କ ଇସ୍ତଫାପତ୍ର 1995 ଏପ୍ରିଲ 16 ତାରିଖରେ ବାଚସ୍ପତିଙ୍କ ଦ୍ୱାରା ଗୃହୀତ ହୋଇଥିଲା । ତା 27-5-1995 ରେ ଅନୁଷ୍ଠିତ ଉପନିର୍ବାଚନରେ ଶ୍ରୀ ପଟ୍ଟନାୟକ ଓଡ଼ିଶା ବିଧାନ ସଭାର ସଭ୍ୟ ଭାବରେ ନିର୍ବାଚିତ ହୋଇଥିଲେ । 1995 ଜୁନ୍ 3 ତାରିଖରେ ସେ ବିଧାନ ସଭାର ସଭ୍ୟ ଭାବରେ ଶପଥ ପାଠ କରିଥିଲେ ।

ଏହି ଏକାଦଶ ବିଧାନ ସଭାର ପ୍ରଥମ ଅଧିବେଶନ 1995 ମାର୍ଚ୍ଚ 23 ତାରିଖରେ ଆହୂତ ହୋଇଥିଲା ଏବଂ ସେହିଦିନ ରାଜ୍ୟପାଳ ଅଭିଭାଷଣ ଦେଇଥିଲେ ।

ଏକାଦଶ ବିଧାନ ସଭାର ଦ୍ୱିତୀୟ ଅଧିବେଶନ ତା28-6-1995 ରୁ ତା 2-8-1995 ଯାଏ 27 ଦିନ ପାଇଁ ଅନୁଷ୍ଠିତ ହୋଇଥିଲା । ଅର୍ଥମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳଙ୍କ ଦ୍ୱାରା ପ୍ରଥମ ଦିନ ରାଜ୍ୟର ବଜେଟ ଉପସ୍ଥାପନ ହୋଇଥିଲା । ଅଧିବେଶନର ଅଧ୍ୟକ୍ଷତା କରିବାପାଇଁ ସର୍ବଶ୍ରୀ ଜୟଦେବ ଜେନା, ପ୍ରଫୁଲ୍ଲ କୁମାର ଘଡ଼େଇ, ବି.କେ. ଝାଁ ଓ ବି. ପି. ଦାସଙ୍କୁ ନେଇ ଏକ ତାଲିକା (Panel) ପ୍ରସ୍ତୁତ ହୋଇଥିଲା । ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ଗଠନ ନିମନ୍ତେ ଏକ ପ୍ରସ୍ତାବ ଗୃହରେ ଆଗତ ହେଲା ଓ ଏହାର କାର୍ଯ୍ୟକଳାପ ସଂପର୍କରେ ଆଲୋଚନା କରାଗଲା । ସ୍ପେସାଲ କୋର୍ଟ ବିଲ ବିରୋଧୀ ଦଳର ହଟଗୋଳ ମଧ୍ୟରେ ଆଗତ ହୋଇ ତାଙ୍କ ଅନୁରୋଧ କ୍ରମେ ପ୍ରତ୍ୟାହୃତ ହୋଇଥିଲା ।

ତୃତୀୟ ଅଧିବେଶନଟି ତା 15-11-1995 ରୁ ତା 28-11-1995 ମଧ୍ୟରେ ଅନୁଷ୍ଠିତ ହୋଇଥିଲା । ଏହି ସମୟରେ ବାଚସ୍ପତି ଓଡ଼ିଶା ସ୍ପେସାଲ କୋର୍ଟ, ଉପଭୋକ୍ତା ମଂଗଳ, ଖାଦ୍ୟ, ମଦମୃତ୍ୟୁ ସଂପର୍କରେ ବେହେରା କମିଶନଙ୍କ ରିପୋର୍ଟ ଇତ୍ୟାଦି ସଂପର୍କରେ ନିଷ୍ପତ୍ତି ଦେଇଥିଲେ । ଚତୁର୍ଥ ଅଧିବେଶନ 1995 ଡିସେମ୍ବର 26 ରୁ 29 ଯାଏ ମାତ୍ର 4 ଦିନ ପାଇଁ ବସିଥିଲା । ବିରୋଧୀ ଦଳ ନେତା ଶ୍ରୀ ବିଜୁ ପଟ୍ଟନାୟକ ଓ ଜନତା ଦଳର କେତେକ ସଭ୍ୟ ଶ୍ରୀ ରାମକୃଷ୍ଣ ପଟ୍ଟନାୟକଙ୍କ ଦ୍ୱାରା ଆଗତ ପଂଚାୟତ ନିର୍ବାଚନ ସଂପର୍କୀୟ ବୈଧାନିକ ପ୍ରସ୍ତାବ ଉପରେ ଆଲୋଚନା ଦାବି କରିଥିଲେ ଏବଂ ତା 27-12-1995ରେ ତାହା ଆଲୋଚିତ ହୋଇଥିଲା । କଟକ ମଦମୃତ୍ୟୁ ସଂପର୍କରେ ଏକ ମୁଲତବି ପ୍ରସ୍ତାବ ଆଗତ ହୋଇଥିଲା ।

ପଂଚମ ଅଧିବେଶନ ତା 13-3-1996 ରୁ ତା 22-3-1996 ଯାଏଁ ଅନୁଷ୍ଠିତ ହୋଇଥିଲା ଏବଂ ରାଜ୍ୟପାଳ ମହୋଦୟ ପ୍ରଥମଦିନ ଏହି ଅଧିବେଶନକୁ ସମ୍ବୋଧନ କରିଥିଲେ । ଜନତା ଦଳର ସଭ୍ୟମାନେ ପ୍ରତିବାଦରେ କକ୍ଷ ତ୍ୟାଗ କରିଥିଲେ ଏବଂ ଉପବାଚସ୍ପତି ନିର୍ବାଚିତ ହୋଇଥିଲେ । ତା 14-3-1996 ରେ ମୁଖ୍ୟମନ୍ତ୍ରୀ ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ସଂପର୍କରେ ଏକ ବିବୃତି ଦେଇଥିଲେ । ଏହି ଅଧିବେଶନରେ ଓଡ଼ିଶା ଶିକ୍ଷା ବିଲ୍, ମ୍ୟୁନିସିପାଲିଟି ବିଲ୍, ଓଡ଼ିଶା ମାଧ୍ୟମିକ ଶିକ୍ଷା ବିଲ୍ ଆଦି ପାସ୍

ହୋଇଥିଲା । ଭୋଟ-ଅନ୍-ଆକାଉଣ୍ଟ, ମଦମୃତ୍ୟୁ କମିଶନଙ୍କ ରିପୋର୍ଟ ସଂପର୍କୀୟ ସନ୍‌ଟାଇମସ୍ ପ୍ରକାଶନ, ଭଦ୍ରକ ବି.ଡି.ଓ.ଙ୍କ ପତ୍ର, ବ୍ଲକ୍ ସଭା ଡାକିବା ସଂପର୍କୀୟ ସ୍ୱାଧୀକାର ପ୍ରଶ୍ନ ଉପରେ ବାଚସ୍ପତି ନିର୍ଦ୍ଦେଶ ଦେଇଥିଲେ ।

11ଶ ବିଧାନ ସଭାର ଷଷ୍ଠ ଅଧିବେଶନ ତା 26-6-1996 ଠାରୁ ତା 1-8-1996 ପର୍ଯ୍ୟନ୍ତ ଚାଲିଥିଲା ଏବଂ ପ୍ରଥମ ଦିନ ଶ୍ରୀ ବିଜୁ ପଟ୍ଟନାୟକ ଓ ଶ୍ରୀ କାର୍ତ୍ତିକ ମହାପାତ୍ରଙ୍କ ଇସ୍ତଫା ଘୋଷଣା କରାଯାଇଥିଲା । ତା 26-6-1996 ରେ ଶ୍ରୀ ଅଶୋକ ଦାସଙ୍କ ନାମ ବିରୋଧୀ ଦଳ ନେତା ଭାବରେ ଘୋଷିତ ହୋଇଥିଲା ଓ ବଜେଟ ମଧ୍ୟ ଆଗତ ହୋଇଥିଲା । ମୁଗଡ଼ାଲି ଅପମିଶ୍ରଣ, +2 ସ୍ତର ପ୍ରଶ୍ନପତ୍ରର ନିଃସରଣ (Leakage), ଓୟେ ବିଲ, କେଉଁଝରର ବନ୍ୟା, ଶିଳ୍ପ ବଂଦ, ଇସ୍ପାତ କାରଖାନା ଇତ୍ୟାଦି ବିଷୟରେ ମୁଲତବି ପ୍ରସ୍ତାବ ଆଗତ ହୋଇଥିଲା ଓ ବାଚସ୍ପତି ସେଗୁଡ଼ିକ ଉପରେ ନିଷ୍ପତ୍ତି ନେଇଥିଲେ । "ବଂଦେ ଉତ୍କଳ ଜନନୀ" ସଂଗୀତ ଗାନ ସହିତ ବିଧାନ ସଭାର ଅଧିବେଶନ ଅନିର୍ଦ୍ଦିଷ୍ଟ କାଳପାଇଁ ବଂଦ ରହିଲା ।

## ସାରଣୀ ନଂ 1

### 1936 ରୁ 1995 ମସିହା ପର୍ଯ୍ୟନ୍ତ ଓଡ଼ିଶାର ଲାଟ/ରାଜ୍ୟପାଳଙ୍କ ନାମ

| କ୍ର.ନଂ. (1) | ଲାଟ/ରାଜ୍ୟପାଳଙ୍କ ନାମ (2) | | ଯୋଗଦାନ ତାରିଖ (3) |
|---|---|---|---|
| 1 | ସାର ଜନ୍ ଅଷ୍ଟିନ୍ ହବାକ୍ | .. | 01-04-1936 |
| 2 | ମିଷ୍ଟର ଜର୍ଜ ଟାଉନସେଣ୍ଡ ସେଣ୍ଡବୋର୍ଗ୍ | .. | 11-08 1938 |
| 3 | ସାର୍ ଜନ ଅଷ୍ଟିନ୍ ହବାକ୍ | .. | 11-12-1938 |
| 4 | ସାର ଉଇଲିୟାମ୍ ହଥର୍ଣ୍ଣ ଲୁଇସ୍ | .. | 01-04-1941 |
| 5 | ଶ୍ରୀ ଚନ୍ଦୁଲାଲ ମାଧୁବୀଲାଲ ତ୍ରିବେଦୀ | .. | 01-04-1946 |
| 6 | ଡ଼କ୍ଟର କୈଳାସନାଥ କାର୍ଟଜୁ | .. | 15-08-1947 |
| 7 | ମା.ଏମ୍. ଆସଫ ଅଲି | .. | 21-06-1948 |
| 8 | ଶ୍ରୀ ଭି.ପି.ମେନନ୍ | .. | 06-05-1951 |
| 9 | ମି.ଏମ୍.ଆସଫ ଅଲି | | 18-07-1951 |
| 10 | ଶ୍ରୀ ସୟିଦ ଫଜଲ ଅଲି | | 07-06-1952 |
| 11 | ଶ୍ରୀ ପି. ଏସ୍. କୁମାରସ୍ୱାମୀ ରାଜା | | 10-02-1954 |
| 12 | ଶ୍ରୀ ଭୀମସେନ ସାଚ୍ଚର | .. | 12-09-1956 |
| 13 | ଶ୍ରୀ ଯଶୋବନ୍ତ ନାରାୟଣ ସୁକ୍ତାଙ୍କର | .. | 31-07-1957 |
| 14 | ଡ଼କ୍ଟର ଅଯୋଧ୍ୟାନାଥ ଖୋସ୍ଲା | .. | 16-09-1962 |
| 15 | ଶ୍ରୀ ଖାଲିଲ ଆହମ୍ମଦ | .. | 05-08-1966 |
| 16 | ଡକ୍ଟର ଅଯୋଧ୍ୟାନାଥ ଖୋସ୍ଲା | | 12-09-1966 |
| 17 | ଡକ୍ଟର ସୌକତୁଲ୍ଲା ଶାହ ଆନ୍ସାରି | .. | 31-01-1968 |

| (1) | (2) | | (3) |
|---|---|---|---|
| 18 | ଶ୍ରୀ ଯୋଗେନ୍ଦ୍ର ସିଂହ | .. | 20-09-1971 |
| 19 | ଶ୍ରୀ ଗତିକୃଷ୍ଣ ମିଶ୍ର | .. | 01-07-1972 |
| 20 | ଶ୍ରୀ ବାସପ୍ପା ଦାନପ୍ପା ଜତ୍ତି | .. | 08-11-1972 |
| 21 | ଶ୍ରୀ ଗତିକୃଷ୍ଣ ମିଶ୍ର | .. | 21-08-1974 |
| 22 | ଶ୍ରୀ ଆକବର ଅଲି ଖାନ୍ | | 25-10-1974 |
| 23 | ଶ୍ରୀ ଶିବନାରାୟଣ ଶର୍ମା | .. | 17-04-1976 |
| 24 | ଶ୍ରୀ ହରି ଚରଣ ସିଂହ ବ୍ରାର | .. | 07-02-1976 |
| 25 | ଶ୍ରୀ ଭଗବତ ଦୟାଲ ଶର୍ମା | .. | 23-09-1977 |
| 26 | ଶ୍ରୀ ସି. ଏମ୍. ପୁନାଚ୍ଛା | .. | 30-04-1980 |
| 27 | ଶ୍ରୀ ଏସ୍. କେ. ରାୟ୍ | .. | 01-10-1980 |
| 28 | ଶ୍ରୀ ସି. ଏମ୍. ପୁନାଚ୍ଛା | .. | 04-11-1980 |
| 29 | ଶ୍ରୀ ଆର. ଏନ୍. ମିଶ୍ର | | 15-06-1982 |
| 30 | ଶ୍ରୀ ସି. ଏମ୍. ପୁନାଚ୍ଛା | .. | 01-09-1982 |
| 31 | ଶ୍ରୀ ବିଶ୍ୱମ୍ଭରନାଥ ପାଣ୍ଡେ | .. | 17-08-1983 |
| 32 | ଶ୍ରୀ ସୟଦ ନୁରୁଲ ହାସାନ୍ | | 03-03-1989 |
| 33 | ଶ୍ରୀ ଯଜ୍ଞଦତ୍ତ ଶର୍ମା | .. | 07-02-1990 |
| 34 | ଶ୍ରୀ ସୟଦ ନୁରୁଲ ହାସାନ୍ | .. | 01-02-1993 |
| 35 | ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡି | .. | 01-06-1993 |
| 36 | ଶ୍ରୀ ଗୋପାଳ ରାମାନୁଜମ୍ | .. | 18-06-1995 |

## ସାରଣୀ ନଂ 2

1937 ଠାରୁ 1996 ପର୍ଯ୍ୟନ୍ତ ବାଚସ୍ପତିମାନଙ୍କର ନାମ ଓ ସେମାନଙ୍କ ନିର୍ବାଚନ ତାରିଖ

| କ୍ର. ନଂ. | ବାଚସ୍ପତିଙ୍କ ନାମ | | କାର୍ଯ୍ୟକାଳ |
|---|---|---|---|
| (1) | (2) | | (3) |
| 1 | ଶ୍ରୀ ମୁକୁନ୍ଦ ପ୍ରସାଦ ଦାସ | .. | 28-07-1937—29-05-1946 |
| 2 | ଶ୍ରୀ ଲାଲମୋହନ ପଟ୍ଟନାୟକ | .. | 29-05-1946—06-03-1952 |
| 3 | ଶ୍ରୀ ନନ୍ଦକିଶୋର ଦାସ | .. | 06-03-1952—27-05-1957 |
| 4 | ଶ୍ରୀ ନୀଳକଣ୍ଠ ଦାସ | | 27-05-1957—01-07-1961 |
| 5 | ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ | .. | 01-07-1961—18-07-1967 |
| 6 | ଶ୍ରୀ ନନ୍ଦ କିଶୋର ମିଶ୍ର | .. | 18-03-1967— |
| 7 | ଶ୍ରୀ ନନ୍ଦ କିଶୋର ମିଶ୍ର | | 12-04-1971—21-03-1974 |
| 8 | ଶ୍ରୀ ବ୍ରଜ ମୋହନ ମହାନ୍ତି | | 21-03-1974—01-07-1977 |
| 9 | ଶ୍ରୀ ସତ୍ୟପ୍ରିୟ ମହାନ୍ତି | | 01-07-1977—12-06-1980 |
| 10 | ଶ୍ରୀ ସୋମନାଥ ରଥ | | 12-06-1980—11-02-1984 |
| 11 | ଶ୍ରୀ ପ୍ରସନ୍ନ କୁମାର ଦାଶ | | 22-02-1984— |
| 12 | ଶ୍ରୀ ପ୍ରସନ୍ନ କୁମାର ଦାଶ | .. | 14-02-1985—09-03-1990 |
| 13 | ଶ୍ରୀ ଯୁଧିଷ୍ଠିର ଦାସ | .. | 09-03-1990—22-03-1995 |
| 14 | ଶ୍ରୀ କିଶୋର ଚନ୍ଦ୍ର ପଟେଲ | | 22-03-1995—16-02-1996 |
| 15 | ଶ୍ରୀ ଚିନ୍ତାମଣି ଦ୍ୟାନ ସାମନ୍ତରା | .. | 16-02-1996— |

## ସାରଣୀ ନଂ 3

### 1937ରୁ 1996 ସୁଦ୍ଧା ଉପବାଚସ୍ପତିଙ୍କ ନାମ ଓ ନିର୍ବାଚନ ତାରିଖ

| କ୍ର. ନଂ (1) | ଉପବାଚସ୍ପତିଙ୍କ ନାମ (2) | | ନିର୍ବାଚନ ତାରିଖ (3) |
|---|---|---|---|
| 1 | ଶ୍ରୀ ନନ୍ଦ କିଶୋର ଦାସ | .. | 28-7-1937 |
| 2 | ଶ୍ରୀମତୀ ଏ. ଲକ୍ଷ୍ମୀବାଇ | | 29-5-1946 |
| 3 | ମୌଲବୀ ମହମ୍ମଦ ହନିଫ୍ | .. | 8-3-1952 |
| 4 | ଶ୍ରୀ ଯଦୁମଣି ମଙ୍ଗରାଜ | .. | 29-5-1957 |
| 5 | ଶ୍ରୀ ଲୋକନାଥ ମିଶ୍ର | | 28-8-1961 |
| 6 | ଶ୍ରୀ ହରିହର ବାହିନୀ ପତି | | 29-3-1967 |
| 7 | ଶ୍ରୀ ନାରାୟଣ ବୀରବର ସାମନ୍ତ | | 6-5-1971 |
| 8 | ଶ୍ରୀ ଚିନ୍ତାମଣି ଜେନା | .. | 29-3-1974 |
| 9 | ଶ୍ରୀ ସୁରେନ୍ଦ୍ରନାଥ ନାୟକ | | 27-7-1977 |
| 10 | ଶ୍ରୀ ହିମାଂଶୁ ଶେଖର ପାଢୀ | | 2-7-1980 |
| 11 | ଶ୍ରୀ ଚିନ୍ତାମଣି ଦ୍ୟାନ ସାମନ୍ତରା | | 18-3-1985 |
| 12 | ଶ୍ରୀ ପ୍ରହଲ୍ଲାଦ ଦୋରା | .. | 20-3-1990 |
| 13 | ଶ୍ରୀ ଚିନ୍ତାମଣି ଦ୍ୟାନ ସାମନ୍ତରା | .. | 28-3-1995 |
| 14 | ଶ୍ରୀ ବିଭୂତି ଭୂଷଣ ସିଂହ ମର୍ଦ୍ଦରାଜ | .. | 14-3-1996 |

## ସାରଣୀ ନଂ 4

### ଓଡିଶା ମୁଖ୍ୟମନ୍ତ୍ରୀମାନଙ୍କର ନାମ ଓ କାର୍ଯ୍ୟକାଳ

| କ୍ର. ନଂ. | ପ୍ରଧାନମନ୍ତ୍ରୀ/ମୁଖ୍ୟମନ୍ତ୍ରୀଙ୍କ ନାମ | କାର୍ଯ୍ୟକାଳ |
|---|---|---|
| (1) | (2) | (3) |
| 1 | ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେଓ | 1-4-1937——19-7-1937 |
| 2 | ଶ୍ରୀ ବିଶ୍ୱନାଥ ଦାସ | 19-7-1937——6-11-1939 |
| 3 | ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେଓ | 24-11-1941——30-6-1944 |
| 4 | ଡକ୍ଟର ହରେକୃଷ୍ଣ ମହତାବ | 23-4-1946——12-5-1950 |
| 5 | ଶ୍ରୀ ନବକୃଷ୍ଣ ଚୌଧୁରୀ | 12-5-1950——19-10-1956 |
| 6 | ଡକ୍ଟର ହରେକୃଷ୍ଣ ମହତାବ .. | 19-10-1956——25-2-1961 |
| 7 | ଶ୍ରୀ ବିଜୟାନନ୍ଦ ପଟ୍ଟନାୟକ | 23-6-1961——2-10-1963 |
| 8 | ଶ୍ରୀ ବିରେନ୍ ମିତ୍ର | 2-10-1963——21-2-1965 |
| 9 | ଶ୍ରୀ ସଦାଶିବ ତ୍ରିପାଠୀ | 21-2-1965——8-3-1967 |
| 10 | ଶ୍ରୀ ରାଜେନ୍ଦ୍ରନାରାୟଣ ସିଂହଦେଓ | 8-3-1967——9-1-1971 |
| 11 | ଶ୍ରୀ ବିଶ୍ୱନାଥ ଦାସ | 3-4-1971——14-06-1972 |
| 12 | ଶ୍ରୀମତୀ ନନ୍ଦିନୀ ଶତପଥୀ | 14-06-1972——3-3-1973 |
| 13 | ଶ୍ରୀମତୀ ନନ୍ଦିନୀ ଶତପଥୀ | 6-3-1974——16-12-1976 |
| 14 | ଶ୍ରୀ ବିନାୟକ ଆଚାର୍ଯ୍ୟ | 29-12-1976——30-4-1977 |
| 15 | ଶ୍ରୀ ନୀଳମଣି ରାଉତରାୟ | 26-5-1977——17-2-1980 |
| 16 | ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ | 9-6-1980——7-12-1989 |
| 17 | ଶ୍ରୀ ହେମାନନ୍ଦ ବିଶ୍ୱାଳ | 7-12-1989——4-3-1990 |
| 18 | ଶ୍ରୀ ବିଜୟାନନ୍ଦ ପଟ୍ଟନାୟକ | 5-3-1990——15-3-1995 |
| 19 | ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ .. | 15-3-1995—— |

## ସାରଣୀ ନଂ 5

### ବିରୋଧୀଦଳ ନେତାମାନଙ୍କ ନାମ ଓ କାର୍ଯ୍ୟକାଳ

| କ୍ର. ନଂ (1) | ବିରୋଧୀଦଳ ନେତାଙ୍କ ନାମ (2) | | କାର୍ଯ୍ୟକାଳ (3) |
|---|---|---|---|
| 1 | ଶ୍ରୀ ଶ୍ରଦ୍ଧାକର ସୁପକାର | | 16-2-1952—4-3-1957 |
| 2 | ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ | | 1-4-1957—22-5-1959 |
| 3 | ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ | | 21-6-1961—1-3-1967 |
| 4 | ଶ୍ରୀ ସଦାଶିବ ତ୍ରିପାଠୀ | | 18-3-1967—23-1-1971 |
| 5 | ଶ୍ରୀ ବିନାୟକ ଆଚାର୍ଯ୍ୟ | .. | 4-5-1971—14-6-1972 |
| 6 | ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ | .. | 11-6-1972—9-2-1973 |
| 7 | ଶ୍ରୀ ବିଜୁ ପଟ୍ଟନାୟକ | | 9-2-1973—3-3-1973 |
| 8 | ଶ୍ରୀ ବିଜୁ ପଟ୍ଟନାୟକ | .. | 19-3-1974—24-3-1977 |
| 9 | ଶ୍ରୀ ରାମ ପ୍ରସାଦ ମିଶ୍ର | .. | 31-3-1977—30-4-1977 |
| 10 | ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ | | 29-6-1977—20-2-1978 |
| 11 | ଶ୍ରୀ ବୃନ୍ଦାବନ ନାୟକ | | 20-2-1978—3-9-1979 |
| 12 | ଶ୍ରୀ ପ୍ରହ୍ଲାଦ ମଲ୍ଲିକ | .. | 3-9-1979—13-2-1980 |
| 13 | ଶ୍ରୀ ଅନନ୍ତ ନାରାୟଣ ସିଂହଦେଓ | | 13-2-1980—17-2-1980 |
| 14 | ଶ୍ରୀ ଶରତ କୁମାର ଦେବ | .. | 2-4-1984—10-3-1986 |
| 15 | ଶ୍ରୀ ବିଜୁ ପଟ୍ଟନାୟକ | | 22-3-1985—3-3-1990 |
| 16 | ଶ୍ରୀ ବିଜୁ ପଟ୍ଟନାୟକ | | 23-3-1995—26-6-1996 |
| 17 | ଶ୍ରୀ ଅଶୋକ ଦାସ | .. | 26-6-1996— |

## ସାରଣୀ ନଂ 6

### ବିଧାନସଭା ସଚିବମାନଙ୍କର ନାମ ଓ ଦାୟିତ୍ୱ ଗ୍ରହଣ ତାରିଖ

| କ୍ର. ନଂ. (1) | ସଚିବଙ୍କ ନାମ (2) | | ଦାୟିତ୍ୱ ଗ୍ରହଣ ତାରିଖ (3) |
|---|---|---|---|
| 1 | ଶ୍ରୀ ସି. ଗୋବିନ୍ଦ ନାୟାର | .. | 1-4-1937 |
| 2 | ଶ୍ରୀ ବେଲିଭ ବେଲିଭ ଦାଲଜିଏଲ | | 2-1-1940 |
| 3 | ଶ୍ରୀ ସି. ଗୋବିନ୍ଦ ନାୟାର | .. | 8-8-1942 |
| 4 | ଶ୍ରୀ ବେଲିଭ ବେଲିଭ ଦାଲଜିଏଲ | | 8-4-1943 |
| 5 | ଶ୍ରୀ ଗିରିଧାରୀ ଧଳ | .. | 21-8-1943 |
| 6 | ଶ୍ରୀ ପ୍ରଫୁଲ୍ଲ କୁମାର ପଟ୍ଟନାୟକ | .. | 20-11-1948 |
| 7 | ଶ୍ରୀ ଶରତ ଚନ୍ଦ୍ର ଦାଶ | | 27-6-1950 |
| 8 | ଶ୍ରୀ ମଧୁସୂଦନ ପାଣିଗ୍ରାହୀ | | 14-2-1955 |
| 9 | ଶ୍ରୀ ନୀଳକଂଠ ରଥ | | 25-6-1956 |
| 10 | ଶ୍ରୀ ଜୟପାଲ ଜୀ | | 31-5-1980 |
| 11 | ଶ୍ରୀ ବୈଦ୍ୟନାଥ ମିଶ | | 2-8-1980 |
| 12 | ଶ୍ରୀ ସଚ୍ଚିଦାନନ୍ଦ ରଥ | | 1-1-1982 |
| 13 | ଶ୍ରୀ ଚକ୍ରପାଣି ପାତ୍ର | | 6-5-1982 |
| 14 | ଶ୍ରୀ ଉପେନ୍ଦ୍ର ପ୍ରସାଦ ଗୁରୁ | | 29-5-1982 |
| 15 | ଶ୍ରୀ ଚକ୍ରପାଣି ପାତ୍ର | .. | 30-11-1983 |
| 16 | ଶ୍ରୀ ନିରାକାର ପୁରୋହିତ | | 8-2-1984 |
| 17 | ଶ୍ରୀ ବଳଭଦ୍ର ପାତ୍ର | | 27-12-1985 |
| 18 | ଶ୍ରୀ ଚକ୍ରପାଣି ପାତ୍ର | | 1-1-1990 |
| 19 | ଶ୍ରୀ ଈଶ୍ୱର ଚନ୍ଦ୍ର ଦାସ | | 28-5-1990 |
| 20 | ଶ୍ରୀ ରଘୁନାଥ ମିଶ୍ର | | 1-9-1993 |

## ସାରଣୀ ନଂ 7

### ବିଧାନସଭାଗୁଡ଼ିକର ଗଠନ ଓ ବିଘଟନ

| କ୍ର. ନଂ. (1) | ବିଧାନସଭାର ନାମ (2) | ଗଠନ ତାରିଖ (3) | ବିଘଟନ ତାରିଖ (4) |
|---|---|---|---|
| 1 | ପ୍ରଥମ ପ୍ରାକ୍‌ସ୍ୱାଧୀନ ବିଧାନସଭା | 3-2-1937 | 14-9-1945 |
| 2 | ଦ୍ୱିତୀୟ ପ୍ରାକ୍‌ସ୍ୱାଧୀନ ବିଧାନସଭା | 18-4-1946 | 20-2-1952 |
| 3 | ସ୍ୱାଧୀନତା ପରବର୍ତ୍ତୀ ପ୍ରଥମ ବିଧାନସଭା | 20-2-1952 | 4-3-1957 |
| 4 | ଦ୍ୱିତୀୟ ବିଧାନସଭା | 1-4-1957 | 25-2-1961 |
| 5 | ତୃତୀୟ ବିଧାନସଭା | 21-6-1961 | 1-3-1967 |
| 6 | ଚତୁର୍ଥ ବିଧାନସଭା .. | 1-3-1967 | 23-1-1971 |
| 7 | ପଞ୍ଚମ ବିଧାନସଭା | 23-3-1971 | 3-3-1973 |
| 8 | ଷଷ୍ଠ ବିଧାନସଭା | 6-3-1974 | 30-4-1977 |
| 9 | ସପ୍ତମ ବିଧାନସଭା | 26-6-1977 | 17-2-1980 |
| 10 | ଅଷ୍ଟମ ବିଧାନସଭା | 9-6-1980 | 9-3-1985 |
| 11 | ନବମ ବିଧାନସଭା | 9-3-1985 | 3-3-1990 |
| 12 | ଦଶମ ବିଧାନସଭା | 3-3 1990 | 15-3-1995 |
| 13 | ଏକାଦଶ ବିଧାନସଭା .. | 15-3-1995— | |

## ସାରଣୀ ନଂ ୪

### ଓଡ଼ିଶାରେ ରାଷ୍ଟ୍ରପତି ଶାସନର ବିବରଣୀ

| କ୍ର.ନଂ. | ରାଷ୍ଟ୍ରପତି ଶାସନ ଜାରି (ପ୍ରଖ୍ୟାପନ)ର ତାରିଖ | ବିଖଣ୍ଡନ ତାରିଖ |
|---|---|---|
| (1) | (2) | (3) |
| 1 | 2-2-1961 | 23-6-1961 |
| 2 | 11-1-1971 (ବିଧାନ ସଭା ନିଲମ୍ବିତ ଓ ପରେ ଭଗ୍ନ) । | 3-4-1971 |
| 3 | 23-1-1971ରେ | .. |
| 4 | 3-3-1973 | 6-3-1974 |
| 5 | 16-12-1976 (ବିଧାନସଭା ନିଲମ୍ବିତ) | 29-6-1977 |
| 6 | 17-2-1980 | 9-6-1980 |

# ଚତୁର୍ଥ ଅଧ୍ୟାୟ

## ସ୍ୱାଧୀନତା ପରବର୍ତ୍ତୀ ପ୍ରଥମ ନିର୍ବାଚନ ଓ ବିରୋଧୀ ଦଳର ବିଧାୟକ ନୀଳକଣ୍ଠ

### ନିର୍ବାଚନ ପାଇଁ ପ୍ରସ୍ତୁତି

ଭାରତୀୟ ସଂବିଧାନ କାର୍ଯ୍ୟକାରୀ ହେବାପରେ ସ୍ୱାଧୀନ ଭାରତର ପ୍ରଥମ ନିର୍ବାଚନ ଅନୁଷ୍ଠିତ ହେଲା 1952 ମସିହାରେ । କେନ୍ଦ୍ର ବ୍ୟବସ୍ଥାପକ ସଭାରେ ନୀଳକଣ୍ଠ ନିଜର ଧୀଶକ୍ତି, ବାକ୍‌ପଟୁତା, ତୀକ୍ଷ୍ଣ ମନନଶୀଳତା, ନିର୍ଭୀକତା ଆଦି ସଦଗୁଣଗୁଡ଼ିକର ପରାକାଷ୍ଠା ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ଉଭୟ ଇଂରେଜ ସରକାର ଓ ସ୍ୱଦେଶୀ ସଂଗ୍ରାମୀ ନେତାମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଏକ ଦଶନ୍ଧିରୁ ଅଧିକ କାଳ ସେ ଜଣେ ବରିଷ୍ଠ ଓ ପ୍ରବୀଣ ବ୍ୟବସ୍ଥାପକ ଭାବରେ ଜାତୀୟ ସ୍ତରରେ ସୁଖ୍ୟାତି ଅର୍ଜନ କରିଥିଲେ । ସେଠାରେ ଓଡ଼ିଆ ଜାତିର ସ୍ୱାର୍ଥ ଓ ସ୍ୱାଭିମାନ ରକ୍ଷା ପାଇଁ ସତତ ଯତ୍ନଶୀଳ ଥିଲେ ଏବଂ ଏଥିପାଇଁ ସଂଗ୍ରାମ କରିବା ସଙ୍ଗେ ସଙ୍ଗେ ଜାତୀୟ ସମସ୍ୟା, ସ୍ୱାଧୀନତା ଓ ପ୍ରଗତି ପାଇଁ ତାଙ୍କର ସୁପରାମର୍ଶ ସମସ୍ତଙ୍କ ଦ୍ୱାରା ସମାଦୃତ ହୋଇଥିଲା ।

ମାତ୍ର ଭାରତ ସ୍ୱାଧୀନ ହେଲା ପରେ ଓଡ଼ିଶାରେ ରହି ଓଡ଼ିଆ ଜାତିର ସମ୍ମାନ ଓ ଓଡ଼ିଶାର ବହୁମୁଖୀ ବିକାଶ ନିମିତ୍ତ ନୀଳକଣ୍ଠ ଚାହିଁଥିଲେ ଏହାର ପ୍ରାଣକେନ୍ଦ୍ର ବିଧାନ ସଭାରେ ପ୍ରତ୍ୟକ୍ଷ ଭାବରେ ଉଦ୍ୟମ କରିବାକୁ । ଏ ଦିଗରେ ତାଙ୍କର ଦୀର୍ଘ ବ୍ୟବସ୍ଥାପକ ଅନୁଭୂତି ନିଶ୍ଚୟ ମହାର୍ଘ ଓ ସହାୟକ ହେବା ସ୍ୱାଭାବିକ । ମାତ୍ର ଦୁର୍ଭାଗ୍ୟକୁ ଯେଉଁ କଂଗ୍ରେସକୁ ସେ ଗୋପବନ୍ଧୁଙ୍କ ପରେ ଲାଳନପାଳନ କରି ଶକ୍ତିଶାଳୀ କରାଇଥିଲେ, ସ୍ୱାଧୀନତାପରେ ସେଥିରେ ସେ ହୋଇପଡ଼ିଥିଲେ ଅବାଞ୍ଛିତ ଓ ଅପାଙ୍‌କ୍ତେୟ । ପରାଧୀନ ଭାରତରେ ସମସ୍ତ ପ୍ରତିକୂଳ ପରିସ୍ଥିତିର ମୁକାବିଲା କରି ସେ ଓଡ଼ିଶା କଂଗ୍ରେସର ସଭାପତି ଭାବରେ କିପରି 15 ବର୍ଷ ତଳେ 1937 ମସିହାର ପ୍ରଥମ ନିର୍ବାଚନରେ ଆଶାତୀତ ଓ ଅଭୂତପୂର୍ବ ସାଫଲ୍ୟ ଲାଭ କରିଥିଲେ, ପୂର୍ବରୁ କୁହାଯାଇଛି । ମାତ୍ର 37 ଜଣ କଂଗ୍ରେସ ପ୍ରାର୍ଥୀଙ୍କୁ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ—ରାଜା ମହାରାଜା, ଜମିଦାର, ବ୍ୟବସାୟୀ ପ୍ରଭୃତିଙ୍କ ବିରୁଦ୍ଧରେ ଠିଆକରାଇ ସେ ନିଜର ସଂଗଠନ ଶକ୍ତି ଓ ସାମର୍ଥ୍ୟ ବଳରେ 36 ଜଣଙ୍କୁ ଜୟଯୁକ୍ତ କରିପାରିଥିଲେ ।

### ପ୍ରତିକୂଳ ଅବସ୍ଥା ଓ ବାଧାବିଘ୍ନ

ପରବର୍ତ୍ତୀ କାଳରେ ନୀଳକଣ୍ଠ ଓଡ଼ିଶାରେ ମନ୍ତ୍ରୀମଣ୍ଡଳ ଗଢିବାତ ଦୂରରକଥା, ସେଥିରେ ସ୍ଥାନ ପାଇପାରିନଥିଲେ ଏବଂ ପ୍ରଗତିପନ୍ଥୀ ବା ପରିବର୍ତ୍ତନସମର୍ଥକ ହୋଇ ସେ କଂଗ୍ରେସ ଦଳର ରାଜନୀତିରୁ ଦୂରେଇ ଯାଇଥିଲେ । ବିଶେଷତଃ, ନେତାଜୀ ସୁଭାଷଚନ୍ଦ୍ରଙ୍କୁ ସମର୍ଥନ କରି ସେ କଂଗ୍ରେସ ଦଳର ବିରୋଧୀ ହୋଇଥିଲେ ଏବଂ ଶେଷରେ

ସେ ନେତାଜୀଙ୍କ ଫରଓ୍ୱାର୍ଡ ବ୍ଲକର ମଧ୍ୟ ନେତୃତ୍ୱ ନେଇଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ସେ ଜାତୀୟ ଯୁଦ୍ଧ ସାହାଯ୍ୟରେ ସକ୍ରିୟଭାବରେ ଯୋଗଦାନ କରି କଂଗ୍ରେସ ଦଳର ଉଚ୍ଚ କର୍ମକର୍ତ୍ତାଙ୍କର ବିତୃଷ୍ଣା, ବିରକ୍ତି ଓ ବିରୋଧର କାରଣ ହୋଇଥିଲେ । ତେଣୁ ସେ ତାଙ୍କର ବନ୍ଧୁ ଗୋଦାବରୀଶଙ୍କୁ ଧରି ସ୍ୱାଧୀନ ଜନସଂଘ ନାମରେ ଏକ ନୂତନ ରାଜନୈତିକ ଦଳ ଗଠନ କଲେ ।

ଏହି ପ୍ରସଂଗରେ ନୀଳକଣ୍ଠଙ୍କ ପୁତ୍ର ଡକ୍ଟର ବିକ୍ରମ ଦାସ ନିଜର ବାସ୍ତବ ଅନୁଭୂତିକୁ କେତେ ସରଳ ଓ ସରସ ଭାବରେ ବର୍ଣ୍ଣନା କରିଛନ୍ତି (ମୋ ନନାଙ୍କ ଦେଶ, ପୃ. 23 ଦେଖନ୍ତୁ) "1951-52 ନିର୍ବାଚନ ଲଢ଼ିବା ପାଇଁ 1951 ସେପ୍ଟେମ୍ବର ମାସରେ କେତେକ ଯୁବକର୍ମୀ ତାଙ୍କୁ ଓ ତାଙ୍କର ପୁରାତନ ବନ୍ଧୁମାନଙ୍କୁ ଏକାଠି କରି, ଗୋଟିଏ ବିରୋଧୀ ଦଳ ଗଢ଼ିବାକୁ ପୁରୀର ନାରୀସେବାସଦନ ଭବନରେ ଗୋଟିଏ ସମାବେଶ ଅନୁଷ୍ଠିତ କଲେ । ସେଠାରେ ପଣ୍ଡିତ ଗୋଦାବରୀଶଙ୍କ ଉପସ୍ଥିତିରେ ତାଙ୍କୁ "ଉତ୍କଳଗୁରୁ" ଭାବରେ ସମ୍ବର୍ଦ୍ଧନା କରି ଗୋଟିଏ ନୂଆ ବିରୋଧୀ ଦଳ ଗଢ଼ିବାକୁ ଅନୁରୋଧ କଲେ । ........ ସେଠାରେ Independent People's Party ବା ସ୍ୱାଧୀନ ଜନସଂଘ ନାମକ ଗୋଟିଏ ଦଳ ଗଢ଼ାଯାଇ ସେଥିରେ ନନା ସଭାପତି, ଗୋଦାବରୀଶ ବାବୁ ଉପସଭାପତି, ଶ୍ରୀ ଯଦୁମଣି ମଙ୍ଗରାଜ କୋଷାଧ୍ୟକ୍ଷ ଓ ଅନ୍ୟ ଦୁଇଜଣ ଯୁବନେତା ସଂପାଦକ ପଦ ଗ୍ରହଣ କଲେ ।"

## ବିରୋଧୀ ଦଳ ମଧ୍ୟରେ ବୁଝାମଣାର ଅଭାବ

ଏହା ବ୍ୟତୀତ ସମସ୍ତ ବିରୋଧୀ ଦଳମାନଙ୍କ ମଧ୍ୟରେ ଏକ ବୁଝାମଣା ଆଣି କଂଗ୍ରେସ ବିରୁଦ୍ଧରେ ଏକ ସାମ୍ମୁଖ୍ୟ ଠିଆକରିବା ପାଇଁ ନୀଳକଣ୍ଠ ଦୂରଦୃଷ୍ଟି ଓ ରାଜନୈତିକ ପରିପକ୍ୱତାର ସହିତ ଉଦ୍ୟମ କରିଥିଲେ । ବିଭିନ୍ନ ସମୟରେ ଓ ଭିନ୍ନ ଭିନ୍ନ ସ୍ଥାନରେ ପ୍ରଗତିଶୀଳ ଦଳମାନଙ୍କର ନେତୃବୃନ୍ଦଙ୍କ ସହିତ ତାଙ୍କର ଆଲୋଚନା ହେଲା । ମାତ୍ର ଦୁର୍ଭାଗ୍ୟର କଥା ଯେ ଆଜିପରି ସେତେବେଳେ ମଧ୍ୟ ବିରୋଧୀଦଳଙ୍କ ମଧ୍ୟରେ ସଂହତି ଓ ସହଯୋଗର ଅଭାବ ଅନୁଭୂତ ହେଉଥିଲା । ସେହି ବିଷୟ ଡକ୍ଟର ଦାସ ଖୁବ୍ ସ୍ପଷ୍ଟଭାବରେ ଉଲ୍ଲେଖ କରିଛନ୍ତି (୧୨୪୩, ପୃ. ୨୪୦-୨), "ସବୁଦଳ ସବୁ ସ୍ଥାନରେ ଜିତିବେ ବୋଲି ଆଶା କରି ସେଠାରେ ନିଜ ନିଜ ପ୍ରତିନିଧି ଠିଆ କରାଇବାକୁ ଜିଦ୍ ଧରିଲେ । କେହି ଅନ୍ୟକାହାକୁ କୌଣସି ସ୍ଥାନ ଛାଡ଼ିବାକୁ ରାଜି ହେଲେ ନାହିଁ । ଦୃଷ୍ଟାନ୍ତସ୍ୱରୂପ, ସେତେବେଳର ଅବିଭକ୍ତ କମ୍ୟୁନିଷ୍ଟ ଦଳର ଓଡ଼ିଶା ଶାଖାର ସଭାପତି ଶ୍ରୀ ମୋହନ ଦାଶଙ୍କ ସଙ୍ଗେ ଆଲୋଚନା କଲାବେଳେ, କୌଣସି ନିର୍ବାଚନ ମଣ୍ଡଳୀପାଇଁ ଆଉ କେଉଁ ଦଳର ନାମ ଉଠିବା ସଙ୍ଗେ ସଙ୍ଗେ ସେ ସ୍ଥାନଟି ଆମର ପକେଟ ଓ ସେ ସ୍ଥାନ ଆମେ ଆଉ କେଉଁ ଦଳକୁ ଛାଡ଼ିପାରିବୁ ନାହିଁ ବୋଲି ମୋହନ ବାବୁ ଜିଦ୍ ଧରୁଥିଲେ ।"

ଡ଼କ୍‌ଟର ଦାସ ଖୁବ୍ ସରସତା ରକ୍ଷା କରି ଉକ୍ତ ଘଟଣାକୁ ବର୍ଣ୍ଣନା କରିଛନ୍ତି, "ମୋହନ ବାବୁ ନନାଙ୍କର ଜଣେ ପୂର୍ବତନ ଘନିଷ୍ଠ ସହକର୍ମୀ ଥିଲେ । ସେ ଏପରି ସ୍ଥାନ ଦାବି କରି ଯେସବୁ ତାଙ୍କ ପକେଟ ବୋଲି କହିବାରୁ, ନନା ସେଥିରେ ଚିଡ଼ିଯାଇ ତାଙ୍କୁ କହିଲେ, "ଆରେ ମୋହନ ତୁ କେତେ ଚିରା ପକେଟ ପିନ୍ଧି ବୁଲୁଚୁ ? କୌଣସି ପକେଟ ତ କାହାକୁ ଦେବାକୁ ରାଜି ହେଉନାହୁଁ। ସେ ପକେଟରୁ ଭୋଟ ଗଳି ପଳାଇବ, ତୁମେ ବିରୋଧୀଦଳତକ ବାଡ଼ିଆବାଡ଼ି ହେଉ ହେଉ ଶାସକ ଦଳ ମହାପାତ୍ରେ ସବୁ ମାରି ନେବେ, ତୁମେ ଜଳକା ହୋଇ ଚାହିଁ ରହିଥିବ । "

## ଯେତିକି ଚୂନାକୁ ସେତିକି ପିଠ!

ବିରୋଧୀଦଳଙ୍କ ନିର୍ବାଚନ ବୁଝାମଣା ଏମିତି ଫସର ଫାଟିଲା । ଗୋଟିଏ ସ୍ଥାନରେ ବହୁ ବିରୋଧୀଦଳ ପ୍ରତିଦ୍ୱନ୍ଦ୍ୱିତା କରିବାରୁ ସେ ସ୍ଥାନଗୁଡ଼ିକରେ କଂଗ୍ରେସର ବିଜୟ ସହଜ ହୋଇଗଲା । ନୀଳକଣ୍ଠ ତେଣୁ ଅଳ୍ପ କେତୋଟି ନିଶ୍ଚିତ ସ୍ଥାନରେ ତାଙ୍କ ଦଳ ତରଫରୁ ପ୍ରାର୍ଥୀ ଠିଆ କରାଇଲେ । ଏହି କାରଣରୁ କଟକ,ପୁରୀ ଓ ଗଞ୍ଜାମ ଜିଲ୍ଲାରୁ ମାତ୍ର ସାତୋଟି ସ୍ଥାନରେ ତାଙ୍କ ଦଳ ପ୍ରତିଦ୍ୱନ୍ଦ୍ୱିତା କଲା । ସେସବୁ ସ୍ଥାନରେ ପ୍ରତିଷ୍ଠିତ ବିରୋଧୀ ଦଳମାନେ ପ୍ରାର୍ଥୀ ଠିଆ କରାଇ ନଥିଲେ । ସତ୍ୟବାଦୀରୁ ନୀଳକଣ୍ଠ, ବାଣପୁରରୁ ଗୋଦାବରୀଶ, କେନ୍ଦ୍ରାପଡ଼ାରୁ ଯଦୁମଣି ମଙ୍ଗରାଜ, ବ୍ରହ୍ମପୁରର ଦ୍ୱୈତ ସ୍ଥାନରୁ ଆଡ଼ଭୋକେଟ ରାମଚନ୍ଦ୍ର ମିଶ୍ର ଓ ବାଲିଅନ୍ତା, ପିପିଲି ଓ ଖୋର୍ଦ୍ଧାରୁ ଜଣେ ଲେଖା ହରିଜନ ପ୍ରାର୍ଥୀ ନିର୍ବାଚନ ଲଢ଼େଇ କଲେ । ନୂତନ ଦଳ ସୁସଂଗଠିତ ହୋଇପାରିନଥିଲା । ଅର୍ଥବଳ ବି ନଥିଲା । ପୁଣି ନିର୍ବାଚନ ମଣ୍ଡଳୀସବୁ ବିସ୍ତୀର୍ଣ୍ଣ ଓ ବିଖଣ୍ଡିତ ଅଞ୍ଚଳକୁ ନେଇ ଗଠିତ ହୋଇଥିଲା । ପୁଣି ଏକାଦିନକେ ସାରା ଓଡ଼ିଶାରେ ଭୋଟ ଗ୍ରହଣର ବ୍ୟବସ୍ଥା ଥିଲା ।

## ସମସ୍ତ ପ୍ରତିକୂଳ ପରିସ୍ଥିତିରେ ନିର୍ବାଚନ ପ୍ରସ୍ତୁତି

ନୀଳକଣ୍ଠଙ୍କ ସତ୍ୟବାଦୀ ନିର୍ବାଚନ ମଣ୍ଡଳୀରେ ବହୁ ପ୍ରାକୃତିକ ପ୍ରତିବନ୍ଧକ, ଗୋଟିଏ ପଟେ ଖୋର୍ଦ୍ଧା ତ ଅନ୍ୟପଟେ ପୁରୀ ସମୁଦ୍ର କୂଳେ କୂଳେ କୋଣାର୍କ , କଣାସଠାରୁ ଡେଲାଙ୍ଗ ଯାଏ ଅଞ୍ଚଳଗୁଡ଼ିକୁ ନେଇ ଏହା ଗଠିତ । ଶାସକ ଦଳର ସୁବିଧାକୁ ଚାହିଁ ତାକୁ ନିର୍ଣ୍ଣୟ କରାଯାଇଥିଲା ଏବଂ ନୀଳକଣ୍ଠଙ୍କ ଲୋକେ ତା'ର ଅଳକୂଳ ପାଉନଥିଲେ । ନିଜର ଅଙ୍ଗଲିଭା ଅନୁଭୂତିକୁ ପ୍ରକାଶ କରି ଡ଼କ୍‌ଟର ଦାସ ଲେଖିଛନ୍ତି "ନିର୍ବାଚନ ଆରମ୍ଭ ପୂର୍ବରୁ ମୁଁ ଦେଖିଲି ସତ୍ୟବାଦୀରେ ନନାଙ୍କ ପାଖରେ ଗୋଟିଏ ହେଲେ ସ୍ଥାନୀୟ କର୍ମୀ ଦିଶୁ ନାହାନ୍ତି, ବାହାର କର୍ମୀମାନେ ବେଳେବେଳେ ଆସି ତାଙ୍କ ସଙ୍ଗେ କଥାବାର୍ତ୍ତା କରି ଫେରି ଯାଉଥାଆନ୍ତି । ସେ ନିଜେ ବୃଦ୍ଧ ବୟସ ସତୁରୀ ପାଖାପାଖି, ସେଥିରେ ପୁଣି

ବହୁମୂତ୍ର ରୋଗୀ । ଲୋକଙ୍କ ସଙ୍ଗେ ଯୋଗାଯୋଗ ସ୍ଥାପନ କରିବା ପାଇଁ ଯିବାଆସିବା କରିବାକୁ ତାଙ୍କ ପାଖରେ ମୋଟର ଗାଡ଼ି ଖଣ୍ଡିଏ ମଧ୍ୟ ନାହିଁ । ଟଙ୍କା ପଇସାର ଏକାନ୍ତ ଅଭାବ । କଡ଼ା ସୁଧରେ କରଜ କରିବା ଛଡ଼ା ଅନ୍ୟ ଉପାୟ ବି ତାଙ୍କର ନଥିଲା । ତାଙ୍କର ଥିଲା କେବଳ ଅସୀମ ମନବଳ ଓ ଯୁବଜନୋଚିତ ଅଦ୍ୟମ ଉତ୍ସାହ ।"

ଏହି ଦୃଢ଼ ମନୋବଳ ଓ ଅସୀମ ଉତ୍ସାହକୁ ସମ୍ବଳକରି ନୀଳକଂଠ ନିର୍ବାଚନ ଯୁଦ୍ଧରେ ଅବତୀର୍ଣ୍ଣ ହେଲେ , ପତ୍ନୀ ରାଧାମଣି ଦେବୀତ ଯଥା ଶକ୍ତି ତାଙ୍କୁ ସାହାଯ୍ୟ ସହଯୋଗ କରିଥିଲେ । କନିଷ୍ଠ ପୁତ୍ର ଡ଼ଃ. ଦାସ ଡ଼ାକ୍ତରି ପାସ୍‌କରି ଆମେରିକା ଯିବାପାଇଁ ପ୍ରସ୍ତୁତ ହେଉଥିଲେ । ସେ ପିତାଙ୍କର ସ୍ୱାସ୍ଥ୍ୟ ଦେଖିବା ଓ ନିର୍ବାଚନ ସଂଗଠନରେ ସାହାଯ୍ୟ କରିବାରେ ଯୋଗଦେଇଥିଲେ । କେତେଜଣ ଅନ୍ତରଂଗ ବଂଧୁ ଓ ନିଃସ୍ୱାର୍ଥପର କର୍ମୀ ଏହି କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସିଲେ ।

## ନିର୍ବାଚନ ପ୍ରଚାର

ପଥମ ନିର୍ବାଚନ ସଭା ଓ ପ୍ରଚାରର ପତ୍ୟକ୍ଷ ଅନୁଭୂତିକୁ ବିଶ୍ୱସ୍ତ ଭାବରେ ରୂପାୟନ କରି ଡ଼ଃ. ଦାସ ଲେଖିଛନ୍ତି (ପୃ. 294) "ସେ ପ୍ରାର୍ଥୀଙ୍କ (ସ୍ୱାଧୀନ କଂଗ୍ରେସ) ନାଁ (ଗୋଟିଏ ସଭାରେ) ପ୍ରସ୍ତାବ ଦେବା ସଂଗେ ସଂଗେ ସେ (ନୀଳକଂଠ) ପ୍ରସ୍ତାବକ ଓ ସମର୍ଥକଙ୍କୁ ଗୃହଁ ଠିଆ ହୋଇ ତାଙ୍କ ନିଜର ଭାଷଣ ଆରମ୍ଭ କରିଦେଲେ । ସେ ବଜ୍ର ଗମ୍ଭୀର ସ୍ୱରରେ ଆତ୍ମପ୍ରତ୍ୟୟ ସହିତ କହିବାକୁ ଲାଗିଲେ, ଆରେ ଏମାନେ ମୋ ସତ୍ୟବାଦୀରେ କିଏରେ ? ଏହି ସତ୍ୟବାଦୀ ମୋର । ଏଠ ରେ ମୋର ପରଂପରା ରହିଛି, ପ୍ରତିଷ୍ଠା ଅଛି, ପ୍ରତିପତ୍ତି ଅଛି । ମୁଁ ଏ ଲୋକଙ୍କର ସେବା କରିବାକୁ ଚାହିଁବାବେଳେ ମୋତେ ସେଥିରେ ବାଧା ଦେବ କିଏ ?" ତାଙ୍କ କଥାରେ ସଭା ଭିତରେ ଘନଘନ କରତାଳି ହେଲା । ସେତିକିରେ ସଭାପତି ଓ ଉଦ୍ୟୋକ୍ତାମାନେ ଉଠି ଚାଲିଗଲେ ।

ନୀଳକଂଠ ଥିଲେ ଖୁବ୍ ସ୍ପଷ୍ଟ ବକ୍ତା ଓ ନିର୍ଭୀକ । ସେ ନିର୍ବାଚନ ସଭାରେ ଭାଷଣ ଦେଇ କହୁଥିଲେ "ତୁମେ କାହାକୁ ଭୋଟ ଦେବ କି ନଦେବ ସେ ଅଲଗା କଥା । ଏ ଭୋଟ କାହିଁକି ଦେଉଛ ଓ ଭୋଟ କଅଣ ? ତାର ମର୍ଯ୍ୟାଦା କେତେ ? କାହାକୁ ଦେବା ତୁମର ପ୍ରକୃତ ହିତକର ଓ କେଉଁ ସଭାରେ ଭୋଟ ପାଇଁ କିପରି ପ୍ରତିନିଧି ବାଛିବା ଉଚିତ, ସେସବୁ ତୁମେ ବୁଝିଛ ତ ?" ଡ଼ଃ. ଦାସ ଏହି ପ୍ରସଙ୍ଗରେ ଉଲ୍ଲେଖ କରିଛନ୍ତି (ପୃ. 303), "ନନ ଙ୍କର ଭୋଟରଙ୍କ ସାମନାରେ ଏପରି ଦୃଢ଼ ମତ ପ୍ରକାଶ ଓ ଅଭିଭାବକ ଭଳି କଥାବାର୍ତ୍ତାରେ ମୋଭଳି ଅନଭିଜ୍ଞ କର୍ମୀ ପ୍ରଥମେ ବିଚଳିତ ହୋଇଯିବା ସ୍ୱାଭାବିକ , କିନ୍ତୁ ମୁଁ ପରେ ବୁଝିଲି ସେ ସାମାନ୍ୟ ଭୋଟ ଭିକାରୀ ନୁହନ୍ତି । ସେ ଏକାତିର ଜଣେ ମୁରବୀ । ସେ ଲୋକଙ୍କର ହିଁ ଅଭିଭାବକ, ଏ ଦେଶର ଆବାଳବୃଦ୍ଧବନିତାଙ୍କର ସେ ଜଣେ ଶୁଭାକାଂକ୍ଷୀ ଗୁରୁଜନ ।" ତେଣୁ ନିଜର ତ୍ୟାଗ ଓ ତିତିକ୍ଷାର ସେ ଥିଲେ ବିଶ୍ୱାସୀ । ଜନ-ସାଧାରଣଙ୍କ ହିତ ପାଇଁ ତାଙ୍କର ଆତ୍ମପ୍ରଚେଷ୍ଟା ଓ ଆନ୍ତରିକତା ସବୁରି ମନକୁ ସ୍ପର୍ଶ କରିଥିଲା ।

ନିର୍ବାଚନ ପ୍ରଚାର ନିମନ୍ତେ ନୀଳକଂଠଙ୍କୁ ଖଣ୍ଡିଏ ଶଗଡ଼ ଗାଡ଼ିରେ ଗାଁ କୁ ଗାଁ ବୁଲିବାକୁ ହେଉଥିଲା । ସାଥିରେ ଯାଉଥିଲେ ପତ୍ନୀ ଶ୍ରୀମତୀ ରାଧାମଣି ଦେବୀ ଓ ପୁତ୍ର ବିକ୍ରମ ଦାସ । ଧାନକଟା ସମୟ ହୋଇଥିବାରୁ ଚାଷୀମାନେ ଦିନରେ ପ୍ରାୟ ଦେଖିବାକୁ ମିଳନ୍ତି ନାହିଁ ସଂଧ୍ୟାପରେ ଗାଁ ଗଣ୍ଡାରେ ଆଲୋଚନା ସଭାମାନ କରି ଲୋକ-ମାନଙ୍କୁ ବୁଝାନ୍ତି । କେତେକ ଗାଁରେ ଭୋର ଭୋର ପହଞ୍ଚିବାକୁ ପଡ଼େ । ଏଥିପାଇଁ ରାତି ପହରେ ଥାଇ ବାହାରିବା ଦରକାର । ତେଣୁ ବିଶ୍ରାମ ନେବାକୁ ଯଥେଷ୍ଟ ସମୟ ମିଳେନାହିଁ । ନିର୍ବାଚନ ପ୍ରଚାର ଏମିତି ଅବିଶ୍ରାନ୍ତ ଭାବରେ ଚାଲେ । କୌଣସି ଏକ ନିବାଚନ ସଭାରେ ଜଣେ କେହି ପ୍ରଶ୍ନ କଲେ "ବିଧାନସଭାର ଶହେ ଚାଳିଶଟି ଆସନରୁ ଆପଣ ସ୍ୱଳ୍ପ ସଂଖ୍ୟକ ସଭ୍ୟ ନେଇ କ'ଣ କରିପାରିବେ ଯେ ଆମେ ଆପଣଙ୍କୁ ଭୋଟ ଦେବୁ ?" ନୀଳକଂଠ ସାଥି ସାଥି ଉତ୍ତର ଦେଇଥିଲେ "ଝଂକାଳିଆ ବରଗଛରେ ଯଦି ପଲେ ମାଙ୍କଡ଼ ବସିଥିବେ , ତାଙ୍କୁ ଗୋଟିଏ ମହାବଳର ରଡିରେ ସେମାନେ ଝଡ଼ି ପଡ଼ନ୍ତିନି କି ?" (ପ୍ର. 1983, ପୃ.136) ।

## ବିପୁଳ ଭୋଟରେ ଜୟଯୁକ୍ତ

ତେବେ ସବୁ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ନୀଳକଂଠ 1952 ସାଧାରଣ ନିର୍ବାଚନରେ ନିଜର ପ୍ରିୟ ସତ୍ୟବାଦୀ ନିର୍ବାଚନମଣ୍ଡଳୀରୁ ବିପୁଳ ଭୋଟରେ ଜୟଯୁକ୍ତ ହୋଇଥିଲେ । ତାଙ୍କର ସ୍ୱାଧୀନ ଜନସଂଘ ଦଳରୁ ଗୋଦାବରୀଶ ଓ ଆଉ ଦୁଇଜଣ ମାତ୍ର ସଭ୍ୟ ନିର୍ବାଚିତ ହୋଇଥିଲେ । ପରେ ପୁଣି ନିର୍ବାଚନ ମକଦ୍ଦମାରେ ବ୍ରହ୍ମପୁର ଦ୍ୱୈତ ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ଦୁଇଜଣଙ୍କର ସଭ୍ୟପଦ କଟିଗଲା । ତେଣୁ ବିଧାନସଭାରେ ଏହି ଦଳରୁ ରହିଲେ ଦୁଇଜଣ ପଣ୍ଡିତ, ଯେଉଁମାନଙ୍କ ବ୍ୟବସ୍ଥାପକ ଦକ୍ଷତା ଓଡ଼ିଶା ବିଧାନସଭା ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧହୋଇ ରହିବ । ସେମାନଙ୍କର ସମାଲୋଚନା ଖୁବ୍ କଟୁ ଓ ବ୍ୟଙ୍ଗାତ୍ମକ ହୋଇଥିଲେ ହେଁ ତାହା ଥିଲା ଗଠନମୂଳକ ଓ ତଥ୍ୟଆଧାରିତ । ସରକାରଙ୍କ ଦୋଷତ୍ରୁଟି ଦେଖାଇବାରେ ସେମାନେ ଯେମିତି ଶତମୁଖ ଥିଲେ, ସେସବୁ ଦୂର କରିବାକୁ ସେମାନେ ସେମିତି ଉପାୟମାନ ନିର୍ଦ୍ଦେଶ କରିବାରେ ଧୁରଂଧର ଥିଲେ । ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ତେଣୁ ନୀଳକଂଠଙ୍କର ବହୁ ପ୍ରସ୍ତାବ ଅକୁଣ୍ଠିତ ଭାବରେ ଗ୍ରହଣ କରି ନେଉଥିଲେ । ସେଥିପାଇଁ ସେ ମଧ୍ୟ ତାଙ୍କଠାରେ କୃତଜ୍ଞତା ଜଣାଇ ଆଶୀର୍ବାଦ ଭିକ୍ଷା କରୁଥିଲେ ।

ଶ୍ରୀ ବାଙ୍କବିହାରୀ ଦାସ ଓଡ଼ିଶାର ସଂସଦୀୟ ଇତିହାସରେ ତାଙ୍କ ଅବଦାନର ଆକଳନ କରି ଯଥାର୍ଥରେ କହିଛନ୍ତି, "ପଣ୍ଡିତ ନୀଳକଂଠଙ୍କ ବହୁମୁଖୀ ପ୍ରତିଭା କଥା ସ୍ମରଣ କଲେ ମନରେ ସ୍ୱତଃ ଭାସିଆସେ ବ୍ୟବସ୍ଥାପକ ହିସାବରେ ତାଙ୍କର ଓଡ଼ିଶାର ବିଧାନସଭାକୁ

ଅବଦାନ । କେନ୍ଦ୍ର ସଭାରେ 2ୟ ମହାଯୁଦ୍ଧ ପୂର୍ବରୁ ବାରବର୍ଷରୁ ଉର୍ଦ୍ଧ୍ୱ କାଳ ସଭ୍ୟ ରହି ସେହି ଅଭିଜ୍ଞତାକୁ ସାଥିରେ ଘେନି ସେ 1952 ମସିହାରେ ଓଡ଼ିଶାର ବିଧାନସଭାରେ ପ୍ରବେଶ କରନ୍ତି । " (ନୀଳକଂଠ ସ୍ମାରକୀ 2ୟ ଖଣ୍ଡ, ପୃ. 176) ।

## ବିରୋଧୀଦଳର ବିଧାୟକ ନୀଳକଣ୍ଠ

ପଣ୍ଡିତ ନୀଳକଣ୍ଠ 1952 ମସିହା ମାର୍ଚ୍ଚ 4 ତାରିଖରେ ଅନ୍ୟ 96 ଜଣ ନବ ନିର୍ବାଚିତ ସଭ୍ୟମାନଙ୍କ ସହିତ ବିଧାନସଭାରେ ଶପଥ ଗ୍ରହଣ କରିଥିଲେ । 1952 ମସିହା ମଧ୍ୟରେ ଉକ୍ତ ବିଧାନସଭାରେ ମୋଟ ଦୁଇଟି ଅଧିବେଶନ ତା 4-3-1952ରୁ ତା 9-7-1952 ( 54 ଦିନ ) ଓ ତା 16-10-1952ରୁ ତା 13-11-1952 ( 22 ଦିନରେ ) ଅନୁଷ୍ଠିତ ହୋଇଥିଲା । ଶପଥଗ୍ରହଣ ପରେ ପରେ ନୀଳକଣ୍ଠ ନିଷ୍ଠାର ସହିତ ଗୃହର ମର୍ଯ୍ୟାଦା ଓ ଜନସାଧାରଣଙ୍କ ସ୍ୱାର୍ଥରକ୍ଷା ପାଇଁ କାର୍ଯ୍ୟ କରିଥିଲେ । ସେ ବାଚସ୍ପତିଙ୍କ ଦୃଷ୍ଟି ଆକର୍ଷଣ କରି ପ୍ରଥମରୁ ଅନୁରୋଧ କରିଥିଲେ ଯେ ଗୃହରେ ଅନଧିକାର ପ୍ରବେଶ, ଫଟୋ ଉଠାଇବା, ଧୂମପାନ କରିବା, ପାନ ଚୋବାଇବା, ଏମିତିକି ତାଳିମାରିବାକୁ ନିଷେଧ କରାଯାଉ । ଏଥିପାଇଁ ସେ ବ୍ରିଟିଶ ପାର୍ଲାମେଣ୍ଟରେ ଦୃଷ୍ଟାନ୍ତ ଦେଇଥିଲେ ଓ କେନ୍ଦ୍ର ବ୍ୟବସ୍ଥାପକ ସଭାର ଉଦାହରଣ ଦେଇଥିଲେ । ଗୃହର ମର୍ଯ୍ୟାଦାକୁ ସେ ସର୍ବାଧିକ ଗୁରୁତ୍ୱ ଦେଉଥିଲେ ।

### ପ୍ରଥମ ଅଧିବେଶନ

ଗୃହର ସ୍ଥିରୀକୃତ କାର୍ଯ୍ୟକ୍ରମରେ ପରିବର୍ତ୍ତନ ବା ବନ୍ଦ କରିବାକୁ ସେ ଚାହୁଁନଥିଲେ ଏଥିରେ ସେ ଖୁବ୍ ଆପତ୍ତି ଉଠାଉଥିଲେ । ଗତାନୁଗତିକ ଆଡମ୍ବର ଓ ଅହେତୁକ ବିଧିବିଧାନର ସେ ପକ୍ଷପାତୀ ନଥିଲେ । ତେଣୁ ଯେତେବେଳେ ପଣ୍ଡିତ ଗୋଦାବରୀଶ ରାଜ୍ୟପାଳଙ୍କୁ ମହାମାନ୍ୟ ( His Excellency ) ସଂବୋଧନ କରିବାରେ ଆପତ୍ତି ଉଠାଇଥିଲେ, ନୀଳକଣ୍ଠ ତାଙ୍କୁ ସମର୍ଥନ କରିଥିଲେ । ଏହା ବ୍ରିଟିଶ ପ୍ରଥାର ଅନ୍ଧ ଅନୁକରଣ ବୋଲି ଯୁକ୍ତି କରିଥିଲେ । କୋର୍ଟରେ ବିଚାରାଧୀନ ବିଷୟ ଛଡ଼ା ସମସ୍ତ ସମସ୍ୟା ଓ ଘଟଣା ବିଧାନସଭାରେ ଆଲୋଚିତ ହେବା ଉଚିତ ବୋଲି କହୁଥିଲେ । ଓଡ଼ିଶା ଉପମନ୍ତ୍ରୀମାନଙ୍କ ଦରମା ବିଲ୍, 1952 ଉପରେ ଆପତ୍ତି ଉଠାଇଥିଲେ ଏବଂ ଜନସାଧାରଣଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ କାର୍ଯ୍ୟନକରି ଅଯଥାରେ ଉପମନ୍ତ୍ରୀ ନିଯୁକ୍ତ କରି ଅର୍ଥ ଅପବ୍ୟୟ କରିବାକୁ ବିରୋଧ କରିଥିଲେ ।

ସେତେବେଳେ ପ୍ରଚଳିତ ଜମିଦାରୀ ପ୍ରଥାର କଠୋର ସମାଲୋଚନା କରି ସମାଜର ଉନ୍ନତି ଓ ପ୍ରାକୃତିକ ସମ୍ବଳର ଉପଯୁକ୍ତ ବିନିଯୋଗ ପାଇଁ ଏହାକୁ ଉଚ୍ଛେଦ କରିବାକୁ ଦାବି କରିଥିଲେ । ଜଙ୍ଗଲ ସଂପଦର ସୁରକ୍ଷା ପାଇଁ କଠିନ ଆଇନ ପ୍ରଣୟନ କରିବାକୁ ପରାମର୍ଶ ଦେଇଥିଲେ । ଫରଓ୍ୱାର୍ଡବ୍ଲକ ଓ ଜାତୀୟ ଯୁଦ୍ଧ ସାମୁଖ୍ୟର ଭୂମିକାକୁ ଅନ୍ୟତମ କଂଗ୍ରେସ ସଭ୍ୟ ଶ୍ରୀ ଗଦାଧର ଦତ୍ତ ସମାଲୋଚନା କରିବାରୁ ନୀଳକଣ୍ଠ ସ୍ପଷ୍ଟ ଭାବରେ ବତାଇ-ଦେଇଥିଲେ ଯେ, ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଦେଶଯେଉଁ ଘଡିସନ୍ଧିରେ ପଡିଥିଲା ସେତେବେଳେ ସେହି ଦୁର୍ଦ୍ଦିନରେ ଯୁଦ୍ଧ ପାଇଁ କାର୍ଯ୍ୟକରିବା ଦେଶକୁ ସ୍ୱାଧୀନ କରିବା ଦିଗରେ ପ୍ରଥମ ପଦକ୍ଷେପ ଥିଲା । ଦୀର୍ଘକାଳ କେନ୍ଦ୍ରବ୍ୟବସ୍ଥାପକ ସଭାରେ ରହି ସେ ସମସ୍ତ ବିଧିବିଧାନ ସଂପର୍କରେ ଏତେ ଅଭିଜ୍ଞ ଥିଲେ ଯେ ସରକାରୀ ଦଳ ତାଙ୍କର ପରାମର୍ଶ ମାନିବାକୁ ବାଧ୍ୟ ହେଉଥିଲେ । କୌଣସି ସଂସଦୀୟ ବିଧିବିଷୟକ ସମସ୍ୟା ଉପୁଜିଲେ ସଭ୍ୟମାନେ ତାଙ୍କ ପାଖରେ ପରାମର୍ଶ ପାଇଁ ରୁଣ୍ଡ ହେଉଥିଲେ । 1952 ମସିହା ମାର୍ଚ୍ଚ 15 ତାରିଖ, ସେଦିନ ବିଧାନସଭା ବିବରଣୀରୁ ସ୍ପଷ୍ଟ ହୁଏ ଯେ, ନୀଳକଣ୍ଠ ସେ ବର୍ଷର ବଜେଟ ଉପରେ ଭାଷଣ ଦେଇ ସରକାରଙ୍କୁ ସାବଧାନ କରାଇଦେଇଥିଲେ । ସ୍ୱାଧୀନତା ପରେ ରାଜ୍ୟର ପ୍ରଥମ ବଜେଟ ହୋଇଥିବାରୁ ଅଧିକ ଯତ୍ନ ଓ ଦୂରଦୃଷ୍ଟି ସହିତ ପ୍ରସ୍ତୁତ ହେବା ଉଚିତ ଥିଲା ବୋଲି ମତ ଦେଇ ଏହା ସାଧାରଣ ମଣିଷର ଆର୍ଥିକ ଉନ୍ନତି ପାଇଁ ଅଭିପ୍ରେତ ହେବା ଉଚିତ ବୋଲି ପରାମର୍ଶ ଦେଇଥିଲେ, ତାହା କଟିଯାଇଥିଲେହେଁ ଏହି ପ୍ରସଙ୍ଗରେ ନୀଳକଣ୍ଠ କହିଥିବା ଯୁକ୍ତିଯୁକ୍ତ କଥା ସମସ୍ତଙ୍କ ଦ୍ୱାରା ଆଦୃତ ହୋଇଥିଲା ଏବଂ ଅର୍ଥନୈତିକ ବିଧାନ କ୍ଷେତରେ ଦିଗ୍‌ଦର୍ଶନ ଥିଲା । ତା 14-3-1952ରେ ପବ୍ଲିକ୍ ଆକାଉଣ୍ଟସ୍ କମିଟିର ରିପୋର୍ଟ ଉପରେ ମତଦେଇ ନୀଳକଣ୍ଠ କହିଥିଲେ ଯେ, ଗଣତାନ୍ତ୍ରିକ ରାଷ୍ଟ୍ରରେ ଆର୍ଥିକ ପ୍ରଶାସନ ନିର୍ମଳ ଓ ସ୍ୱଚ୍ଛହେବା ଉଚିତ ଏବଂ ସରକାରୀସ୍ତରରେ ପରିଲକ୍ଷିତ ଖିଲାପ ବା ବେନିୟମ ଖର୍ଚ୍ଚ ଆଦି ସଂପର୍କରେ କଠୋର କାର୍ଯ୍ୟାନୁଷ୍ଠାନ ପାଇଁ ପରାମର୍ଶ ଦେଇଥିଲେ । ଏମିତିକି ବଜେଟ୍ ପରି ଗୁରୁତ୍ୱପୂର୍ଣ୍ଣ ପୁସ୍ତକରେ ଥିବା ମୁଦ୍ରଣ ଦୋଷ ଦେଖାଇ ସେ କଟକସ୍ଥ ସରକାରୀ ମୁଦ୍ରଣାଳୟକୁ କଠୋର ସମାଲୋଚନା କରିଥିଲେ ।

ଶିକ୍ଷା ଥିଲା ନୀଳକଣ୍ଠଙ୍କର ବିଶେଷ ଆକର୍ଷଣ ଏବଂ ଏଦିଗରେ ତାଙ୍କର ପରାମର୍ଶ ଥିଲା ଖୁବ୍ ପ୍ରଶଂସନୀୟ । ସେ ରାଜ୍ୟରେ ଅଧିକ ଡାକ୍ତରୀ ଓ ଇଂଜିନିୟରିଂ ସ୍କୁଲ, କଲେଜ ପତିଷ୍ଠା ପାଇଁ ଦାବି କରିଥିଲେ । ନାରୀ ଶିକ୍ଷାର ଉନ୍ନତି ପାଇଁ ଅଧିକ ସଂଖ୍ୟାରେ ମହିଳା ମହାବିଦ୍ୟାଳୟ ପ୍ରତିଷ୍ଠା କରିବା ପାଇଁ ସେ ଯୁକ୍ତି କରିଥିଲେ । ଗ୍ରାମାଞ୍ଚଳରେ ରାସ୍ତାଘାଟର ଉନ୍ନତି କରିବା ପଇଁ ସେ ପରାମର୍ଶ ଦେଇଥିଲେ । ସ୍ୱାଧୀନତାପ୍ରାପ୍ତିର ଦୀର୍ଘ 50 ବର୍ଷ ପରେ ମଧ୍ୟ ଏବେ ଜାତୀୟସ୍ତରରେ ନିମ୍ନତମ ସୁବିଧାଦେବା ପାଇଁ ବିଚାର ବିମର୍ଶ ହେଲାବେଳେ ତାଙ୍କ ଦୂରଦୃଷ୍ଟିର ପ୍ରଶଂସା କରିବାକୁ ହୋଇଥାଏ । ଆଶ୍ରମ ସ୍କୁଲ ଓ ମୌଳିକ ସ୍କୁଲର ପରିଚାଳନା ସଂପର୍କରେ ସେ ସୁଚିନ୍ତିତ ପରାମର୍ଶ ଦେଇଥିଲେ ।

କୃଷି, ଶିଳ୍ପ, ସ୍ୱାସ୍ଥ୍ୟ, ଆଦିର ଉନ୍ନତିପାଇଁ ସେ ଦୃଢ଼ ଦାବି ଜଣାଇଥିଲେ । ଶ୍ରୀ ଜଗନ୍ନାଥ ମନ୍ଦିର ପ୍ରଶାସନ ବିଲ୍ ଉପରେ ମତ ଦେଲାବେଳେ ସେ ଜଗନ୍ନାଥ ସଂସ୍କୃତି ଓ ପରଂପରାର ପରାକାଷ୍ଠା ବର୍ଣ୍ଣନା କରିଥିଲେ । ସବୁଧର୍ମର ସମନ୍ୱୟ ଓ ଧର୍ମନିରପେକ୍ଷତା ଉପରେ ତାଙ୍କ ଆଲୋଚନା ଖୁବ୍ ଜ୍ଞାନଦୀପ୍ତ ଓ ତେଜସ୍ୱୀ ହୋଇଥିଲା । ଏଠାକୁ ଅଧିକ ଯାତ୍ରୀଙ୍କୁ ଆକର୍ଷଣ କରିବାପାଇଁ ଏହି ପୀଠକୁ ପବିତ୍ର ଓ ଧର୍ମନିରପେକ୍ଷ କରିବାପାଇଁ ପରାମର୍ଶ ଦେଇଥିଲେ । କୃଷି ଓ ଶିଳ୍ପକୁ ସେ ସମାନ ଗୁରୁତ୍ୱ ଦେବାକୁ ଚାହିଁଥିଲେ ଏବଂ ଗୋଟିଏ ଅନ୍ୟର ପରିବର୍ତ୍ତେ ବା କ୍ଷତିରେ ଉନ୍ନତି କରିବା ଅନୁଚିତ । କୃଷି ଓ ଶିଳ୍ପ, ଉଭୟ ଜାତିର ବିକାଶ–ପ୍ରକ୍ରିୟାରେ ପରିପୂରକ ହେବା ଉଚିତ, ଏହି ଚିନ୍ତାଧାରା, କେତେ ଆଧୁନିକ ଓ ପ୍ରଗତିଶୀଳ ସତେ !

## ଦ୍ୱିତୀୟ ଅଧିବେଶନ

ସ୍ୱାଧୀନତା ପରବର୍ତ୍ତୀ ପ୍ରଥମ ବିଧାନ ସଭାର ଦ୍ୱିତୀୟ ଅଧିବେଶନ 1952 ମସିହା ଅକଟୋବର 16 ତାରିଖଠାରୁ ଆହୂତ ହୋଇଥିଲା । ଏହି ଅଧିବେଶନରେ ନୀଳକଣ୍ଠ ଓଡ଼ିଶା ସହିତ ଷଢ଼େଇକଳା ଓ ଖରସୁଆଁ ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣ ପ୍ରସ୍ତାବ, କଟକ ସହର ବିକାଶ ନିମନ୍ତେ ଏକ ପରିଷଦ (Board) ଗଠନ ବିଷୟ ପ୍ରସ୍ତାବ, ଅନଦାନ ବଣ୍ଟନ ସଂପର୍କୀୟ ସରକାରୀ ଦାବି, ଓଡ଼ିଶା ମାଧ୍ୟମିକ ଶିକ୍ଷା ବିଲ୍ ଆଦି ଉପରେ ବିସ୍ତୃତ ଓ ବିଦ୍ୱତ୍ତାପୂର୍ଣ୍ଣ ଭାଷଣ ଦେଇଥିଲେ ।

ଓଡ଼ିଶା ମନ୍ତ୍ରୀବୃନ୍ଦଙ୍କ ବେତନ ଓ ଭତ୍ତା ବିଲ୍ ଉପରେ ମନ୍ତବ୍ୟ ମାଧ୍ୟମରେ ପରାମର୍ଶ ଦେଇଥିଲେ ଯେ, ସରକାର ଦରିଦ୍ର ଜନସାଧାରଣଙ୍କର ଧନକୁ ବିଳାସବ୍ୟସନ ଦିଗରେ ବ୍ୟୟ କରିବା ଅପରାଧ ହେବ ଏବଂ ଯଥାସମ୍ଭବ କୃଚ୍ଛ୍ରସାଧନ ନୀତି ପାଳନ କରିବା ଉଚିତ । ଓଡ଼ିଶା ସ୍ଥାବର ସଂପତ୍ତିର ବିକ୍ରୟ ଓ ଦଖଲ ସଂପର୍କୀୟ ବିଲ୍ ଉପରେ କହିବାକୁଯାଇ ଜନସାଧାରଣଙ୍କ ହିତପାଇଁ ବ୍ୟକ୍ତିଗତ ସଂପତ୍ତିର ଦଖଲ କରାଯିବା ବାଞ୍ଛନୀୟ ବୋଲି ମତ ଦେଇଥିଲେ । କୌଣସି ସ୍ତରରେ, ଏମିତିକି ସରକାରଙ୍କ ଦ୍ୱାରା ଏ କ୍ଷେତ୍ରରେ ଜବର ଦଖଲକୁ ଦୃଢ଼ତାର ସହିତ ମୁକାବିଲା କରିବାକୁ ଉପଦେଶ ଦେଇଥିଲେ। ସେ ବିଧାନ ସଭା ଗୃହରେ ଶୃଙ୍ଖଳା ଓ ସମୟାନୁବର୍ତ୍ତିତା ଉପରେ ତୀକ୍ଷ୍ଣ ଦୃଷ୍ଟି ଦେଇଥିଲେ ଏବଂ ଏହାର ଗୋଟିଏ ମିନିଟ୍ ସୁଦ୍ଧା ଅଯଥାରେ ବ୍ୟୟିତ ହେବା ଅନୁଚିତ ବୋଲି କଠୋରଭାବରେ ସାବଧାନ କରାଇଥିଲେ । ଯେଉଁ ସଂସ୍ଥା ଜନସାଧାରଣଙ୍କ ସମସ୍ତ ଆଶାଆକାଂକ୍ଷାର କେନ୍ଦ୍ର, ସେଠାରେ ତିଳେମାତ୍ର ଅବହେଳାକୁ ସେ ପ୍ରଶୟ ଦେଉ ନ ଥିଲେ । ସେଥିପାଇଁ ବିଧାନ ସଭା ବିବରଣୀ ଯଥାସମୟରେ ମୁଦ୍ରିତ ଓ ବଣ୍ଟନ ହେବାପାଇଁ ଦାବି କରୁଥିଲେ ।

ଏହି ଅଧିବେଶନରେ ନୀଳକଣ୍ଠ ଦୁଇଟି ମାତ୍ର ପ୍ରଶ୍ନ ପଚାରିଥିଲେ ଓ ସେଥିରୁ ଗୋଟିଏ ହେଲା କୃଷିର ବିକାଶ ପାଇଁ ସରକାରଙ୍କ ପଦକ୍ଷେପ ଏବଂ ଦ୍ୱିତୀୟଟି ହେଲା ଟେଲିଫୋନ ଅପରେଟରମାନଙ୍କ ନିଯୁକ୍ତି ତଥା ବଦଳି ଓ ଏହା ଉପରେ ରାଜ୍ୟ ସରକାରଙ୍କ କର୍ତ୍ତୃତ୍ୱ ସଂପର୍କରେ ।

## ତୃତୀୟ ଅଧିବେଶନ

ତୃତୀୟ ଅଧିବେଶନ 1953 ଫେବୃୟାରୀ 29ରୁ ଆରମ୍ଭ ହୋଇ ଏପ୍ରିଲ 22 ଯାଏ ଚାଲିଥିଲା ଏବଂ ମୋଟ 44 ଦିନ ବିଧାନ ସଭା ବସିଥିଲା । ତା 27-2-1953 ରେ ରାଜ୍ୟପାଳ ଶ୍ରୀ ସୟଦ ଅଲ୍ଲି ଗୃହରେ ଭାଷଣ ଦେଇଥିଲେ ଏବଂ ନୀଳକଣ୍ଠ ଏହି ଭାଷଣକୁ ସମାଲୋଚନା କରି କହିଥିଲେ ଯେ, ଶିକ୍ଷାର ବିକାଶ, ବନ୍ୟା ନିରୋଧପାଇଁ ବନ୍ଧବାଡ଼ ଓ ଜଳସେଚନପାଇଁ ପ୍ରକଳ୍ପ ନିର୍ମାଣ ଓ ଗୋଷ୍ଠୀ ଉନ୍ନୟନ କାର୍ଯ୍ୟକ୍ରମ ସଂପର୍କରେ କୌଣସି ଉଲ୍ଲେଖ କରାଯାଇ ନାହିଁ । ସେ ସରକାରୀସ୍ତରରେ କ୍ଷମତାର ଅତିରିକ୍ତ କେନ୍ଦ୍ରୀକରଣ ଓ ଅମଲାତାନ୍ତ୍ରିକ ବିଳମ୍ବକୁ ଭାରି ସମାଲୋଚନା କରୁଥିଲେ । ତା 5-3-1953 ରେ ନୀଳକଣ୍ଠ ବିରୋଧୀ ଦଳଙ୍କ ପକ୍ଷରୁ ବଜେଟ ଉପରେ ଆଲୋଚନା କରି କହିଥିଲେ ଯେ "ସମାଲୋଚନାପାଇଁ ସମାଲୋଚନା" ନକରି ସେ ଗଠନମୂଳକ ସମାଲୋଚନା କରୁଛନ୍ତି । ବିଚାର ବିଭାଗ ଠାରୁ କାର୍ଯ୍ୟନିର୍ବାହୀ ବିଭାଗକୁ ସ୍ୱତନ୍ତ୍ର କରିବାପାଇଁ ଆଶୁ ପଦକ୍ଷେପ ନେବା ଉପରେ ଗୁରୁତ୍ୱ ଦେଇଥିଲେ । ସରକାରଙ୍କ ସମସ୍ତ ଅର୍ଥନୈତିକ ପଦକ୍ଷେପ ଜନତାଙ୍କର ସ୍ୱାର୍ଥର ଅନୁକୂଳ ହେବା ଉଚିତ ଏବଂ ଓଡ଼ିଶା ଅନୁନ୍ନତ ଅବସ୍ଥାରେ ଥିବାରୁ କେନ୍ଦ୍ର ସରକାରଙ୍କ ଠାରୁ ଆର୍ଥିକ ସାହାଯ୍ୟ ଦାବି କରିବା ଦରକାର ବୋଲି ପରାମର୍ଶ ଦେଇଥିଲେ । ଗୋଷ୍ଠୀ ଉନ୍ନୟନ କାର୍ଯ୍ୟକ୍ରମର ଦୋଷତ୍ରୁଟି ସଂପର୍କରେ ସେ ଏତେ ଦୃଢ଼ ଭାବରେ କହିଥିଲେ ଯେ, ଏହା ସରକାରଙ୍କ ଆଖି ଖୋଲିଦେଇଥିଲା । ସେ ଶାସନ ବା ସରକାରରେ ନ ଥାଇ ଲୋକଙ୍କ ସମସ୍ୟା ସହିତ କିପରି ଘନିଷ୍ଠଭାବରେ ସଂପୃକ୍ତ ହୋଇଥିଲେ, ଏଥିରୁ ସ୍ପଷ୍ଟ ହୋଇଥିଲା । ଏହି ଅଧିବେଶନରେ ଆସିଥିବା ଅନାସ୍ଥା ପ୍ରସ୍ତାବ ଉପରେ କହିଲାବେଳେ ସେ ଦଳ ଓ ବ୍ୟକ୍ତିର ସ୍ୱାର୍ଥ ନ ଦେଖି ଜାତୀୟ ତଥା ସମୂହ ସ୍ୱାର୍ଥ ଉପରେ ଜୋର ଦେଇଥିଲେ ।

## ଚତୁର୍ଥ ଅଧିବେଶନ

ଚତୁର୍ଥ ଅଧିବେଶନ ତା 21-9-1953ରେ ଆରମ୍ଭ ହୋଇ ତା 10-10-1953 ରେ ସମାପ୍ତ ହୋଇଥିଲା । ବିବରଣୀରୁ ଜଣାପଡ଼େ ଯେ, ସମ୍ଭବତଃ ନୀଳକଣ୍ଠ ଅସୁସ୍ଥତା ବଶତଃ ବିଧାନ ସଭା କାର୍ଯ୍ୟରେ ବିଶେଷ ଭାଗନେଇ ପାରି ନ ଥିଲେ । 1954 ମସିହା ମଧ୍ୟରେ ଦୁଇଟି ଅଧିବେଶନ ସମାହିତ ହୋଇଥିଲା ଏବଂ ଦୁଇଟି ବିଷୟରେ ସେ ଭାଗ ନେଇଥିଲେ । ଶ୍ରୀଜଗନ୍ନାଥ ମନ୍ଦିର ବିଲ୍ ଓ ସପ୍ଲିମେଣ୍ଟାରୀ ବଜେଟ (1954-55) ଉପରେ ସେ

ନିଜର ମତାମତ ଦେଇଥିଲେ । ସପ୍ତମ ଅଧିବେଶନ ତା 25-2-1955 ରୁ ବସି ତା 20-4-1955 ରେ ସରିଥିଲା । ତା'ପରେ ଅଷ୍ଟମ ଓ ନବମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । 1955 ବର୍ଷ ମଧ୍ୟରେ ଏବଂ ଏହିଁ ସମୟରେ ନୀଳକଣ୍ଠ ସରକାରଙ୍କଠାରୁ ଉତ୍ତର ପାଇବାରେ ବିଳମ୍ବ, ରଫିଅହମଦ କିଦଓ୍ୱାଇ ମୃତ୍ୟୁପରେ ଶୋକ ପ୍ରସ୍ତାବ, ଓଡ଼ିଶା ଭାଗଚାଷୀ ସାହାଯ୍ୟ ବିଲ୍, ଭିକ୍ଷା ନିଷିଦ୍ଧୀକରଣ, ବନ୍ୟା ଓ ଲୋକଙ୍କ ସାହାଯ୍ୟ, ରାଜ୍ୟ ସୀମା ନିର୍ଦ୍ଧାରଣ ଆୟୋଗ ଆଦି ସମସ୍ୟା ଉପରେ ନିଜର ମତାମତ ଦେଇଥିଲେ ।

## ବିରୋଧୀ ଦଳର ବିଧାୟକଭାବରେ ଦକ୍ଷତା

ନୀଳକଣ୍ଠଙ୍କ ସଂସଦୀୟ ଆଲୋଚନାରୁ ସ୍ପଷ୍ଟ ହୁଏ ଯେ ଗୃହର ସମ୍ମାନ ରକ୍ଷା କରିବା ପାଇଁ ଏବଂ ଏହାର କାର୍ଯ୍ୟଦକ୍ଷତା ବୃଦ୍ଧି ନିମନ୍ତେ ଖୁବ୍ ସଜାଗ ଥିଲେ । ସଂସଦୀୟ ସୌଜନ୍ୟ ଓ ଆଚରଣ ଉପରେ ସେ ବିଶେଷ ଗୁରୁତ୍ୱ ଦେଉଥିଲେ । ବାଚସ୍ପତିଙ୍କ ନିଷ୍ପତିରେ ସେ କୌଣସି ତ୍ରୁଟି ଦେଖିଲେ ସଙ୍ଗେସଙ୍ଗେ ତାହା ବତାଇଦେବାକୁ ସେ ପଛାଉ ନ ଥିଲେ । ତେଣୁ ସବୁ ଗୁରୁତ୍ୱପୂର୍ଣ୍ଣ ବିଷୟରେ ସମସ୍ତେ ଦଳମତ ନିର୍ବିଶେଷରେ ତାଙ୍କର ପରାମର୍ଶ ଗ୍ରହଣ କରୁଥିଲେ ଏବଂ ଯୁବ ସାଂସଦମାନେ ତାଙ୍କର ଭାଷଣପାଇଁ ପ୍ରସ୍ତୁତି ଓ ଆଲୋଚନାରେ ଭାଗ ନେବାର ଶୈଳୀ ଓ କଳା ତାଙ୍କଠାରୁ ଶିକ୍ଷା କରୁଥିଲେ । ଏମିତି କି ନୂତନ ବ୍ୟବସ୍ଥାପକଗଣ ତାଙ୍କ ବସାରେ ପହଞ୍ଚି କିପରି ବୈଧାନିକ ପ୍ରଶ୍ନ ପଚରାଯିବ ତାକୁ ଗୃହକୁ ଆସିବା ପୂର୍ବରୁ ରିହରସାଲ କରୁଥିଲେ । ଆହୁରି ଗୁରୁତ୍ୱପୂର୍ଣ୍ଣ କଥା ହେଲା, ନବକୃଷ୍ଣ ଚୌଧୁରୀ ସରକାରୀ ମୁଖ୍ୟ ସଚେତକ ଶ୍ରୀ ବିଜୟ ପାଣିଙ୍କୁ ପଠାଇ ବିଭିନ୍ନ ବିଲ୍ ଓ ପ୍ରସ୍ତାବ ଉପରେ ପଣ୍ଡିତଜୀଙ୍କର ମତାମତ ଘରୋଇ ଭାବରେ ବୁଝୁଥିଲେ । ଦଳଗତ ବ୍ୟବଧାନ ଏହି ସାଂସଦୀୟ ଆଚରଣରେ ସ୍ଥାନ ପାଇ ନ ଥିଲା ।

ପ୍ରଶ୍ନ ପଚାରିବା ଦ୍ୱାରା କିପରି ଜନସ୍ୱାର୍ଥ ଦୃଷ୍ଟିରୁ ସରକାରୀ କାର୍ଯ୍ୟକୁ ତନଖିବା ସହିତ ତାକୁ ଦୋଷମୁକ୍ତ କରାଯାଏ ଏବଂ ଅମଲାତାନ୍ତ୍ରିକ ଅବହେଳା ଦୂର କରି ନ ପାରିଲେ ସୁଦ୍ଧା ହ୍ରାସ କରାଯାଇପାରେ, ଆଧୁନିକ ରାଜନୀତି ବିଜ୍ଞାନୀ ହାରୋଲଡ ଲାସ୍କିଙ୍କ ଏହି ମନ୍ତବ୍ୟକୁ ପଣ୍ଡିତ ନୀଳକଣ୍ଠ ସତେ ଯେମିତି ସମ୍ୟକ୍ ଭାବରେ ହୃଦୟଂଗମ କରିଥିଲେ । ଅଯଥା ଓ ଅମୂଳକ ପ୍ରଶ୍ନ ପଚାରି ଗୃହରେ ମୂଲ୍ୟବାନ ସମୟ ନଷ୍ଟ କରିବାକୁ ସେ ଚାହୁଁ ନ ଥିଲେ । ତେଣୁ ପ୍ରଶ୍ନବାଣ ତାଙ୍କର ତୀକ୍ଷ୍ଣ ଓ ଶାଣିତ ହୋଇ ସରକାର ତଥା ଅମଲାମାନଙ୍କୁ ଠିକ୍ ଭାବରେ ଆଘାତ କରୁଥିଲା । ଫଳରେ ସେମାନେ ସଚେତନ ଓ ସତର୍କ ହୋଇପାରୁଥିଲେ ।

ନୀଳକଣ୍ଠଙ୍କ ଭାଷଣ କେବଳ ତଥ୍ୟ ଆଧାରିତ ନ ଥିଲା । ତାହା ଆକର୍ଷଣୀୟ ଶୈଳୀ ଓ ଘଟଣା ତଥା ଦୃଷ୍ଟାନ୍ତରେ ଖୁବ୍ ସରସ ହେଉଥିଲା । ସୁତରାଂ ତାଙ୍କ ଭାଷଣ ସବୁରେ ରାଜନୀତି ଓ ସାହିତ୍ୟର ଏକ ମଧୁର ସମନ୍ୱୟ ହୋଇପାରୁଥିଲା । ଆଜିର ବାସ୍ତବ ସମସ୍ୟା

ସହିତ ସେ ପୁରାଣ, ଶାସ୍ତ୍ର ଆଦିରୁ ଉଦାହରଣ ଦେଇ ଖୁବ୍ ମନୋରଞ୍ଜକ କରିପାରୁଥିଲେ । ତତ୍କାଳୀନ ବ୍ୟବସ୍ଥାପକ ଶ୍ରୀ ଉପେନ୍ଦ୍ର ମହାନ୍ତି ଥରେ ବାଚସ୍ପତିଙ୍କ ପାଖକୁ ଯାଇ ଆପତ୍ତି କଲେ ଯେ, ନୀଳକଣ୍ଠଙ୍କ ଭାଷଣ ଅନେକ ସମୟରେ ଅପ୍ରାସଙ୍ଗିକ ଓ ଅନାବଶ୍ୟକ ବିଷୟରେ ଭାରାକ୍ରାନ୍ତ ହୋଇ ପଡଛି । ମାତ୍ର ବାଚସ୍ପତି ତାଙ୍କୁ ପରାମର୍ଶ ଦେଇଥିଲେ ଯେ, ପଣ୍ଡିତଜୀଙ୍କ ଭାଷଣ ଅପ୍ରାସଙ୍ଗିକ ହେଲେହେଁ ଉପାଦେୟ ଏବଂ ସଫଳ ବ୍ୟବସ୍ଥାପକ ହେବାପାଇଁ ତାଙ୍କ ଶୈଳୀ ନିଶ୍ଚୟ ଅନୁକରଣୀୟ (ମିଶ୍ର, 1994 ପୃ. 128) ।

ବିଧାନ ସଭାରେ ବିଭିନ୍ନ ସାହିତ୍ୟିକ ଦୃଷ୍ଟାନ୍ତ ଓ ଶବ୍ଦଗୁଡ଼ିକର ତାତ୍ତ୍ୱିକ ଓ ବ୍ୟବହାରିକ ଉଦାହରଣ ଦେଇ ବିଧାୟକ ନୀଳକଣ୍ଠ ଗୃହରେ ସରସ ଓ ଶିକ୍ଷାପ୍ରଦ ବାତାବରଣ ସୃଷ୍ଟି କରୁଥିଲେ । ତାଙ୍କର ଆଲୋଚନା ସଭ୍ୟମାନଙ୍କର ଜ୍ଞାନ ବୃଦ୍ଧିରେ ଖୁବ୍ ସହାୟକ ହେଉଥିଲା ଏବଂ ମଧୁର ହାସ୍ୟ ଓ ବ୍ୟଙ୍ଗ ସଂସଦର ନୀରସ, ଗମ୍ଭୀର ଓ ଜଟିଳ ପରିବେଶକୁ ସରସ, ସତେଜ ଓ ସରଳ କରିଦେଉଥିଲା । ବିଧାନ ସଭାର ପୂର୍ବତନ ସହକାରୀ ସଚିବ ଶ୍ରୀ ଦୀନକଷ୍ଟ ପଟ୍ଟନାୟକ ନିଜର ପ୍ରତ୍ୟକ୍ଷ ଅନୁଭୂତିରୁ କେତୋଟି ଘଟଣାର ଅବତାରଣା କରି ଏହାର ପ୍ରମାଣ ଯୋଗାଇଛନ୍ତି (ନୀ. ସ୍ମା. ଦ୍ୱିତୀୟ ଖଣ୍ଡ, 1984 ପୃ. 231-232) ନିମ୍ନରେ ତାହା ପ୍ରଦତ୍ତ ହେଲା । "ବୋଧହୁଏ 1955 ମସିହାର ଜମିଜମା ସଂକ୍ରାନ୍ତ ବିଲ୍ ଉପରେ ଭାରି ସରଗରମ ଆଲୋଚନା ଚାଲିଥାଏ" । ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶ ଦୁହେଁ ସ୍ୱାଧୀନ ଜନସଂଘର ବିଧାନ ସଭା ସଭ୍ୟ ଥାନ୍ତି । ପଣ୍ଡିତଜୀଙ୍କର ସେତେ-ବେଳକୁ ପକ୍ଷାଘାତ ହୋଇସାରିଥାଏ । ତେଣୁ ତାଙ୍କୁ ବସିବାପାଇଁ ଗୋଟିଏ ଆରାମ ଚୌକି ଦିଆଯାଇଥାଏ । ସେ ସେଥିରେ ଅର୍ଦ୍ଧଶାୟିତଭାବେ ବସିଥାନ୍ତି ଓ ତାଙ୍କ ବାଁ କଡ଼କୁ ଗୋଦାବରୀଶ ବାବୁଙ୍କ ବସିବା ସିଟ୍‌ଟି ପଡ଼ିଥାଏ । ସେହି ବିଲ୍ ଉପରେ ଆଲୋଚନାବେଳେ ଗୋଦାବରୀଶବାବୁ ଠିଆ ହୋଇ କହୁ କହୁ କହିଲେ ସରକାରଙ୍କର ଏ ବିଲ୍‌ରେ "ଗାଣ୍ଡିମୁଣ୍ଡ" କିଛି ଠିକ୍ ନାହିଁ । ଏତିକି କହୁ କହୁ କଂଗ୍ରେସ ପକ୍ଷରୁ "ଅଶ୍ଳୀଳ, ଅଶ୍ଳୀଳ" ବୋଲି ହଟଗୋଳ ଆରମ୍ଭ ହୋଇ ଚାଲିଲା ଟେବୁଲ ବାଡ଼ିଆ । ଗୋଦାବରୀଶବାବୁ ଟିକିଏ କୌତୁହଳିଆ ଦୃଷ୍ଟିରେ ଚାରିଆଡ଼କୁ ଚାହିଁ ଧୀର ହୋଇ ବସିପଡ଼ିଲେ । ନୀଳକଣ୍ଠ ଅର୍ଦ୍ଧଶାୟିତ ଅବସ୍ଥାରୁ ଉଠି ଆରାମ ଚୌକିର ପାହିଆ ଉପରେ ଦି ହାତକୁ ଭରାଦେଇ ସିଧାହୋଇ ବସିଲେ । ତା'ପରେ ପ୍ରତିବାଦ କରି କହିଲେ "ଏ ଶବ୍ଦ ମୋଟେ ଅଶ୍ଳୀଳ ନୁହେଁ" । ତା' ହୋଇଥିଲେ ବଡ଼ ବଡ଼ କବିମାନେ ଏ ଶବ୍ଦ କେଉଁ ବ୍ୟବହାର କରି ନ ଥାନ୍ତେ । କୃଷ୍ଣ ସିଂହ ମହାଭାରତର ସଭାପର୍ବରେ ସଫା ଲେଖିଛନ୍ତି,

"ସଭାରେ ବସିଛନ୍ତି କର୍ପୁର ମାଳିଆ<br>
ଗାଣ୍ଡିଟାମାନ ତାଙ୍କ ଯେସନେ ଓଳିଆ"

ତଥାପି ବାଚସ୍ପତି ଶ୍ରୀ ନନ୍ଦକିଶୋର ଦାସ ଏ ଶବ୍ଦ ଅଶ୍ଳୀଳ କହି ବ୍ୟବହାର କରିବାକୁ ଅନୁମତି ଦେଲେ ନାହିଁ । ସଭାଗୃହ ଟିକିଏ ଶାନ୍ତ ପଡ଼ିବାରୁ ଗୋଦାବରୀଶବାବୁ ପୁଣି ଉଠି ଅଳ୍ପ ଗମ୍ଭୀରହୋଇ କହିଲେ, "ମୋ କହିଥିବା ଶବ୍ଦ ତ ଅଶ୍ଳୀଳ ହୋଇଗଲା, ତା' ପରିବର୍ତ୍ତେ ଆଉ କ'ଣ ବ୍ୟବହାର କରିବି ଭାବୁଥିଲି । ଏବେ ଦେଖୁଛି ଏ ବିଲ୍‌ରେ ସରକାରଙ୍କର ମୁଣ୍ଡ ଓ ମଳଦ୍ୱାର କିଛି ଠିକ୍ ନାହିଁ ।" ଏତିକି କହୁ କହୁ ଗ୍ଲଲିଲା ହାସ୍ୟରୋଳ ।

ଗଠନମୂଳକ ବିରୋଧ, ଜାତୀୟ ବିକାଶ ତଥା ମଙ୍ଗଳର ଏକ ସାର୍ଥକ ମାଧ୍ୟମ । ସରକାରଙ୍କ କାର୍ଯ୍ୟ ଗଣତାନ୍ତ୍ରିକ ଓ ଜାତିର ସ୍ୱାର୍ଥ-ଅନୁକୂଳ ହେବା ଉଚିତ ଏବଂ ଶାନ୍ତିପୂର୍ଣ୍ଣ ତଥା ସଂସଦୀୟ ରୀତିରେ ସରକାରଙ୍କ ସମସ୍ତ ଦୋଷତ୍ରୁଟି ଓ କୁକାର୍ଯ୍ୟକୁ ସମାଲୋଚନା କରିବା ବିରୋଧୀ ଦଳର କାର୍ଯ୍ୟ । ବିରୋଧୀ ଦଳ କେବଳ ସରକାରଙ୍କର ସବୁ କାର୍ଯ୍ୟକୁ ବିରୋଧ କରିବା ଅନୁଚିତ, ଏହା ନୀଳକଣ୍ଠ ଦେଖାଇ ଦେଇଥିଲେ ଏବଂ ଆମ ରାଜ୍ୟର ସଂସଦୀୟ ଇତିହାସରେ ଏକ ସୁସ୍ଥ ପରଂପରା ଓ ଦୃଢ଼ ଭିତ୍ତିଭୂମି ସୃଷ୍ଟି କରିବାରେ ସାହାଯ୍ୟ କରିଥିଲେ ।

ତତ୍‌କାଳୀନ ବ୍ୟବସ୍ଥାପକ ଶ୍ରୀ ବାଙ୍କବିହାରୀ ଦାସ ତାଙ୍କ ବ୍ୟକ୍ତିଗତ ଅନୁଭୂତିରୁ କହନ୍ତି, (ନୀଳକଣ୍ଠ ସ୍ମାରକୀ, ୧୨୫୪ ପୃ. 177-178) "ପ୍ରଥମ ବିଧାନ ସଭା ବୈଠକର ପ୍ରଥମ ଦିନରୁ ତାଙ୍କର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଅବଦାନ ଥିଲା ଗୃହପ୍ରତି ସମ୍ମାନ ଓ ମର୍ଯ୍ୟାଦା । ସଂବିଧାନ ଓ ବିଧାନ ସଭା ନିୟମକୁ ଠିକଣା ଭାବରେ କାର୍ଯ୍ୟକାରୀ କରିବା ପାଇଁ ସେ ଥିଲେ ଜାଗ୍ରତ ପ୍ରହରୀ । ସେତ ନିଜେ କେତେବେଳେ ହେଲେ ଗୃହର ମର୍ଯ୍ୟାଦା କ୍ଷୁର୍ଣ୍ଣ କରିବାକୁ ଯାଉ ନ ଥିଲେ, ଅନ୍ୟକୁ ମଧ୍ୟ ସେ ସୁଯୋଗ ଦେଉ ନ ଥିଲେ । ଏପରିକି ଭାଷଣରେ ସେ ଯଦି କୌଣସି ତ୍ରୁଟି କରିପକାଉଥିଲେ ଏବଂ କେହି ତାହା ସୂଚାଇ ଦେଉଥିଲା, ତେବେ ସେ ସଙ୍ଗେ ସଙ୍ଗେ ନିଜର ଭୁଲ ସ୍ୱୀକାର କରିନେଉଥିଲେ ଏବଂ କ୍ଷମାଭିକ୍ଷା ମଧ୍ୟ କରୁଥିଲେ । ଅନ୍ୟମାନଙ୍କ ଭଳି କେବେହେଲେ ସଫେଇ ଦେଇ ତ୍ରୁଟିକୁ ସମର୍ଥନ କରୁନଥିଲେ । ଏହା ତାଙ୍କର ମହନୀୟତା ଏବଂ ବିଶାଳ ହୃଦୟର ଏକ ବଡ଼ ଗୁଣ ଥିଲା" । କେତେ ସୁନ୍ଦର ଭାବରେ ପଣ୍ଡିତଜୀଙ୍କ ବ୍ୟକ୍ତିତ୍ୱର ନିର୍ବ୍ୟକ୍ତିକ ଓ ନିରପେକ୍ଷ ଆକଳନ ସତେ !

ଭାରତୀୟ ସଂସ୍କୃତି ଓ ଐତିହ୍ୟର ଜଣେ ଧୁରୀଣ ଉଦ୍‌ଗାତା ଓ ବ୍ୟକ୍ତି ସ୍ୱାଧୀନତାର ଏକ ଜାଗ୍ରତ ପ୍ରହରୀ ଭାବରେ ସଂସଦରେ ତାଙ୍କର ଭାଷଣ ଓ ପ୍ରଶ୍ନବାଣ ସତେ ଖୁବ୍ ସରସ ଓ ଶାଣିତ । ଜମିଜମାଠାରୁ ଆରମ୍ଭ କରି ମଠମନ୍ଦିର ଯାଏ, ଅଟକ ଆଇନଠାରୁ ମନ୍ତ୍ରୀମାନଙ୍କ ବେତନ ବୃଦ୍ଧି ବିଲ୍ ଉପରେ ତାଙ୍କର ତର୍କ ଓ କଟାକ୍ଷ ଖୁବ୍ ତୀକ୍ଷ୍ଣ ଓ ଯୁକ୍ତିଯୁକ୍ତ ଅନୁଭୂତ ହେଉଥିଲା । ପ୍ରତିକ୍ରିୟାଶୀଳ ଚିନ୍ତାଧାରା ବିରୁଦ୍ଧରେ ଓ ପ୍ରଗତିଶୀଳ ଭାବଧାରା ସପକ୍ଷରେ ତାଙ୍କର ଅକାଟ୍ୟ ଯୁକ୍ତି ସବୁରି ଉପଭୋଗ୍ୟ ଓ ଅନୁକରଣୀୟ ।

ଶ୍ରୀଯୁକ୍ତ ବାଙ୍କନିଧି ଦାସଙ୍କର ସ୍ମୃତିଚାରଣରୁ ଆଉ ଏକ ଖିଅ ଏଠାରେ ଟାଣି-ଦେବାକୁ ଲୋଭ ହେଉଛି । ସେ (ପୃ. 174-79) ଲେଖିଛନ୍ତି ବିଧାନ ସଭାର ପ୍ରଥମ ଅଧିବେଶନରେ ଏକ ଭାଷଣକ୍ରମେ ସେ ଯାହା କହିଥିଲେ ମୁଁ ଭୁଲି ପାରେନା ଯେ, ଜମି ଉପରେ ଖଜଣା ଉଠିଯିବା ଉଚିତ । ଏହା ଭାରତୀୟ ଐତିହ୍ୟର ପରିପଂନ୍ଥୀ । ସେତେବେଳେ ଭାରତୀୟ ପ୍ରଗତିଶୀଳ ଦଳମାନେ ମଧ୍ୟ ଏତେବାଟ ଯିବାକୁ ପ୍ରସ୍ତୁତ ନଥିଲେ । ତାଙ୍କର ଯୁକ୍ତି ଥିଲା, ପାଣି ଉପରେ ଟିକସ ନାହିଁ । କିନ୍ତୁ ପାଣିରୁ ବରଫ ହେଲେ ତା ଉପରେ ନାନା ଟିକସ ଅଛି । ସେହିପରି ଜମି ଆମର ତିଆରି ନୁହେଁ, ତାହା ଉପରେ ଟିକସ ବସାଇବା ଘୋର ଅନ୍ୟାୟ । ଜମିରୁ ଉତ୍ପାଦିତ ଜିନିଷ ଉପରେ କର ବସାଅ, ଜମି ଉପରେ ନୁହେଁ । ଏ କଥା ମୋ ମନକୁ ଭାରି ଛୁଇଁଥିଲା, ଅନେକଙ୍କୁ ମଧ୍ୟ ଛୁଇଁଥିଲା । ବହୁବର୍ଷ ପରେ ଅଧିକାଂଶ ରାଜ୍ୟରେ ଭୂ-ରାଜସ୍ୱ ଉଠିଗଲା । କି ଦୂରଦୃଷ୍ଟି ଓ ଯୁକ୍ତିସିଦ୍ଧ ଚିନ୍ତାଧାରା :

"ବିରୋଧପାଇଁ ବିରୋଧ" ଥିଲା ନୀଳକଂଠଙ୍କର ନୀତି ବିରୁଦ୍ଧ । ବିରୋଧୀଦଳର ସଭ୍ୟ-ଭାବରେ ତାଙ୍କର କର୍ମନିଷ୍ଠା ଓ ବିଚାର ବିମର୍ଶ ସମସ୍ତଙ୍କୁ ଅନୁପ୍ରାଣିତ କରିଥିଲା । ବାସ୍ତବ ଅନୁଭୂତି ସହିତ ଯଥାର୍ଥ ଦୂରଦୃଷ୍ଟି, ଜଟିଳ ରାଜନୀତି ସହିତ ସରସ ସାହିତ୍ୟର ମଧୁର ସମନ୍ୱୟ ଘଟୁଥିଲା ତାଙ୍କ ଭାଷଣ ଓ ଆଲୋଚନାରେ । ସେଥିପାଇଁ ତାହା ହୋଇଥିଲା ଅକାଟ୍ୟ, ସାର୍ଥକ ଓ ସର୍ବଜନ-ଆଦୃତ । ବିଧାୟକଭାବରେ ଭୂନୀତି, ଶିକ୍ଷାନୀତି, ଶିଳ୍ପ ଓ କୃଷିର ଉନ୍ନତି, ସାମାଜିକ ଓ ଧାର୍ମିକ ସଂସ୍କାର, ବ୍ୟକ୍ତିସ୍ୱାଧୀନତା, ସ୍ୱାୟତ୍ତଶାସନ ଆଦି ବିଭିନ୍ନ ପ୍ରସଂଗରେ ତାଙ୍କର ଭାଷଣ ଓ ମତାମତ ଏବେ ମଧ୍ୟ ଶିରୋଧାର୍ଯ୍ୟ ହୋଇଛି । ବିରୋଧୀଦଳର ବିଧାୟକଭାବରେ ନୀଳକଂଠଙ୍କ କୃତି ଓ ସିଦ୍ଧିର ଆଲୋକ ସତେ ଚିରଉଜ୍ଜ୍ୱଳ ଓ ଅନିର୍ବାଣ !

# ପଞ୍ଚମ ଅଧ୍ୟାୟ

## ବାଚସ୍ପତି ନୀଳକଣ୍ଠ ଓ ବିଧାନସଭାକୁ ତାଙ୍କର ଅବଦାନ

### କଂଗ୍ରେସ ସଭ୍ୟଭାବରେ ନିର୍ଦ୍ୱନ୍ଦରେ ନିର୍ବାଚିତ

ଭାରତ ତଥା ଓଡ଼ିଶାର ରାଜନୀତିକ କ୍ଷେତ୍ରରେ କ୍ରମେ କେତେକ ପରିବର୍ତ୍ତନ ଆସିଲା । ପୂର୍ବରୁ ଆଲୋଚନା କରାଯାଇଛି, ଉତ୍କଳମଣି ଗୋପବଂଧୁଙ୍କ ପରେ ପଣ୍ଡିତ ନୀଳକଂଠ ଓଡ଼ିଶାରେ କଂଗ୍ରେସର ପ୍ରଧାନ ପାଳନକର୍ତ୍ତା, ପୃଷ୍ଠପୋଷକ, ଉଦ୍‌ଗାତା ଓ ମୁଖ୍ୟନେତା ହୋଇଥିଲେ । ମାତ୍ର ଜାତୀୟ ସ୍ତରରେ କଂଗେସ ପ୍ରାୟତଃ ବିଭାଜିତ ହେବାରୁ ପ୍ରାଦେଶିକ ସ୍ତରରେ ମଧ୍ୟ ଏହାର ପ୍ରଭାବ ପଡ଼ିଥିଲା ଏବଂ ନୀଳକଂଠ ପରିବର୍ତ୍ତନପନ୍ଥୀ ତଥା ଗରମପନ୍ଥୀ ହୋଇ ନେତାଜୀ ସୁଭାଷଙ୍କ ନେତୃତ୍ୱକୁ ପସନ୍ଦ କରିଥିଲେ । ଶେଷରେ ଦ୍ୱିତୀୟ ବିଶ୍ୱଯୁଦ୍ଧ-ବେଳେ ଜାତୀୟ ଯୁଦ୍ଧ-ସାମ୍ମୁଖ୍ୟରେ ସହଯୋଗୀ ହୋଇ କଂଗ୍ରେସର ଆସ୍ଥା ହରାଇ ଥିଲେ । ଏହି କାର୍ଯ୍ୟକୁ ନୀଳକଂଠ ଭାରତର ସ୍ୱାଧୀନତା ପ୍ରାପ୍ତିର ପ୍ରଥମ ସୋପାନ ବୋଲି କହିଥିଲେ ଏବଂ କଂଗ୍ରେସର ବିଭାଜନ ହେବାରେ ଅନୁତପ୍ତ ନହୋଇ ସୁଭାଷଙ୍କ ଫରଓ୍ୱାର୍ଡବ୍ଲକରେ ଯୋଗଦାନ କରିଥିଲେ ।

ସ୍ୱାଧୀନତା ଲାଭପରେ ସେ ସ୍ୱାଧୀନ ଜନସଂଘ ଦଳ ଗଢ଼ି ପ୍ରଥମ ନିର୍ବାଚନ (1952) ସମୟରେ ବିରୋଧୀଦଳମାନଙ୍କ ମଧ୍ୟରେ ଏକତା ଓ ବୁଝାମଣା ଆଣିବାକୁ ଚେଷ୍ଟାକରିଥିଲେ । ମାତ୍ର ତାହା ସମ୍ଭବ ନ ହେବାରୁ ସେ ଅଳ୍ପ କେତୋଟି ନିର୍ବାଚନମଣ୍ଡଳୀରେ ପ୍ରାର୍ଥୀ ଠିଆ କରାଇ-ଥିଲେ । ସତ୍ୟବାଦୀରୁ ସେ ସ୍ୱାଧୀନ ଜନସଂଘ ପ୍ରାର୍ଥୀ ଭାବରେ ଜୟଯୁକ୍ତ ହୋଇ ଆସିଥିଲେ ଏବଂ ଓଡ଼ିଶା ବିଧାନ ସଭାରେ ନିଜର ଦୀର୍ଘ ସାଂସଦୀୟ ଅଭିଜ୍ଞତା, ସାଧନା, ନିଷ୍ଠା, ଦେଶପ୍ରେମ ଓ ବାଗ୍ମୀତା ବଳରେ ବିରୋଧୀଦଳର ବିଧାୟକଭାବରେ ସର୍ବଜନବିଦିତ, ସୁପ୍ରତିଷ୍ଠିତ ଓ ସଫଳ ହୋଇପାରିଥିଲେ । ଏମିତିକି ନିଜର ଗଠନମୂଳକ ସମାଲୋଚନା, ସାଧୁତା ଓ ଦକ୍ଷତା ସରକାରୀ ସ୍ତରରେ ଆଦୃତ ହୋଇଥିଲା । ବିରୋଧୀଦଳର ସଭ୍ୟ ହେଲେ ହେଁ ତାଙ୍କର ବହୁ ପ୍ରସ୍ତାବ ଓ ପରାମର୍ଶ ସରକାର ଗ୍ରହଣ କରିନେଇଥିଲେ । ତାଙ୍କ ଉପରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କର ଗଭୀର ଆସ୍ଥା ଓ ବିଶ୍ୱାସ ହୋଇଥିବାରୁ ସେ ଅନେକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ନୀଳକଂଠଙ୍କର ଦିଗ୍‌ଦର୍ଶନ ଓ ଉପଦେଶ ଗ୍ରହଣ କରିବାକୁ ପଶ୍ଚାତ୍‌ପଦ ହୋଇନଥିଲେ ।

ଏହି ପରିବର୍ତ୍ତିତ ପରିସ୍ଥିତିରେ ଶ୍ରୀ ନବକୃଷ୍ଣ ଚୌଧୁରୀ ନୀଳକଂଠଙ୍କୁ କଂଗ୍ରେସକୁ ଫେରାଇ ଆଣିବାକୁ ଚାହିଁଥିଲେ ଏବଂ ତତ୍କାଳୀନ ପ୍ରଧାନମନ୍ତ୍ରୀ ଓ ପ୍ରଧାନ କଂଗ୍ରେସନେତା ପଣ୍ଡିତ ଜବାହରଲାଲ ନେହୁରଙ୍କୁ ଏଥିପାଇଁ ଅନୁରୋଧ କରିଥିଲେ । ଫଳତଃ ଶ୍ରୀଯୁକ୍ତ ନେହେରୁ 1955 ମାର୍ଚ୍ଚ 25 ତାରିଖରେ ନୀଳକଂଠଙ୍କୁ ଲେଖିଥିଲେ "ପ୍ରିୟ ବଂଧୁ, କଂଗ୍ରେସକୁ

ଆପଣ ଫେରିଆସିବାକୁ ଇଛା ପ୍ରକାଶ କରିଥିବା ଜାଣି ମୁଁ ଆନନ୍ଦିତ । ଅତୀତରେ ଆପଣ ଓଡ଼ିଶା କଂଗ୍ରେସର ଏକ ସ୍ତମ୍ଭ ସ୍ୱରୂପ ଥିଲେ ଏବଂ ଏହାକୁ 15 ବର୍ଷ ପୂର୍ବେ ଯେତେବେଳେ ଛାଡ଼ିଗଲେ, ମୋପରି ଅନ୍ୟମାନଙ୍କୁ ମଧ୍ୟ ଦୁଃଖଦାୟକ ହୋଇଥିଲା । ଆପଣ ଫେରିଆସି କଂଗ୍ରେସକୁ ଆପଣଙ୍କ ବିଜ୍ଞ ଉପଦେଶ ଦେଇ ଆମ୍ଭମାନଙ୍କୁ ସାହାଯ୍ୟ କଲେ ମୁଁ ଖୁସିହେବି" । ("My dear friend, I am happy to learn that you have expressed a wish to come back to the Congress You were in the old days pillar of the Congress in Orissa and it was a matter of sorrow to me as to others that you should have left it fifteen years ago. That I shall be happy indeed if you come back and help us with your wise counsel").

ଲୋକପ୍ରତିନିଧି ଭାବରେ ସେ ନିଜର ନୈତିକ କର୍ତ୍ତବ୍ୟ ମନେକରି ସତ୍ୟବାଦୀର ଜନସାଧାରଣ ଓ କର୍ମୀମାନଙ୍କ ସହିତ ଏ ସଂପର୍କରେ ପରାମର୍ଶ କରିଥିଲେ । ଶ୍ରୀଯୁକ୍ତ ନେହେରୁଙ୍କ ଲିଖିତ ପତ୍ର ମଧ୍ୟ ସେ ମୋନଙ୍କୁ ଦେଖାଇଥିଲେ ଏବଂ ଶେଷରେ ତାଙ୍କର ପ୍ରିୟ ଭୋଟରମାନଙ୍କ ମତାମତ ନେଇ 1955 ମଇ ମାସରେ କଂଗ୍ରେସରେ ପୁନଃଯୋଗଦାନ କରିଥିଲେ । 1957 ମସିହାରେ ଅନୁଷ୍ଠିତ ଦ୍ୱିତୀୟ ସାଧାରଣ ନିର୍ବାଚନରେ ସେ ନିର୍ଦ୍ୱନ୍ଦରେ କଂଗ୍ରେସ ସଭ୍ୟ ଭବରେ ସତ୍ୟବାଦୀ ନିର୍ବାଚନ ମଣ୍ଡଳୀର ପ୍ରତିନିଧିତ୍ୱ କରିଥିଲେ ।

## ବାଚସ୍ପତି ନିର୍ବାଚନ

1957 ମସିହା ମଇ 27 ତାରିଖରେ ଓଡ଼ିଶା ବିଧାନ ସଭାରେ ବାଚସ୍ପତିଭାବରେ ନିର୍ବାଚିତ ହୋଇଥିଲେ । ଡକ୍‌ଟର ହରେକୃଷ୍ଣ ମହତାବ ଏଥିପାଇଁ ନୀଳକଂଠଙ୍କ ନାମ ପ୍ରସ୍ତାବ କରିଥିଲେ ଏବଂ ଶ୍ରୀ ସାନ୍ତନୁ କୁମାର ଦାସ ଏହାକୁ ସମର୍ଥନ କରିଥିଲେ । ତାଙ୍କର ଏକମାତ୍ର ପ୍ରତିଦ୍ୱନ୍ଦୀ ଥିଲେ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ଏବଂ ତାଙ୍କର ନାମ ଶ୍ରୀ ପ୍ରସନ୍ନ କୁମାର ଦାସଙ୍କ ପ୍ରସ୍ତାବିତ ଓ ଶ୍ରୀ ବାଙ୍କବିହାରୀ ଦାସଙ୍କ ଦ୍ୱାରା ସମର୍ଥିତ ହୋଇଥିଲା । ଯଦିଓ ଗୃହରେ କଂଗ୍ରେସର ଯଥେଷ୍ଟ ସଂଖ୍ୟାରେ ସଭ୍ୟ ନଥିଲେ ନୀଳକଂଠ ମୋଟ ସଭ୍ୟ ସଂଖ୍ୟା ମଧ୍ୟରୁ 73 ଜଣଙ୍କ ସମର୍ଥନ ଲାଭ କରିଥିଲେ ଓ ତାଙ୍କ ପ୍ରତିଦ୍ୱନ୍ଦ୍ୱିଙ୍କୁ 60 ଜଣ ସମର୍ଥନ କରିଥିଲେ । ମୋଟ 137 ବିଧାନ ସଭା ସଦସ୍ୟ ଭୋଟ ଦେଇଥିଲେ ଓ ସେଥିରୁ 4ଟି ଭୋଟ ରଦ୍ଦ ବା ଅକାମୀ (Invalid) ହୋଇ ଯାଇଥିଲା । ଶ୍ରୀ ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ ଅସ୍ଥାୟୀ ବାଚସ୍ପତିଭାବରେ ଏହି ନିର୍ବାଚନ ପରିଚାଳନା କରିଥିଲେ ।

ନୀଳକଣ୍ଠ ବାଚସ୍ପତିଭାବେ ନିର୍ବାଚିତ ହେଲା ପରେ ସ୍ୱାଗତ ଭାଷଣ ଦେଇ ଶ୍ରୀ ମର୍ଦ୍ଦରାଜ ଦେଓ କହିଥିଲେ, "ପଣ୍ଡିତ ନୀଳକଣ୍ଠ ଗୃହର ଜଣେ ପ୍ରବୀଣ ସଭ୍ୟ ଏବଂ ମନୁଷ୍ୟ ଓ ପଦାର୍ଥର ପରିଚାଳନାରେ ଅଭିଜ୍ଞ । କେନ୍ଦ୍ର ବ୍ୟବସ୍ଥାପକ ସଭା ଓ ରାଜ୍ୟ ବିଧାନ ସଭାର ସଭ୍ୟଭାବରେ

ଦୀର୍ଘ ଅଭିଜ୍ଞତା ଅର୍ଜନ କରିଛନ୍ତି । ଦକ୍ଷତାର ସହିତ ଗୃହର କାର୍ଯ୍ୟ ନିର୍ବାହରେ ସେ ସଫଳ ହେବେ ବୋଲି ମୁଁ ସ୍ଥିର ନିଶ୍ଚିନ୍ତ । ଗୃହର ମାନ୍ୟବର ସଭ୍ୟମାନଙ୍କ ସଦିଚ୍ଛା ଓ ସହଯୋଗରେ ସେ ନିଶ୍ଚିନ୍ତ ଗୃହର ମର୍ଯ୍ୟାଦା ଓ ପରଂପରା ରକ୍ଷା କରି ପାରିବେ । ମୁଖ୍ୟମନ୍ତ୍ରୀ ଡ଼ଃ. ହରେକୃଷ୍ଣ ମହତାବ ମଧ୍ୟ ନିଜର ଅଭିନନ୍ଦନ ଭାଷଣରେ ପଣ୍ଡିତଜୀଙ୍କର ମହାନ୍ ସଦ୍‌ଗୁଣଗୁଡ଼ିକ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସେ ବାଚସ୍ପତି ହୋଇ ଆସନର ସମ୍ମାନ ବଢ଼ାଇଛନ୍ତି । ସେ ତାଙ୍କ ପକ୍ଷରୁ ସମସ୍ତ ସହଯୋଗ ଦେବାକୁ କହି ସରକାରଙ୍କ କାର୍ଯ୍ୟର ସଫଳତାପାଇଁ ତାଙ୍କର ଆଶୀର୍ବାଦ କାମନା କରିଥିଲେ ।

ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ମଧ୍ୟ ବାଚସ୍ପତି ନିର୍ବାଚନରେ ପରାଜିତ ହେଲାପରେ ନୀଳକଣ୍ଠଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ପରି ବ୍ୟକ୍ତିଙ୍କଦ୍ୱାରା ପରାସ୍ତ ହୋଇ ସେ ଗର୍ବ ଅନୁଭବ କରିଥିଲେ । ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ବିରୋଧୀଦଳ ନେତାଭାବରେ ପଣ୍ଡିତଜୀଙ୍କୁ ଅଭିନନ୍ଦନ ଜଣାଇ ମତ ଦେଇଥିଲେ ଯେ ନୀଳକଣ୍ଠଙ୍କ ଜୟଲାଭ ଶୁଭସୂଚକ ଏବଂ ସେ ଦଳ ମତ ନିର୍ବିଶେଷରେ ଗୃହର ସ୍ୱାଧୀକାର ଓ ସମ୍ମାନର ସୁରକ୍ଷା କରିବାରେ ତାଙ୍କ ଦାୟିତ୍ୱ ସୁସ୍ଥୁରୂପେ ସଂପାଦନ କରିବେ ବୋଲି ଆଶା କରିଥିଲେ । ଏହିପରି ବିଭିନ୍ନ ଦଳର ସଭ୍ୟମାନେ ନୀଳକଣ୍ଠଙ୍କ ବାଚସ୍ପତି ନିର୍ବାଚନରେ ଗଭୀର ଆଶା ଓ ଆନନ୍ଦ ପ୍ରକାଶ କରିଥିଲେ । ନୀଳକଣ୍ଠ ମଧ୍ୟ କୌଣସି ଭୟ ଓ ସଂକୋଚ ନରଖି ନିରପେକ୍ଷ ଭାବରେ ତାଙ୍କର ସମସ୍ତ ଦାୟିତ୍ୱ ଓ କର୍ତ୍ତବ୍ୟ ସଂପାଦନ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ନିଜର କର୍ତ୍ତବ୍ୟ ସଂପାଦନ ମଧ୍ୟରେ ସେ ସଂବିଧାନର ବିଧି ବିଧାନ ଓ ବ୍ୟବସ୍ଥାପକ ସଭାର ପରଂପରା ଅନୁସାରେ କାର୍ଯ୍ୟ କରିବେ ବୋଲି ମତ ଦେଇଥିଲେ । ଏହି ନିର୍ବାଚନ ପରେ ସେ କଂଗ୍ରେସରୁ ଇସ୍ତଫା ଦେଇ, ବାଚସ୍ପତି ନିର୍ଦ୍ଦଳୀୟ ବ୍ୟକ୍ତି ହେବା ଉଚିତ ବୋଲି ଜଣାଇ ଦେଇଥିଲେ ।

## ବାଚସ୍ପତି ଭାବରେ ତାଙ୍କର କାର୍ଯ୍ୟ ଓ ଆଚରଣ

ବାଚସ୍ପତି ବିଧାନ ସଭାର ଅଧ୍ୟକ୍ଷ । ତାଙ୍କର କାର୍ଯ୍ୟ ଓ ଆଚରଣରେ ସେ ସମସ୍ତ ସଭ୍ୟଙ୍କର ଆଦର୍ଶ । ନିରପେକ୍ଷ ତାଙ୍କ ଆଚରଣର କଷଟି ପଥର, ବୈଧାନିକତା ତଥା ଯୁକ୍ତିଯୁକ୍ତତା ତାଙ୍କର ମାନସିକ ଆବଶ୍ୟକତା, ଧୈର୍ଯ୍ୟ ଓ ବିଚାରଶୀଳତା ତାଙ୍କର ବିଶେଷ ସଦ୍‌ଗୁଣ । ଗୋଟିଏ କଥା କୁହାଯାଏ, ଭଗବାନ ମଣିଷକୁ ଦୁଇଟି କାନ ଦେଇଛନ୍ତି, କାରଣ ସେ ଅଧିକ ଲୋକଙ୍କଠାରୁ ଶୁଣିବ ଓ ଅଧିକ ପରିମାଣରେ ଶୁଣିବ । ଅଥଚ ତା'ର ଗୋଟିଏ ଜିଭରୁ ସୂଚିତ ହୁଏ ଯେ ସେ କମ୍ କହିବ ଏବଂ ଯାହା କହିବ ଓଜନଦାର ଓ ନ୍ୟାୟସଙ୍ଗତ କଥା କହିବ । କାନ ଦେହର ବାହାରେ ରହିଛି ମୁକ୍ତଭାବରେ ସବୁ ଶୁଣିବାପାଇଁ ଓ ଜିଭ ପାଟି ଭିତରେ ରହିଛି ସବୁକଥା ଗଭୀରତା ଓ ଗୁରୁତ୍ୱର ସହିତ ଓଜନ କରି କହିବା ପାଇଁ । ବାଚସ୍ପତିଙ୍କପାଇଁ ଏହି କଥାଟି ଅଧିକ ପ୍ରଯୁଜ୍ୟ । କାରଣ ତାଙ୍କ ନାଁ ବାଚସ୍ପତି (Speaker) ହେଲେହେଁ ସେ କମ୍ କହନ୍ତି, ବେଶୀ ଶୁଣନ୍ତି । ସେ ପୁଣି ମୁକ୍ତ ମନରେ ସମସ୍ତଙ୍କ କଥା ଶୁଣି ଯୁକ୍ତିଯୁକ୍ତ ତଥା ନ୍ୟାୟସଙ୍ଗତ ଭାବରେ ନିଜର ବକ୍ତବ୍ୟ ପ୍ରକାଶ କରିଥାନ୍ତି ।

ନୀଳକଣ୍ଠ ଥିଲେ ସତେ ଯେମିତି ଏହି ନୀତି ଓ ଆଦର୍ଶର ଏକ ଜୀବନ୍ତ ପ୍ରତିମୂର୍ତ୍ତି, ଏକ ବାସ୍ତବ ଆଦର୍ଶ । ସମସାମୟିକ ବରିଷ୍ଠ ସାଂସଦ ଶ୍ରୀଯୁକ୍ତ ବାଙ୍କବିହାରୀ ଦାସ ଯଥାର୍ଥରେ କହିଛନ୍ତି (ନୀଳକଣ୍ଠ ସ୍ମାରକୀ, ପୃ. 179), "ଗାମ୍ଭୀର ଓ ସୌମ୍ୟମୂର୍ତ୍ତି ବହନ କରି ବିଧାନ ସଭାର ଅଧ୍ୟକ୍ଷ" । ଏହାହିଁ ଗୃହର ବାତାବରଣରେ ଏକ ବିରାଟ ପରିବର୍ତ୍ତନ ଆଣିଦେଲା । କମ୍ କହିବାକୁ ହୁଏ, କାରଣ ବାଚସ୍ପତି ମୂକ ରହିବାକୁ ହେବ । ଦୁଇପାଖ ଖେଳର (Umpire) ନିର୍ଣ୍ଣେତା, ବିରୋଧୀ ପକ୍ଷ ହେଉ ବା ସରକାରୀ ଦଳ ହେଉ ସମସ୍ତଙ୍କର ସମ୍ମାନଭାଜନ; ନିଜର ବୟସ, ପାଣ୍ଡିତ୍ୟ ଓ ଅଭିଜ୍ଞତା ଯୋଗୁଁ । ତେଣୁ ଦଳୀୟ ଗ୍ରୁପର ଶିକାର ହେବାର ସମ୍ଭାବନା ନ ଥିଲା । ନିରପେକ୍ଷତାର ବାତାବରଣ ମଧ୍ୟରେ ବିଧାନ ସଭାର କାର୍ଯ୍ୟ ଆନନ୍ଦରେ ଚାଲିଲା । "ସମୟ ସମୟରେ ତାଙ୍କର ନିଷ୍ପତ୍ତିରେ ହୁଏତ ଅନେକ କ୍ଷୁବ୍ଧ ହୋଇଥାନ୍ତି, ମାତ୍ର ସୌଜନ୍ୟର ସହିତ ସେମାନଙ୍କର ଯୁକ୍ତିତର୍କ ସେ ଶୁଣୁଥିଲେ । ତାଙ୍କ ବ୍ୟକ୍ତିତ୍ୱ ପାଖରେ ସଭ୍ୟମାନେ ମୁଣ୍ଡ ନୁଆଁନ୍ତି ।" ଶ୍ରୀ ଦାସ ଯଥାର୍ଥରେ କହିଛନ୍ତି "ସେପରି ବିଧାନ ସଭରେ କାର୍ଯ୍ୟ କରିବାରେ ଆନନ୍ଦ ଥାଏ । ସେଥିପାଇଁ ତାଙ୍କର ଓ ମୋ ମଧ୍ୟରେ ବନ୍ଧୁତା ଦୃଢ଼ୀଭୂତ ହେଲା ଏବଂ ଆନ୍ତରିକତା ବୃଦ୍ଧି ପାଇଲା ।"

ଏହିପରି ଅନୁଭୂତି ଆଉ ଜଣେ ତତ୍‌କାଳୀନ ବ୍ୟବସ୍ଥାପକଙ୍କ ଭାଷାରେ ଅଭିବ୍ୟକ୍ତି ହୋଇଛି । ସବୁ ବିରୋଧ ମଧ୍ୟରେ ସମନ୍ୱୟ ଆଣିବା ଓ ଗଣତାନ୍ତ୍ରିକ ମୂଲ୍ୟବୋଧର ଆଦର କରିବା ଥିଲା ନୀଳକଣ୍ଠଙ୍କ ବ୍ୟକ୍ତିତ୍ୱର ବିଶେଷତ୍ୱ । ବିରୁଦ୍ଧଦଳର ସାଂସଦ ଥିଲେ ଶ୍ରୀ ହରିହର ବାହିନୀପତି ଓ ସେ ସୁନ୍ଦର ଭାବରେ ଗୋଟିଏ ଦିନର ଘଟଣା ସହିତ ପଣ୍ଡିତଜୀଙ୍କର ଉପରୋକ୍ତ ସଦ୍‌ଗୁଣ ସଂପର୍କରେ ଉଲ୍ଲେଖ କରିଛନ୍ତି ( ନୀଳକଣ୍ଠ ସ୍ମାରକୀ, 1984, ପୃ. 111 ) "ବାଚସ୍ପତି ଭାବରେ ପଣ୍ଡିତଜୀଙ୍କର ବିରୋଧୀଦଳ ପ୍ରତି ତଥା ଗଣତାନ୍ତ୍ରିକ ମୂଲ୍ୟବୋଧ ପ୍ରତି କିପରି ମର୍ଯ୍ୟାଦାବୋଧ ଥିଲା, ତା'ର ଅନ୍ୟ ଏକ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖନୀୟ । ଦିନେ ପ୍ରଶ୍ନୋତ୍ତର ପରେ ପରେ ସମ୍ଭବତଃ କୌଣସି ମୁଲତବୀ ପ୍ରସ୍ତାବକୁ ଗ୍ରହଣ କରିବାର ଦାବି ସମ୍ବନ୍ଧରେ ମୁଁ ବାରମ୍ବାର ଠିଆ ହେବାରୁ ବାଚସ୍ପତି ଆସନରୁ ପଣ୍ଡିତ ନୀଳକଣ୍ଠ କ୍ରୁଦ୍ଧ ସ୍ୱରରେ ମୋତେ ବସିବାପାଇଁ ନିର୍ଦ୍ଦେଶ ଦେଲେ । ଏଥିରେ ମୁଁ କ୍ଷୁର୍ଣ୍ଣ ହୋଇ ଏହାର ପ୍ରତିବାଦ ସ୍ୱରୂପ କକ୍ଷତ୍ୟାଗ କଲି । ବିରୋଧୀ ଦଳର ସମସ୍ତ ସଭ୍ୟ ମୋତେ ସମର୍ଥନ କରି ଏହାପରେ ମଧ୍ୟ କକ୍ଷତ୍ୟାଗ କଲେ । ବିରୋଧୀ ଦଳର ଅନୁପସ୍ଥିତିରେ ବିଧାନ ସଭାର କାର୍ଯ୍ୟ ଚାଲୁରହିବା ସଙ୍ଗତ ନୁହେଁ ବୋଲି ମନ୍ତବ୍ୟ ଦେଇ ନୀଳକଣ୍ଠ ଗୃହକୁ ହଠାତ୍ ମୁଲତବୀ କରିଦେଲେ ।"

## ବାଚସ୍ପତି ପଦ ଓ କ୍ଷମତା ସଂପର୍କରେ ସାମ୍ବିଧାନିକ ବ୍ୟବସ୍ଥା

ଭାରତୀୟ ସମ୍ବିଧାନର 178 ଓ 179 ଧାରା ଅନୁସାରେ ରାଜ୍ୟ ବିଧାନ ସଭାର ବାଚସ୍ପତି ତଥା ତାଙ୍କ ଦପ୍ତର କିପରି ସ୍ୱାଧୀନ ଓ ନିରପେକ୍ଷ ଭାବରେ କାର୍ଯ୍ୟ କରିପାରିବ

ସେଥିପାଇଁ ଇଂଲଣ୍ଡର ପାର୍ଲାମେଣ୍ଟର ବାଚସ୍ପତିଙ୍କ ଅନୁରୂପେ ଆମ ଦେଶର ବାଚସ୍ପତିଙ୍କ-ପାଇଁ ନିମ୍ନଲିଖିତ ତିନୋଟି ସ୍ୱାଧୀକାର ପ୍ରଦତ୍ତ ହୋଇଛି । ତାଙ୍କ ଦରମାପତ୍ର ଭାରତର ଏକତ୍ରୀଭୂତ ନିଧି (Consolidated Fund) ରେ ଭର୍ତ୍ତି ହୋଇଥାଏ, (2) ସଂପୃକ୍ତ ଗୃହର ବିଶେଷ ସଂଖ୍ୟାଗରିଷ୍ଠ ସଭ୍ୟଙ୍କ ପ୍ରସ୍ତାବରେ ହିଁ ସେ ଅପସାରିତ (removal) ହୋଇପାରିବେ ଏବଂ (3) ତାଙ୍କର ନିଜର ଭୋଟ ନ ଥାଏ, ମାତ୍ର ଉଭୟ ପକ୍ଷର ସମାନ ସଂଖ୍ୟକ ଭୋଟ ହେଲେ ସେ ନିର୍ଣ୍ଣାୟକ ଭୋଟ ଦେଇ ପାରିବେ ।

ବାଚସ୍ପତିଙ୍କର କ୍ଷମତା, ପାର୍ଲାମେଣ୍ଟ କାର୍ଯ୍ୟସଂପାଦନ ଓ ବିଧି ସଂପର୍କୀୟ ନିୟମାବଳୀ (Rules of Procedure and Conduct of Business in Parliament) 1950 ଅନୁସାରେ ନିୟନ୍ତ୍ରିତ ହୋଇଥାଏ । ସେଗୁଡ଼ିକ ମଧ୍ୟରେ କେତୋଟି ମୁଖ୍ୟ ହେଲା ( କ ) ସେ ଗୃହନେତାଙ୍କ ପରାମର୍ଶକ୍ରମେ ବିଭିନ୍ନ ବିଷୟର ଆଲୋଚନାପାଇଁ ସମୟ ସ୍ଥିର କରିବେ, (ଖ) ଧନ୍ୟବାଦ ପ୍ରସ୍ତାବ ଉପରେ ସଂଶୋଧନ (amendment) ଆସିଲେ କେଉଁ ପ୍ରକାରେ କରାଯିବ, ସେ ସ୍ଥିର କରନ୍ତି, (ଗ) ସେ ଗୃହନେତାଙ୍କ ପରାମର୍ଶକ୍ରମେ କାର୍ଯ୍ୟର କ୍ରମ ସ୍ଥିର କରନ୍ତି, (ଘ) କେଉଁ ପ୍ରଶ୍ନ ପଚରାଯିବା ଉଚିତ ତାହା ନିର୍ଣ୍ଣୟ କରନ୍ତି ଏବଂ କୌଣସି ବୈଧାନିକ କାରଣରୁ ମନା ବି କରିଦେଇପାରନ୍ତି, (ଙ) ଜରୁରୀ ଜନସ୍ୱାର୍ଥ ବିଷୟକୁ ମୁଲତବୀ ପସ୍ତାବ ବିଚାର ପାଇଁ ତାଙ୍କର ସମ୍ମତିର ଆବଶ୍ୟକତା ଥାଏ ଏବଂ ସେ କେତେ ସମୟପାଇଁ ସଭ୍ୟମାନେ ଆଲୋଚନା କରିବେ ନିଷ୍ପତ୍ତି ଦିଅନ୍ତି, ( ଚ ) ଗେଜେଟରେ ଛପା ହେବାପାଇଁ ଆଦେଶ ଦେଇଥିଲେ ବାଚସ୍ପତି ସେ ସଂପର୍କରେ ବିଲ୍ ଆଣିବାପାଇଁ ପ୍ରସ୍ତାବ ଦେଇପାରିବେ ନାହିଁ, (ଛ) ସେ ସଂପୃକ୍ତ ସଭ୍ୟମାନଙ୍କ ମଧ୍ୟରୁ ପ୍ରବର ସମିତିଗୁଡ଼ିକ (Select Committee) ର ଅଧ୍ୟକ୍ଷ ମନୋନୟନ କରନ୍ତି, (ଜ) କୌଣସି ବିଲ୍ ବା ବିଧେୟକ ଉପରେ ମୁଲତବୀ ପ୍ରସ୍ତାବ ଆଗତ କରିବାକୁ ଚାହିଁଲେ ତାଙ୍କ ସମ୍ମତି ନେବା ଦରକାର, (ଝ) କୌଣସି ପ୍ରସ୍ତାବକୁ ଗ୍ରହଣ କରିବାପାଇଁ ତାଙ୍କର ଅନୁକୂଳ ମତ ଦରକାର, (ଞ) ବଜେଟ ଉପରେ ଆଲୋଚନା କରିବାପାଇଁ ପ୍ରତ୍ୟେକ ସଭ୍ୟଙ୍କ ଭାଷଣ ପାଇଁ **ନିର୍ଦ୍ଦିଷ୍ଟ** ସମୟ ପରିମାଣ ସ୍ଥିର କରନ୍ତି ଏବଂ ଯଥା ସମୟରେ ତା'ର ଆଲୋଚନା ଶେଷକରିବାପାଇଁ ଆବଶ୍ୟକ ପଦକ୍ଷେପ ନିଅନ୍ତି, ( ଟ ) ରାଜ୍ୟପାଳ ଓ ବିଧାନ ସଭା ମଧ୍ୟରେ ହେଉଥିବା ସମସ୍ତ ଯୋଗାଯୋଗ ତାଙ୍କ ମାଧ୍ୟମରେ ହିଁ କରାଯିବ । ( ଠ ) କକ୍ଷରେ ସମ୍ବୋଧନ କରିବା ଓ ପ୍ରଶ୍ନ ପଚାରିବା ତାଙ୍କ ଜରିଆରେ ହୋଇଥାଏ, (ଡ) ବାଚସ୍ପତିହିଁ ସମସ୍ତ ସ୍ୱାଧୀକାର ସଂପର୍କରେ ନିଷ୍ପତ୍ତି ନିଅନ୍ତି ଏବଂ ତାଙ୍କ ନିଷ୍ପତ୍ତି ହିଁ ଚୂଡ଼ାନ୍ତ ହୋଉଥାଏ, (ଢ) ବାଚସ୍ପତି ଠିଆହେଲେ ଅନ୍ୟ ସଭ୍ୟମାନେ ବସିଯିବା ଉଚିତ ଓ ସେ କହିଲାବେଳେ କେହି କକ୍ଷତ୍ୟାଗକରି ଯାଇପାରିବେ ନାହିଁ, (ଣ) ବାଚସ୍ପତି ଗୃହର ଶୃଂଖଳା ରକ୍ଷାକରନ୍ତି ଏବଂ ଏଥିପାଇଁ ଆବଶ୍ୟକ ସମସ୍ତ କ୍ଷମତାର ସେ ଅଧିକାରୀ, (ତ) ସେ ପ୍ରଶ୍ନଉପରେ ଭୋଟ ନେଇପାରନ୍ତି ଓ ଭୋଟର ଫଳାଫଳ

କକ୍ଷରେ ଘୋଷଣା କରନ୍ତି ଏବଂ ତାଙ୍କ ଘୋଷଣା ହିଁ ଚୂଡ଼ାନ୍ତ ହୋଇଥାଏ, (ଥ) କୌଣସି ସଭ୍ୟଙ୍କର ବିଶୃଂଖଳିତ ଆଚରଣ ଦେଖିଲେ ତାଙ୍କୁ କକ୍ଷତ୍ୟାଗ କରିବାକୁ କହିପାରନ୍ତି ଏବଂ କେହି ତାଙ୍କର ଅବମାନନା କଲେ ଓ ଗୃହର ଶୃଂଖଳା ବାରମ୍ବାର ଭାଙ୍ଗିଲେ ତାଙ୍କୁ ନିଲମ୍ବିତ କରିପାରନ୍ତି, (ଦ) କକ୍ଷରେ ବିଶେଷ ବିଶୃଂଖଳା ପରିଲକ୍ଷିତ ହେଲେ ସେ କାର୍ଯ୍ୟ ବନ୍ଦ କରିପାରନ୍ତି ବା ମୁଲତବୀ କରିପାରନ୍ତି, (ଧ) ଗୃହରେ ଅପରିଚିତଙ୍କ ଆଗମନକୁ ନିୟନ୍ତ୍ରଣ କରନ୍ତି ଏବଂ ଯେତେବେଳେ ଚାହିଁବେ ସେମାନଙ୍କୁ ଗୃହତ୍ୟାଗ କରିବାପାଇଁ କହିପାରନ୍ତି, (ନ) ଆଲୋଚନା ମଧ୍ୟରେ କୌଣସି ପଦ ବା ପଦାବଳୀକୁ ସମ୍ମାନହାନିକର, ଅଶ୍ଳୀଳ ବା ଅଶାଳୀନ ମନେକଲେ ବାଚସ୍ପତି ଗୃହର ବିବରଣୀରୁ ସେସବୁକୁ କାଟି ଦେଇପାରନ୍ତି ବା ବାଦ ଦେଇ ପାରନ୍ତି ।

ଏହିପରି ସଂବିଧାନ ଓ କାର୍ଯ୍ୟବିଷୟକୁ ବିଧି ବିଧାନ ବଳରେ ବାଚସ୍ପତିଙ୍କ ଦପ୍ତର ବହୁବିଧ କ୍ଷମତାପ୍ରାପ୍ତ ହୋଇଥିଲା । ବିଧାନ ସଭା ରାଜ୍ୟର ପ୍ରତିନିଧିତ୍ୱ କରୁଥିବାରୁ, ବାଚସ୍ପତି ଜନସାଧାରଣଙ୍କ ସ୍ୱାଧୀନତା ଓ ସ୍ୱାଭିମାନର ପ୍ରତୀକଭାବରେ ଗ୍ରହଣ କରାଯାଏ । ବାଚସ୍ପତିଙ୍କ ଅଜସ୍ର କ୍ଷମତା ମୁଖ୍ୟତଃ ଚାରି ପ୍ରକାରର ହୋଇଥାଏ ଯଥା, (କ) ନିୟାମକ (ଖ) ଅଧୀକ୍ଷକ, (ଗ) ପ୍ରଶାସନିକ ଓ (ଘ) ବିବିଧ । ନୀତିନିୟମ ପ୍ରଣୟନ ଓ ବୈଧାନିକ ନିୟନ୍ତ୍ରଣ ସଂପର୍କୀୟ କ୍ଷମତାକୁ ନିୟାମକ (Regulation), ନିଜ ସଚିବାଳୟ ତଥା ବିଧାନ ସଭାର ବିଭିନ୍ନ ଭାଗ ଓ କାର୍ଯ୍ୟକୁ ତନଖିବା ଓ ପରିଦର୍ଶନ କରିବାକୁ ଅଧୀକ୍ଷକ (Supervisory), ବିଭିନ୍ନ ପଦପାଇଁ ନିଯୁକ୍ତି, କର୍ମଚାରୀମାନଙ୍କର କାର୍ଯ୍ୟଧାରା, କାର୍ଯ୍ୟସୂଚୀ, ପଦ ପଦୋନ୍ନତି, ଦରମାପ୍ରାପ୍ତି ଇତ୍ୟାଦି ସଂପର୍କୀୟ କ୍ଷମତାକୁ ପ୍ରଶାସନିକ (Administration) ଓ ଅନ୍ୟାନ୍ୟ ବହୁବିଧ କ୍ଷମତାକୁ ବିବିଧ (Miscellaneous) ଶ୍ରେଣୀର କ୍ଷମତା କୁହାଯାଇପାରେ ।

ବାଚସ୍ପତିଙ୍କ ଚତୁର୍ଦ୍ଦିଗରେ ଆବେଗଉଚ୍ଛ୍ୱାସର ଘୂର୍ଣ୍ଣିବାତ୍ୟା ଖେଳୁଥିଲେ ମଧ୍ୟ ତାଙ୍କୁ ଧୀରସ୍ଥିର ଓ ନିରପେକ୍ଷଭାବରେ ସବୁ ଶୁଣିବା ଓ କହିବାକୁ ପଡ଼େ । ସେ କେବଳ ଏକ ଶକ୍ତିଶାଳୀ ମାଧ୍ୟମ ନୁହେଁ । ସେ ଜଣେ ସୃଜନଶୀଳ ବିଚାରକ, ଉପଦେଷ୍ଟା ଓ ଦିଗଦର୍ଶକ ଭାବରେ କାର୍ଯ୍ୟ କରିଥାନ୍ତି । ତାଙ୍କର ନିଷ୍ପତ୍ତି ଓ ଘୋଷଣା ଗଣତନ୍ତ୍ରର ଫଳଶ୍ରୁତି, ବିବେକ ଓ ବିଧାନର ପ୍ରତିଧ୍ୱନି । ସଂସଦୀୟ ଗଣତନ୍ତ୍ରର ସେ ହେଉଛନ୍ତି ଜାଗ୍ରତ ପ୍ରହରୀ, ସେ ଜଣେ ସମର୍ଥ ଓ ଶକ୍ତିମାନ ପୃଷ୍ଠପୋଷକ ଓ ପରିପାଳକ ଏବଂ ସାମ୍ୟମୈତ୍ରୀର ସେ ଉଦାର ଉଦ୍‌ଗାତା । ଏହି ପୃଷ୍ଠଭୂମିରେ ପଣ୍ଡିତ ନୀଳକଂଠଙ୍କ ବାଚସ୍ପତୀୟ ଭୂମିକା ଓ କାର୍ଯ୍ୟକଳାପର ବିସ୍ତୃତ ଆଲୋଚନା କରିବା ଉଚିତ ହେବ ।

## ବାଚସ୍ପତି ଭାବରେ ନୀଳକଂଠଙ୍କ କାର୍ଯ୍ୟକଳାପ

ପଣ୍ଡିତ ନୀଳକଂଠଙ୍କୁ ବିଧାୟକଭାବରେ ଅନୁଧ୍ୟାନ କରିଥିବା ବରିଷ୍ଠ ଅଧ୍ୟାପକ ଡକଟର ହରିହର ମିଶ୍ର (Pandit Nilakantha Das, the Legislator, 1994, pp 131—155)

ଉଲ୍ଲେଖ କରିଛନ୍ତି ଯେ ନୀଳକଂଣ୍ଠ ଯଦିଓ 1957ରୁ 1961 ପର୍ଯ୍ୟନ୍ତ ବାଚସ୍ପତି ଥିଲେ, 1957 ମସିହାରେ ହିଁ ତାଙ୍କର ସବୁ ନିଷ୍ପତ୍ତି (Rulings) ଦିଆଯାଇଥିଲା । 1958ରୁ 1961 ମଧ୍ୟରେ ଲିପିବଦ୍ଧ ହୋଇଥିବା ବିଧାନସଭା ବିବରଣୀରୁ ସ୍ପଷ୍ଟ ହୁଏ ଯେ ଏହି ସମୟ ମଧ୍ୟରେ ନୀଳକଣ୍ଠ କୌଣସି ନିଷ୍ପତ୍ତି ଦେଇନାହାନ୍ତି । ଅନୁଧ୍ୟାନରୁ ଅବଗତ ହେଉଛି ଯେ, 1958ରୁ ନୀଳକଣ୍ଠ ଦୀର୍ଘକାଳ ଧରି ପୀଡ଼ିତ ହୋଇପଡ଼ିବାରୁ ବିଧାନସଭାରେ ଅନୁପସ୍ଥିତ ରହୁଥିଲେ ଏବଂ ଉପବାଚସ୍ପତି ଶ୍ରୀ ଯଦୁମଣି ମଂଗରାଜ ଅଧିକାଂଶ ସମୟରେ ଗୃହରେ ଅଧ୍ୟକ୍ଷତା କରୁଥିଲେ । ଗୃହର ଶୃଂଖଳା ଓ ସମ୍ମାନ ରକ୍ଷା ନିମନ୍ତେ ନୀଳକଣ୍ଠ ମୋଟ ୪୨ଟି ନିଷ୍ପତ୍ତି ଦେଇଥିଲେ । ଏଗୁଡ଼ିକ ସାଧାରଣତଃ (କ) ରାଜ୍ୟପାଳଙ୍କ ଭାଷଣ ଓ ତାଙ୍କର ଅନ୍ୟାନ୍ୟ ବିଷୟ, (ଖ) ମୁଲତବୀ ପ୍ରସ୍ତାବ, (ଗ) ସାଧାରଣ ଚିଠା ଆଇନ୍ ବା ବିଲ୍, (ଘ) ବଜେଟ, (ଙ) ଗୃହରେ ଆଲୋଚନା, (ଚ) ଗୃହରେ ଦଳ ବଦଳ (ଛ) ଆଲୋଚନାର ଭାଷା, (ଜ) ତଥ୍ୟ ପ୍ରଦାନ, (ଝ) ଶୃଂଖଳାଗତ, (ଞ) ସ୍ୱାଧୀକାର ପ୍ରଶ୍ନ, (ଟ) ଉପବାଚସ୍ପତିଙ୍କ ନିର୍ବାଚନରେ ବାଚସ୍ପତିଙ୍କ ଯୋଗଦାନ, (ଠ) ପ୍ରବର ସମିତି (Select Committee) ଗଠନ ଓ କାର୍ଯ୍ୟ, (ଡ଼) ଅଶାଳୀନ ଓ ଅସଂସଦୀୟ ମନ୍ତବ୍ୟ, (ଢ଼) କେନ୍ଦ୍ରୀୟ ଆଇନ ଓ (ଣ) ସାଂସଦମାନଙ୍କ ପ୍ରଶ୍ନଗୁଡ଼ିକ ଉପରେ ପ୍ରଦାନ କରାଯାଇଥିଲା । ଏହି ନିଷ୍ପତ୍ତିଗୁଡ଼ିକ ନିମ୍ନରେ ସଂପୃକ୍ତ ବର୍ଗରେ ଆଲୋଚନା ହେଉଛି ।

(କ) <u>ରାଜ୍ୟପାଳଙ୍କ ଭାଷଣ ଓ ଅନ୍ୟାନ୍ୟ ପ୍ରସଂଗରେ ନିଷ୍ପତ୍ତି</u>

1957 ମଇ 28 ତାରିଖରେ ରାଜ୍ୟପାଳଙ୍କ ଭାଷଣ ଉପରେ ଧନ୍ୟବାଦ ପ୍ରସ୍ତାବ ଆଗତ ହୋଇଥିଲା । ମାତ୍ର ତାହା କାହାଦ୍ୱାରା ସମର୍ଥିତ (Seconded) ହୋଇନଥିଲା । ତେଣୁ ତା'ଉପରେ ସଂଶୋଧନପାଇଁ ଦିଆଯାଇଥିବା ବିଜ୍ଞପ୍ତି ଠିକ୍ ନୁହେଁ ଏବଂ ନୂଆକରି ତାହା ଦିଆଯିବା ଉଚିତ ବୋଲି ଦାବି ହୋଇଥିଲା । ବାଚସ୍ପତି ଏଥିରୁ କୌଣସି ଶୃଂଖଳା-ଗତ ଅସୁବିଧା ଦେଖିନଥିଲେ ଏବଂ ଯାହା ପ୍ରଥମେ ହୋଇ ନ ଥିଲା ତାହାପରେ କରାଯିବା ଦରକାର ଅର୍ଥାତ ଗତକାଲି ଯେଉଁ ପ୍ରସ୍ତାବ ଆଗତ ହୋଇଥିଲା, ଆଜି ତାହା ସମର୍ଥିତ (Seconded) ହେଲେ ଚଳିବ ବୋଲି କହିଥିଲେ । ତେଣୁ ଏଥିରେ ବୈଧାନିକ ପ୍ରଶ୍ନ ନାହିଁ ବୋଲି ସେ ଘୋଷଣା କରିଥିଲେ । (This was not done yesterday. It is being done today. There is no point of order in this.)

ରାଜ୍ୟପାଳଙ୍କ ବେତନ ସଂପର୍କରେ କେତେକ ସଭ୍ୟ ମନ୍ତବ୍ୟ ଦେଇଥିଲେ । ମାତ୍ର ବାଚସ୍ପତି ଏହି ପ୍ରସଂଗ ଗୃହରେ ଆଲୋଚନା ପରିସରଭୁକ୍ତ ନୁହେଁ ଏବଂ ଏହି ମନ୍ତବ୍ୟକୁ ଗୃହର ବିବରଣୀରୁ କାଟି ଦିଆଯିବ । ଏହି ପ୍ରସଂଗ ଆଉଥରେ ଉଠିବାରୁ ଉପବାଚସ୍ପତି ମତ ଦେଇଥିଲେ ଯେ ଥରେ ଏହି ବିଷୟରେ ନିଷ୍ପତ୍ତି ଦିଆଯାଇଥିବାରୁ, ଆଉ ସେକଥା ଆଲୋଚନା କରି ଗୃହ ସମୟର ଅପଚୟ କରିବାକୁ ଦିଆଯିବନାହିଁ ।

(ଖ) ମୁଲତବି ପ୍ରସ୍ତାବ ସଂପର୍କୀୟ ନିଷ୍ପତ୍ତି

ଭାରତ ସରକାରଙ୍କ କରନୀତି ବିଧାନସଭାରେ ଆଲୋଚିତ ହୋଇପାରିବ ନାହିଁ ଏଥିଯୋଗୁଁ ରାଜ୍ୟରେ ମୂଲ୍ୟବୃଦ୍ଧି ଘଟୁଛି ବୋଲି ସଭ୍ୟମାନଙ୍କର ଆପତ୍ତିକୁ ଶୁଣି ବାଚସ୍ପତି ମତଦେଲେ ଯେ ଏହା କେନ୍ଦ୍ରୀୟ ବିଷୟ ହୋଇଥିବାରୁ ବିଧାନସଭାରେ ଆଲୋଚନା କରାଯାଇ ପାରିବ ନାହିଁ । (This being a central subject, it cannot be discussed in this House......) । ସେହିପରି ରାଜଗାଂଗପୁର ଓଡ଼ିଶା ସିମେଣ୍ଟ କାରଖାନାରେ ଶ୍ରମିକମାନେ ଧର୍ମଘଟ କରିବା ଉପରେ ଆସିଥିବା ମୁଲତବୀ ପ୍ରସ୍ତାବ ଉପରେ ନିଷ୍ପତ୍ତି ଦେଇ ବାଚସ୍ପତି କହିଥିଲେ ଯେ ଏଥିପାଇଁ ସରକାରଙ୍କ ବିରୁଦ୍ଧରେ ନିଂଦା ପ୍ରସ୍ତାବ ଆଣିବା ଉଚିତ ନୁହେଁ । ସରକାରଙ୍କ ଦ୍ୱାରା ଏଥିପାଇଁ ଗଠିତ ଟ୍ରିବ୍ୟୁନାଲକୁ ଏହାର ବିଚାରପାଇଁ ପଠାଯାଉ । ସେମିତି ଅଗ୍ନିଦାହ ସମସ୍ୟା ଗୁରୁତ୍ୱପୂର୍ଣ୍ଣ ହେଲେ ବି ଏଥିପାଇଁ ତୁରନ୍ତ ପଦକ୍ଷେପ ନେବା ଦରକାର ପଡିନାହିଁ । ତେଣୁ ଏହା ଉପରେ ମୁଲତବୀ ପ୍ରସ୍ତାବ ଗ୍ରହଣ ଯୋଗ୍ୟ ନୁହେଁ ବୋଲି ବାଚସ୍ପତି ନିଷ୍ପତ୍ତି ଦେଇଥିଲେ । ସେହିପରି ଥିଲା ରାଜଧାନୀର ଜଳାଭାବ ସମସ୍ୟା, ଗୁରୁତ୍ୱପୂର୍ଣ୍ଣ ହେଲେ ବି ତୁରନ୍ତ ସମସ୍ୟା ନୁହେଁ । ତେଣୁ ଏହାଉପରେ ଆସିଥିବା ମୁଲତବୀ ପ୍ରସ୍ତାବକୁ ବାଚସ୍ପତି ସମ୍ମତି ଜଣାଇନଥିଲେ ।

ଯେମିତି କୌଣସି ବିଷୟ ଗୁରୁତ୍ୱପୂର୍ଣ୍ଣ ହୋଇପାରେ । ମାତ୍ର ତାହା ଯଦି ବଜେଟ ଦାବିଉପରେ ଆଲୋଚନାବେଳେ କହିହେବ, ମୁଲତବୀ ପ୍ରସ୍ତାବଭାବରେ ଗ୍ରହଣ କରିବା ଅନୁଚିତ । ଏହି ପ୍ରସଂଗରେ ନୂଆ ରାଜଧାନୀରେ ସ୍ୱଳ୍ପ ବେତନଭୋଗି କର୍ମଚାରୀମାନଙ୍କୁ ଗୃହଯୋଗାଣ ବ୍ୟବସ୍ଥା ସଂପର୍କରେ ବିଜ୍ଞପ୍ତି ଦିଆଯାଇଥିବା ମୁଲତବୀ ପ୍ରସ୍ତାବକୁ ବାଚସ୍ପତି ସମ୍ମତି ଦେଇନଥିଲେ । ହୀରାକୁଦ ବଂଧର ବାସଚ୍ୟୁତ ହୋଇଥିବା ବାସିନ୍ଦାଙ୍କର ପୁନର୍ବାସ ସଂପର୍କରେ ଗତକାଲି ଆଲୋଚନା ହୋଇଥିଲା । ଆଜି ତା'ର ବିଚାର ତୁରନ୍ତ ଭାବରେ କିଛିକରାଯାଇ ପାରିବ ନାହିଁ । ସେମିତି ରଜଗାଂଗପୁର ସିମେଣ୍ଟ କାରଖାନାରେ ଶ୍ରମିକ-ମାନଙ୍କ ଉପରେ ପୋଲିସର ଅତ୍ୟାଚାର ସଂପର୍କୀୟ ମୁଲତବୀ ପ୍ରସ୍ତାବ ଆସିଥିଲା । ଟ୍ରିବ୍ୟୁନାଲକୁ ଉକ୍ତ ସମସ୍ୟା ବିଚାରପାଇଁ ଦେବାକୁ ପୂର୍ବରୁ କୁହାଯାଇଥିଲା । ତେଣୁ ଏହି ବିଷୟ ମୁଲତବୀ ପ୍ରସ୍ତାବ ଗ୍ରହଣଯୋଗ୍ୟ ନୁହେଁ । ଜଣେ ସଭ୍ୟ ପ୍ରଶ୍ନ କରିଥିଲେ ଯେ, ମୁଲତବି ପ୍ରସ୍ତାବ ଆସିବା ପୂର୍ବରୁ ବାଚସ୍ପତି ତା'ର ଗୁରୁତ୍ୱ କିପରି ନିର୍ଦ୍ଧାରଣ କରିପାରିବେ? ବାଚସ୍ପତି ଉତ୍ତର ଦେଇଥିଲେ ଯେ ସେ ଦିନକ ପୂର୍ବରୁ ଦିଆଯାଇଥିବା ନିଷ୍ପତ୍ତି ସଂପର୍କରେ ପ୍ରଶ୍ନ କରିବା ଅର୍ଥ ତାଙ୍କ ଆସନକୁ ଅବମାନନା କରିବା ।

ରାଉରକେଲା ଇସ୍ପାତକାରଖାନା ନିର୍ମାଣରେ ଶ୍ରମିକମାନେ କାର୍ଯ୍ୟବଂଦ କରିଥିଲେ । ଏହା ରାଜ୍ୟ ସରକାରଙ୍କ ପ୍ରାଥମିକ କାର୍ଯ୍ୟ ମଧ୍ୟରେ ଆସୁନାହିଁ । ତେବେ ସଭ୍ୟ ମହାଶୟ ଏସଂପର୍କୀୟ ତଥ୍ୟ ଜାଣିବାକୁ ଚାହିଁଲେ ସଂକ୍ଷିପ୍ତ ପ୍ରଶ୍ନ ଆକାରରେ ପଚାରି ପାରନ୍ତି । ସରକାର ତା'ର ଉତ୍ତର ଦେବାକୁ ପ୍ରସ୍ତୁତ ଅଛନ୍ତି । ସେମିତି ଗୃହଦାହ ଓ ତଦ୍‌ଜନିତ

ମୃତ୍ୟୁ ଘଟଣା ବଜେଟ ଦାବି ଆଲୋଚନାବେଳେ କୁହାଯାଇପାରିବ । ତେଣୁ ଯଦି ସଭ୍ୟ ଚାହିଁବେ ସଂକ୍ଷିପ୍ତ ପ୍ରଶ୍ନ ଆକାରରେ ପଚ଼ାରିଲେ ଉତ୍ତର ପାଇପାରିବେ, ତିର୍ତ୍ତୋଲ, ଜଗତସିଂପୁର ଅଂଚଳରେ ନେତା ଓ କର୍ମୀମାନଙ୍କୁ ପୋଲିସ ମନଇଛା ବାଂଧିନେଉଛି ବୋଲି ଏକ ମୁଲତବୀ ପ୍ରସ୍ତାବ ଆଗତ ହୋଇଥିଲା । ମାତ୍ର ତାହା ସାଧାରଣ ଶାସନ ଶୃଂଖଳା ବିଷୟକ ସମସ୍ୟା ହୋଇଥିବାରୁ ତାକୁ ମୁଲତବୀ ପ୍ରସ୍ତାବ ଆକାରରେ ଆଣିବା ଅଯୌକ୍ତିକ । ରଥଯାତ୍ରାବେଳେ କଲେରା ଓ ଇନ୍‌ଫ୍ଲୁଏଂଜା ବ୍ୟାପିବା ସଂପର୍କରେ ଏକ ମୁଲତବୀ ପ୍ରସ୍ତାବ ଉପରେ ନିଷ୍ପତ୍ତି ଦେଇ ବାଚସ୍ପତି କହିଲେ ଯେ ସରକାରଙ୍କ ତରଫରୁ ଆଶୁ ପଦକ୍ଷେପ ନିଆଯାଇଛି ଏବଂ ପୂର୍ବରୁ ଏହିପରି ସ୍ୱାସ୍ଥ୍ୟ ସମସ୍ୟା ସଂପର୍କରେ ଗୃହରେ ଆଲୋଚନା କରାଯାଇଛି, ତେଣୁ ଏହି ସଂପର୍କୀୟ ମୁଲତବୀ ପ୍ରସ୍ତାବକୁ ଅସ୍ୱୀକାର କରିଥିଲେ ।

(ଗ) ବିଲ୍ ସଂପର୍କୀୟ ନିଷ୍ପତ୍ତି

ବିଲ୍‌ର ଧାରାପରେ ଧାରା ବିଚାର ହେଉଥିବାବେଳେ ତା'ର ନୀତି ସଂପର୍କରେ ଆଲୋଚନା କରାଯାଇ ପାରିବ ନାହିଁ । ଏହିପରି ଏକ ବିଲ୍ ଆଲୋଚନା କରାଯାଇଥିଲାବେଳେ ଜଣେ ସଭ୍ୟ ତା'ର ନୀତି ସଂପର୍କରେ ପ୍ରଶ୍ନ କରିବାରୁ ବାଚସ୍ପତି ମତ ଦେଇଥିଲେ ଯେ, ଯେତେବେଳେ ଏକ ବୈଧାନିକ ପ୍ରଶ୍ନ ଉଠିଥାଏ, ସଭ୍ୟମାନେ ବିଭିନ୍ନ ଦଳରୁ ଆଲୋଚନାରେ ଭାଗ ନେଇପାରନ୍ତି ମାତ୍ର ଯେତେବେଳେ ନୀତିଗତଭାବରେ ଗୃହ ବିଲ୍‌ଟିକୁ ଗ୍ରହଣ କରି ସାରିଛି, ତା'ର ନୀତିଉପରେ କୌଣସି ଆଲୋଚନା ହେବା ଆଉ ଉଚିତ ନୁହେଁ । ପରେ ସପକ୍ଷରେ ବା ବିପକ୍ଷରେ ସଭ୍ୟ ଭୋଟ ଦେଇପାରନ୍ତି, ମାତ୍ର ବିଲ୍‌ର ନୀତି ଉପରେ ଏହି ସ୍ତରରେ କୌଣସି ଆଲୋଚନା ହୋଇପାରିବ ନାହିଁ । ସେହିପରି କୌଣସି ଅର୍ଥବିଲ୍‌ରେ ସଂଶୋଧନ କରିବାପାଇଁ ରାଜ୍ୟପାଳଙ୍କ ସୁପାରିସ ଆବଶ୍ୟକ । ଏହିପରି ଏକ ଅର୍ଥବିଲ୍ ରାଜ୍ୟପାଳଙ୍କ ବିନା ସୁପାରିସରେ ଗୃହରେ ଆଗତ ହେବା ଭୁଲ ହୋଇଛି ବୋଲି ଜଣେ ସଭ୍ୟ ବୈଧାନିକ ପ୍ରଶ୍ନ ଉଠାଇବାରୁ ବାଚସ୍ପତି ନିଷ୍ପତ୍ତି ଦେଲେ ଯେ, ବିଲ୍ ରାଜ୍ୟପାଳଙ୍କ ସୁପାରିସ ପାଇବା ପର୍ଯ୍ୟନ୍ତ ବିଲମ୍ବିତ ରହିବ । ମାତ୍ର ମୃତ ହେବନାହିଁ । ସୁପାରିସ ପ୍ରାପ୍ତିପରେ ଉପଯୁକ୍ତ କାର୍ଯ୍ୟାନୁଷ୍ଠାନ କରାଯିବ ।

(ଘ) ବଜେଟ ଉପରେ ନିଷ୍ପତ୍ତି

ଅତି ଗୁରୁତ୍ୱପୂର୍ଣ୍ଣ ତଥ୍ୟ ପ୍ରକାଶ ନ ପାଇଲେ ସେ ସଂପର୍କରେ ବୈଧାନିକ ପ୍ରଶ୍ନଉଠାଇବା ଅନୁଚିତ । ଜଣେ ଶିକ୍ଷାମନ୍ତ୍ରୀ କୌଣସି ଏକ ଶିକ୍ଷାନୁଷ୍ଠାନ ନିର୍ଦ୍ଦିଷ୍ଟ ପରିମାଣର ଅର୍ଥ ଦିଆଯାଉଛି ବୋଲି କହିବାଦ୍ୱାରା ସେ ବଜେଟରେ ଗୋପନିୟତା ରକ୍ଷା କରିନାହାଁନ୍ତି ବୋଲି ପ୍ରଶ୍ନ ଉଠିଥିଲା । ମାତ୍ର ବାଚସ୍ପତି ନିଷ୍ପତ୍ତି ଦେଲେ ଯେ ବଜେଟର କିତା ସଭ୍ୟମାନଙ୍କୁ ଯୋଗାଇ ଦିଆଯାଇଛି । ଭିତରେ ଥିବା ଏ ତଥ୍ୟଟି କହିବାଦ୍ୱାରା କୌଣସି ଗୋପନିୟତା ନଷ୍ଟ ହୋଇନାହିଁ

ବରଂ ସଭ୍ୟ ଏତଦ୍ୱାରା ଉପକୃତ ହେଲେ । ବଜେଟ ବଣ୍ଟାଯିବା ପୂର୍ବରୁ ଗୋପନୀୟ, ମାତ୍ର ତାହା ପ୍ରକାଶିତ ବ୍ୟବସ୍ଥା ହେଲାପରେ ଗୋପନୀୟ ହୋଇପାରିବ ନାହିଁ । ତେଣୁ ଏହି କ୍ଷେତ୍ରରେ ବୈଧାନିକ ପ୍ରଶ୍ନ ଗ୍ରହଣଯୋଗ୍ୟ ନୁହେଁ ।

(ଙ) ଆଲୋଚନା ସଂପର୍କୀୟ ନିଷ୍ପତ୍ତି

ଆଲୋଚନାବେଳେ କୌଣସି ବ୍ୟକ୍ତିଗତ ଆକ୍ଷେପଯଦି କୌଣସି ମକଦ୍ଦମାରେ ପ୍ରମାଣ ଭାବରେ ବ୍ୟବହୃତ ହୋଇପାରେ ଏବଂ ଉକ୍ତ ବିଷୟ କୋର୍ଟରେ ବିଗ୍ରାଧୀନ ଥାଏ, ତେବେ ତାହା ବିବରଣୀରୁ ବାଦ ଦିଆଯିବ । 1957 ମଇ 31 ତାରିଖରେ ଜଣେ ସଭ୍ୟ ଆଉଜଣେ ସଭ୍ୟଙ୍କର ନିର୍ବାଚନକାଳୀନ ଦୋଷ ତ୍ରୁଟି ସଂପର୍କରେ କହିଥିଲେ । ମାତ୍ର କୋର୍ଟରେ ଉକ୍ତ ବିଷୟରେ ଏକ ମୋକଦ୍ଦମା ବିଗ୍ରାଧୀନ ଥିଲା । ତେଣୁ ସଂପୃକ୍ତ ସଭ୍ୟ ଏକ ବୈଧାନିକ ପ୍ରଶ୍ନ ଉଠାଇବାକୁ ଚେଷ୍ଟାକରି କହିଥିଲେ ଯେ, ଏହି ବିଷୟ କୋର୍ଟର ବିଗ୍ରାଧୀନ ଥିବାରୁ ଏକ ସାକ୍ଷ୍ୟ-ଭାବରେ ବ୍ୟବହୃତ ହୋଇପାରେ, ତେଣୁ ସଂଶ୍ଳିଷ୍ଟ ଅଂଶଟି ବିବରଣୀରୁ ବାଦ୍ କରାଯାଉ । ବାଚସ୍ପତି ପରେ ବିବୃତିକୁ ପାଠକରି ଏସଂପର୍କରେ ନିଜର ନିଷ୍ପତ୍ତି ଦେବେ ବୋଲି କହିଥିଲେ । ତା 1-6-1957 ରିଖରେ ବାଚସ୍ପତି ନିଷ୍ପତ୍ତି ଦେଲେ ଯେ, ସେଥିରେ ସାକ୍ଷ୍ୟ-ଦେଲାପରେ କୌଣସି କଥା ନଥିବାରୁ ତାହା ବିବରଣୀରୁ କାଢିଦେବାର ବିଶେଷ କାରଣ ନାହିଁ । ଆଲୋଚନାବେଳେ ଜଣେ ସଭ୍ୟ କୌଣସି ବିଷୟରେ କହିଲେ ମଧ୍ୟ ଅନ୍ୟ ଜଣେ ସଭ୍ୟ ତା'ର ବିରୋଧରେ କହିପାରନ୍ତି, ମାତ୍ର କୌଣସି ଗୁରୁତର ବିଷୟ ଥିଲେ ଏହା ନିଷେଧ କରାଯିବ । ମନ୍ତ୍ରୀମାନେ ତାଙ୍କ ବିଭାଗ ବିଷୟରେ ଆଲୋଚନା ଚାଲିଥିବା ବେଳେ ଜଣେ ସଭ୍ୟ ବୈଧାନିକ ପ୍ରଶ୍ନ ଉଠାଇଥିଲେ ମାତ୍ର ବାଚସ୍ପତି ନିଷ୍ପତ୍ତି ଦେଲେ ଯେ ମନ୍ତ୍ରୀମାନଙ୍କର ବିଭିନ୍ନ ପ୍ରକାର କର୍ତ୍ତବ୍ୟ ଥାଏ, ତେଣୁ ତାଙ୍କୁ ବିଧାନସଭାରେ ରହିବାକୁ ବାଧ୍ୟ କରାଯିବା ଅନୁଚିତ । ମୁଖ୍ୟମନ୍ତ୍ରୀ ଉପସ୍ଥିତ ରହି ଆଲୋଚନାର ଉତ୍ତର ଦେବେ ।

(ଚ) ଗୃହରେ ଦଳବଦଳ ସଂପର୍କୀୟ ନିଷ୍ପତ୍ତି

ଦିନେ ହଠାତ୍ ଜଣେ ସଭ୍ୟ ଉଠିପଡି ସଂକ୍ଷେପରେ କିଛି କହି ସରକାରୀ ଦଳରେ ଯୋଗଦେବା ପାଇଁ ଦଳ ବଦଳ କଲେ । ଏହି ପ୍ରସଙ୍ଗରେ ବାଚସ୍ପତି ମତ ଦେଲେ ଯେ ସଭ୍ୟ ଏହି ସଂପର୍କରେ ପୂର୍ବରୁ ଜଣାଇ ଏହା କରିଥିଲେ ଭଲ ହୋଇଥାନ୍ତା । ଏମିତି ହଠାତ୍ ଏହା କରିଦେବା ଅନୁଚିତ ।

(ଛ) ଆଲୋଚନାର ଭାଷା ସଂପର୍କୀୟ ନିଷ୍ପତ୍ତି

ସଭ୍ୟମାନେ ଓଡିଆ, ହିନ୍ଦୀ ଓ ଇଂରେଜିରେ ଆଲୋଚନା କରିପାରିବେ । ଜଣେ ସଭ୍ୟ ଇଂରେଜିରେ କହିବାକୁ ଲାଗିଲେ, ଆଉ ଜଣେ ସଭ୍ୟ ଓଡିଆରେ କହିବାକୁ ଦାବି କଲେ । ବାଚସ୍ପତି ନିଷ୍ପତ୍ତି ଦେଲେ ଯେ ସଭ୍ୟମାନେ ସମ୍ବିଧାନ ସଂଶୋଧିତ ନ ହେବା ପର୍ଯ୍ୟନ୍ତ ଉପରୋକ୍ତ ତିନୋଟି ଭାଷାମଧ୍ୟରୁ ଯେଉଁଥିରେ ଚାହିଁବେ କହିପାରିବେ ।

(ଜ) ସୂଚନା ସଂପର୍କୀୟ ନିଷ୍ପତ୍ତି

ଜଣେ ସଭ୍ୟ ଗୃହରେ କହିଲାବେଳେ ଅନ୍ୟଜଣେ ସଭ୍ୟ କୌଣସି ଏକ ସୂଚନା ଗ୍ରହିଁଥିଲେ । କିନ୍ତୁ ଆଲୋଚନା କରୁଥିବା ସଭ୍ୟ କହିବାରେ ଲାଗିଥିଲେ ଏବଂ ଉକ୍ତ ସଭ୍ୟଙ୍କୁ ଉକ୍ତ ସୂଚନା ଦେଇନଥିଲେ । ଏ ପ୍ରସଙ୍ଗରେ ବାଚସ୍ପତି ନିଷ୍ପତ୍ତି ଦେଲେ ଯେ ସଂପୃକ୍ତ ସଭ୍ୟ ଭାଷଣ ବନ୍ଦକରି ବସିବା ପର୍ଯ୍ୟନ୍ତ କିଛି କରିହେବ ନାହିଁ ଅନ୍ୟସଭ୍ୟ କୌଣସି ସୂଚନା ଗ୍ରହିଁଲେ ଉକ୍ତ ସଭ୍ୟ ବସିପଡି ଉତ୍ତରଦେବେ । ସଭ୍ୟ କହୁଥିବା ବେଳେ ବାଧା ବା ଗୁପ ଦେବା ଅନୁଚିତ ।

(ଝ) ବୈଧାନିକ ପ୍ରଶ୍ନ ଉପରେ ନିଷ୍ପତ୍ତି

ବୈଧାନିକ ପ୍ରଶ୍ନ ଠିକ୍ ସମୟରେ ଉଠାଇବା ଦରକାର । ଏହିପରି ଏକ ପ୍ରସଙ୍ଗରେ ବାଚସ୍ପତି ମତଦେଲେ ଯେ, ସଭ୍ୟଙ୍କର ବକ୍ତୃତା ପରେ ଆଉ ଜଣେ ସଭ୍ୟ କହିସାରିଲେଣି । ଏତେ-ପ୍ରଶ୍ନ ବେଳେ ବୈଧାନିକ ପ୍ରଶ୍ନ ଉଠାଇବା ଅପ୍ରାସଙ୍ଗିକ । ଏଥିରେ ଉକ୍ତ ସଭ୍ୟ ଆପତ୍ତିକରିବାରୁ ସେ କହିଲେ ଯେ ବୈଧାନିକ ପ୍ରଶ୍ନ ଯେକୌଣସି ସମୟରେ ଉଠାଯାଇପାରେ । ମାତ୍ର ଯେତେବେଳେ ଉକ୍ତ ବିଷୟରେ ଆଲୋଚନା ଶେଷ ହେଲାଣି ସେତେବେଳେ ପୁଣି ସେହି କଥା ଉଠିଲେ ଗୃହରେ ଶୃଂଖଳା ରହିବ ନାହିଁ । ଆଉ କେତେକ ସଭ୍ୟ ଏହା ଉପରେ ଆପତ୍ତି କରିବାରେ ବାଚସ୍ପତି ସ୍ପଷ୍ଟ କରିଦେଲେ ଯେ କେ ସମୟରେ ବୈଧାନିକ ପ୍ରଶ୍ନ ଉଠାଯିବ, ତାହା ପୂର୍ବରୁ କୁହାଯାଇଛି ଏବଂ ବାଚସ୍ପତିଙ୍କ ନିଷ୍ପତ୍ତି ଉପରେ ଆପତ୍ତି ଆସିବା ଅନୁଚିତ । ଯେତେବେଳେ ଏପରି ଅସୁବିଧାହୁଏ, " ମୁଁ କଠୋର ହେବାକୁ ବାଧ୍ୟହୁଏ । ଭୁଲକରିବା ମଣିଷ ପକ୍ଷେ ସ୍ୱାଭାବିକ । ମୁଁ କେତେବେଳେ କିମିତି ଟିକିଏ ରୁକ୍ଷହୋଇପଡେ, କାରଣ ଗୃହର କାର୍ଯ୍ୟ ଅଯଥା ବାଧାପ୍ରାପ୍ତ ହେବାର ଆଶଙ୍କା ହୁଏ । ମୋର ଆଶା, ଆପଣମାନେ ଏଥିରେ ମନଉଣା କରିବେ ନାହିଁ । ପୂର୍ବରୁ କୁହାଯାଇଥିବା ବା ଆଲୋଚନା କରିଥିବା, ଯେ କୌଣସି ବିଷୟରେ ବୈଧାନିକ ପ୍ରଶ୍ନ ଉଠିପାରେ । "ମାତ୍ର ଯଥାସମୟରେ ତାହା କରାଯିବା ବାଞ୍ଛନୀୟ । ତେଣୁ ବାଚସ୍ପତି ନୀଳକଣ୍ଠ ଗୃହର ଶୃଂଖଳା ଦୃଷ୍ଟିରୁ କଠୋର କର୍କଶ ଭାଷାରେ ଜଣାଇଥିଲେ " ମାନ୍ୟବର ସଭ୍ୟ ଜାଣନ୍ତି ଯେ ଗୃହରେ ଯେତେବେଳେ ନିର୍ଦ୍ଦିଷ୍ଟ ପ୍ରସଙ୍ଗଟି ଆସେ ସେତେବେଳେ କେବଳ ବୈଧାନିକ ପ୍ରଶ୍ନଉଠାଇବା ବିଧେୟ । ଅତୀତର ପ୍ରସଙ୍ଗ ଉପରେ ବୈଧାନିକ ପ୍ରଶ୍ନ ଉଠିବନାହିଁ । ମୁଁ ପୂର୍ବରୁ ଏହି ମର୍ମରେ ନିଷ୍ପତ୍ତି ଦେଇଥିଲି ।"

(ଞ) ସ୍ୱାଧୀକାର ବିଷୟକ ନିଷ୍ପତ୍ତି

ବାଚସ୍ପତିଙ୍କ ନିଷ୍ପତ୍ତି ଉପରେ ସ୍ୱାଧୀକାର ପ୍ରଶ୍ନ ଉଠିପାରିବ ନାହିଁ । ଜଣେ ସଭ୍ୟ ଏକ ସ୍ୱାଧୀକାର ପ୍ରଶ୍ନ ଉଠାଇ ପୂର୍ବରୁ ବାଚସ୍ପତି ଦେଇଥିବା ନିଷ୍ପତ୍ତି ଉପରେ ଆଲୋଚନା କରିବାକୁ ଗ୍ରହିଁଥିଲେ । ମାତ୍ର ବାଚସ୍ପତି ଏହା ଗ୍ରହଣନକରି ଜଣାଇଥିଲେ ଯେ ସଭ୍ୟଙ୍କର ଏହା ସ୍ୱାଧୀକାର ପ୍ରଶ୍ନ ନୁହେଁ । ବାଚସ୍ପତିଙ୍କ ନିଷ୍ପତ୍ତିକୁ ସମାଲୋଚନା କରିବାକୁ ସେ ଗ୍ରହୁଁଛନ୍ତି । ମୁଁ ଏଥିରେ ସମ୍ମତି ଦେଉନାହିଁ ।

(ଟ) ବାଚସ୍ପତି ସଂପର୍କୀୟ ନିଷ୍ପତ୍ତି

ଉପବାଚସ୍ପତିଙ୍କ ନିର୍ବାଚନରେ ବାଚସ୍ପତି ଭୋଟ ଦେଇପାରିବେ କି ? ଏହି ପ୍ରଶ୍ନ ଉପରେ ଜଣେ ସଭ୍ୟ ବାଚସ୍ପତିଙ୍କ ନିଷ୍ପତ୍ତି ଚାହିଁଥିଲେ । ନୀଳକଣ୍ଠ ଏହି ପ୍ରସଙ୍ଗରେ କହିଥିଲେ, "ମୁଁ ଏହି ବିଧାନସଭାର ବାଚସ୍ପତି ଗତକାଲି ଯେଉଁ ଅବସ୍ଥାଥିଲ, ଆଜି ତାହା ନାହିଁ । ସମ୍ବିଧାନର ଧାରା 178 ଅନୁସାରେ ମୁଁ ହିଁ ବାଚସ୍ପତି । ଯଦି କୌଣସି ବିଷୟରେ ଭୋଟ ନିଆଯାଇ ଉଭୟ ପାର୍ଶ୍ୱରେ ସମାନ ସଂଖ୍ୟକ ଭୋଟ ମିଳିଥାଏ, ମୁଁ ମୋର ଭୋଟାଧିକାର ପ୍ରୟୋଗ କରିପାରିବି ।" ସେ ପୁଣି କହିଲେ "ଅନ୍ୟଦିନ ଯେଉଁ ବ୍ୟକ୍ତି କାମଚଳା ବାଚସ୍ପତି ହୋଇଥିଲେ ତାଙ୍କର ସବୁ କ୍ଷମତା ନଥିଲ । ମୋ କାମ ଆଜିଠାରୁ ଆରମ୍ଭ ହେଲା । ମୁଁ ସଂବିଧାନର 178 ଧାରା ଅନୁସାରେ ଏହି ଆସନ ଅଧିକାର କଲି । ଯଦି ଜଣେ ଉପବାଚସ୍ପତି ଥାନ୍ତେ, ସେ ବାଚସ୍ପତିଙ୍କ ନିର୍ବାଚନ ପରିଚାଳନା କରିଥାନ୍ତେ । ଯଦି ତାଙ୍କ ଆସନ ଶୂନ୍ୟ, ବାଚସ୍ପତି ତାଙ୍କ ନିର୍ବାଚନ ପରିଚାଳନା କରି-ପାରିବେ । ଯଦି ବାଚସ୍ପତି ନ ଥିବେ, ରାଜ୍ୟପାଳ ଆଉ କାହାକୁ ଏଥିରେ ନିଯୁକ୍ତି କରିବେ" ।

(ଠ) ପ୍ରବର ସମିତି ସଂପର୍କରେ ନିଷ୍ପତ୍ତି

ଜଣେ ସଭ୍ୟ ତାଙ୍କ ଭାଷଣ ମଧ୍ୟରେ ପ୍ରବର ସମିତିରେ ଘଟିଥିବା ବିଷୟରେ ସୂଚନା-ଦେବାକୁ ବାହାରିବାରୁ ବାଚସ୍ପତି ନିଷ୍ପତ୍ତି ଦେଲେ ଯେ ଜଣେ ସଭ୍ୟ ଗୃହରେ ଭାଷଣ ଦେଲାବେଳେ ପ୍ରବର ସମିତିରେ ଆଲୋଚିତ ତଥ୍ୟ ସଂପର୍କରେ ସତର୍କ ହେବେ ।

(ଡ଼) ଅଶାଳୀନ ଓ ଅଭଦ୍ରୋଚିତ ଭାଷା ଉପରେ ନିଷ୍ପତ୍ତି

ଜଣେ ସଭ୍ୟ ଥରେ ଆଉ ଜଣେ ସଭ୍ୟଙ୍କୁ ବିରୋଧୀଦଳ ନେତାଙ୍କର ବୋଲକରା Henchman ବୋଲି ଆକ୍ଷେପ କରିଥିଲେ । ଏଥିରେ ଆପତ୍ତି ହେବାରୁ ଉକ୍ତ ସଭ୍ୟ ବୋଲକରା ବଦଳରେ ଅନୁଚର ବ୍ୟବହାର କରିବାକୁ ବାଚସ୍ପତିଙ୍କ ଅନୁମତି ଚାହିଁଥିଲେ । ଏ ପ୍ରସଙ୍ଗରେ ବାଚସ୍ପତି ମତଦେଇଥିଲେ ଯେ, "ବୋଲକରା" ବଦଳରେ "ଅନୁଚର" ଶବ୍ଦ ବ୍ୟବହାର କରାଯାଇ-ପାରେ । ଆଉଜଣେ ସଭ୍ୟ ଥରେ ରାଜନୀତି କୁଟିଳ ଓ ପ୍ରତ୍ୟେକ ରାଜନୀତିଆ ବଦ୍‌ମାସ ( Scoundrel ) ବୋଲି କହିବାରୁ ଜଣେ ସଭ୍ୟ ଜାଣିବାକୁ ଚାହିଁଥିଲେ ଏହି ଶବ୍ଦଟି ଅଶାଳୀନ କି ନୁହେଁ । ଏହାର ସ୍ପଷ୍ଟୀକରଣ ଦେଇ ବାଚସ୍ପତି ଖୁବ୍ ମଜାରେ କହିଥିଲେ "ଯଦି ମାନ୍ୟବର ସଭ୍ୟ ସମସ୍ତଙ୍କୁ ଭର୍ତ୍ସନା କରିଛନ୍ତି, ତେବେ ଆମେ ସମସ୍ତେ ସେଥିରୁ କାଣିଚାଏ ଲେଖାଁ ଭାଗନେବା । ଯଦି ସେ ସାଧାରଣ ଅର୍ଥରେ ବଦମାସ ( Scoundrel ) ଶବ୍ଦଟିକୁ ବ୍ୟବହାର କରିଥାନ୍ତି, ତେବେ ଏହା ଅଶାଳୀନ ନୁହେଁ (If the Hon'ble Member has insulted all, then let it be shared by all, each taking a bit of the insult. If he has used the word "Scoundrel" in a general sense, it is not unparliamentary) (Debates 31-5-1957, Vol. I, No. 5, Pt. II, Page 40).

ଆଉ ଗୋଟିଏ ଶବ୍ଦ "ତଥାକଥିତ" (So-called) ଜଣେ ସଭ୍ୟ ବ୍ୟବହାର କରୁବାରେ ଆଉ ଜଣେ ସଭ୍ୟ ଆପତ୍ତି ଉଠାଇଥିଲେ, ଯାହା ଉପରେ ଉପବାଚସ୍ପତି ନିଷ୍ପତ୍ତି ଦେଇଥିଲେ ଯେ, ସମସ୍ତେ ସଭ୍ୟ ହୋଇଥିବାରୁ କେତେଜଣଙ୍କୁ ତଥାକଥିତ କହିବା ଅନୁଚିତ ଏବଂ ଏହି ଶବ୍ଦଟି ବିବରଣୀରୁ ବାଦ୍ କରାଯିବ । ଜଣେ ସଭ୍ୟ "ମାଇପ" (ସ୍ତ୍ରୀ) ଓ ରାଣ୍ଡି (ବିଧବା) ଶବ୍ଦ ବ୍ୟବହାର କରିବାରୁ ଆଉ ଜଣେ ସଭ୍ୟ ଏଥିରେ ଆପତ୍ତି ଉଠାଇଥିଲେ ଯାହା ଉପରେ ବାଚସ୍ପତି ନିଷ୍ପତ୍ତି ଦେଇଥିଲେ ଯେ ଏଇ ଦୁଇଟି ଶବ୍ଦ ଭୁଲ କିମ୍ବା ଅଶ୍ଳୀଳ ନୁହେଁ । ମାତ୍ର ବାଚସ୍ପତି ନୀଳକଣ୍ଠ ସରକାରଙ୍କ ସମ୍ପର୍କରେ ଜଣେ ସଭ୍ୟ "ଗୁଣ୍ଡା" ଶବ୍ଦ ବ୍ୟବହାର କରିଥିବାରୁ ଏହା ଅଭଦ୍ରୋଚିତ ଶବ୍ଦ ବୋଲି ମତ ଦେଇଥିଲେ । ତେଣୁ ସେ ବିବରଣୀରୁ ଏହି ଶବ୍ଦଟି କାଟି ଦିଆଯିବା ପାଇଁ ନିଷ୍ପତ୍ତି ଜଣାଇଥିଲେ ।

(ଢ଼) କେନ୍ଦ୍ରୀୟ ଆଇନ ଉପରେ ନିଷ୍ପତ୍ତି

ଜଣେ ସଭ୍ୟ ତାଙ୍କ ଓଡିଶା ମାତୃମଙ୍ଗଳ (ସଂଶୋଧନ) ବିଲ୍ ଉପରେ କହିଲାବେଳେ କେନ୍ଦ୍ରୀୟ ଆଇନର କେତେକ ବ୍ୟବସ୍ଥା ସମ୍ପର୍କରେ ଉଲ୍ଲେଖ କରିଥିଲେ । ବାଚସ୍ପତି ମତ ଦେଲେ ଯେ କେନ୍ଦ୍ରୀୟ ଆଇନ ସଂପର୍କରେ ସଂକ୍ଷିପ୍ତ ସୂଚନା ଦିଆଯାଇପାରେ, ମାତ୍ର ସାଧାରଣ ଭାବରେ ଏହି ବିଷୟରେ କହିବା ଅପ୍ରାସଂଗିକ ।

(ଣ) ପ୍ରଶ୍ନଗୁଡ଼ିକ ଉପରେ ନିଷ୍ପତ୍ତି

ବ୍ୟକ୍ତିଗତ ଭାବରେ କାହାକୁ ଆକ୍ଷେପ କରିବା ସଂସଦୀୟ ଆଚରଣ ବିରୋଧୀ । କୌଣସି ସଭ୍ୟ ଏପରି ବ୍ୟକ୍ତିଗତ ଆକ୍ଷେପ କଲେ ବାଚସ୍ପତି ତାର ପ୍ରତିରୋଧ କରିବା ଉଚିତ । ଯଦିଓ ପରସ୍ପରର ସମାଲୋଚନା ସାଂସଦମାନଙ୍କ ପକ୍ଷେ ସ୍ୱାଭାବିକ, ଏହା ଖୁବ୍ ସୀମା ମଧ୍ୟରେ ହେବା ଉଚିତ । ସୀମା ଅତିକ୍ରମ କରିବା ଅର୍ଥ ବ୍ୟକ୍ତିଗତ ଆକ୍ଷେପ ତଥା ଅପମାନ ଏବଂ ଏହା ସଂସଦୀୟ ସୌଜନ୍ୟର ପରିପନ୍ଥୀ । ବାଚସ୍ପତିଙ୍କର କୌଣସି ତ୍ରୁଟି ତଥା ଖିଲାପ ସମ୍ପର୍କରେ କହିବାକୁ ଚାହିଁଲେ ଜଣେ ସଭ୍ୟ ତାଙ୍କ କାର୍ଯ୍ୟାଳୟରେ କହିବା ଉଚିତ ଏବଂ ଗୃହ ମଧ୍ୟରେ ତାଙ୍କୁ ସମାଲୋଚନା କରିବା ନୀତିବିରୁଦ୍ଧ ।

ଏହିସବୁ ବାଚସ୍ପତୀୟ କାର୍ଯ୍ୟଗୁଡ଼ିକ ବ୍ୟତୀତ ଆଉ ଦୁଇଟି କୃତିତ୍ୱ ନୀଳକଣ୍ଠଙ୍କୁ ଚିରସ୍ମରଣୀୟ କରି ରଖିବ । ତାହାହେଲା (କ) ବିଧାନସଭାର ସ୍ୱାତନ୍ତ୍ର୍ୟ ଓ (ଖ) ବିଧାନସଭା ଭାଙ୍ଗିଗଲେ ମଧ୍ୟ ବାଚସ୍ପତି ରହିବାର ପରଂପରା । ତାହା ନିମ୍ନରେ ବିସ୍ତୃତ ଭାବରେ ଆଲୋଚିତ ହେଉଛି ।

## ଓଡ଼ିଶା ବିଧାନ ସଭାର ସ୍ୱାତନ୍ତ୍ର୍ୟ

ପଣ୍ଡିତ ନୀଳକଣ୍ଠ ଯେତେବେଳେ (୧୯୫୭) ଓଡ଼ିଶା ବିଧାନସଭାର ବାଚସ୍ପତି ହେଲେ, ସେତେବେଳେ ବିଧାନସଭା ସଚିବାଳୟ ତଥା ଅର୍ଥ ବିଭାଗର ଯୁଗ୍ମ ନିୟନ୍ତ୍ରଣାଧୀନ ଥିଲା । ବାଚସ୍ପତି କେବଳ ଜଣେ ବିଭାଗୀୟ ମୁଖ୍ୟ ଭାବରେ ପରିଗଣିତ ହେଉଥିଲେ । ମାତ୍ର

ନୀଳକଣ୍ଠ ଆଜନ୍ମ ବିପ୍ଳବୀ ଓ ସ୍ୱାଧୀନଚେତା ହୋଇଥିବାରୁ ସେ ବାଚସ୍ପତି ଭବରେ ନିର୍ବାଚିତ ହେବାମାତ୍ରେ ଏହି ସ୍ଥିତିକୁ ଗ୍ରହଣ କରିପାରି ନ ଥିଲେ । ବିଧାନସଭାର ଅଧ୍ୟକ୍ଷ ଓଡ଼ିଶା ସରକାରଙ୍କ ଏହି ଦୁଇଟି ବିଭାଗର ଅଧୀନସ୍ଥ ହେବେ, ଏହା ତାଙ୍କୁ ଖୁବ୍ ବାଧିଲା । ତେଣୁ ବିଧାନସଭାକୁ ସରକାରୀ ନିୟନ୍ତ୍ରଣରୁ ମୁକ୍ତ କରିବା ପାଇଁ ତାଙ୍କର ଉଦ୍ୟମ ପ୍ରଥମରୁ ଆରମ୍ଭ ହୋଇଥିଲା ଏବଂ ତାଙ୍କୁ ଏଥିପାଇଁ କଠୋର ସଂଗ୍ରାମ କରିବାକୁ ପଡ଼ିଥିଲା ।

ଆମ ସଂବିଧାନରେ 187 (1) ଧାରା ଅନୁସାରେ ଏହି ସ୍ୱାତନ୍ତ୍ର୍ୟ ସ୍ୱୀକୃତ ହୋଇଛି ଏବଂ ଲୋକ ସଭା ଓ ରାଜ୍ୟ ସଭା ମଧ୍ୟ ସ୍ୱତନ୍ତ୍ର ଭାବରେ ପରିଚାଳିତ ହେଉଥିଲେ । କେନ୍ଦ୍ର ପରି ରାଜ୍ୟସ୍ତରରେ ବିଧାନସଭାମାନେ ସମାନ ମର୍ଯ୍ୟାଦା ଓ ସ୍ୱାତନ୍ତ୍ର୍ୟ ଲାଭ କରନ୍ତୁ, ଏହା ଥିଲା ସଂବିଧାନ ପ୍ରଣେତା ଡକ୍ଟର ଆମ୍ବେଦକରଙ୍କର ଇଚ୍ଛା । ମାତ୍ର ରାଜ୍ୟ ସରକାରମାନେ ବିଧାନସଭାକୁ ଏହି ସ୍ୱାଧୀନତା ଦେବାକୁ କୁଣ୍ଠିତ ହୋଇଥିଲେ ଏବଂ ବାଚସ୍ପତିଙ୍କର ଏହି ଦାବିର ବିରୋଧ କରିଥିଲେ । ନୂତନ ବିଧାନସଭା ଭବନର ଉଦ୍‌ଘାଟନ ଉତ୍ସବ ଉପଲକ୍ଷେ "ପ୍ରଜାତନ୍ତ୍ର" ପ୍ରତିନିଧିଙ୍କୁ ଏକ ବାର୍ତ୍ତା ପଠାଇ ନୀଳକଣ୍ଠ ଲେଖିଥିଲେ (ତା 16-2-1961), "ଆଶ୍ଚର୍ଯ୍ୟର କଥା ଯେ, ଏ ପର୍ଯ୍ୟନ୍ତ ଏହା ଏକ ସ୍ୱତନ୍ତ୍ର ବିଭାଗ ଭାବରେ ମଧ୍ୟ ନ ଥିଲା । ଘରୋଇ ବିଭାଗ ଅଧୀନରେ ଏକ ଉପବିଭାଗ ବା ସେହିପରି ଏକ ଅବସ୍ଥାରେ ରହିଥିଲା । ଅଥଚ ଭାରତର ଅନ୍ୟ କେଉଁଠି ଏପରି ଅବସ୍ଥା ନ ଥିଲା । କିନ୍ତୁ ବର୍ତ୍ତମାନ ନୂତନ ଗୃହକୁ ଆସୁଥିବା ଆମ ବିଧାନସଭାକୁ ଉପଯୁକ୍ତ ମର୍ଯ୍ୟାଦା ଓ ସ୍ଥାନ ଦେବାପାଇଁ ମୋତେ ପ୍ରାୟ ଦୁଇବର୍ଷ କାଳ ଉଦ୍ୟମ କରିବାକୁ ପଡ଼ିଛି । ମୋର ଆଶା, ଦେଶବାସୀ ଏହା ହୃଦୟଙ୍ଗମ କରିବେ ।" (ନୀ. ସ୍ୱା. 1982 ପୃ. 131) ।

ନୀଳକଂଠ ବାଚସ୍ପତି ଆସନରେ ଆସୀନ ହେବା ଦିନଠାରୁ କାୟମନୋବାକ୍ୟରେ ବିଧାନସଭାର ସ୍ୱାଧୀନତା ଓ ସମ୍ମାନ ବୃଦ୍ଧିପାଇଁ କାର୍ଯ୍ୟ କରିଥିଲେ । କଥାରେ ଓ ଲେଖାରେ ସଭ୍ୟର ସ୍ୱାତନ୍ତ୍ର୍ୟ ପାଇଁ ଦାବି କରିବା ସଂଗେ ସଂଗେ ରାଜ୍ୟ ସରକାରଙ୍କୁ ବାରମ୍ବାର ପତ୍ର ପ୍ରେରଣ କରିବାରେ ଲାଗିଥିଲେ । ମାତ୍ର ସରକାର ଏଥିପ୍ରତି କର୍ଣ୍ଣପାତ ନ କରି ସଂପୂର୍ଣ୍ଣ ନୀରବ ଓ ଉଦାସୀନ ରହିଥିଲେ । ଶେଷରେ ମହତାବ ସରକାର ତତ୍‌କାଳୀନ ଯୁବନେତା ଶ୍ରୀ ବିଜୟାନନ୍ଦ ପଟ୍ଟନାୟକ ଓ ଆଇନ୍ ମନ୍ତ୍ରୀ ଶ୍ରୀ ଦୀନବଂଧୁ ସାହୁଙ୍କୁ ପଠାଇ ଏହି ଦିଗରେ ଅଗ୍ରଗତି କରିବାରୁ ଓ ସ୍ୱାତନ୍ତ୍ର୍ୟ ଦାବି କରିବାରୁ ନିବୃତ୍ତ ହେବାକୁ ନୀଳକଂଠଙ୍କ ଉପରେ ଚାପ ପକାଇବାକୁ ଚେଷ୍ଟା କରିଥିଲେ । ଦୀର୍ଘ ଏକଘଣ୍ଟା ଧରି ଆଲୋଚନା ହେବା ପରେ ନୀଳକଂଠ ତାଙ୍କ ଦାବିରେ ଅଟଳ ରହିବାରୁ ଶ୍ରୀ ପଟ୍ଟନାୟକ ସମ୍ଭବତଃ ନିରାଶ ହୋଇ ବୃଦ୍ଧାବସ୍ଥାରେ ନୀଳକଂଠ ଏପରି କଠିନ ମନୋବୃତ୍ତି ଧରିବା ଅନୁଚିତ ବୋଲି କହିଥିଲେ । ମାତ୍ର ନୀଳକଂଠ ତାଙ୍କ କଥାକୁ ଏକ ଆହ୍ୱାନଭାବରେ ଗ୍ରହଣ କରି

ନିଜ ସ୍ୱପ୍ନକୁ ସାକାର କରିବାରେ ଲାଗି ଯାଇଥିଲେ । ପରେ ବିଧାନସଭା ଭିତରେ ଓ ବାହାରେ ବିଧାନସଭାର ସ୍ୱାତନ୍ତ୍ର୍ୟପାଇଁ ତାଙ୍କର ସଂଗ୍ରାମ ଚାଲୁ ରହିଲା (ମିଶ୍ର 1994 ପୃ. 150) ।

ଏହି ପ୍ରସଂଗରେ ତତ୍‌କାଳୀନ ବିଧାନସଭା ସଭ୍ୟ ଶ୍ରୀ ହରିହର ବାହିନୀପତି ସ୍ୱୀୟ ଅନୁଭୂତିରୁ ଯାହା ଲେଖିଛନ୍ତି, ତାହା ଏଠାରେ ଖୁବ୍ ସ୍ମରଣୀୟ ( ନୀ. ସ୍ୱା. 1984 ପୃ. 109—111) "ସେ ଦିନ ଥାଏ 1957 ଡିସେମ୍ବର । ଦ୍ୱିତୀୟ ସାଧାରଣ ନିର୍ବାଚନରେ ପଣ୍ଡିତ ନୀଳକଂଠ ଓଡ଼ିଶା ବିଧାନସଭାରୁ ଅପ୍ରତିଦ୍ୱନ୍ଦୀ ଭାବରେ ନିର୍ବାଚିତ ହୋଇ ବାଚସ୍ପତି ଆସନରେ ବସିଥାନ୍ତି । ପ୍ରଶ୍ନୋତ୍ତର ପରେ ପରେ ମୁଁ ଏକ ସ୍ୱାଧୀକାର ପ୍ରଶ୍ନ ଉତ୍‌ଥାପନ କଲି ଯେ, ସଂବିଧାନର 187 ଅନୁଛେଦ ଅନୁଯାୟୀ ବିଧାନସଭାର ସଚିବାଳୟକୁ ସରକାରୀ ନିୟନ୍ତ୍ରଣରୁ ମୁକ୍ତ କରାଯାଇ ନ ଥିବାରୁ, ଗୃହର ତଥା ସଭ୍ୟମାନଙ୍କର ସ୍ୱାଧୀକାର କ୍ଷୁର୍ଣ୍ଣ ହେଉଛି । ଅଧ୍ୟକ୍ଷ ପଣ୍ଡିତ ଦାସ ଏ ଦିଗରେ ବିଚାର କରାଯାଉଛି ଏବଂ ଯଥାଶୀଘ୍ର ଏ ଦିଗରେ ପଦକ୍ଷେପ ନେବେ ବୋଲି ଘୋଷଣା କଲେ । ପରବର୍ତ୍ତୀ ଦିବସରେ ଦିନେ ପୂର୍ବାହ୍ନ ବୈଠକରେ ସ୍ୱାଧୀକାର ପ୍ରଶ୍ନର ନିଷ୍ପତ୍ତି ତୁରନ୍ତ ହେବା ପାରଂପରିକ ସଂସଦୀୟ ରୀତି ଥିବାରୁ ମୁଁ ସେହି ପ୍ରଶ୍ନ ପୁନର୍ବାର ଉତ୍‌ଥାପନ କଲି ଏବଂ ଅପରାହ୍ନରେ ଅଧ୍ୟକ୍ଷ ଏ ସଂପର୍କରେ ଚୂଡ଼ାନ୍ତ ନିଷ୍ପତ୍ତି ଦେବାକୁ ଯାଇ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ, ବିରୋଧୀଦଳର ନେତା ରାଜେନ୍ଦ୍ର ନାରାୟଣ ସିଂହଦେଓ, ଦୀନବଂଧୁ ସାହୁ, ମନ୍ତ୍ରୀ ସର୍ବଶ୍ରୀ ରବିନ୍ଦ୍ର ମୋହନ ଦାସ, ହରିହର ଦାସ (ଆସ୍କା) ଓ ବିଜୟ କୁମାର ପାଣିଙ୍କୁ ନେଇ ଏକ କମିଟି ଗଠନ କଲେ । ଏହି କମିଟିର ସଭାପତି ରହିଲେ ସ୍ୱୟଂ ବାଚସ୍ପତି, ଯାହାକି ବିଧାନସଭା କମିଟି ଗଠନର ପାରଂପାରିକ ରୀତି ।"

ପଣ୍ଡିତ ଦାସଙ୍କ ପ୍ରରୋଚନାରେ ଶ୍ରୀ ବହିନୀପତି ଏପରି ପ୍ରଶ୍ନ ବିଧାନସଭାରେ ଉଠାଇଛନ୍ତି ବୋଲି ଅନେକ ଅନୁମାନ କଲେ ଓ କେତେକ ବଂଧୁ ତାଙ୍କୁ ସିଧାସଳଖ ଏକଥା ପଚାରିଲେ । କିନ୍ତୁ ଶ୍ରୀ ବାହିନୀପତି ଏ ସଂପର୍କରେ ଜଣାଇଛନ୍ତି, " ମୁଁ ସ୍ପଷ୍ଟ କରିଦେବାକୁ ଚାହେଁ ଯେ, ବିଧାନସଭାରେ ଏପରି ପ୍ରଶ୍ନ ଉତଥାପନ ସହିତ ମୋର ପଣ୍ଡିତଜୀଂକ ସହ ଆଗରୁ କୌଣସି କଥାବାର୍ତ୍ତା ହୋଇନାହିଁ । ଭାରତୀୟ ସଂବିଧାନର ସଂପୃକ୍ତ ଅନୁଛେଦ ଓ ବ୍ରିଟିଶ ଶାସନ ଅମଳରେ ତତ୍‌କାଳୀନ ଭାରତୀୟ ଗଣତନ୍ତ୍ରର ଜନକ କେନ୍ଦ୍ର ବ୍ୟବସ୍ଥାସଭାର ସଭାପତି ବିଠଲଭାଇ ପଟେଲଙ୍କର ବ୍ରିଟିଶ ଶାସନ ସହିତ ବାଦାନୁବାଦ ପରେ, 1928-29ରେ ବ୍ରିଟିଶ ଶାସନ ଶ୍ରୀଯୁକ୍ତ ପଟେଲଙ୍କ ପାଖରେ ହାରମାନିବାର ବିବରଣୀ ମୋତେ ଏହି ପ୍ରଶ୍ନ ଉତ୍‌ଥାପନ କରିବାକୁ ପ୍ରେରଣା ଦେଇଥିଲା," ସୁତରାଂ ନୀଳକଂଠ ସାହସର ସହିତ ନିଜେ ସଂଗ୍ରାମ କରୁଥିଲାବେଳେ ଅନ୍ୟ କାହାକୁ ଶିଖାଇବା ବା ବତାଇ ଏହା କରିବାକୁ ଚାହିଁ ନ ଥିଲେ ।

ବିଧାନସଭାର ସ୍ୱାତନ୍ତ୍ର୍ୟ ସଂପର୍କରେ ଗଠିତ ସମିତିଟି 1958 ମସିହା ଜାନୁଆରୀ 2, ମାର୍ଚ୍ଚ 11 ଓ 18, ଏପ୍ରିଲ 2, 9 ଓ 10 ତାରିଖରେ ମୋଟ 6ଟି ବୈଠକରେ ବସି ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚନା କରିଥିଲେ ଏବଂ ନିମ୍ନଲିଖିତ 9ଟି ସୁପାରିଶ ପ୍ରଦାନ କରିଥିଲେ :

(1) ସରକାରଙ୍କ କାର୍ଯ୍ୟନିର୍ବାହୀ (Executive) ଠାରୁ ସ୍ୱାଧୀନ ଏକ ସ୍ୱତନ୍ତ୍ର ସଚିବାଳୟ ବାଚସ୍ପତିଙ୍କ ପ୍ରଶାସସନିକ ନିୟନ୍ତ୍ରଣରେ ଗଠିତ ହେବ ଏବଂ ଏହା ବିଧାନସଭାର ସମସ୍ତ ବିଷୟ ପାଇଁ ଦାୟୀ ରହିବ ।

(2) ବାଚସ୍ପତି ସଭାର ଆବଶ୍ୟକତାକୁ ଚାହିଁ କର୍ମଚାରୀଙ୍କ ସଂଖ୍ୟା ନିର୍ଦ୍ଧାରଣ କରିବେ ଏବଂ ଏଥିରେ ଅର୍ଥ ବିଭାଗର ସହମତି ରହିବା ଉଚିତ ।

(3) ବାଚସ୍ପତିଙ୍କ କର୍ତ୍ତୃତ୍ୱରେ କର୍ମଚାରୀମାନଙ୍କ ନଯୁକ୍ତି କରାଯିବ ।

(4) କର୍ମଚାରୀମାନଙ୍କ ନିଯୁକ୍ତି ଓ ସେବାସର୍ତ୍ତ ଭାରତୀୟ ସମ୍ବିଧାନର ଧାରା 187 (2) ଓ (3) ଅନୁସାରେ ପ୍ରସ୍ତୁତ ନିୟମାବଳୀ ତଥା ଆଇନ ଦ୍ୱାରା ନିୟନ୍ତ୍ରିତ ହେବ ।

(5) ଅର୍ଥ ବିଭାଗର ସହମତି ନିଆଯାଇ ବିଧାନସଭାର ସଚିବାଳୟ ଦ୍ୱାରା ବଜେଟ ପ୍ରସ୍ତୁତ ହେବ ।

(6) ସଚିବ ସିଧା ଅର୍ଥ ବିଭାଗକୁ ପ୍ରସ୍ତାବ ପଠାଇବେ ଏବଂ ଅର୍ଥ ବିଭାଗ ଆନୁଷ୍ଠାନିକ ମଞ୍ଜୁରୀ ପ୍ରଦାନ କରିବେ ଏବଂ ମତପାର୍ଥକ୍ୟ ଘଟିଲେ ବାଚସ୍ପତିଙ୍କ ଦ୍ୱାରା ଏହା ସମାହିତ ହେବ ।

(7) ବାଚସ୍ପତି ବିଧାନସଭାର ବଜେଟ ଅନୁଦାନ ମଧ୍ୟରେ ବ୍ୟୟମଞ୍ଜୁରୀ କ୍ଷମତା ପାଇବେ ଏବଂ ଆବଶ୍ୟକ ପଡ଼ିଲେ ତାଙ୍କ ମନୋନିତ ଗୃହସମିତି ସଭ୍ୟମାନଙ୍କ ପରାମର୍ଶ କ୍ରମେ ସେଥିରେ ପୁନଃ ବିନିଯୋଗ କରିପାରିବେ ।

(8) ବିଧାନ ସଭାର ସଚିବ ଅନ୍ୟ ବିଭାଗର ପଦପ୍ରଯୁକ୍ତି ସଚିବଙ୍କ ପରି କାର୍ଯ୍ୟ କରିବେ ଏବଂ ଏହାର କର୍ମଚାରୀମାନଙ୍କ ସଂପର୍କରେ ଆଦେଶ, ବିଜ୍ଞପ୍ତି ଆଦି ରାଜ୍ୟପାଳଙ୍କ ତରଫରୁ ଯେତେବେଳେ ଚାହିଁବେ ପ୍ରକାଶ କରିବେ । ଯେତେଦୂର ଆର୍ଥିକ କ୍ଷମତା ସମ୍ପୃକ୍ତ, ସଚିବ ବାଚସ୍ପତିଙ୍କ ଅଧୀନସ୍ଥ ବିଭାଗର ମୁଖ୍ୟଙ୍କ ପରି ସବୁକ୍ଷମତା ଉପଭୋଗ କରିବେ । ବାଚସ୍ପତି ଯେତେ ଚାହିଁବେ ସେତେ କ୍ଷମତା ଓ କାର୍ଯ୍ୟ ସଚିବଙ୍କୁ ଦେଇପାରିବେ । ବାଚସ୍ପତିଙ୍କ ନିର୍ଦ୍ଦେଶ ଓ ନିୟନ୍ତ୍ରଣ ଅନୁସାରେ ସଚିବ ବିଧାନସଭା ସଚିବାଳୟର ପ୍ରଶାସନ ଓ ପରିଚାଳନା କରିବେ । କୌଣସି ଆଇନ୍ ଓ ଅନୁଶାସନର ବ୍ୟାଖ୍ୟାରେ ମତ ପାର୍ଥକ୍ୟ ହେଲେ ବାଚସ୍ପତିଙ୍କ ନିଷ୍ପତ୍ତି ହିଁ ଚୂଡ଼ାନ୍ତ ହେବ ।

(୨) ଧାରା 194 (3) ସଂପର୍କରେ ସମିତି ମତଦେଲେ ଯେ କୌଣସି ବିଷୟରେ ଆଇନ ନ ହେବାଯାଏ ଏହି ଧାରା ବଳବତ୍ତର ରହିବ ଓ ଅଧିକ ଉଦାହରଣର ଆବଶ୍ୟକତା ନାହିଁ ।

ତା 16-4-1958 ରିଖରେ ସମିତି ତା'ର ରିପୋର୍ଟ ଦେଲାପରେ ମଧ୍ୟ ଏହାକୁ ଗହଣ କରିବାରେ ସରକାର ବହୁତ କାଳ ବିଳମ୍ବ କରିବାରେ ଲାଗିଲେ । ଏମିତିକି ବିଧାନସଭା ସଚିବାଳୟରେ କେତୋଟି ଜରୁରୀ ପଦ ପୂରଣ ହେବାରେ ଅହେତୁକ ବିଳମ୍ବ ହେଲା । ଓଡ଼ିଶା ହାଇକୋର୍ଟର ପୂର୍ବତନ ମୁଖ୍ୟ ବିଚାରପତି ଓ ତତ୍‌କାଳୀନ ସ୍ୱରାଷ୍ଟ୍ର ଓ ରାଜସ୍ୱ ବିଭାଗର ମନ୍ତ୍ରୀ ଏହି ପରିବର୍ତ୍ତନର ଘୋର ବିରୋଧୀ ହୋଇଥିଲେ । ନୀଳକଣ୍ଠ ବାରମ୍ବାର ତାଙ୍କୁ ବୁଝାଇ ସଂସଦୀୟ ଗଣତନ୍ତ୍ରରେ ବିଧାନସଭା ଓ ବାଚସ୍ପତିଙ୍କ ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତାର ଆବଶ୍ୟକତା ସଂପର୍କରେ ଆଲୋଚନା କରିଥିଲେ । ଶେଷରେ ସ୍ୱରାଷ୍ଟ୍ର ମନ୍ତ୍ରୀ ଭବରେ ସେ ବିଧାନସଭାକୁ ସ୍ୱାତନ୍ତ୍ର୍ୟ ଦେବାକୁ ସମ୍ମତ ହୋଇଥିଲେ ଏବଂ ରାଜ୍ୟ ସରକାର ନିମ୍ନୋକ୍ତ ଆଦେଶ ପ୍ରକାଶ କରି ନୀଳକଂଠଙ୍କ ସ୍ୱପ୍ନକୁ ସାର୍ଥକ କରିଥିଲେ । ଏହା 1958 ମସିହା ସେପ୍‌ଟମ୍ବର 26 ତାରିଖର କଥା ।

ଏହି ଆଦେଶ ପ୍ରକାଶ ହେବା ପୂର୍ବରୁ ଘଟିଥିବା କେତେକ ଘଟଣାର ସଂକ୍ଷିପ୍ତ ବିବରଣୀ ମଧ୍ୟ ଏଠାରେ ଉଲ୍ଲେଖଯୋଗ୍ୟ (ନୀ. ସ୍ୱା. ଦ୍ୱିତୀୟ ଖଣ୍ଡ, ପ. 1984, ପୃ. 228, 229), "ତା 25-8-1958 ରିଖରେ ଉକ୍ତ ରିପୋର୍ଟ ଆସେମ୍ବ୍ଲି ସଭାରେ ଉପସ୍ଥାପିତ ହେଲା ଓ ଏହି ରିପୋର୍ଟ ଅନୁଯାୟୀ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବା ପାଇଁ ଆସେମ୍ବ୍ଲି ଅଧିବେସନରେ ବାରମ୍ବାର ଦାବି ହେଲା । ବିଷୟଟି ଉପରେ କୌଣସ ନିଷ୍ପତ୍ତି ନିଆଯାଇ ନଥିବା ହେତୁ ବାଚସ୍ପତି ଥରକୁ ଥର ଆଲୋଚନାର ଦିନ ଗଡ଼ାଇଲେ । ଶେଷରେ ତା 26-9-1958 ରିଖରେ ବାଚସ୍ପତିଙ୍କର ଗୋଟିଏ ବିବୃତି ତାଙ୍କର ଅସୁସ୍ଥତାଜନିତ ଅନୁପସ୍ଥିତି ଯୋଗୁଁ ଉପବାଚସ୍ପତି ବିଧାନସଭାରେ ପାଠ କରିଥିଲେ । ଏ ବିବୃତିରେ ବାଚସ୍ପତି ସରକାରଙ୍କୁ ମୃଦୁ ଧମକ ଦେଇଥିଲେ ବୋଲି ପ୍ରକାଶ ପାଇଲା ଓ ବୁଝାଗଲା ବାଚସ୍ପତି ନୀଳକଣ୍ଠ ଏବର ବିଧାନସଭାକୁ ରଦ୍ଦ କରିଦେବା ବିଷୟ ଚିନ୍ତା କରୁଛନ୍ତି । ଏହିପରି ଏକ ଉତ୍ତେଜନାପୂର୍ଣ୍ଣ ବାତାବରଣ ଭିତରେ ସେହିଦିନ ମୁଖ୍ୟମନ୍ତ୍ରୀ ଡକ୍‌ଟର ମହତାବ ଘରୋଇ ବିଭାଗର ଏକ ଆଦେଶନାମା ଆଣି ପାଠ କଲେ" ଏହି ଆଦେଶନାମା ଅନୁଯାୟୀ ବିଧାନସଭା ରାଜ୍ୟ ସରକାରଙ୍କ ଅଧସ୍ତନ ନ ହୋଇ ଗୋଟିଏ ସ୍ୱତନ୍ତ୍ର ବିଭାଗର ମର୍ଯ୍ୟାଦା ଲାଭ କଲା । ବିଧାନସଭାର ବାଚସ୍ପତି ଓ ସଚିବ ଯଥାକ୍ରମେ ରାଜ୍ୟ ସରକାରଙ୍କ କ୍ୟାବିନେଟ ପାହିଆ ମନ୍ତ୍ରୀ ଓ ସଚିବଙ୍କ ମର୍ଯ୍ୟାଦା ଲାଭ କଲେ । ବିଧାନସଭା ରାଜ୍ୟ ସରକାରଙ୍କ ଅନ୍ୟାନ୍ୟ ବିଭାଗ ପରି ଅର୍ଥନୈତିକ କ୍ଷମତାରେ ମଧ୍ୟ ସ୍ୱାତନ୍ତ୍ର୍ୟ ପାଇଲା ଏବଂ ଏହାର ସମସ୍ତ କର୍ମଚାରୀ ସରକାରଙ୍କ କର୍ତ୍ତୃତ୍ୱରୁ ମୁକ୍ତ ହୋଇ ବାଚସ୍ପତିଙ୍କ ପ୍ରଶାସନିକ ନିୟନ୍ତ୍ରଣରେ ରହିଲେ ।

ଏହିପରି ଗଣତାନ୍ତ୍ରିକ ମୂଲ୍ୟବୋଧ ପାଇଁ ନୀଳକଣ୍ଠଙ୍କୁ କଠୋର ସଂଗ୍ରାମ କରିବାକୁ ପଡ଼ିଥିଲା ଏବଂ ନିଜର ଦୃଢ଼ ମନୋବଳ, କର୍ମନିଷ୍ଠା, ବ୍ୟକ୍ତିତ୍ୱ, ପାଣ୍ଡିତ୍ୟ ଓ ବାଗ୍ମୀତା ସ୍ୱାର୍ଥସାଧନ ପାଇଁ ଉଦ୍ଦିଷ୍ଟ ନଥିଲା । ଏହାଥିଲା ରାଜ୍ୟର ସାଂସଦୀୟ ସ୍ୱାତନ୍ତ୍ର୍ୟ ଓ ସମ୍ମାନର ସୁରକ୍ଷା ପାଇଁ ଏବଂ ଗଣତନ୍ତ୍ରର ସଫଳ କାର୍ଯ୍ୟକାରିତା ତଥା ଜନସାଧାରଣଙ୍କର ମୁକ୍ତି ଓ ପ୍ରଗତି ପାଇଁ ।

### ବିଧାନ ସଭା ଭାଙ୍ଗିଗଲେ ମଧ୍ୟ ବାଚସ୍ପତି ଆସନର ସ୍ଥାୟିତ୍ୱ ରକ୍ଷା

ଓଡ଼ିଶା କାହିଁକି ଭାରତର ରାଜ୍ୟ ବିଧାନସଭା ଇତିହାସରେ ପଣ୍ଡିତ ନୀଳକଣ୍ଠଙ୍କର ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ହେଲା ବାଚସ୍ପତି ଆସନର ସ୍ଥାୟିତ୍ୱ ତଥା ନିରବଚ୍ଛିନ୍ନତା ରକ୍ଷା । ପୂର୍ବରୁ ପରଂପରା ଥିଲା ଯେ, ବିଧାନସଭା ତଥା ମନ୍ତ୍ରୀମଣ୍ଡଳ ଭାଂଗିଗଲେ ବାଚସ୍ପତି ମଧ୍ୟ ବିଦାୟ ନେଉଥିଲେ । ଏହି ପରଂପରା ସପକ୍ଷରେ ଯୁକ୍ତି ହେଉଥିଲା ଯେ କୌଣସି ରାଜ୍ୟର ପ୍ରତିଷ୍ଠିତ ସରକାର ବିଧାନସଭାରେ ନିଜର ସଂଖ୍ୟାଗରିଷ୍ଠତା ହରାଇଲେ, ଇସ୍ତଫା ଦେଇଥିଲେ ଓ ବିଧାନସଭାକୁ ମଧ୍ୟ ସାଧାରଣତଃ ଭାଙ୍ଗି ଦିଆଯାଇଥିଲା । ବିଧାନସଭା ଭାଙ୍ଗି ଗଲେ ଅନ୍ୟ ସଭ୍ୟମାନଙ୍କ ପରି ବାଚସ୍ପତିଙ୍କର କାର୍ଯ୍ୟକାଳ ପୂରିଯାଇଥିଲା । କାରଣ ସେ ବିଧାନ ସଭାର ସଭ୍ୟ ଭାବରେ ନିର୍ବାଚିତ ହୋଇ ଆସିଲେ ହିଁ ବାଚସ୍ପତି ହେବାପାଇଁ ଯୋଗ୍ୟତା ଲାଭ କରୁଥିଲେ । 1961 ମସିହା ଫେବୃଆରୀ ମାସରେ ରାଜ୍ୟପାଳଙ୍କ ନିର୍ଦ୍ଦେଶରେ ଓଡ଼ିଶା ବିଧାନସଭା ଭାଙ୍ଗି ଦିଆଗଲା । ଫଳରେ ସବୁରି ସଭ୍ୟପଦ କଟିଗଲା ଓ ବିଧାନସଭାର ସଭ୍ୟ ଭାବରେ ବାଚସ୍ପତିଙ୍କ କାର୍ଯ୍ୟକାଳ ପୂରିଗଲା ବୋଲି କୁହାଗଲା । ଏଭଳି ପରିସ୍ଥିତିରେ ଏହା ପୂର୍ବରୁ କେରଳ ଓ ପଞ୍ଜାବରେ ବାଚସ୍ପତିମାନଙ୍କୁ ମଧ୍ୟ ଅନ୍ତର କରାଯାଇଥିଲା । ସରକାରଙ୍କ ଯୁକ୍ତି ହେଲା–‘‘ରାଜ୍ୟପାଳଙ୍କ ଆଦେଶ ବଳରେ ବିଧାନସଭା ଭାଙ୍ଗି ଦିଆଯିବା ଫଳରେ ତା’ର ସଭ୍ୟମାନଙ୍କର ସଭ୍ୟପଦ କଟିଗଲା । ତେଣୁ ବିଧାନସଭାର ସଭ୍ୟ ନ ଥିବା ବ୍ୟକ୍ତି ବାଚସ୍ପତି ରହିବେ କିପରି ?’’ ଆପାତତଃ ଏହା ବଡ଼ ଯୁକ୍ତିଯୁକ୍ତକଥା ଏବଂ ଏହା ପୁଣି ଫଇସଲା ବଳରେ ସୁଦୃଢ଼ ହୋଇଛି ।

ପଣ୍ଡିତଜୀଙ୍କ ଯୁକ୍ତି କିନ୍ତୁ ସ୍ୱତନ୍ତ୍ର ଓ ସମ୍ବିଧାନ ସମ୍ମତ । ଭାରତୀୟ ସମ୍ବିଧାନର 179 (ଗ) ଉପଧାରାରେ ସ୍ପଷ୍ଟ ଲେଖାଅଛି ଯେ ବାଚସ୍ପତି, ନୂଆ ବାଚସ୍ପତି ନିର୍ବାଚନ ପର୍ଯ୍ୟନ୍ତ ବାଚସ୍ପତି ହୋଇ ରହିବେ ଏବଂ ବିଧାନସଭା ଭାଙ୍ଗିଗଲେ ମଧ୍ୟ ଅନ୍ୟ ବିଧାନସଭାର ପ୍ରଥମ ଅଧିବେଶନ ଯାଏ କାର୍ଯ୍ୟ କରିବେ । କେନ୍ଦ୍ର ବ୍ୟବସ୍ଥାପକ ସଭାରେ ଦୀର୍ଘକାଳ ବିଧାୟକ ଭାବରେ କାର୍ଯ୍ୟକରି ନୀଳକଣ୍ଠଙ୍କର ବିଧିବିଧାନରେ ପରିପକ୍ୱ ଅଭିଜ୍ଞତା ଥିଲା । ସେ ଜାଣିଥିଲେ ଯେ କେନ୍ଦ୍ରରେ ସେହିପରି ଚାଲିଛି ଏବଂ ରାଜ୍ୟରେ ମଧ୍ୟ ସେହି ପରଂପରା ସୃଷ୍ଟି କରିବାକୁ ହେବ । କାରଣ ବିଧାନସଭା ଭାଂଗିଗଲେ ମଧ୍ୟ ବିଧାନସଭାର ଏକ ସ୍ୱତନ୍ତ୍ର ବିଭାଗ ତଥା ସଚିବାଳୟ ରହିଛି, ଏହାର ମୁଖ୍ୟ ବାଚସ୍ପତି ମଧ୍ୟ ସ୍ଥାୟୀ ରହିବା

ଯୁକ୍ତିଯୁକ୍ତ । ସେ କେନ୍ଦ୍ର ସରକାରଙ୍କୁ ଲେଖି ଏ ସମ୍ପର୍କରେ ସ୍ପଷ୍ଟୀକରଣ ଚାହିଁଥିଲେ ଏବଂ କଲିକତାର ପ୍ରତିଷ୍ଠିତ ସମ୍ବାଦପତ୍ର ଷ୍ଟେଟସ୍‌ମ୍ୟାନ (Statesman) ଓ ମାନ୍ଦ୍ରାଜର ପ୍ରସିଦ୍ଧ ଦୈନିକୀ ହିନ୍ଦୁ (The Hindu) କୁ ଲେଖାମାନ ପଠାଇ ନିଜର ଯୁକ୍ତି ଓ ମତ ଉପସ୍ଥାପନ କରିଥିଲେ । ଏଥିରେ ଜଣେ ବା ଦୁଇଜଣ ବ୍ୟକ୍ତିଙ୍କ ସ୍ୱାର୍ଥ ଅପେକ୍ଷା ଗଣତାନ୍ତ୍ରିକ ସଂସ୍ଥା ବିଧାନସଭାର ସମ୍ମାନ ଓ ସୁପରିଚାଳନା ବିଶେଷ ସଂଶ୍ଳିଷ୍ଟ ।

ଏହି ସମସ୍ୟା ଏକ ଗୁରୁତ୍ୱପୂର୍ଣ୍ଣ ସାମ୍ବିଧାନିକ ପ୍ରଶ୍ନ ସୃଷ୍ଟି କଲା । ଭାରତ ସରକାରଙ୍କ ଆଇନ ବିଭାଗ ଏହି ପ୍ରଶ୍ନର ବିଚାର ଆଲୋଚନା କଲେ । ନୀଳକଂଠ ମଧ୍ୟ ପ୍ରଧାନମନ୍ତ୍ରୀ ଜବାହାରଲାଲ, ବଂଗଳାର ମୁଖ୍ୟମନ୍ତ୍ରୀ ତଥା ବରିଷ୍ଠ ଜନନାୟକ ବିଧାନଚନ୍ଦ୍ର ରାୟ ଓ ଏହିପରି ଅନ୍ୟ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ଦୃଷ୍ଟି ଆକର୍ଷଣ କଲେ । ପରମ୍ପରା ଚଳିବ ନା ସଂବିଧାନ ଚଳିବ ? ଯଦି ପରଂପରାକୁ ଚାଲୁ ରଖିବ ସଂବିଧାନ ସଂଶୋଧନ କରିବ, ଯଦି ସଂବିଧାନକୁ ମାନିବ, ତେବେ ପରଂପରାକୁ ଭାଂଗିବା ଦରକାର । ନୀଳକଣ୍ଠଙ୍କ ଯୁକ୍ତିର ସାରବତ୍ତା ସମସ୍ତେ ଉପଲବ୍ଧି କଲେ । ପରଂପରା ଅନୁକୂଳ ନହେଲେ ତାକୁ ବଦଳାଇ ସଂବିଧାନକୁ ସ୍ୱୀକାର କରିବାକୁ ହେବ । ଦୀର୍ଘ ସାତମାସ ପରେ ନୀଳକଣ୍ଠଙ୍କ ଦାବୀ ବିଧାନସଙ୍ଗତ ବୋଲି କେନ୍ଦ୍ରରୁ ଉତ୍ତର ମିଳିଲା । ଏହି ସାମ୍ବିଧାନିକ ସଂଗ୍ରାମରେ ନୀଳକଣ୍ଠ ବିଜୟୀ ହେଲେ ।

ମାତ୍ର ପୂର୍ବରୁ ବାଚସ୍ପତିଙ୍କ କାର୍ଯ୍ୟକାଳ ପୂରିଯିବା କଥା ସରକାରଙ୍କଠାରୁ ସୂଚନା ପାଇଲାମାତ୍ରେ ନୀଳକଣ୍ଠ ଉକ୍ତ ପଦକୁ ରଖିବାପାଇଁ ସଂଗ୍ରାମ ଆରମ୍ଭ କରିଥିଲେ ମଧ୍ୟ ସେ ରହୁଥିବା ବାସଭବନଟିକୁ ଛାଡିଦେବାପାଇଁ ନିଷ୍ପତ୍ତି କରିଥିଲେ । ସେ ଆସି ସମସ୍ତଙ୍କୁ କହିଦେଲେ, "ମୁଁ ଏଘର କାଲି ଛାଡିଦେବି" ତାଙ୍କର ଅଧିକାରୀ ଓ କର୍ମଚାରୀଗଣ ପଣ୍ଡିତଜୀଙ୍କୁ ଅନୁରୋଧ କଲେ । ଆପଣତ ନୂଆ ବିଧାନସଭା ଗଠିତ ହୋଇ ବାଚସ୍ପତି ନିର୍ବାଚନ ଯାଏ ରହିପାରିବେ ବୋଲି ଲଢେଇ କରୁଛନ୍ତି । ଆପଣ କାହିଁକି ଏଘର ଛାଡ଼ିବେ ? ସେ କିନ୍ତୁ ମନାକଲେ । ମୁଖ୍ୟଶାସନ ସଚିବ ଶ୍ରୀ ରାମନାଥନ ମଧ୍ୟ ଘର ଛାଡ଼ିବା ସଂପର୍କରେ ନୀଳକଣ୍ଠଙ୍କଠାରୁ ଚିଠିପାଇ ତାଙ୍କୁ ଘର ନ ଛାଡ଼ିବାପାଇଁ ଅନୁରୋଧ କଲେ । ପଣ୍ଡିତଜୀଙ୍କ ପରିବାର ମଧ୍ୟ ସେହି ଘରେ ଥିଲେ । ପିଲାମାନେ ଘର ଛାଡ଼ିଲେ ସେମାନଙ୍କର ଅସୁବିଧା ହେବ ବୋଲି କହିଲେ ମାତ୍ର ନୀଳକଣ୍ଠ ବତାଇଲେ, "ମୁଁ ନୀତିଦୃଷ୍ଟିରୁ ଲଢୁଛି । ମୁଁ ଯଦି ଏଘରେ ରହେ, ଲୋକେ କହିବେ, ମୁଁ ଏଘର ଓ ପଦର ଲୋଭ ସମ୍ଭାଳି ନ ପାରି ସେଥିପାଇଁ ଲଢୁଛି ," ତାଙ୍କ କଥାରେ ସେ ଅଟଳ ରହିଲେ । ସେ ଘର ଛାଡ଼ିଦେଲେ.ଯଦିଓ ସେ ତାଙ୍କ ଲଢେଇରେ ଜିଣିବେ ବୋଲି ସ୍ଥିର ନିଶ୍ଚୟ ହୋଇଥିଲେ, ଏହିପରି ପ୍ରଚଳିତ ପରଂପରା ବିରୁଦ୍ଧରେ ସଂଗ୍ରାମକରି ସେ କୃତକାର୍ଯ୍ୟ ହୋଇଥିଲେ, ତାଙ୍କର ଦୃଢ ଆତ୍ମବିଶ୍ୱାସ, ସଂଗ୍ରାମୀ ମନୋବୃତ୍ତି ଓ ଯୁକ୍ତିସିଦ୍ଧ ନିଷ୍ପତ୍ତି ଅତୁଳନୀୟ ।

## ବାଚସ୍ପତି ଭାବରେ ପଣ୍ଡିତଜୀଙ୍କ କୃତିତ୍ୱର ଆକଳନ

ପଣ୍ଡିତ ନୀଳକଣ୍ଠଙ୍କ ବହୁମୁଖୀ ପ୍ରତିଭା ମଧ୍ୟରେ ସାଂସଦୀୟ ଦକ୍ଷତା ଅବିସ୍ମରଣୀୟ । ଜୀବନର ଶତସଂଗ୍ରାମ ଓ ସାଧନା ମଧ୍ୟରେ ବାଚସ୍ପତି ଭାବରେ ତାଙ୍କର ବିଚକ୍ଷଣତା ଅତୁଳନୀୟ । ସାମ୍ବିଧାନିକ ନୀତି ଓ ନିର୍ଦ୍ଦେଶର ପ୍ରତିଷ୍ଠାପାଇଁ ତାଙ୍କର ସାଫଲ୍ୟ ଅନନ୍ୟ ସାଧାରଣ । ବିଧାନସଭାର ସ୍ୱାତନ୍ତ୍ର୍ୟ ଓ ବାଚସ୍ପତି ପଦର ମର୍ଯ୍ୟାଦା–ବୃଦ୍ଧିରେ ତାଙ୍କର ପଦକ୍ଷେପ ଯୁଗାନ୍ତକାରୀ । ଭାରତୀୟ ସଂସଦୀୟ ଗଣତନ୍ତ୍ରକୁ ସେ ନୂତନ ଦିଗ୍‌ଦର୍ଶନ ଦେଇଛନ୍ତି । ତା'ର ଭିତ୍ତିଭୂମିକୁ ସୁଦୃଢ଼ କରିବାରେ ତାଙ୍କର ଅବଦାନ ଅନବଦ୍ୟ । ପ୍ରାଚୀନ ପଳିତ ପରଂପରାକୁ ପରିବର୍ତ୍ତନକରି ସ୍ୱାଧୀନ ଭାରତର ନୂତନ ସମ୍ବିଧାନକୁ ପବିତ୍ର ପ୍ରାଣ ଓ ଗଭୀର ନିଷ୍ଠାର ସହିତ ସେ କାର୍ଯ୍ୟକାରୀ କରିଛନ୍ତି । ସବୁ କ୍ଷେତ୍ରରେ ଭାଷାଠାରୁ ସାହିତ୍ୟ, ସମାଜଠାରୁ ଶାସନନୀତି, ସମ୍ବିଧାନଠାରୁ ସଂସଦ ଯାଏ ସର୍ବତ୍ର ତାଙ୍କର ସଂସ୍କାର–ମନୋଭାବ ନବୀନ ଯୁଗର ଅଭ୍ୟୁଦୟ ଘଟାଇଛି । ବରିଷ୍ଠ ବିଧାୟକ ଶ୍ରୀ ହରିହର ବାହିନୀପତି ଯଥାର୍ଥରେ କହିଛନ୍ତି (ନୀ. ସ୍ମା. ୧୯୮୪ ପୃ. 111) "ପଣ୍ଡିତ ନୀଳକଣ୍ଠ ତାଙ୍କର ବହୁବିଧ ପ୍ରତିଭା ସହିତ ଗଣତାନ୍ତ୍ରିକ ମୂଲ୍ୟବୋଧର ସୁରକ୍ଷା, ସଂସଦୀୟ ଗଣତନ୍ତ୍ରରେ ବିରୋଧୀଦଳ ପ୍ରତି ମର୍ଯ୍ୟାଦାସଂପନ୍ନ ଅନୁଭୂତି ତଥା ସାମ୍ବିଧାନିକ ସ୍ଥିତି ଓ ସଂହତିର ଜାଗ୍ରତ ପ୍ରହରୀ ସ୍ୱରୂପ ଅନ୍ୟତମ ବିଶିଷ୍ଟ ପ୍ରତିଭାର ଅଧିକାରୀ ଭାବରେ ଚିରକାଳ ସ୍ମରଣୀୟ ହୋଇ ରହିବେ" । ତାଙ୍କର କୃତିତ୍ୱ ଚିରସ୍ମରଣୀୟ ଓ ଅବଦାନ ଅନୁକରଣୀୟ ହୋଇରହିବ । ତାଙ୍କର ସ୍ମୃତି ଓ ସ୍ମାରକୀ ହୋଇରହିବ ଚିରଉର୍ଜ୍ୱସ୍ୱଳ । ସମଗ୍ର ଜୀବନର ସକଳ ସିଦ୍ଧି ମଧ୍ୟରେ ବାଚସ୍ପତିକାଳୀନ ସଫଳତାହିଁ ତାଙ୍କର ଅଦ୍ୱିତୀୟ ଓ କୀର୍ତ୍ତିର ଆଲୋକସ୍ତମ୍ଭ ପରି ଚିରଅନିର୍ବାଣ ।

# ଷଷ୍ଠ ଅଧ୍ୟାୟ

## ଓଡ଼ିଶା ବିଧାନସଭାରେ ପଣ୍ଡିତ ନୀଳକଣ୍ଠଙ୍କର କେତେକ ଗୁରୁତ୍ୱପୂର୍ଣ୍ଣ ଭାଷଣ ଓ କର୍ତ୍ତବ୍ୟ ।

ଭାର୍ଗବୀନଦୀ କୂଳରେ ନୀଳକଣ୍ଠ ନିଜର ବନ୍ଧୁମାନଙ୍କ ସହିତ ତରୁଣ ଜୀବନରେ ଯେଉଁ ଶପଥ ଗ୍ରହଣ କରିଥିଲେ–"ଦେଶପାଇଁ କିଛି କରିବା । ଜନ୍ମବେଳେ ଦେଶକୁ ଯାହା ଦେଖିଥାଇଁ ତାଠାରୁ ଉନ୍ନତ ଦେଖି ମରିବା" ଜୀବନରେ ଶେଷ ପର୍ଯ୍ୟନ୍ତ ତାକୁ ସେ ଦୀକ୍ଷା ତଥା ବ୍ରତ ଭାବରେ ଗ୍ରହଣ କରିଥିଲେ । ଶିକ୍ଷକ, ଲେଖକ, ସଂସ୍କାରକ ଆଦି ଭୂମିକାରେ ସେ ଯେଉଁ ଅମୂଲ୍ୟ ଅବଦାନ ଦେଇଯାଇଛନ୍ତି, ତା ତୁଳନାରେ ବ୍ୟବସ୍ଥାପକ ଭାବରେ ତାଙ୍କର ଭୂମିକା କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଜଣେ ସାଂସଦ ଭାବରେ ତାଙ୍କର ଦୂରଦୃଷ୍ଟି ଓ ବିପ୍ଳବାତ୍ମକ ଚିନ୍ତାଧାରା ସେଇ ସମୟଠାରୁ ବହୁ ଆଗୁଆ ଥିଲା । ସମାଜ ସଂସ୍କାରକ ଭାବରେ ସେ ବିଧାନସଭା ବାହାରେ ଓ ଭିତରେ ବହୁ କୁସଂସ୍କାର ଓ କୁପ୍ରଥାର ସଂଶୋଧନ-ପାଇଁ ସଚେଷ୍ଟା କରିଥିଲେ । ବରଂ ଉଗ୍ରଭାବରେ ସେ ପରଂପରାକୁ ବିରୋଧ କରୁଥିଲେ ଏବଂ ଓଡିଆଜାତିର ସମୃଦ୍ଧି ଓ ସ୍ୱାଭିମାନର ବିକାଶ ପାଇଁ ସଂଗ୍ରାମ କରିଥିଲେ । କେନ୍ଦ୍ର ବ୍ୟବସ୍ଥାପକ ସଭାରେ ଦୀର୍ଘ 16 ବର୍ଷ ଧରି ସାଂସଦଭାବରେ କାର୍ଯ୍ୟକରି ନିଜର ବିଚକ୍ଷଣତା, ବାଗ୍ମୀତା ଓ ଦୃଢ଼ ସାହସ ପ୍ରଦର୍ଶନ କରିଥିଲେ । ସ୍ୱାଧୀନତା ଲାଭ ପରେ ସଂସଦ ବାହାରେ ରହି ଯାହା କରିପାରି ନ ଥିଲେ, 1952 ଠାରୁ ସଂସଦ ଭିତରେ ରହି ତାହାଠାରୁ ବହୁ ଉଲ୍ଲେଖଯୋଗ୍ୟ ସିଦ୍ଧିଲାଭ କରିବାରେ ନୀଳକଣ୍ଠ ଯଶସ୍ୱୀ ହୋଇଥିଲେ ।

### ଓଡ଼ିଶା ଉପମନ୍ତ୍ରୀ ବେତନ ବିଲ୍ (Orissa Deputy Ministers' Salaries Bill, 1952)

ପଣ୍ଡିତ ନୀଳକଣ୍ଠ ବିଧାନସଭାରେ ବିରୋଧୀଦଳର ସଭ୍ୟ ଭାବରେ 1952 ମାର୍ଚ୍ଚ 4 ତାରିଖରେ ଶପଥ ଗ୍ରହଣ କରିଥିଲେ ଏବଂ ତା 10-3-1952 ରେ "ଓଡ଼ିଶା ଉପମନ୍ତ୍ରୀ ବେତନ ବିଲ୍" ଉପରେ ଏକ ଉଚ୍ଚକୋଟୀର ଭାଷଣ ପ୍ରଦାନ କରିଥିଲେ । ଏହି ଭାଷଣରେ ରାଜ୍ୟର ସର୍ବାଙ୍ଗୀନ ବିକାଶପାଇଁ ତାଙ୍କର ବ୍ୟାକୂଳତା ଓ ପ୍ରତିଶ୍ରୁତିବଦ୍ଧତା ସ୍ପଷ୍ଟ ହେବା ସଙ୍ଗେ ସଙ୍ଗେ ସରକାରୀ ବ୍ୟୟବହୁଳତା ଉପରେ ତାଙ୍କର କଠୋର ଆକ୍ରମଣ ପ୍ରକାଶିତ ହୋଇଛି । ଭାଷଣର ପ୍ରଥମରୁ ପଣ୍ଡିତଜୀ ଗୃହର କାର୍ଯ୍ୟଗୁଡ଼ିକ ଗୁରୁତ୍ୱସହିତ ସଂପାଦିତ ହେବା ଉଚିତ ବୋଲି ମତଦେଇଥିଲେ ଏବଂ ସଭ୍ୟମାନେ ପ୍ରତ୍ୟେକ ବିଷୟକୁ ତନ୍ନତନ୍ନକରି ଅନୁଧ୍ୟାନ କରିବା ଉଚିତ ବୋଲି ପରାମର୍ଶ ଦେଇଥିଲେ । ସେ କହିଥିଲେ, "ଏ ସଭାର ଯଥେଷ୍ଟ ମୂଲ୍ୟ ଅଛି, ଯଥେଷ୍ଟ ଗୁରୁତ୍ୱ ଅଛି । ଏଠି ଖାଲି ହାତଟେକି ମୁଣ୍ଡଗଣତି କରି ସବୁପାସ୍ କରେଇନେବା ଉଚିତ ନୁହେଁ । ସବୁ ବିଷୟ ଭାବିଚିନ୍ତି ଯେତେ ସମୟ

ହେଉପଛେ ସ୍ଥିର କରିବାକୁ ହେବ । ଯଦି ସମୟ ଅଭାବ ହୁଏ, ମୋ ମତରେ ରାତିରେ କିଛି ସମୟ ବସିବା ଦରକାର ।" ଏଥିରୁ ପଣ୍ଡିତଜୀଙ୍କର ବିଧାୟକ ଭାବରେ ନିଷ୍ଠାପରତା ପ୍ରମାଣିତ ହେଉଅଛି ।

ବିଧାନସଭାରେ କେତେକ କଂଗ୍ରେସ ସଭ୍ୟ ଗୋଦାବରୀଶଂକୁ "ବିଶ୍ୱାସଘାତକ" କହିବା ଫଳରେ ନୀଳକଂଠ ମ୍ରିୟମାଣ ହୋଇ କେଉଁ ପରିସ୍ଥିତିରେ 1936-37 ରେ ମିଳିତ ମନ୍ତ୍ରୀମଣ୍ଡଳ ଗଠିତ ହୋଇଥିଲା ତାହା ବୁଝାଇ ଦେଇଥିଲେ । ନୀଳକଂଠ ଓ ଗୋଦାବରୀଶ ନେତାଜୀ ସୁଭାଷଚନ୍ଦ୍ରଙ୍କ ପରାମର୍ଶ କ୍ରମେ କଂଗ୍ରେସଠାରୁ ଦୂରେଇ ଯାଇଥିଲେ ଏବଂ ସେତେବେଳର ପରିସ୍ଥିତିରେ ଏହା ନିତାନ୍ତ ଦରକାର ଥିଲା । ଦେଶର ନିରାପତ୍ତା ଓ ସ୍ୱାଧୀନତା ଲାଭ ପାଇଁ ମୁସଲିମ୍ ନେତାଙ୍କୁ ନେଇ ମିଳିତ ମନ୍ତ୍ରୀମଣ୍ଡଳ ଗଢିଥିଲେ ବୋଲି ନୀଳକଂଠ ଦୃଢ଼ ଯୁକ୍ତି ଉପସ୍ଥାପନ କରିଥିଲେ । ସେ ତେଣୁ ସ୍ପଷ୍ଟକରି କହିଥିଲେ, "ମୁଁ କହିବାକୁ ଚାହେଁ ଯେ ସେହି ଯେ ମନ୍ତ୍ରୀ ମଣ୍ଡଳ ଗଠନ ହୋଇଥିଲା ସେଥିରେ କେହି ବିଶ୍ୱାସଘାତକ ନଥିଲେ । ଆମ ଦେଶରେ ସେତେବେଳେ ଯାହା କରିଥିଲୁ, ଯେ ତ୍ୟାଗ କରିଥିଲୁ, ତା' ଶ୍ରେଷ୍ଠତ୍ୟାଗ ତା ଏ ପର୍ଯ୍ୟନ୍ତ ଆଉକେହି କରିନାହାନ୍ତି, ଆଜି ଯଦି ମହତାବ କି ବିଶ୍ୱନାଥ ଦାସ ଥାନ୍ତେ ତା' ହେଲେ ମୁଁ (Challenge) କରନ୍ତି । ଯଦି ଯୁବକମାନଙ୍କୁ ମୁଁ ଏଇଟା ପରିଷ୍କାର କରିନଦିଏ ତା' ହେଲେ ତାଙ୍କର ସେହି ଧାରଣା ହେବ । ନିଜଦଳର ସଭ୍ୟମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ଉପମନ୍ତ୍ରୀ ପଦରେ ନିଯୁକ୍ତି ଦିଆଯାଉଛି ଏବଂ ଏହା ଫଳରେ ଦରିଦ୍ର ରାଜ୍ୟର ରାଜକୋଷ ଉପରେ ଅଯଥା ଚାପ ପଡ଼ିବ ଏବଂ ସେମାନଙ୍କର କର୍ତ୍ତବ୍ୟ ନିର୍ଦ୍ଧାରଣ ନ କରିବା ରାଜନୈତିକ ଅପାରଗତା ବୋଲି ସେ ଘୋଷଣା କରିଥିଲେ । ନୀଳକଂଠ ତେଣୁ ତାଙ୍କ ଭାଷଣରେ ମୁଖ୍ୟମନ୍ତ୍ରୀଙ୍କୁ ଆକ୍ଷେପ କରି କହିଥିଲେ, ତୁମେ ଯେ ସେମାନଙ୍କୁ ନିଯୁକ୍ତ କରୁଛ, ସେମାନଙ୍କ କର୍ତ୍ତବ୍ୟ କ'ଣ ଦେଇଛ? ମୁଁ ଯାହା କହିଥିଲି କାମକରି ନପାରିଲେ ଛାଡ଼ିଦେବା, ଏଇଟା ହେଉଛି ଭାରତର ସଂସ୍କୃତି । ତା ନହେଲେ ମନ୍ତ୍ରୀ ହୋଇ ବସିଗଲେ, 5 ବର୍ଷ ପାଇଁ ଅଧିକାର ମିଳିଗଲା । ଭୁଲକର ବା ଭଲ କର ଦଳକୁ ଧରି ପାରିଲେ ଦଳ ତୁମକୁ ଘଣ୍ଟ ଘୋଡ଼ାଇ ରକ୍ଷା କରିବ, ଏଇଟା କ'ଣ ଭାରତୀୟ ସଭ୍ୟତା ଉପରେ ପ୍ରତିଷ୍ଠିତ ହେଲା ? " ମନ୍ତ୍ରୀମାନେ କିପରି ତତ୍ପର ଓ କର୍ମନିଷ୍ଠ ହେବେ ସେଥିପାଇଁ ପରାମର୍ଶ ଦେବା ସଂଗେ ସଂଗେ ଏପ୍ରକାର ଦଳୀୟ ପ୍ରାଧାନ୍ୟ ଓ ସଂକୀର୍ଣ୍ଣ ସ୍ୱାର୍ଥପରତା ଦେଶର ସମୂହ ସ୍ୱାର୍ଥର ପରିପନ୍ଥି ବୋଲି ଚେତାଇଦେଇଥିଲେ ।

ଏହି ପ୍ରସଂଗରେ ପଣ୍ଡିତଜୀ ରାଜସ୍ୱ ବୃଦ୍ଧି ନିମନ୍ତେ ସରକାରଙ୍କୁ କେତେକ ପରାମର୍ଶ ଦେଇ ଆମର ଜମିବାଡ଼ି ସଂସ୍କାର କରାଯାଇ କୃଷକର ଆର୍ଥିକ ଅବସ୍ଥାର ଉନ୍ନତି ଆଣିବା ଉପରେ ଜୋର ଦେଇଥିଲେ । ଜମିଦାରୀ ପ୍ରଥାର ଉଚ୍ଛେଦ ଘଟାଇ ଜନସାଧାରଣଙ୍କ

ଆର୍ଥିକ ଅବସ୍ଥାର ବିକାଶ ହେବା ଉଚିତ । କିପରି ସେମାନଙ୍କ ରାଜନୈତିକ ସଚେତନତା ( Political consciousness ) ଜାଗ୍ରତ ହୋଇଛି ଏବଂ "ଲୋକଙ୍କର ଅବସ୍ଥା ପ୍ରତି ଦୃଷ୍ଟିନଦେଇ ଅନ୍ୟାନ୍ୟ ଖର୍ଚ୍ଚ ବଢ଼ାଇବାକୁ ଯିବା ଉଚିତ ନୁହେଁ ବୋଲି ସେ ସରକାରଙ୍କୁ ସାବଧାନ କରାଇଦେଇଛନ୍ତି । ବିକ୍ରୟ (Sales ) ଟିକସ ପ୍ରକୃତରେ କ୍ରୟ ଟିକସ, ସେମିତି ଖଜଣା ଆଦି ଜନସାଧାରଣଙ୍କ ଉପରେ ଖୁବ୍ ଚାପ ପକାଉଛି । ଅଯଥା ଅପବ୍ୟୟ ବିରୁଦ୍ଧରେ ସେମାନେ ସ୍ୱର ଉତ୍ତୋଳନ କରିବାକୁ ବାଧ୍ୟ ହେଉଛନ୍ତି ବୋଲି ପଣ୍ଡିତଜୀ" ଏହାକୁ ବିରୋଧ ନକଲେ ଆମର ବା ଚାରା କ'ଣ ? ଏ ଅବସ୍ଥାରେ ଆମେ କ'ଣ କରିବୁ ? ଆମେତ ଦେଶକୁ ଚାହିଁବୁ । ଆମେତ ନୂଆ ହୋଇ କରି ଆସିଛୁ । ଆମକୁ ବୁଝାଇବା ଉଚିତ ଏ ଦାୟିତ୍ୱ ଅନ୍ୟ ଉପରେ ପଡ଼ିବ । ଆମେ କେବଳ ଗାଳି କରିବାକୁ ଆସିନାହୁଁ, ଆମେ ଆସିଛୁ ଦେଶର ସେବା କରିବା ପାଇଁ, ସରକାରଙ୍କ ସହିତ ସହଯୋଗ କରିବା ପାଇଁ । ବିଧାୟକ ଭାବରେ ନୀଳକଂଠ ନିଜର କର୍ତ୍ତବ୍ୟ ଓ ଦାୟିତ୍ୱ ସଂପର୍କରେ କେତେ ସଚେତନ ଓ ଦେଶର ଜନତା ଜନାର୍ଦ୍ଦନଙ୍କ ପାଇଁ ତାଙ୍କର ସମ୍ବେଦନା ଓ ନିଷ୍ଠା କେତେ ଅଧିକ , ଏଥିରୁ ପ୍ରମାଣିତ ହୁଏ ।

ନୀଳକଂଠଙ୍କ ଭାଷଣ କିପରି କେବଳ ତଥ୍ୟ ସଂବଳିତ ନ ହୋଇ ଗଳ୍ପ କାହାଣୀ ଆଖ୍ୟାୟିକା ଓ ବିଭିନ୍ନ ଦୃଷ୍ଟାନ୍ତକୁ ନେଇ ସରସ ଓ ମନୋରଂଜକ ହୋଇଥାଏ, ତାହା ପୂର୍ବରୁ କୁହାଯାଇଛି । ସାହିତ୍ୟ ଓ ରାଜନୀତିର ମଧୁର ସମନ୍ୱୟ ହୋଇପାରିଛି ତାଙ୍କ ଭାଷଣରେ ଏବଂ ଅତିତ ଓ ବର୍ତ୍ତମାନର ସମସ୍ୟା ଓ ବିବରଣୀ ତାଙ୍କ ବକ୍ତବ୍ୟକୁ ଖୁବ୍ ସାରଗର୍ଭକ ଓ ରସପୂର୍ଣ୍ଣ କରିଥାଏ । ଅଯଥାରେ ଉପମନ୍ତ୍ରୀ ପଦ ସୃଷ୍ଟି କରିବାକୁ ସମାଲୋଚନା କରି ସେ ଏହାର ସୁବିଧା ପରିବର୍ତ୍ତେ ଅସୁବିଧାକୁ ଅତି ସ୍ୱଷ୍ଟ ଓ ସୁନ୍ଦର କରିପାରିଛନ୍ତି ଏକ ଗଳ୍ପ ମାଧ୍ୟମରେ ସେହି ଗଳ୍ପଟିର ନାମ ହେଲା "ଚାରି ପରିଛାରେ ଦୁଧରେ କୁମ୍ଭୀର ପିଲା " ଏବଂ ଏଥିରେ ପୁରୀରାଜାଙ୍କ ଘରକୁ ପ୍ରତିଦିନ ଆସୁଥିବା ଦୁଧର ଜଳୀୟ ଅଂଶ ଏହାକୁ ତନଖି କରୁଥିବା କର୍ମଚାରୀ ପରିଛାଙ୍କ ସଂଖ୍ୟା ବୃଦ୍ଧିରେ କିପରି ବଢିଚାଲିଲା ଏବଂ ଶେଷରେ ଦୁଧ ବଦଳରେ କିପରି ଜଳହିଁ ମିଳିଲା ଏବଂ ତା ସହିତ କୁମ୍ଭୀର ଛୁଆଟିଏ ବି ମିଳିଲା ତାହା ସେ ଖୁବ୍ ମନୋରଂଜକ ଭାବରେ କହିଛନ୍ତି ।

ଏହିପରି ଉପମନ୍ତ୍ରୀ ସଂଖ୍ୟାବୃଦ୍ଧରେ ପ୍ରଶାସନିକ ଅପାରଗତା ବଢିବ ଓ ଅଯଥା ଖର୍ଚ୍ଚ ବଢିଚାଲିବ ବୋଲି ନୀଳକଣ୍ଠ ସରକାରଙ୍କୁ ସାବଧାନ କରାଇଦେଇଛନ୍ତି । ଏହା ଫଳରେ ସରକାର ଦୁର୍ବଳ ହୋଇ ଭୁଷୁଡ଼ିପଡ଼ିବ ବୋଲି ଚେତାଇ ଦେଇଛନ୍ତି, "ଜଣେ ଅଧ୍ୟାପକ କହିଲାଭଳି ସୀତା "ହରଣ, ରାବଣ ମରଣ" , ମୁଁ ବଂଧୁମାନଙ୍କୁ ଅନରୋଧ କରୁଛି, ସେମାନେ ଏବୁଦ୍ଧିରେ ଚାଲନ୍ତୁ ନାହିଁ । ଯଦି ସେପରି କରୁଥାନ୍ତି, ତେବେ ଦଳକୁ କେଭେ ସନ୍ତୁଷ୍ଟ କରିପାରିବେ ନାହିଁ । ଆମେ ଆପଣଙ୍କଠାରୁ ଯାହା ଆଶା କରିଛୁ ତାହା ପାଇବୁନାହିଁ, ଏହା ମନେରଖନ୍ତୁ । ଆଉ ବିଶେଷ କିଛି ନକହି ଏତିକି ଅନୁରୋଧ କରିବି

ଯେ ନିଜର କର୍ତ୍ତବ୍ୟ ଯାହା ତାରି ଆଡ଼କୁ ଚାହିଁ କରନ୍ତୁ । ଗରିବ ଲୋକଙ୍କୁ ଦେଖନ୍ତୁ, ନିଜର ଦେଶକୁ ଚାହାନ୍ତୁ । ଦେଶର ଭବିଷ୍ୟତକୁ ଚାହାନ୍ତୁ । ଚାରିଆଡୁ ସଂକଟ କାଳ ମାଡ଼ି ଆସୁଛି । ଆୟ କମିଯିବ, ଲୋକଙ୍କୁ ଅନେକ ଦିନ ପର୍ଯ୍ୟନ୍ତ ଭଣ୍ଡି ହେବନାହିଁ ।" ଏହିପରି ଦୂରଦ୍ରଷ୍ଟା ଓ ଧୂରୀଣ ବିଧାୟକ ଜାତିର ସାଂପତିକ ଜ୍ୱଳନ୍ତ ସମସ୍ୟାକୁ ବିଶ୍ଳେଷଣ କରିବା ସଂଗେ ସଂଗେ ଭବିଷ୍ୟତରେ ତା'ର କୁପ୍ରଭାବ ଓ କୁପରିଣତି ସଂପର୍କରେ ସ୍ପଷ୍ଟ ସୂଚନା ଦେଇଛନ୍ତି । ନିମ୍ନରେ ନୀଳକଂଠଙ୍କର ଉକ୍ତ ଭାଷଣ ଉଦ୍ଧୃତ ହେଲା ।

( Orissa Legislative Assembly Proceedings Vol. 1, Part 1, No. 23, dated 3rd April, 1952, PP. 30-43 ).

ଶ୍ରୀ ନୀଳକଣ୍ଠ ଦାସ : ବାଚସ୍ପତି ମହାଶୟ, ସଭ୍ୟମାନେ ବହୁ ଦିନ ଧରି ବସିଲେଣି, ଆଗରୁ ଏଥିପାଇଁ Prepared ହୋଇଆସି ନ ଥିଲେ, ସେମାନଙ୍କର ବହୁତ ଅସୁବିଧା ହେଉଛି । ଏ ଆସେମ୍ବ୍ଲି ବସିବାରେ ଦିନକୁ ଟ 2,500 ଙ୍କା କରି ଖର୍ଚ୍ଚ ହେଉଛି । ତେଣୁ ଯେନ ତେନ ପ୍ରକାରେଣ ଯାହା ସବୁ ଅଛି ପାଶ କରି ଦିଆଯାଉ । ଯେଉଁ ଖୁଆ ଦିଆଯାଇଛି ଏଥିରୁ ମୋର ଘୋର ଆଶଙ୍କା ହେଉଛି ଯେ ଏହି ଗୃହରେ ଯେଉଁ ସବୁ କାମ ହେଉଛି ସେଗୁଡ଼ିକର କିଛି ଗୁରୁତ୍ୱ ରହୁ ନାହିଁ । ଏଠି ଯେଉଁ କାମ ହେଉଛି ସେଟା କିଛି ନୁହେଁ ଜଣାପଡୁଛି । କିନ୍ତୁ ମୁଁ କହେ ଏପରି ଭାବିବା ଠିକ୍ ନୁହେଁ । ଆମ୍ଭେମାନେ ଯେଉଁମାନେ କି ଦେଶର ଜନସାଧାରଣଙ୍କର ନିର୍ବାଚିତ ପ୍ରତିନିଧି ରୂପେ ଏ ଗୃହକୁ ଆସି ସେମାନଙ୍କର ଦୈନନ୍ଦିନ ସମସ୍ୟା ନେଇ ବିଚାର କରୁଛୁ, ସେ ଗୃହର କାର୍ଯ୍ୟାବଳୀକୁ ଏପରି ହେୟ ବୋଲି ମନେ କରିବା ଉଚିତ ନୁହେଁ । ଏ ସଭାର ଯଥେଷ୍ଟ ମୂଲ୍ୟ ଅଛି, ଯଥେଷ୍ଟ ଗୁରୁତ୍ୱ ଅଛି । ଏଠିଖାଲି ହାତ ଟେକି ମୁଣ୍ଡ ଗଣତି କରି ସବୁ ପାଶ କରେଇ ନେବା ଉଚିତ ନୁହେଁ । ସବୁ ବିଷୟ ଭାବି ଚିନ୍ତି ଯେତେ ସମୟ ନେଉ ପଛକେ, ସ୍ଥିର କରିବାକୁ ହେବ । ଯଦି ସମୟ ଅଭାବ ହୁଏ ମୋ ମତରେ ରାତିରେ କିଛି ସମୟ ବସିବା ଦରକାର । କିନ୍ତୁ ଖର୍ଚ୍ଚ ଦୃଷ୍ଟିରୁ ହେଉ ବା ଅନ୍ୟ କୌଣସି ଦୃଷ୍ଟିରୁ ହେଉ ଏ ଗୃହର କାର୍ଯ୍ୟାବଳୀକୁ ଏପରି ଅବହେଳିତ ଚକ୍ଷୁରେ ଦେଖିବା ଉଚିତ ନୁହେଁ । ତେଣୁ ମୁଁ ଅନୁରୋଧ କରୁଛି ଏ ବିଷୟରେ ସଭ୍ୟମାନେ ବିଚାର କରନ୍ତୁ । ଭବିଷ୍ୟତରେ ଯେପରି ଏପରି ନହୁଏ ସେଥିପ୍ରତି ଦୃଷ୍ଟି ଦେବା ଦରକାର । ଦିନକୁ ଟ 2,500 ଖର୍ଚ୍ଚ ହୋଇଯିବ ତେଣୁ ଯେଉଁ ବିଷୟ ଲକ୍ଷ ଲକ୍ଷ ଲୋକଙ୍କର ଭାଗ୍ୟ ନିୟନ୍ତ୍ରଣ କରିବ, ତା'ର ଭଲ ମନ୍ଦ ନ ବୁଝି, ନ ବିଚାରି ଖାଲି ଯେନ ତେନ ପ୍ରକାରେଣ ସମୟ ବା ଖର୍ଚ୍ଚ ଅଭାବରୁ ପାସ୍ କରି ଦେଇ ଯିବା ଏଇଟା କଦାପି ଉଚିତ୍ ନୁହେଁ ଏ କଥା କେବେ ମନେ କରିବା ଉଚିତ୍ ନୁହେଁ । ଏପରି କଲେ ଏ ଗୃହର କାର୍ଯ୍ୟାବଳୀର କୌଣସି ଗୁରୁତ୍ୱ ରହିବ ନାହିଁ । ତାହାପରେ ବାଚସ୍ପତି ମହାଶୟ, ଏହି ଉପମନ୍ତ୍ରୀ ନିଯୁକ୍ତି ଆଇନ ସମ୍ବନ୍ଧରେ କହିବା ପୂର୍ବରୁ ସେଦିନ ଗୋଟିଏ ବିଶେଷ ଘଟଣା ନେଇ କହିବା ପାଇଁ ଆପଣଙ୍କୁ ସମୟ ମାଗିଥିଲି ଏବଂ ଆପଣ ସେ ସମୟ ଦେବାକୁ କହିଥିଲେ । ମୁଁ ଭାବୁଛି ଉକ୍ତ ଅବସରରେ ସେ ବିଷୟଟି କହିଲେ ବୋଧହୁଏ ପ୍ରାସଙ୍ଗିକ ହେବ ।

The Hon'ble SPEAKER : ସେ ବିଷୟଟି କ'ଣ ?

ଶ୍ରୀ ନୀଳକଣ୍ଠ ଦାସ : ସେ ଦିନ ମୋର ଜଣେ ବନ୍ଧୁଙ୍କୁ "ବିଶ୍ୱାସଘାତକ" ବୋଲି ଅନ୍ୟ ପକ୍ଷର ଜଣେ ବନ୍ଧୁ କହିଥିଲେ ତାହାର ଉତ୍ତର ଦେବାକୁ ଯାଉଥିବା ବେଳେ ଆପଣ ଅନ୍ୟ ଦିନେ ସମୟ ଦେବେ ବୋଲି କହିଥିଲେ ।

The Hon'ble SPEAKER : ହଉ ସେ ବିଷୟ ପାଇଁ 5 ମିନିଟ ସମୟ ଦେଲି, ତା'ରି ଭିତରେ ଶେଷ କରନ୍ତୁ ।

ଶ୍ରୀ ନୀଳକଣ୍ଠ ଦାସ : ବାଚସ୍ପତି ମହାଶୟ, ଏହି 5/6 ବର୍ଷ ଭିତରେ ବା ପୂର୍ବରୁ ଆମର ରାଜନୀତିରେ ଯେଉଁ ଆବିଳ ବାୟୁମଣ୍ଡଳ ସୃଷ୍ଟି ହୋଇଥିଲା ଏବଂ ଯେଉଁ ଆବିଳ ଆବେଷ୍ଟନୀ ପୂରି ରହିଥିଲା, ସେ ବାୟୁମଣ୍ଡଳ ଭିତରେ ସତଟା ଲୁଚି ରହିଥିଲା, ତେଣୁ ଆର ପକ୍ଷର ଯେ ଏ ବିଷୟରେ ସତକୁ ମିଛ ଓ ମିଛକୁ ସତ ଚିତ୍ରଣ କରି ରାଜନୈତିକ ସୁବିଧା ହାସଲ କରିବାକୁ ଯାଉଛନ୍ତି ଏବଂ ପ୍ରକୃତରେ ଏହି ଅପପ୍ରଚାର କରି କେତେକ କଂଗ୍ରେସ ଲୋକ ଦଳର ଅନ୍ୟମାନଙ୍କୁ ଚପାଇ, ଏପରି କି କୁଚକ୍ରାନ୍ତ କରି ଅନ୍ୟମାନଙ୍କୁ ବାହାର କରି ଦେଇ ନେତା ସାଜିଛନ୍ତି, ଏସବୁ ପରିଷ୍କାର କରି ଦେବା ସକାଶେ ଏ ଭ୍ରାନ୍ତ ଧାରଣା ଦୂର କରିବା ସକାଶେ ମୁଁ କିଛି କହିବି । ଅବଶ୍ୟ ବାଚସ୍ପତି ମହାଶୟ, ମୋତେ ଯେ ବିଶ୍ୱାସ-ଘାତକ ବୋଲି କୁହାଯାଉଛି ଏହା କେତେ ଦୂର ଏହି କଟୂକ୍ତିର ପାତ୍ର ଏଟା ଆପଣ ବିଚାର କରିବେ, କିନ୍ତୁ ସେ ବିଚାର କରିବା ପୂର୍ବରୁ ଆପଣଙ୍କୁ ବୁଝିବାକୁ ହେବ ଯେ ଆମ୍ଭେମାନେ ସମସ୍ତେ ସେତେବେଳେ 1935ର ଭାରତ ଶାସନ ଭିତରେ ରହି ଇଂରେଜମାନଙ୍କର ଦାସତ୍ୱ କରୁଥିଲେ । ବର୍ତ୍ତମାନ ଯେଉଁ ପୂର୍ଣ୍ଣ ସ୍ୱାଧୀନତା ପାଇଛୁ ସେତେବେଳେ ସେପରି ସ୍ୱାଧୀନତା ପାଇ ନଥିଲୁ । କେବଳ କେତେକ ସ୍ୱାୟତ୍ତ ଶାସନ ହାତକୁ ନେବା ପାଇଁ ଚେଷ୍ଟା କରିଥିଲୁ । ସେତେବେଳେ ଆମେ କଅଣ କରୁଥିଲୁ । ସେ କଥା ବିଚାର କରିବା ଉଚିତ୍ ନୁହେଁ । କାରଣ ସେତେବେଳେ ଥିଲା ବ୍ରିଟିଶ ଶାସନ, ଆଉ ଆମେ ଥିଲୁ ଗୋଲାମ, ଦାସତ୍ୱ କରୁଥିଲୁ । କିନ୍ତୁ ବାଚସ୍ପତି ମହାଶୟ, ଏହି ସୀମା ଭିତରେ ରହି, ଏହି ଦାସତ୍ୱ ଶୃଙ୍ଖଳା ଭିତରେ ରହି, ବାହାରେ ରହି, ଆମ୍ଭେମାନେ ଯାହା କରିଛୁ, ଏମାନେ ସ୍ୱାଧୀନତା ପାଇବାର ଏତେ ସମୟ ବିତିଗଲେ ମଧ୍ୟ ଏମାନେ ତାହା କରି ପାରି ନାହାନ୍ତି ଏବଂ କରି ପାରିବେ କି ନାହିଁ ସେଥିରେ ମୋର ଘୋର ସନ୍ଦେହ । ମୁଁ ପରିଷ୍କାର ଭାବରେ କହି ଦେବାକୁ ଚାହେଁ ଯେ ଆମେ ସେତେବେଳେ ଭିତରେ ପଶି ଲଢେଇ କରୁଥିଲୁ, ବାହାରେ ରହିବି ଲଢେଇ କରୁଥିଲୁ । ଯଦିଓ ଆମେ ସମସ୍ତେ ସେତେବେଳେ ଇଂରେଜର ଗୋଲାମ ଥିଲୁ । ତେଣୁ "ବିଶ୍ୱାସଘାତକ" ବୋଲି ଯେଉଁ କଟୂକ୍ତି କରାଯାଉଛି, ଆମେ ସେ କଟୂକ୍ତି ପାଇବାର କେତେ ଦୂର ସମୀଚୀନ ତାହା ଇତିହାସ କହିବ । ଆଉ ସେ ଇତିହାସ କହିବ, ଆମେ ଇଂରେଜର ଦାସତ୍ୱ ଶୃଙ୍ଖଳାରେ ରହି, ପିଞ୍ଜରାରେ ରହି, କଅଣ କରିଛୁ

ଆଉ ଏମାନେ ବିହାୟସର ଉନ୍ମୁକ୍ତ ବିହଙ୍ଗମ ହୋଇ କଅଣ କରିଛନ୍ତି ? ବାଚସ୍ପତି ମହାଶୟ କିପରି ଅବସ୍ଥାରେ ପଡ଼ି ସେତେବେଳେକାର ନେତାମାନଙ୍କୁ ମନ୍ତ୍ରୀତ୍ୱ ନେବାକୁ ପଡିଥିଲା ଓ ସେତେବେଳେ ଦେଶର ଅବସ୍ଥା କଅଣ ଥିଲା ଅନ୍ତତଃ ତା'ର 3/4 ବର୍ଷ ପୂର୍ବରୁ ଦେଶର ଅବସ୍ଥା କଅଣ ଥିଲା ଓ କଂଗ୍ରେସ ମନ୍ତ୍ରୀତ୍ୱରୁ ଇସ୍ତଫା ଦେଲା ପର ଦେଶରେ କି ଅବସ୍ଥା ଉପୁଜିଲା ଯାହା ଫଳରେ ଏହି ନେତାମାନେ ମନ୍ତ୍ରୀତ୍ୱ ନେଲେ ଏସବୁ ଠିକେ ଠିକେ କହିବି । 1936-37 ସାଲର କଥା, ସେତେବେଳେ Parliamentary Boardରେ ଆମେ 20 ଜଣ ସଭ୍ୟ ଥିଲୁ; ଓ ସେଥିରେ ସଭାପତି ଥିଲେ ସ୍ୱର୍ଗୀୟ ବଲ୍ଲଭଭାଇ ପଟେଲ ସେତେବେଳେ ଆମ୍ଭେମାନେ ବିଶ୍ୱାସ କରି ପାରି ନଥିଲୁ ଯେ କଂଗ୍ରେସ ଏତେ ସଂଖ୍ୟାରେ ଭୋଟ ପାଇ ଆସିବ । ଆଉ ଏଇ ବିଶ୍ୱାସ କରୁ ନଥିବା ଲୋକମାନଙ୍କ ମଧ୍ୟରେ ଥିଲେ ପଣ୍ଡିତ ଜବାହାରଲାଲ ନେହେରୁ । ସେତିକିବେଳେ ପୁଣି ଏକ ଉତ୍ତର ପ୍ରଦେଶରେ ପହିଲେ ବାହାରିଲା, ନିର୍ବାଚନ ପାଇଁ ମୁସ୍‌ଲିମ୍ ଲିଗ । ଏଇ ମୁସଲିମ୍ ଲିଗ୍‌କୁ କଂଗ୍ରେସ ଭାବ ଭାବିତ କରି ପରେ ଏଇ ଲିଗ ମେମ୍ବରଙ୍କ ସଙ୍ଗେ କଂଗ୍ରେସ ମେମ୍ବରଙ୍କୁ ମିଳାଇ କୋଆଲିସନ୍ କରିବା ପାଇଁ ଜବାହାରଲାଲ ଆମ ପାର୍ଲିଅମେଣ୍ଟାରୀ ବୋର୍ଡର ମେମ୍ବର ସୁବକ୍ତା ଖଲିକ୍ ଉଜ୍‌ଜମାନଙ୍କୁ ବରଗି ଦେଲେ । ସେ ଯାଇ ଲିଗ୍‌ର ନେତା ହୋଇ ଲିଗ୍ ପକ୍ଷରୁ ସବୁ ପ୍ରାର୍ଥୀଙ୍କୁ ନିର୍ବାଚିତ କରାଇ ଦେଲେ । ଏଣେ ଓଡ଼ିଶା ପରେ ପରେ ପ୍ରଦେଶମାନଙ୍କରେ ଏକ କଂଗ୍ରେସର ମେରିରିଟି ହେଲା । ତା ଦେଖି, ଜବାହାରଲାଲ ଆଉ ଲିଗକୁ ସଙ୍ଗେ ନ ନେଇ ଯାହା କଲେ, ତାଙ୍କୁ ରାଜନୀତିରେ କୁହାଯାଏ, 'ବିଶ୍ୱାସଘାତକତା', ସେଥିରେଇ ଫଳରେ ପାକିସ୍ଥାନ ।

The Hon'ble SPEAKER : ମାନ୍ୟବର ସଭ୍ୟ ଯେଉଁ ସବୁ କଥା କହୁଛନ୍ତି ମୋର ମନେ ହେଉଛି ଯେପରି ସେଗୁଡ଼ିକ ଅପ୍ରାସଙ୍ଗିକ ହେଉଛି । "ବିଶ୍ୱାସଘାତକତା" ଉପରେ ଯାହା କହିବାର କୁହନ୍ତୁ ।

ଶ୍ରୀ ନୀଳକଣ୍ଠ ଦାସ : ବାଚସ୍ପତି ମହାଶୟ, ଟିକିଏ ଆଗରୁ ନ କହିଲେ ଘଟଣା-ଗୁଡ଼ିକର ପୂର୍ବାପର ସଂଗତି ରହିବ ନାହିଁ । ସେ ଯାହା ହେଉ, ଅତି ସୂକ୍ଷ୍ମରେ କହି ଯାଉଛି । 1937 ମସିହା ଭୋଟରେ କଂଗ୍ରେସ ଅଧିକାଂଶ ପ୍ରଦେଶରେ ବହୁ ସଂଖ୍ୟାରେ ଭୋଟ ପାଇ ଆସିଲା । ଲାଟମାନେ ତାଙ୍କର discretionary powers ବ୍ୟବହାର କରି ପାରିବେ ନାହିଁ । ଏହି Assurance ତତ୍‌କାଳୀନ ବଡ଼ଲାଟଙ୍କ ଠାରୁ ପାଇଲାରୁ ପ୍ରଦେଶମାନଙ୍କରେ କଂଗ୍ରେସ Party ମନ୍ତ୍ରୀପଦ ନେଲେ । ଖଲିକ୍‌ଉଜ୍‌ମାନଙ୍କ ସଙ୍ଗେ ଜିନ୍ନା କ୍ରମେ ମିଶି ପାକିସ୍ଥାନ ଗଢ଼ି ଭାରତ ଭାଙ୍ଗିବାରେ ଲାଗିଲେ । କିନ୍ତୁ ସ୍ୱାଧୀନତା ନ ପାଇଲେ ଇଂରେଜ-ମାନଙ୍କୁ ସାହାଯ୍ୟ କରିବେ ନାହିଁ ବୋଲି କଂଗ୍ରେସ ପକ୍ଷ 1939ରେ ମନ୍ତ୍ରୀ ଗାଦି ଛାଡ଼ିଲେ । କଂଗ୍ରେସ ଗାଦି ଛାଡ଼ିବାର କେତେକ ଦିନ ପରେ ବମ୍ବେରେ Quit India Resolution Pass ହେଲା ପରେ ଦେଶରେ ଯିଏ ଯେଉଁଠି କଂଗ୍ରେସ ନେତାଏ ଥିଲେ ସମସ୍ତେ ଇଚ୍ଛାକରି

arrest ହୋଇଗଲେ । ଏତିକି ବେଳକୁ ଜିନ୍ନାଙ୍କ ନେତୃତ୍ୱରେ ମୁସଲିମ୍ ଲିଗଙ୍କ ପ୍ରସିଦ୍ଧ 'ଲାହୋର ପ୍ରସ୍ତାବ' 1940 ମାର୍ଚ୍ଚରେ ପ୍ରକାଶ ପାଇଲା—ପ୍ରସ୍ତାବ ହେଉଛି—'ଭାରତ ଦ୍ୱି' ଭାଗ କର । ହିନ୍ଦୁ ଭାରତ ହିନ୍ଦୁଙ୍କୁ ଛାଡ଼; ମୁସଲିମ ଭାରତ ବା ପାକିସ୍ଥାନ ମୁସଲମାନଙ୍କୁ ଛାଡ଼ Quit India ର ଶେଷକୁ ଏଇ ହେଲା ଫଳ ଓ ପରିଣାମ । ଜବାହରଲାଲଙ୍କ ମୁସଲମାନଙ୍କ ପ୍ରତି ରାଜନୀତିକ ବ୍ୟବହାର, ଆମକୁ ତଥା ସୁଭାଷ ଓ ସୁଭାଷ ପନ୍ଥୀଙ୍କୁ କେତେ ସନ୍ତୋଷ ଦେଇ ନ ଥିଲା । ଏବେ ସୁଭାଷ ଡାକି ପଠାଇଲେ—ଆମକୁ—ମୁଁ, ଗୋଦାବରୀଶ ମିଶ୍ରେ ଓ ଯଦୁମଣି ମଙ୍ଗରାଜଙ୍କୁ, ଆମେ କଲିକତା ଗଲୁ । ସେ କହିଲେ, ଲିଗ୍ ମୁସଲମାନଙ୍କ ସଙ୍ଗେ କୋଆଲିସନ ସରକାର ଛଡ଼ା ଗତି ନାହିଁ । ସେ ଏହା ଆସାମରେ ବରଦୋଲଇ—ସା'ଦୁଲ୍ଲା ସରକାର ଗଢ଼ିବାରେ କରି ଆସିଥିଲେ; ବଙ୍ଗରେ ଫଜଲୁଲ ହକ—ଶରତ ବୋଷଙ୍କୁ ଧରି ଶୀଘ୍ର ଗଢ଼ିବାର ଠିକ୍ କରିଛନ୍ତି । ଓଡ଼ିଶାରେ ଆମେ ତା କରିବୁ ଓ ସେ ନିଜେ ଯାଇ ବିହାରରେ କରିବେ । ମତାନ୍ଧ କଂଗ୍ରେସୀମାନେ ଏଥିରେ ଆମକୁ ଦେଶ-ଦ୍ରୋହୀ ବୋଲି କହିବେ । ସେଥିପାଇଁ ସବୁ ବାମପନ୍ଥୀଙ୍କୁ ଧରି ସମାନ୍ତରାଳ ସରକାର ଗଢ଼ିବାପାଇଁ ରହିବେ 'ଫରଓ୍ୱାର୍ଡ ବ୍ଲକ୍' । ସେଇ ଦିନ ସେଇଠାରେ—ସେଇ 38/2 ଏଲଗିନ୍ ରୋଡ଼ରେ—ସୁଭାଷ କହିଲେ, "ତେବେ ଗୋଦାବରୀଶ ବାବୁ ଓ ଯଦୁମଣି ଯାଆନ୍ତୁ ଓଡ଼ିଶା ଲିଗ୍‌କୁ ଧରି କୋଆଲିସନ୍ ମନ୍ତ୍ରୀମଣ୍ଡଳ ଗଢ଼ିବେ । ନୀଳକଣ୍ଠବାବୁ, ନିଖିଳ ଭାରତ ଫରଓ୍ୱାର୍ଡ ବ୍ଲକ୍‌କୁ ଯାଆନ୍ତୁ" । ଗୋଦାବରୀଶ ଓ ଯଦୁମଣି ସେଥିରେ ଜମା ମଙ୍ଗିଲେ ନାଇ, କହିଲେ ମୁଁ ନ ରହିଲେ ସେ ଦୁହେଁ ମନ୍ତ୍ରୀମଣ୍ଡଳ ଗଢ଼ି ପାରିବେ ନାଇ । ସେଠୁ ଦିବାକରଙ୍କୁ ଟେଲିଗ୍ରାମ ହେଲା । ତହିଁ ପର ଦିନ ସଂଧ୍ୟାକୁ ସେ ପହଞ୍ଚିଲେ । ସେ ଗଲେ ନଖିଳ ଭାରତ ଫରଓ୍ୱାର୍ଡ ବ୍ଲକ୍‌କୁ । ସେଥିରେ ସେ ଏବେ ଅଛନ୍ତି । ଆମେ ତିନିହେଁ ଆସି ଓଡ଼ିଶା ମୁସଲିମ୍ ଲିଗ ସେକ୍ରେଟରୀ ସୋଭାନ୍ ଖାଁକୁ ଧରି ମନ୍ତ୍ରୀମଣ୍ଡଳ ଗଢ଼ିଲୁଁ । ନିଖିଳ ଭାରତ ଫରଓ୍ୱାର୍ଡ୍ ବ୍ଲକ୍ ନାଗପୁର ଅଧିବେଶନରେ ଆମ ମିଳିତ ମନ୍ତ୍ରୀମଣ୍ଡଳକୁ ଅଭିବାଦନ ଜଣାଇଥିଲେ । ସେତେବେଳର ଭାରତ ସରକାରଙ୍କ ପ୍ରଚାର ବିଭାଗ ଅଧ୍ୟକ୍ଷ ଚସ୍‌ବ୍ରୁକ୍ ଉଇଲିୟମସ୍ ଏ ବିଷୟଟିକୁ ହିନ୍ଦୁ ମୁସଲମାନ ସମସ୍ୟା ସମାଧାନର ବାଟ ବୋଲି କହି ପ୍ରଶଂସା କରି ପ୍ରଚାର କରିଦେଲେ । ହୁଏତ ଏହାର ଫଳରେ, ଶରତ ବୋଷ କୋଡ଼ାଇ କାନାଲରେ ବନ୍ଦୀହେଲେ ଓ କିଛି ଦିନ ପରେ ସୁଭାଷ ଅନ୍ତର୍ଦ୍ଧ୍ୟାନ ହେଲେ—କ'ଣ ପାଇଁ କିଏ କହିବ ? ଏହାପରେ ମୁଁ ଦେଖିଲି ଆଉ ମତାନ୍ଧ କଂଗ୍ରେସକୁ ବଞ୍ଚିବା ଧ୍ୱଂସି ହେବ ନାହିଁ । ଏ କଂଗ୍ରେସୀଏ ଭାରତକୁ ଦୁଇ ଭାଗ ନ କରି ଛାଡ଼ିବେ ନାଇ । ତେଣୁ ମୁଁ ମିଳିତ ମନ୍ତ୍ରୀମଣ୍ଡଳ ଭାଙ୍ଗି ଦେବାକୁ ବାହାରିଲି । ଗୋଦାବରୀଶ କିନ୍ତୁ ମାନିଲେ ନାଇ । ସେଥିପାଇଁ ଆମର ମତଭେଦ ହେଲା । ସେ ବିଶ୍ୱବିଦ୍ୟାଳୟ କଲେ, ମେଡ଼ିକାଲ କଲେଜ କଲେ, ହାଇକୋର୍ଟ କରିବାର ମୂଳଦୁଆ ପକାଇଲେ । ମତେ ଏ ସବୁ ସେତେ-ବେଳେ ଅବସ୍ଥା ସଂଭାଳିବାର ବ୍ୟବସ୍ଥା ପରି ଲାଗିଲା ନାଇ । ମୁଁ ପ୍ରାଣପଣେ ଚେଷ୍ଟା କରି ସେ ମନ୍ତ୍ରୀମଣ୍ଡଳଟି ଭାଙ୍ଗି ଦେଲି । ଓଡ଼ିଶାରେ ଏହା ଅବିଦିତ ନୁହେଁ ।

ଗୋଦାବରୀଶ ପ୍ରଭୃତି କହିଲେ ଆମେ University ପ୍ରଭୃତି କରିବୁ, ଆମେ ଲୋକଙ୍କର କାମ କରିବୁ, ଆମେ High Court କରିବୁ, ଆମେ Medical College କରିବୁ, ମୁଁ କହିଲି ଏସବୁ କର ନାହିଁ । ଏଥିପାଇଁ ଆମ ଦୁହିଁଙ୍କର ମତଭେଦ ହେଲା । ଲାଗି ଲାଗି ବର୍ଷେ କାଳ ପରେ ମନ୍ତ୍ରୀମଣ୍ଡଳ ଭାଙ୍ଗିଲା, ଏହା ହେଉଛି ମୋର ବିଶ୍ୱାସ-ଘାତକତା, ଆମେ ସବୁ କରିଛୁ । ଆମର ଦିକ୍ଷା କଂଗ୍ରେସ ଏହାବୋଲି କଣ ଯାହା କିଛି ଗୋଟିଏ ହେଲେ ଆମେ କଂଗ୍ରେସ ବୋଲି କୁଣ୍ଢାଇ ଧରିବୁ କଂଗ୍ରେସ ନାଁ ଗାଇ ବୁଲିବୁ ? ଆପଣ ଯଦି ଏହାକୁ ବିଶ୍ୱାସଘାତକତା ବୋଲି କହିବେ, କହିପାରନ୍ତି । ମୁଁ ଯାହା କରିଥିଲି ତାହା ଆତ୍ମଲାଭ ବା ନିଜର ଲାଭ ପାଇଁ କରି ନ ଥିଲି ବା ମନ୍ତ୍ରୀ ହେବା-ପାଇଁ କରି ନ ଥିଲି ; ଅତଏବ ମୋର ଯାହା କହିବାର ଥିଲା ମୁଁ କହି ଦେଲି ମୁଁ ଏକଥା କହି ନ ଥାନ୍ତି ଯେଉଁମାନେ ମୋତେ ଭୁଲ ବୁଝିଛନ୍ତି ଓ ଯେଉଁମାନେ ମୋତେ ଗାଳି ଦିଅନ୍ତି ସେମାନେ ଅନ୍ତତଃ ଜାଣି ରଖନ୍ତୁ ମୋର ଏହି କୈଫିୟତ ।

ବର୍ତ୍ତମାନ ମୁଁ ବିଲର 3rd reading ଉପରେ ଯାହା କହିବାର କଥା କହୁଛି । ଗୋଟିଏ କଥା ମୁଖ୍ୟମନ୍ତ୍ରୀ କହିଗଲେ ଯେ ଆମର ଯେତେ ମନ୍ତ୍ରୀ ଦରକାର ଆମେ ବର୍ତ୍ତମାନ କରି ଦେଲୁ, ଇଂଲଣ୍ଡରେ ଏପରି ହୁଏ, ଆମେରିକାରେ ଏପରି ହୁଏ ନାହିଁ, ଆମେ ଇଂଲଣ୍ଡକୁ ଅନୁକରଣ କରୁଛୁ । ମୁଁ ଗୋଟିଏ କଥା ତାଙ୍କୁ କହୁଛି ଆମେ କାହିଁକି ଇଂଲଣ୍ଡକୁ ଅନୁକରଣ କରିବା । ଏତେ ଦିନ ଆମେ ପଞ୍ଜୁରୀ ଭିତରେ ଶୁଆ ଭଳିଥିଲୁ, ଆମେ ଯେତେବେଳେ ପିଞ୍ଜରା ଭିତରୁ ବାହାରିଲୁଣି ଆମେ ଅନ୍ତତଃ ଖଣ୍ଡି ଉଡା ଦେବାର କଥା । ତାହାହେଲେ ଆମେ ପିଞ୍ଜରା ଭିତରୁ ବାହାରି କିମିତି ଉଡିବୁ ସମସ୍ତେ ଆମକୁ ଚାହିଁବେ । ଆମେ କଣ ସବୁ ବେଳେ ପିଞ୍ଜରା ଭିତରେ ଶୁଆ ପରି ଥିବା ? ମୁଁ ଆଉ ଥର କହିଥିଲି, ଆମେ ସ୍ୱାଧୀନ କାହିଁକି ହେଲୁ ? ସ୍ୱାଧୀନ ହୋଇ ପୃଥିବୀକୁ ଆମେ କଣ ଦେଖାଇବୁ ଏକଥା ଯଦି ଆମେ ବିଚାରିବା ତେବେ ଆମେ ସ୍ୱାଧୀନ ହୋଇ କି ଲାଭ । ଯଦି ଆମେ ଏ ପର୍ଯ୍ୟନ୍ତ କିଛି କରିନାହୁଁ ବର୍ତ୍ତମାନ କରିବା । ଇଂଲଣ୍ଡରେ ଏପରି କଣ ହୁଏ ? ଇଂଲଣ୍ଡରେ ପରା ଡାଲଟନଙ୍କ ବିରୁଦ୍ଧରେ ଟିକିଏ କଣ କଥା ହେଲା ଯେ ସେ ସୁନାରେ ସିଗାରେଟ କେଶ ନେଇଥିଲେ ବୋଲି ସଙ୍ଗେ ସଙ୍ଗେ ସେ Court ଆଗରେ ଛିଡ଼ା ହୋଇଗଲେ । ସେହି ଇଂଲଣ୍ଡକୁ ୧୨୧୬ ଖ୍ରୀଷ୍ଟାବ୍ଦରୁ ଆଜି ପର୍ଯ୍ୟନ୍ତ ସେମାନେ କେତେ ଗୁରୁତର ଅବସ୍ଥା ଦେଇ କେତେ ଖରାପ ଅବସ୍ଥା ଅତିକ୍ରମକରି ଆଜି ପୃଥିବୀ ଆଗରେ ଛିଡା କରାଇଛନ୍ତି । ମୁଖ୍ୟମନ୍ତ୍ରୀ ଏକାବେଳକେ ସେହି ଇଂଲଣ୍ଡ କଥା କହୁଛନ୍ତି ଯାହାର ଅର୍ଥ କିଛି ହେଉ ନାହିଁ । ଏ ଗୋଟିଏ ଯେମିତି ଆମେ ରାମ ରାଜ୍ୟ କରୁଥିଲୁ, ରାମ ରାଜ୍ୟ ବୋଇଲେ କେହି କେହି ଭାବନ୍ତି ଯେ ଶୁଦ୍ର ମୁନି ତପସ୍ୟା କରୁଥିଲେ, ସେ କାହିଁକି ତପସ୍ୟା କଲେ ତାଙ୍କ ମୁଣ୍ଡ କଟା ହେବ । ସେହି ଭାବରେ ଯେଉଁମାନେ ରାମରାଜ୍ୟ କରିବାକୁ ଭାବନ୍ତି କରିପାରନ୍ତି । କିନ୍ତୁ ରାମ ରାଜ୍ୟ ବୋଇଲେ ସାମାନ୍ୟ ରଜକ କଥାରେ, ପ୍ରଜାମାନଙ୍କୁ ଖୁସି କରାଇବା

ପାଇଁ ରାମ ମାଇପକୁ ଛାଡି ଦେଲେ, ଏଇଟା ସିନା ରାମ ରାଜ୍ୟ । ଚନ୍ଦ୍ର ମୁଖ ବୋଇଲେ ମୁହଁଟା ଚକୁଳି ପରି ନୁହେଁ । ମୁହଁରେ ଆଖି ଅଛି, ନାକ ଅଛି, ଚନ୍ଦ୍ର ମୁଖ ବୋଇଲେ, ଚନ୍ଦ ପରି ମୁଖ, ତା ଅର୍ଥ ନୁହେଁ ଚନ୍ଦ୍ର ଯେପରି ଗୋଲ ମୁହଁଟା ସେପରି ଗୋଲ ହେଲେ ତାକୁ ଚନ୍ଦ୍ର ମୁଖ କୁହାଯିବ । ଚନ୍ଦ୍ରକୁ ଦେଖିଲେ ଯେପରି ମନରେ ଆହ୍ଲାଦ ଜନ୍ମେ ସେହିପରି ଯେଉଁ ନାରୀର ମଖକୁ ଦେଖିଲେ ମନରେ ଆହ୍ଲାଦ ଜନ୍ମେ ସେ ହେଉଛି ଚନ୍ଦ୍ର ମୁଖ । ସେହିପରି ରାମରାଜ୍ୟ ବୋଇଲେ ଯେଉଁ ରାଜ୍ୟରେ ଇତର ଲୋକ କଥାରେ ମଧ୍ୟ ମାଇପକୁ ଛାଡି ଦିଆଯାଏ, ସେ ହେଉଛି ରାମ ରାଜ୍ୟ । ସେହିପରି ଯେଉଁ ଦେଶର ସାମାନ୍ୟ ସିଗାରେଟ କେଶ ପାଇଁ ଏଡେ ବଡ ପଦ ଜଣେ ଛାଡି ଦେଲେ ସେହି ଇଂଲଣ୍ଡର ଉପଲକ୍ଷ୍ୟ ଦେଇ ଯେତେବେଳେ ସେ କହୁଛନ୍ତି ମୁଁ ତାଙ୍କୁ ପଗ୍ରରେ ଏମତି ଅନୁକରଣ କଲେ ଏମାନେ ମରିବେ ନାଁ ବଞ୍ଚିବେ ? ତେବେ ଏ ଅନକରଣ ଅର୍ଥ କ'ଣ ? ଇଂଲଣ୍ଡ କଥା ଆମେରିକା କଥା ଏଠାରେ କହିବା ଦରକାର କଣ ?

ତା'ପରେ କେତେଗୁଡ଼ିଏ ନୀତି ବୟାନ କରାଯାଇଛି, ଆମେ କେବଳ ନବବାବୁଙ୍କୁ ପଗ୍ରୁଛୁ ସେ ଆନ୍ତରିକତା ସହ କହନ୍ତୁ ଏତେଗୁଡ଼ିଏ ମନ୍ତ୍ରୀ ନେବା କଣ ତାଙ୍କର ଦରକାର ଥିଲା? ତାପରେ ସେ କହୁଛନ୍ତି ଇଂଲଣ୍ଡ ଯାହା କରୁଛନ୍ତି, ଆମେରିକା ଯାହା କରୁଛନ୍ତି, ଅନ୍ୟାନ ଦେଶ ଯାହା କରୁଛନ୍ତି ଆମେ ତାକୁହିଁ ଅନୁକରଣ କରୁଛୁ, ମୁଁ କାଲି ଅନ୍ୟ ସଂପର୍କରେ କହିଥିଲି ଭାରତର ପ୍ରତିଷ୍ଠା ହେଉଛି ଦୁଇଟି ଦୃଷ୍ଟି କୋଣରୁ—ଗୋଟିଏ ହେଉଛି ଅଧିକାର,ଅନ୍ୟଟି ହେଉଛି କର୍ତ୍ତବ୍ୟ । ଇଂଲଣ୍ଡରେ ସେ ଅଧିକାର ଅଛି । ଆମେ ଯେତେବେଳେ ଗୋଟିଏ କାମ କରୁଛୁ ସେହି କାମ କରିବାପାଇଁ ଆମର ଗୋଟିଏ ଅଧିକାର ରହିଛି । ଆମେ ଯଦି କେତେବେଳେ ଭୁଲ କରୁ ବା ଆମ କାମ ସଂପର୍କରେ କେହି ଯଦି କିଛି remark କରେ । ଇଂଲଣ୍ଡରେ ଯେତେବେଳେ Charles II ଭୁଲ କାମ କରି ଧରା ପଡ଼ିଲେ ସେମାନେ ସମସ୍ତେ ପରାମର୍ଶ କରି ଗୋଟିଏ ଦରଖାସ୍ତ କଲେ କିନ୍ତୁ ଦରଖାସ୍ତରେ କିଏ ପ୍ରଥମେ ଦସ୍ତଖତ କରିବ ଏହା ନେଇ କରି ସେମାନଙ୍କର ଚିନ୍ତା ପଡ଼ିଲା କାରଣ ସେତେବେଳେ ସେମାନେ ଦରଖାସ୍ତରେ ଦସ୍ତଖତ କରିବାପାଇଁ ମଧ୍ୟ ଡ଼ରୁଥିଲେ । ଏହିପରି ଅବସ୍ଥାରେ ସେମାନେ ଅଧିକାର ଛଡ଼ାଇ ଆଣି ଥିଲେ ଯାହା ଫଳରେ କି ୪00 ବର୍ଷର ସମ୍ପର୍କ ଛିଡ଼ିଗଲା । କିନ୍ତୁ ଆମେ ଅଧିକାର ଛଡ଼ାଇ ଆଣିବା କଥା ଜାଣି ନଥିଲୁ । ଆମର ହେଉଛି କର୍ତ୍ତବ୍ୟ । ମୁଖ୍ୟମନ୍ତ୍ରୀ ମୋତେ କହନ୍ତୁ ଆଜି ସେ ନୂଆ ହୋଇ କରି ଗୋଟିଏ Constitution ଧରି ସେହି ଅନୁସାରେ ସବୁ କରୁଛନ୍ତି,ସେହି ଅନସାରେ ଗୋଟିଏ ମନ୍ତ୍ରୀମଣ୍ଡଳ ଗଢୁଛନ୍ତି, ସେ 17 ଜଣ ମନ୍ତ୍ରୀ ନିଅନ୍ତୁ ବା ୪7 ଜଣ ମନ୍ତ୍ରୀ ନିଅନ୍ତୁ ଯାହା ଦରକାର ହେଲା ସେଥିରେ ଆମେ କେବେ ଆପତ୍ତି କରିବୁ ନାହିଁ । କିନ୍ତୁ ସେ ଆମକୁ ଟିକିଏ ବୁଝାଇବାପାଇଁ ନାରାଜ କାହିଁକି ? ଆମେ ମଧ୍ୟ କହୁଛୁ ସେ 750 ଟଙ୍କା ନିଅନ୍ତୁ ଯଦି ସେଇତକ ତାଙ୍କୁ ଅଣ୍ଟୁ

ନାହିଁ, ସେମାନେ ଯଦି ସେଥିରେ ଚଳି ପାରୁ ନାହାନ୍ତି, ତାଙ୍କ ମଟରକୁ ଅଣ୍ଟୁ ନାହିଁ, ତାଙ୍କ ଘରକୁ ଅଣ୍ଟୁ ନାହିଁ,ସେମାନେ ବେଶୀ ନିଅନ୍ତୁ, ସେଇତକ ଆମକୁ ଟିକିଏ ବୁଝାଇ ଦେଲେ ହୁଅନ୍ତା । ତୁମେ ଯେ ସେମାନଙ୍କୁ ନିଯୁକ୍ତ କରୁଛ, ସେମାନଙ୍କୁ କର୍ତ୍ତବ୍ୟ କଣ ଦେଇଛ ? ମୁଁ ଯାହା କହିଥିଲି କାମ କରି ନ ପାରିଲେ ଛାଡ଼ି ଦେବା, ଏଇଟା ହେଉଛି ଭାରତର ସଂସ୍କୃତି । ତା ନ ହୋଇ ମନ୍ତ୍ରୀ ହୋଇ ବସିଗଲେ, 5 ବର୍ଷ ପାଇଁ, ଅଧିକାର ମିଳିଗଲା । ଭୁଲ କର ବା ଭଲ କର ଦଳକୁ ଧରି ପାରିଲେ ଦଳ ତୁମକୁ ଘଣ୍ଟ ଘୋଡ଼ାଇ ରକ୍ଷା କରିବ; ଏଇଟା କଣ ଭାରତୀୟ ସଭ୍ୟତା ଉପରେ ପ୍ରତିଷ୍ଠିତ ହେଲା ? ହଁ ଅନ୍ୟମାନେ କରୁଛନ୍ତି ଆମେ ତାକୁ ଅନୁକରଣ କରୁଛୁ କିନ୍ତୁ ଆମେ ବିଗ୍ଭର କରିବା ଆମର ଓ ଅନ୍ୟମାନଙ୍କର କର୍ତ୍ତବ୍ୟ କଣ ? ଧରନ୍ତୁ Village Panchayat ଆପଣ କରୁଛନ୍ତି, ସବୁଠାରେ ମାମଲତକାର ତିଆରି କରୁଛନ୍ତି । ସେହି Village Panchayat ପାଇଁ ଯେ ମନ୍ତ୍ରୀ ରହିବେ ସେ ବରାବର ବୁଲିଲେ । ତାଙ୍କ ଗସ୍ତ ଖର୍ଚ୍ଚ ପାଇଁ ମୁଁ ଆପତ୍ତି କରୁନାହିଁ । ସେ ମାସକୁ 2,500 ଟଙ୍କା ନେଲେ ବି ମୋର ଆପତ୍ତି ନାହିଁ; କିନ୍ତୁ ଫଳରେ କାମ ହେବ ଯେ ବର୍ଷକରେ ଅନ୍ତତଃ 10ଟି ବା 20ଟି Village Panchayatର balanced Budget ନ ହେଲେ ସେ ଗ୍ଭଲି ଯିବେ । ମୁଖ୍ୟମନ୍ତ୍ରୀ ଓ ଅନ୍ୟ ମନ୍ତ୍ରୀମାନେ ଯେଉଁ କାମପାଇଁ ରହିବେ ସେ କାମ ନ କରି ପାରିଲେ ସେମାନେ ମନ୍ତ୍ରୀରୁ ଗ୍ଭଲିଯିବେ, ଅନ୍ୟ ଲୋକ ଆସି ମନ୍ତ୍ରୀ ହେବେ । କେହି ତ କୋଳି ଖାଇ ମଞ୍ଜି ପୋତି ନାହିଁ ଯେ ସବୁବେଳେ ମନ୍ତ୍ରୀ ହେଉଥିବ ? ଏହା ଉପରେ ବର୍ତ୍ତମାନ ଅଧିକ ସଂଖ୍ୟାରେ ମନ୍ତ୍ରୀ ରଖିବାକୁ ଯାଉଛନ୍ତି ସେମାନେ କି କାମ କରିବେ, ସେମାନଙ୍କୁ କି କର୍ତ୍ତବ୍ୟ ତୁମେ ଦେଇଛ, ଆମକୁ କହିଦିଅ । କାହିଁକି କଲ, ସେମାନଙ୍କୁ କଣ ଦେବ ଏ କଥା ଆମକୁ ଟିକିଏ ବୁଝାଇ ଦିଅ । ଆମକୁ ଏଠାରେ କହିଲେ The Deputy Ministers will generally assist the Hon'ble Ministers in the exercise of their functions and the distribution of work among them will be notified later on, ବୋଧହୁଏ Home Secretary S. N. Mahapatra କରିବେ କି ଆଉ କିଏ କରିବେ ତାହା ଠିକ ନାହିଁ, ଏମାନଙ୍କୁ ବି Hon'ble Deputy Ministers କୁହାଯାଉଛି ଅବିକଳ ମନ୍ତ୍ରୀଙ୍କ ପରି । କାହାକୁ honourable କୁହାଯିବା ଉଚିତ ନୁହେଁ । ଯାହାହେଉ ଏ ଗୋଟିଏ ପ୍ରଥମ ହୋଇଛି, କୁହାଯାଇଛି The Deputy Ministers will assist the Hon'ble Ministers ଅର୍ଥାତ୍ ଏହି Deputy Minister ମାନେ ମଧ୍ୟ Council of Ministers ରେ ରହିଛନ୍ତି, କି ଉଦ୍ଦେଶ୍ୟରେ ରହିଛନ୍ତି ମା' ଗଙ୍ଗେଇ ଜାଣନ୍ତି ସେମାନେ କଣ କରିବେ ? କୁହାଯାଉଛି they will assist the Ministers in the exercise of their functions । ଏମାନେ କଣ ଗୋଟିଏ ଗୋଟିଏ Secretary କି Private Secretary କି କିରାଣି ? ଆଉ କେଉଁଠି ହୋଇଥିଲେ ଏମାନଙ୍କୁତ Public Service Commissionଙ୍କ ପାଖକୁ ପଠାଇ ଦିଆଯାଇଥାନ୍ତା । ଏତେ ଆପତ୍ତି କାହିଁକି ହୁଅନ୍ତା । ଏଗୃହର ସମସ୍ତେ ଏ କଥା ଜାଣନ୍ତି ନାହିଁ, ଯେ ଜଣେ

ଡ଼େପୁଟି ମିନିଷ୍ଟର କାଲି ଦିନ 12 ଘଣ୍ଟା ପର୍ଯ୍ୟନ୍ତ ଘରେ ଶୋଇଥିଲେ । ବର୍ତ୍ତମାନ ବି ଏଠାରେ ନାହାନ୍ତି । ଏ କଥା କେହି ଜାଣୁ ନାହାନ୍ତି ବୋଲି ସେ ମନେ କରୁଛନ୍ତି । ଏହା ସମସ୍ତେ ଜାଣିଛନ୍ତି । ସେଇଥିପାଇଁ ମୁଁ କହୁଛି ଏମାନଙ୍କୁ Public Service Commissionକୁ ପଠାଇ ଦିଆ ହୋଇଥିଲେ ଏଠାରେ ଆପତ୍ତି ହେବାର କୌଣସି କାରଣ ନଥିଲା । ଆପଣ ଯଦି ସହଯୋଗ ଚାହୁଁଛନ୍ତି ତାହେଲେ Parliamentary Secretary କଲେ ନାହିଁ କାହିଁକି ? Deputy Minister କରିବାର କଣ ଦରକାର ଥିଲା । ବେଶୀ ଟଙ୍କା ଦେବା ପାଇଁତ ଏ ବ୍ୟବସ୍ଥା 6 କି 12 ଜଣ Parliamentary Secretary ରଖିଥିଲେତ କମ୍ ପଡ଼ିଥାନ୍ତା କିମ୍ବା ତାଙ୍କ ପାଇଁ ଆଉ ବେଶୀ କିଛି ଟଙ୍କା ନେଇ ପାରିଥାନ୍ତେ । ଏମାନଙ୍କର କି ଯୋଗ୍ୟତା ଅଛି ? ଯାହା ଯୋଗ୍ୟତା ଅଛି ଆମେ କଣ ଜାଣିନାହୁ ? ନବକୃଷ୍ଣ ଚୌଧୁରୀ ଏମାନଙ୍କୁ ନେଇ କିମିତି କାମ କରିବେ ସେ କଥା ଭାବି ଆମର ଦୁଃଖ ହେଉଛି । ଆମେ ବ୍ୟାକୁଳ ସେ କିମିତି କାମ ଚଳାଇବେ । କାଲି ଜଣେ ମାନ୍ୟବର ସଭ୍ୟ କହିଲେ ଯେ ଏହି ଉପମନ୍ତ୍ରୀମାନଙ୍କୁ ନେବାରେ ନବକୃଷ୍ଣ ଚୌଧୁରୀ ଆମର ଦୟାର ପାତ୍ର ହୋଇଛନ୍ତି । ଆମର ଅନୁକମ୍ପାର ପାତ୍ର ହୋଇଛନ୍ତି । ଆମକୁ କାହିଁକି କୁହାଯାଉଛି ଏମାନଙ୍କର ଜ୍ଞାନ ଗାରିମା ତୁମେ କଣ ବୁଝି ପାରିବ । ଆମେ ଯଦିବା ନ ବୁଝିବୁ ଭାରତୀୟ ରୀତିରେ ଏମାନଙ୍କର କର୍ତ୍ତବ୍ୟ ପରୀକ୍ଷା କରାଯାଉ, କୁହାଯାଉ ଯେ ବର୍ଷକ ପରେ ଏହା କରି ନ ପାରିଲେ ତୁମେ ଚାଲିଯିବ । ତମକୁ ଅମୁକ ବିଭାଗ ଦିଆଯିବ; ତୁମେ ଅମୁକ ଅମୁକ କାମ କରିବ ଯଦି ନ କରି ପାରିବ ତେବେ ବର୍ଷକ ପରେ ତୁମେ ମନ୍ତ୍ରୀ ହୋଇପାରିବ ନାହିଁ । ଏହିପରି ଯଦି କିଛି ବ୍ୟବସ୍ଥା ହୁଏ ତାହେଲେ ଏଇଟା ହେଉ । ତାହାହେଲେ ଏହା ପ୍ରକୃତ ଭାରତୀୟ ରୀତିରେ ପ୍ରତିଷ୍ଠିତ ହେବ । ସେମାନଙ୍କୁ କିଛି କିଛି responsibility ବା ଦାୟିତ୍ୱ ଦିଆଯାଉ ଏବଂ ନିର୍ଦ୍ଦିଷ୍ଟ ସମୟ ଭିତରେ ସେମାନେ ତାହା ତୁଲାଇ ନ ପାରିଲେ ସେମାନେ ଚାଲିଯିବେ । ତା'ଯଦି ହୁଏ ତାହା ହେଲେ ତାଙ୍କୁ 750 ଟଙ୍କା ଜାଗାରେ 1000 ଟଙ୍କା ଦେଲେବି ମୋର ଆପତ୍ତି ନାହିଁ । ଏ ଦାୟିତ୍ୱ କଣ ସେମାନେ ନେବେ ? ମୋର ଏ ସନ୍ଦେହ କାହିଁକି ହେଉଛି ମୁଁ କହୁଛି, ମୁଁ ଦିନେ Agriculture office କୁ phone କଲି କାରଣ ମୋର ବହୁ କାଳରୁ ଇଛାଥିଲା ଚାଷକରି ଲୋକଙ୍କୁ ଦେଖାଇ ଦେବା ମୁଁ ତାଙ୍କୁ phoneରେ ଡ଼ାକିବାରୁ ସେ ମୋତେ କହିଲେ ଆପଣ କ'ଣ କହୁଛନ୍ତି । ମୁଁ ତାଙ୍କୁ କହିଲି ମୋର ଗୋଟିଏ subsidised farm ହେବାର ଥିଲା କିନ୍ତୁ ନୂଆ scheme ଅନୁସାରେ ମୋ ଜାଗା ସେ ଭିତରେ ପଡ଼ି ନାହିଁ । ମୁଁ ଆପଣଙ୍କୁ କହୁଛି ଆପଣ (Mr. Parija) ଙ୍କୁ ଦେଖିଲେ କହିବେ ସେ ଗୋଟିଏ ଲୋକ ପଠାଇବେ ଯେ କି କେତେବେଳେ କେଉଁ ମଂଜି ଲଗାଯିବ, କେତେବେଳେ କେଉଁ ଫସଲ ହେବ । କେତେବେଳେ କେଉଁ ଖତ ଲାଗିବ ମୋତେ ବତାଇ ଦେବ, ଟଙ୍କା ଯାହା ଖର୍ଚ୍ଚ ହେବ ମୁଁ ସବୁ ଦେବି । ଆପଣ କେବଳ ଲୋକଟିଏ ପଠାଇ ଦେବେ । ସେ ମୋତେ ପଚାରିଲେ ଆପଣ କିଏ ? ମୁଁ କହିଲି I am a cultivator ସେ ତାର ଉତ୍ତର ଦେଲେ There are millions

and millions of cultivators in Orissa ଏ କଥା ମୁଁ କହୁଛି । ଏଇଟାକୁ ଯଦି ମୁଁ ଗୋଟିଏ complaint କରୁଛି ବୋଲି ବିଗ୍ରରନ୍ତି ମୁଁ କହି ଦେଉଛି ଯେ ଏଠାରେ complaint କରିବା ଦରକାର କଣ ? ଯେଉଁଠି ଅବସ୍ଥା ଏଇଆ Agriculture ଯାହାଙ୍କ ହାତରେ ଅଛି ଆମେ କଣ ତାଙ୍କୁ ଦାୟୀ କରିବୁ ନାହିଁ ? ପରିଷ୍କାର ଭାବରେ ସେ ଆମକୁ ଜବାବ ଦିଅନ୍ତୁ । ସେ 300 ମନ୍ତ୍ରୀ ନିଅନ୍ତୁ ତାଙ୍କୁ 1000 ଟଙ୍କା ଗସ୍ତ ଖର୍ଚ୍ଚ ଦିଅନ୍ତୁ ଆମର ଆପତ୍ତି ନାହିଁ । କିନ୍ତୁ ଦେଖାଇ ଦିଅନ୍ତୁ research ଆରମ୍ଭ ହୋଇଯିବା ପରେ ସେ ଯେଉଁ farm ରେ ରହିବେ ସେହି farm ର over head charges ଯାହା ହେବ ତା'ଠାରୁ ଏହି Projectର ଆୟ ବେଶୀ ହୁଏ । ଯଦି ଆୟ ଅପେକ୍ଷା ବ୍ୟୟ ବେଶୀ ହେଲା ତାହାହେଲେ ତାକୁ ଆମେ ବାହାର କରିଦେବା, ଅନ୍ୟ ଲୋକ ତାଙ୍କ ଜାଗାରେ ରହିବେ । ଏହାହେଲେ ଆମେ ଜାଣନ୍ତୁ ଯେ ଗୋଟିଏ ନୂଆ ନୀତିରେ ସବୁ ହେଉଛି । ଅନ୍ତତଃ ଭାରତୀୟ ନୀତିରେ କାମ ହେଉଛି । କିନ୍ତୁ ସେ କର୍ତ୍ତବ୍ୟ କ'ଣ ଏଠାରେ ଅଛି ? ଖାଲି ଟଙ୍କା, ଅଧିକାର ଲୋକଙ୍କ ଉପରେ ଆଧିପତ୍ୟ ଏଥିରେ କଣ ରାଜ୍ୟ ରହିବ ? ଏଥିରେ ରାଜ୍ୟର ଆଦୌ ସମୃଦ୍ଧି ହେବନାହିଁ । ଟଙ୍କା ନେବାପାଇଁ ଆମର ଆପତ୍ତି ନାହିଁ । କିନ୍ତୁ ଏ ଜିନିଷଟିକୁ ଭାରତୀୟ ରୀତିରେ କର । ତା'ନହେଲେ ସମସ୍ତେ ମନଇଛା ଟଙ୍କା ଖର୍ଚ୍ଚ କରିବେ । କେହି କିଛି ଦାୟିତ୍ୱ ନେବେ ନାହିଁ । ଏପରିକି Agriculture Officer ରହିବେ ତାଙ୍କୁ ସେ ବିଷୟରେ କିଛି କହିଲେ ସେ ଜମା ଶୁଣିବେ ନାହିଁ । ପକ୍ଷାନ୍ତରରେ ସେ ଯଦି ବିଲକୁ ଯାଇଁ ଦରକାର ପଡ଼ିଲେ କୋଡ଼ି ହାଣିବେ, ତାହାହେଲେ ଲୋକେ କୃଷିରେ ଅନୁପ୍ରାଣିତ ହେବେ । ତେଣୁ ଟଙ୍କା ଦେବାପାଇଁ ଆପତ୍ତି ହେଉନାହିଁ । ଆପତ୍ତି ଏହି ଦୃଷ୍ଟି କୋଣରୁ ହେଉଛି ଯେ ଏହା ଭାରତୀୟ ରୀତିରେ କର, ତାହା ହେଲେ ଆମେ ଦେଶକୁ ଗଢି ପାରିବା । ଯଦି ସେ ଦରକାର କରନ୍ତି ଆମେ ବିରୁଦ୍ଧ ଦଳରେ ଯେତେ ଜଣ ଅଛୁ ଆମେତ 150 ଟଙ୍କା ପାଉଛୁ , ଆମେ ବିନା ଗସ୍ତ ଖର୍ଚ୍ଚରେ ତାଙ୍କ ସଙ୍ଗରେ ଯାଇଁ କୋଡ଼ି ହାଣିବୁ ଏମିତି ଯଦି କରାଯାଏ ତାହାହେଲେ ସିନା ସୁନ୍ଦର ହେବ । ଆମେ ଏ ସବୁ କରିଯିବା, ତମେ ଇଂଲଣ୍ଡରେ ରହିବ କିନ୍ତୁ ଭାରତ ଇଂଲଣ୍ଡ ହେବା ଉଚିତ୍ ନୁହେଁ । ଓଡ଼ିଶାରେ ସେଇ ଆଦର୍ଶ ରଖି କାମ କରିବା ଉଚିତ୍ ନୁହେଁ । ମୁଁ ଅନୁରୋଧ କରୁଛି ଭବିଷ୍ୟତରେ ସରକାରୀ ପକ୍ଷର ଲୋକେ, ମୁଖ୍ୟମନ୍ତ୍ରୀ ଆମକୁ ଏହିଭଳି ସବୁ ଯୋଜନା ଦିଅନ୍ତୁ, ନିଜେ ତତ୍ତ୍ୱାବଧାନରେ ସେ ସବୁ କାର୍ଯ୍ୟ କରାନ୍ତୁ, ତାହା ଦେଖିଲେ ଆମେ ଖୁସି ହେବୁ । ଟଙ୍କା ପଇସାତ ଅଲଗା କଥା । ସେଥିପାଇଁ ସେ 17ଟା ବା 27ଟା ମନ୍ତ୍ରୀ ରଖନ୍ତୁ ସେଥିରେ କିଛି ଯାଏ ଆସେ ନାହିଁ ।

## 2. ପୁରୀ ଶ୍ରୀଜଗନ୍ନାଥ ମନ୍ଦିର (ପ୍ରଶାସନ) ବିଲ୍

## The Puri Shree Jagannath Temple Administration Bill, 1952

ପଣ୍ଡିତ ନୀଳକଂଠ ପୁରୀ ଶ୍ରୀ ଜଗନ୍ନାଥ ସଂସ୍କୃତି ଓ ଐତିହ୍ୟର ଥିଲେ ଜଣେ ଉତ୍ସର୍ଗୀକୃତ ଉଦ୍‌ଗାତା, ପ୍ରବୀଣ ପୃଷ୍ଠପୋଷକ ଓ ବହୁଦର୍ଶୀ ଗବେଷକ । ତେଣୁ ଏଥିପ୍ରତି କାହାର

ତିଲେ ଅବମାନନା ବା ନିନ୍ଦାକୁ ସେ ଆଦୌ ସହ୍ୟ କରିପାରୁନଥିଲେ ଏବଂ ଦୃଢ଼ଭାବରେ ଯୁକ୍ତି ଓ ତଥ୍ୟ ଭିତ୍ତିରେ ତାର ପ୍ରତିବାଦ କରୁଥିଲେ । 1952 ଜୁଲାଇ 9 ତାରିଖ ସକାଳ ୪ ଘଟିକା । ଓଡ଼ିଶା ବିଧାନସଭାରେ ପୁରୀ ଶ୍ରୀ ଜଗନ୍ନାଥ ମନ୍ଦିର (ପ୍ରଶାସନ) ବିଲ୍ ଉପରେ କେତେକ ସଂଶୋଧନୀ ପ୍ରସ୍ତାବ ଆଣି ବିଶେଷ ବୈଧାନିକ ତଥ୍ୟ ଉପସ୍ଥାପନ କରି ସୁଦୀର୍ଘ ଉଚ୍ଚକୋଟିର ଏକ ଭାଷଣ ସେ ପ୍ରଦାନ କରିଥିଲେ । ବିରୋଧୀଦଳର ନେତା ଭାବରେ ଶ୍ରୀ ଶ୍ରଦ୍ଧାକର ସୂପକାର ମଧ୍ୟ ତାଙ୍କୁ ସମର୍ଥନ କରିଥିଲେ ।

ତତକାଳୀନ ଆଇନ୍‌ମନ୍ତ୍ରୀ ଶ୍ରୀ ଦୀନବନ୍ଧୁ ସାହୁ କହିଥିଲେ ଯେ ମନ୍ଦିରର ଶୃଙ୍ଖଳା ରକ୍ଷା ଦୃଷ୍ଟିରୁ ରାତି 12ଟା ସୁଦ୍ଧା ମନ୍ଦିର ବନ୍ଦ ହେବାର ଯେଉଁ ନୀତି ଅଛି ତାକୁ କଠୋର ଭାବରେ ଲାଗୁ କରିବା । "ଏହାଫଳରେ ପୋଲିସ ମଧ୍ୟ ବିଳମ୍ବିତ ରାତି ପ୍ରହରରେ ଅନୁପ୍ରବେଶକାରୀଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟି ଦେଇପାରିବେ । ମାତ୍ର ପଣ୍ଡିତଜୀ ମନ୍ଦିରର ପରମ୍ପରା ସଂପର୍କରେ କହିଛନ୍ତି," ଯେତେ ରାତ୍ରରେ ବନ୍ଦ ହେବାକଥା ତାହା ହେଉନାହିଁ । ରାତି 11 ଟାରୁ ରାତି 3 ଦଣ୍ଡ ପର୍ଯ୍ୟନ୍ତ ବନ୍ଦ ହେବା ବିଧି ଅଛି । କିନ୍ତୁ ଆବାହମାନ କାଳରୁ କେବଳ ଦଆର ଆଉଜାଇ ଆଣୁଥିଲେ ସେଥିପାଇଁ ପ୍ରବଚନ ଅଛି "ପୁରୀରେ ରାତିନାହିଁ, କଟକରେ ଜାତି ନାହିଁ," ତେଣୁ ଏଥିପାଇଁ ସମୟ ନିର୍ଘଣ୍ଟର ତଥା ଆଇନ୍‌ର ଆବଶ୍ୟକତା ନାହିଁ ବୋଲି ଯୁକ୍ତି କରିଛନ୍ତି ।

ଏ ସଂପର୍କରେ ଖବରକାଗଜରେ ବାହାରୁଥିବା ଭିତ୍ତିହୀନ ସଂବାଦକୁ ସେ ସମାଲୋଚନା କରି କହିଛନ୍ତି, "ମୁଁ ବର୍ତ୍ତମାନ ପଢ଼ିଛି ଯେ ପଣ୍ଡାମାନଙ୍କ ଭିତରେ ପାଉଣା ନେଇ ଜରି ଗୋଳମାଳ ହୋଇଥିବାରୁ ମନ୍ଦିରର ନୀତି ଯଥା ସମୟରେ ହୋଇପାରୁନାହିଁ । କିନ୍ତୁ ଆପଣ ଦେଖନ୍ତୁ ଏହିବର୍ଷ ରଥଯାତ୍ରା ସମୟରେ କୌଣସି ପ୍ରକାର ଅସୁବିଧା ନ ଥାଇ ସେ କାର୍ଯ୍ୟ ସୁରୁଖୁରୁରେ ହୋଇଗଲା । କେବଳ ଟିକଟ ବିକିବାରେ ଡେ଼ରିହେଲା, କିନ୍ତୁ ଖବରକାଗଜରେ ଆମେ ହଂପା ଉଠାଉଛନ୍ତି ଯେ ପଣ୍ଡାମାନେ ଖରାପଲୋକ, ସେମାନେ ସବୁ ଗୋଳମାଳ କରୁଛନ୍ତି । ଅବଶ୍ୟ ପଣ୍ଡାମାନଙ୍କର କିଛି ଦୋଷ ଥାଇପାରେ ଆଉ ମଧ୍ୟ ଗୟା ପଣ୍ଡା , କାଶିପଣ୍ଡା ପ୍ରୟାଗ ପଣ୍ଡାଂଙ୍କୁ ମୁଁ ଦେଖିଛି । ମୋର ବିଶ୍ୱାସ ଆମ ପୁରୀର ପଣ୍ଡାମାନେ ସେମାନଙ୍କ ଠାରୁ ବହୁଗୁଣରେ ଭଲ ।"

ପୁରୀ ଶ୍ରୀ ଜଗନ୍ନାଥ ମନ୍ଦିର ଇତିହାସରେ ବହୁଥର କଳାପାହାଡ଼ ପରି ବହୁ ଆକ୍ରମଣକାରୀଙ୍କ ଲୋଲୁପଦୃଷ୍ଟି ବା କୃଦ୍ଧଦୃଷ୍ଟିର ଶରବ୍ୟ ହୋଇଛି । କେତେଥର ଶ୍ରୀଜଗନ୍ନାଥ ଓ ତାଙ୍କ ପାଖର ଦେବଦେବୀମାନେ ନିର୍ଯ୍ୟାତିତ ହୋଇଛନ୍ତି, ଓଡ଼ିଆ ସଂସ୍କାର ଧର୍ମବିଶ୍ୱାସ ଓ ସଂସ୍କୃତି ଉପରେ ଅନେକ ଅନ୍ୟାୟ ପରଂପରା ଲଦି ହୋଇଯାଇଛି । ମାତ୍ର କେବଳ ପରିଦର୍ଶନ ପାଇଁ ପରିବର୍ତ୍ତନ କରିବାରେ କୌଣସି ଆବଶ୍ୟକତା ପୂରଣ ହେବନାହିଁ । ନୀଳକଂଠ ଆଇନ୍‌ମନ୍ତ୍ରୀଙ୍କ ଭ୍ରାନ୍ତି ଦୂର କରିବା ପାଇଁ କହିଛନ୍ତି, "ମୁଁ ତିନିଟି

କଥା କହିବି । ଗୋଟିଏ ହେଉଛି ସମସ୍ତଙ୍କୁ ଧରିକରି ଗୋଟିଏ Advisory Committee ମନ୍ଦିର ଚଳାଇବା ବିଚାର ପୂର୍ବରୁ କରାଯାଇଥିଲା । ଦ୍ୱିତୀୟଟି ହେଉଛି ପଣ୍ଡାମାନଙ୍କର ଚରିତ୍ର । ସେମାନେ ଗୁଣ୍ଡାଗିରି କରୁଛନ୍ତି, ଅପବ୍ୟବହାର କରୁଛନ୍ତି ଏହି ଗୁଡ଼ିକ Objects and reasons ରେ ବର୍ଣ୍ଣନା କରାଯାଇଛି । କିନ୍ତୁ ସେଗୁଡ଼ିକର କୌଣସି ଭିତ୍ତି ନାହିଁ, ମୁଁ ଜାଣେ ......................। ତୃତୀୟ କଥା ହେଉଛି, ହରିଜନ ପ୍ରବେଶ ସେ ବିଷୟରେ ଆମର ଗୋଟିଏ ଆଇନ୍ ହୋଇଛି, ଯେଉଁଟା କି ହେବାର ଉଚିତ ନ ଥିଲା । ଯେତେବେଳେ ଆଇନ୍ ହେଉଥିଲା ସେତେବେଳେ ମୁଁ ହରେକୃଷ୍ଣ ମହତାବ ଓ ଚିନ୍ତାମଣି ମିଶ୍ରଙ୍କୁ ଫୋନ କରିଥିଲି, ମୋତେ ୪ ଦିନ ଛାଡ଼ିଦିଅ ମୁଁ ଏହା କରିଦେବି । ଏ ଗୋଟିଏ ଅନୁଷ୍ଠାନ ଯେଉଁଥିରେ କି ହରିଜନ ଯିବାପାଇଁ କୌଣସି ବାଧା ନାହିଁ । ଏହାର ପରଂପରା ଅଛି ଏହିଭଳି ଆଇନ୍ କରିବା ଦ୍ୱାରା ଅପକୀର୍ତ୍ତି ହେବ ସିନା, କିନ୍ତୁ ଆଇନ୍ ପାସ ହେଲା, ସେଦିନ ମୁଁ କାଂଦିଛି ।" ବିନା ଆଇନରେ ହରିଜନ ପ୍ରବେଶ ହୋଇପାରିଥାନ୍ତା ଓ ତାହା ସେ ନିଜେ ଦାୟିତ୍ୱ ନେଇ କରିପାରିଥାନ୍ତେ ବୋଲି ବାରମ୍ବାର ଘୋଷଣା କରିଛନ୍ତି ।

ବହୁ ପୁରାକାଳରୁ ଆଦିବାସୀ ହରିଜନମାନେ ପୁରୀ ଶ୍ରୀ ଜଗନ୍ନାଥ ମନ୍ଦିରରେ ପ୍ରବେଶ କରିଥାନ୍ତି ବୋଲି ନୀଳକଣ୍ଠଙ୍କ ଯୁକ୍ତି । ସେ ଦୃଷ୍ଟାନ୍ତ ଦେଇ କହିଛନ୍ତି ଯେ, ବିଜୟନଗରମ୍ ଠାରୁ ନୋଳିଆ ମାନଙ୍କୁ ଆଣି ପଣ୍ଡାମାନେ ଜଗନ୍ନାଥ ଦର୍ଶନ କରାଇଥାନ୍ତି । ସେମିତି ଛତିଶଗଡ଼ରୁ ଗଣ୍ଡ, ଘାସି ପ୍ରଭୃତି ଜାତିର ଲୋକେ ମନ୍ଦିରକୁ ଆସନ୍ତି । 'ସେମାନେ ଲୁଚିକରି ଆସନ୍ତି ନାହିଁ । ତାହା ପଣ୍ଡାଙ୍କ ରେକର୍ଡରେ ମିଳିବ ।" ପ୍ରକୃତରେ କେହି ନିରପେକ୍ଷ ଭାବରେ ଦେଖିବାକୁ ଯାଉନାହାନ୍ତି ଏବଂ ନିର୍ବ୍ୟକ୍ତିକଭାବରେ ଜାଣିବାକୁ ମଧ୍ୟ ଚେଷ୍ଟା କରୁନାହାନ୍ତି ବୋଲି ନୀଳକଣ୍ଠଙ୍କ ଅଭିଯୋଗ ।

କଲିକତା ଖବରକାଗଜରେ ସେମିତି ପୁରୀ ପଣ୍ଡାମାନଙ୍କର ଦୁର୍ନାମ କରାଯାଉଛି ବୋଲି ନୀଳକଂଠ ତାର ପ୍ରତିବାଦ କରିଛନ୍ତି । କୌଣସି କାଁ ଭାଁ ଘଟଣାକୁ ସାଧାରଣ ସମସ୍ୟା ବୋଲି ଚିତ୍ରଣ କରି କାହାମୁଣ୍ଡରେ କଳଂକର ବୋଝ ଲଦିଦେବା ଅନୁଚିତ ବୋଲି ସେ ପ୍ରମାଣ ଦେଇ କହିଛନ୍ତି । "ରଥ ଗଲାବେଳେ ହୁଏତ କେବେ କେହି ଜଣେ ରଥଚକ ତଳେ ପଡ଼ିଯାଇଥିଲା । ତା ବୋଲି ହଣ୍ଟର ଯେ ଲେଖିଦେଲେ ଭାରତବର୍ଷର ଲୋକେ ମୁକ୍ତି ପାଇବା ପାଇଁ ରଥ ଚକତଳେ ପଡ଼ନ୍ତି, ଏଇଟା କ'ଣ ସତବୋଲି ଆମେ ମାନିନେବା ? ଏମିତି କେତେ ସାହେବ ଆସି କିଛି ନବୁଝି ନଶୁଝି ଲେଖିଦେଇଛନ୍ତି, ସେଥିପାଇଁ ମୁଁ କହୁଛି ଆମେ ସେ ଜାଗାକୁ ଯିବା, ତାଙ୍କୁସବୁ ପଚାରିବା, ତାଙ୍କମତ ବୁଝିବା, ତା ନା ସିନା କଥା । ମୁଁ ଜାଣେ ସେମାନେ ଅତ୍ୟନ୍ତ ଭଦ୍ରଲୋକ । ମୁଁ ଯେତେବେଳେ ସେମାନଙ୍କୁ ଗୁଣ୍ଡାଗିରି କଥା କହିଲି ସେମାନେ ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ ।" ପଣ୍ଡିତଜୀ ଓଡ଼ିଆ ସଂସ୍କୃତି ତଥା ଶ୍ରୀଜଗନ୍ନାଥଙ୍କର ପୃଷ୍ଠପୋଷକ ହୋଇପାରନ୍ତି, କିନ୍ତୁ ଅଂଧସ୍ତାବକ ନଥିଲେ ।

ସେ ଗବେଷଣା ମନୋବୃତ୍ତି ନେଇ ସବୁ କଥା ତନ୍ନ ତନ୍ନ କରି ଦେଖିବାକୁ ଓ ବୁଝିବାକୁ ଚାହିଁଛନ୍ତି । କୌଣସି ଶୁଣାକଥାରେ ଭାସିଯିବା ବା କୌଣସି ପୂର୍ବଧାରଣା Prejudice ନେଇ ପରଂପରାକୁ ଆକ୍ଷେପକରିବା ନିତ୍ୟାନ୍ତ ଅନୁଚିତ ବୋଲି ସେ ଦୃଢ଼ଭାବରେ କହିଛନ୍ତି ଏବଂ ଇତିହାସ ଓ ରେକର୍ଡପତ୍ରରୁ ଦୃଷ୍ଟାନ୍ତ ଦେଇଛନ୍ତି । ସେ କୌଣସି ଅଂଧ ବିଶ୍ୱାସ ଓ କୁସଂସ୍କାରର ଘୋର ବିରୋଧୀ, ଏହା ଏଥିରୁ ସ୍ପଷ୍ଟ ହୋଇଥାଏ ।

The Puri Shree Jagannath Temple ( Administration ) Bill, 1952

The SPEAKER: The Assembly is now to consider, The Puri Shree Jagannath Temple ( Administration ) Bill, 1952, clause by clause.

## Clause 2

ଶ୍ରୀ ନୀଳକଣ୍ଠ ଦାସ :ବାଚସ୍ପତି ମହାଶୟ, Clause 2 ରେ ତିନୋଟି amendments ଅଛି । ସେଥିରୁ ମୁଁ (*a*) ଓ (*b*) ଆଗ move କରୁଛି । ଆଉ (*c*) ଟା ପରେ move କରିବି ।

The SPEAKER : ତିନିଟା ଯାକ amendments ଏକାଥରକେ move କରିବାରେ କଣ ଅସୁବିଧା ହେବ ?

ଶ୍ରୀ ନୀଳକଣ୍ଠ ଦାସ : ମୁଁ ପ୍ରଥମେ (*a*) ଓ (*b*) move କରୁଛି, ଯଦି accept ହୋଇଯିବ ତାହାହେଲେ (*c*) move କରିବା ଦରକାର ପଡ଼ିବ ନାହିଁ ।

ଶ୍ରୀ ନୀଳକଣ୍ଠ ଦାଶ : ଏହିପରି ଯେଉଁଠାରେ amendment move କରାଯାଏ ପର amendment ଟି ଖାଲି formally move କରାଯାଏ । ପ୍ରଥମରୁ ଯାହା ବକ୍ତୃତା ହୋଇଥାଏ, ଆଉପରେ ବକ୍ତୃତା ହୁଏ ନାହିଁ । ମୋର ଏଥିରେ କହିବାର ଅଭିପ୍ରାୟ ଯେ ଏ ଦେଉଳର ଯେତେସବୁ Endowment ଅଛି, ଯେତେସବୁ ବିଧି ବିଧାନ ରହିଛି, ସେତକ ଛଡ଼ା ମୁଁ ମନେ କରୁଛି ଆଉ ଅଧିକ କିଛି ଏହା ଭିତରକୁ ଆଣିବା ଉଚିତ ହେବ ନାହିଁ । କିନ୍ତୁ ଏହା ଯେପରି ଭାବରେ ଆସିଛି ଏଥିରେ ମଠ ଆସିବ,ଆଟିକା ଆସିବ, ସବୁ ଆସିବ ତାହାହେଲେ ଆମ୍ଭମାନଙ୍କର ଉଦ୍ଦେଶ୍ୟ ଯଦି ହୁଏ ଯେ ଏହି records / of rights କରି ଯେଉଁମାନଙ୍କର ଯାହା rights and duties ଅଛି ସେମାନଙ୍କୁ ଧରି ମନ୍ଦିର ପରିଚାଳନା କରିବା, ତା' ହେଲେ ମୁଁ କହିବି ଆମର ତାହା ପଣ୍ଡ ହୋଇଯିବ । ପଣ୍ଡ ହୋଇଯିବ କଣ ଭଣ୍ଡୁର ହୋଇଯିବ । କାହିଁକି ନା ମନ୍ଦିର ସମ୍ବନ୍ଧରେ ମହନ୍ତ ଓ ଆଟିକାର କୌଣସି ସମ୍ବନ୍ଧ ନାହିଁ । ମୁଁ କହିବାକୁ ବାଧ୍ୟ ହେଉଛି ମତେ କ୍ଷମା କରିବେ । ତୃତୀୟ ପାଠ ସମୟରେ ଯଦି ବେଳ ହେବ, ଏ କଥା ବେଶୀ କରି କହିବି । ବର୍ତ୍ତମାନ ଅଳ୍ପକରେ ସୂଚାଇ ଦେଉଛି । କାଲି ଏହାର ବିଚାର ହେଲାବେଳେ ଉତ୍ତର ଦେଇ ମାନ୍ୟବର ମନ୍ତ୍ରୀ ଯାହା କହିଲେ ସେଥିରୁ ମୁଁ ବୁଝିଲିଯେ ମନ୍ତ୍ରୀ ମହୋଦୟଙ୍କ ପାଖରେ କୌଣସି

ପ୍ରକାର ଅନୁସନ୍ଧାନର ଫଳ ନାହିଁ । ସେ ଯେତେ କଥା କହିଛନ୍ତି ତା ଭିତରୁ ଅନେକ କଥା ଏକାବେଳକେ ଅମୂଳକ । ମୁଁ ଗୋଟିଏ ଉଦାହରଣ ଦେଉଛି । ମନ୍ତ୍ରୀ ମହୋଦୟ କହିଛନ୍ତି ଯେ ମନ୍ଦିର ଭିତରେ ଚୋରି ଡ଼କାୟତି ହେଉଛି । କିନ୍ତୁ ଦୋଷୀ ଓ ଅଭିଯୁକ୍ତ ଲୋକ ଲୁଚିକରି ସେଠି ରହି ଯାଉଛନ୍ତି, ଧରା ପଡୁ ନାହାନ୍ତି । ଏଇଟା ଗୋଟାଏ ଅସମ୍ଭବ କଥା । ଏଇଟା ହୋଇପାରେ ନାହିଁ । କୌଣସି ପୁଲିସ କେତେବେଳେ ସେ ଭିତରକୁ ଯିବା ମନା ନାହିଁ । ମନ୍ଦିର ପୁଲିସ ସବୁବେଳେ ସେଠି ଜାଗ୍ରତ ଅଛି । ମନ୍ଦିରରେ ଏହିପରି କୌଣସି ଯାଗା ନାହିଁ, ଯେଉଁଠି ଗୋଟାଏ ଲୋକ ଲୁଚିକରି ରହିଯିବ ଓ ଧରା ପଡ଼ିବ ନାହିଁ । ସାଧାରଣତଃ ମନ୍ଦିର ଦୁଇଥର ସଫାହୁଏ (ସକାଳୁ ଥରେ ଓ ରାତିରେ ଥରେ) । ଯଦି କୌଣସି ଦିନରେ କରିବା ସୁବିଧା ନହେଲା ତାହାହେଲେ ତାହା ରାତିରେ ହୁଏ । କିନ୍ତୁ କୌଣସି ଲୋକ ଦ୍ୱାରା ଅପବିତ୍ର ହୋଇ ଯିବ ଏଇକଥା ଆଦୌ ସମ୍ଭବ ନୁହେଁ ।

ଶ୍ରୀଦୀନବନ୍ଧୁ ସାହୁ (ମନ୍ତ୍ରୀ): Sir, the hon'ble member misunderstood me. ମୁଁ କହିଥିଲି ଯେ ମନ୍ଦିର ରାତି ତମାମ ଖୋଲା ରହୁଛି, କାହିଁକିନା ନୀତି ସରୁ ନାହିଁ । ନିୟମ ଅଛି ଯେ ରାତି ୧୨ ଟାରେ ମନ୍ଦିର ବନ୍ଦ ହେବାର କଥା । କିନ୍ତୁ ରାତି ତିନିଟା ଚାରିଟା ପର୍ଯ୍ୟନ୍ତ ଖୋଲା ରହୁଛି । ସେଠି ରାତି ତମାମ ନୀତି ଚାଲିବା ଯୋଗୁଁ ଲୋକ ସମାଗମ ବେଶୀ ହୁଏ । ସେଥିପାଇଁ ପୁଲିସ ନଜର କୌଣସି ଲୋକ ଉପରେ ରହି ପାରେ ନାହିଁ । ସେ କାହାକୁ pursue କରି ପାରନ୍ତି ନାହିଁ । ଯଦି ରାତି ୧୨ଟାରେ ମନ୍ଦିର ବନ୍ଦ ହୁଅନ୍ତା ଓ କୌଣସି ଲୋକ ସେଠାକୁ ଯାନ୍ତା ତା'ହେଲେ ପୁଲିସ ତା ଉପରେ ନଜର ରଖି ପାରନ୍ତା ।

ଶ୍ରୀ ନୀଳକଣ୍ଠ ଦାସ: ଯେତେ ରାତିରେ ବନ୍ଦ ହେବା କଥା ତାହା ହେଉ ନାହିଁ । ରାତି 11 ଟା ଠାରୁ ରାତି 3 ଦଣ୍ଡ ଥିବା ପର୍ଯ୍ୟନ୍ତ ବନ୍ଦ ହେବା ବିଧି ଅଛି । କିନ୍ତୁ ଆବହମାନ କାଳରୁ କେବଳ ଦୁଆର ଆଉଯାଇ ଆଣୁଥିଲେ । ସେଥିପାଇଁ ପ୍ରବଚନ ଅଛି 'ପୁରୀରେ ରାତି ନାହିଁ' 'କଟକରେ ଜାତି ନାହିଁ' । ପ୍ରବାଦର କାରଣ ହେଉଛି , ମୁସଲମାନମାନେ କଟକରେ ପାନ ବିକନ୍ତି, ସେମାନଙ୍କଠାରୁ ସମସ୍ତେ ଖାନ୍ତି । ମୁଁ କାହାକୁ ଆକ୍ଷେପ କରୁ ନାହିଁ, ପ୍ରବାଦ କଥା କହୁଛି । ପୁରୀରେ ସେହିପରି ମନ୍ଦିର ଯୋଗୁଁ ରାତି ନାହିଁ ବୋଲି କୁହାଯାଏ । ମୋର କହିବାର ଅଭିପ୍ରାୟ ଯେ ଆମେ ଯେଉଁ ଆଇନ୍ କରିବାକୁ ଯାଉଛୁ, ଏଇଟା ସମ୍ଭବ ହୋଇପାରେ, କିନ୍ତୁ ଏହିପରି ଆଇନ୍‌ର ଆବଶ୍ୟକତା କଣ ଅଛି କି ? ଆମେ ବର୍ତ୍ତମାନ ସବବେଳେ ଚାହିଁ ବସିଥାଉ ଖବରକାଗଜରେ କଣ ବାହାରୁଛି । ଲୋକଙ୍କ ମନ ଭିତରେ ଯେତେ ପ୍ରକାର ଭାବ ଅଛି, ସେ ସବୁ ଖବରକାଗଜରେ ଲେଖୁଛନ୍ତି । ମୁଁ ବର୍ତ୍ତମାନ ପଢ଼ିଛି ଯେ ପଣ୍ଡା ମାନଙ୍କ ଭିତରେ ପାଉଣା ନେଇକରି ଗୋଳମାଳ ହୋଇ ଥିବାରୁ ମନ୍ଦିରର ନୀତି ଯଥା ସମୟରେ ହୋଇ ପାରିଲା ନାହିଁ କିନ୍ତୁ ଆପଣ ଦେଖନ୍ତୁ ଏହି ବର୍ଷ ରଥ ଯାତ୍ରା ସମୟରେ କୌଣସି ପ୍ରକାର ଅସୁବିଧା ନ ଥାଇ ସେ କାର୍ଯ୍ୟ ସୁରୁଖୁରୁରେ ହୋଇଗଲା ।

କେବଳ ଟିକଟ ବିକିବାରେ ଡ଼େରିହେଲା । କିନ୍ତୁ ଖବରକାଗଜରେ ଆମେ ହମ୍ପା ଉଠାଉଛନ୍ତି ଯେ ପଣ୍ଡାମାନେ ଖରାପ ଲୋକ, ସେମାନେ ସବୁ ଗୋଳମାଳ କରୁଛନ୍ତି । ଅବଶ୍ୟ ପଣ୍ଡା ମାନଙ୍କର କିଛି ଦୋଷ ଥାଇପାରେ, ଆଉମଧ୍ୟ ଗୟା ପଣ୍ଡା, କାଶୀ ପଣ୍ଡା ଓ ପ୍ରୟାଗ ପଣ୍ଡାଙ୍କୁ ମୁଁ ଦେଖିଛି । ମୋର ବିଶ୍ୱାସ ଆମ ପୁରୀର ପଣ୍ଡାମାନେ ସେମାନଙ୍କ ଠାରୁ ବହୁ ଗୁଣରେ ଭଲ । ମୁଁ ବିଧାନ ମନ୍ତ୍ରୀଙ୍କୁ ଡ଼ାକିଥିଲି ଯେ ତାଙ୍କର ଯେଉଁ *ad hoc* committee ଅଛି, ମୁଁ ସେମାନଙ୍କୁ ଡ଼କାଇ ଦେବି ଆପଣ ଆସନ୍ତୁ । ସେ ହଁ କରିଥିଲେ ତାଙ୍କର ବୋଧହୁଏ ସମୟ ହେଲାନାହିଁ । ସେ ଆସିପାରି ନାହାନ୍ତି । ଯାଇଥିଲେ ଭଲ ହୋଇ ଥାନ୍ତା । କିଏ କେତେ କଥା କହୁଛନ୍ତି କିନ୍ତୁ କେହି ସେବକ ପାଖକୁ ଯାଉନାହାନ୍ତି, ତାଙ୍କ ଅବସ୍ଥା ବୁଝୁ ନାହାନ୍ତି, ସେ କଣ ଗ୍ରହୁଁଛନ୍ତି କେହି ସେ କଥା ବୁଝନ୍ତି ନାହିଁ, ସମସ୍ତେ ଦାଣ୍ଡରେ ବସି ସଭା କରୁଛନ୍ତି ଓ ଖବରକାଗଜରେ ଲେଖୁଛନ୍ତି । ଆପଣ ଯାଣିଥିବେ ପୂର୍ବେ ସଞ୍ଜୀବନୀରେ ବରାବର ବାହାରୁଥିଲା ନାରୀ ହରଣ । ପୂର୍ବବଙ୍ଗରେ ଆପଣତ ଜାଣନ୍ତି ହରଣ ତା' ଭିତରେ ନ ଥାଏ । ଏସବୁ ଯାହାକୁ ଇଂରେଜୀରେ କହନ୍ତି 'elopement' କିନ୍ତୁ କାଗଜରେ ବାହାରେ ହରଣ । ମୁଁ ଜାଣେ ତା' ଭିତରୁ ଅଧିକାଂଶ elopement, ଅର୍ଥାତ୍ ବିଗ୍ରର କରାହୋଇ ହୁଏ । ମୁଁ କାଲି ବାସନ ମାଜୁଥିବି, ତୁ ଆସିବୁ, ମୋତେ ଗଡ଼ିଆରୁ ନେଇଯିବୁ, ଏହା ହୋଇକରି ସେସବୁ ହୁଏ । ପିଲା ଦିନେ ମୁଁ ଜାଣେ କେତେ ବାପଙ୍କର ଅବିବାହିତା କନ୍ୟା ଅନ୍ତଃସତ୍ତ୍ୱା ହୋଇ ଯାଆନ୍ତି ଓ ସେହିଯୋଗୁଁ ପୋଡ଼ିହୋଇ ମରନ୍ତି । କାଗଜରେ ବାହାରେ ବାପାକୁ ବର ପଣରୁ ରକ୍ଷା କରିବା ପାଇଁ ଝିଅ ତା'ର ପୋଡ଼ି ହୋଇ ମଲା । ଏହିପରି ଦେଶକାର୍ଯ୍ୟ ସେମାନେ କରନ୍ତି । ଏହିପରି ବହୁତ କରାଯାଏ । ଆପଣତ କଲିକତାରେ ଥିଲେ , ଏହା ଭିତରେ କେତେ ସତ , କେତେ ମିଛ ଜାଣିଥିବେ । ପୁରୀରେ ୩ ବର୍ଷ ତଳେ ବଙ୍ଗାଳୁଣୀକି ଦେଖିଲେ ଓଡ଼ିଆ ପଣ୍ଡା ପଢିଆରୀଙ୍କ ପିଲାମାନେ ଗୋଡ଼ାଉଛନ୍ତି ବୋଲି ବସୁମତି କାଗଜରେ ବାହାରିଥିଲା, ଓଡ଼ିଶାର ଏଥିରେ କଳଙ୍କ ହେଲା । ଏପରି କି ତତ୍କାଳୀନ ପ୍ରଧାନମନ୍ତ୍ରୀ ମହତାବ କେତେଲୋକଙ୍କୁ ଡ଼ାକିଆଣି ସବୁ ସତହେବା ଭଳିଆ କହିଲେ, ଏଇଟାକୁ ଆମେ ବୁଝିବା, ଯାକୁ ଆମେ ବନ୍ଦ କରିବା । କିନ୍ତୁ ମୁଁ ଜାଣେ ଏହା ଭିତରେ ଆଦୌ ସତ୍ୟ ନଥିଲା । ଏହା ଭିତରେ ଯଦି କିଛି ସତ୍ୟ ଥିଲା ମୁଁ ଜାଣେ ସେ ଭିନ୍ନ ପ୍ରକାର । କାହା ସଙ୍ଗେ କାହାର ଭାବ ହୋଇଥିବ । ମୁଁ ଅନୁସନ୍ଧାନ କରିଥିଲି । ଏ ବିଷୟରେ ଅନୁସନ୍ଧାନ କରୁଥିଲାବେଳେ ମନ୍ତ୍ରୀଙ୍କର ମନେ ନଥିବ, ମୁଁ ଯେତେବେଳେ ମନ୍ତ୍ରୀଙ୍କ ନିକଟକୁ ଯାଏ ସେ ରାଜାଙ୍କ ସଙ୍ଗରେ ଭୋଜନ କରୁଥିଲେ । ମତେ ଜଟୀ ପଢିହାରୀ କହିଲେ, 'why have you come here ?' ମୁଁ କହିଲି, I have come here because I know Jagannath, the institution, the history, tradition and working of it more than any one here. ଆଉ ମୁଁ ବର୍ତ୍ତମାନ ବି କହୁଛି ଯେ ମୁଁ ଜଣେ ଯାହା ଅନ୍ତତଃ ଜାଣେ ମୁଁ ଆଉ ଯାହାଙ୍କୁ ଏଠି ଦେଖୁଛି ସେମାନେ କେହି ଅନୁସନ୍ଧାନ କରିନାହାନ୍ତି ।

ଶ୍ରୀ ଜୟକୃଷ୍ଣ ମହାନ୍ତି : ଆପଣ ଯାହା କହିଲେ ସେ accept କଲେ ତ ?

ଶ୍ରୀ ନୀଳକଣ୍ଠ ଦାସ : Accept କଲେ କି ନ କଲେ ତାହା ମୁଁ କହି ପାରିବି ନାହିଁ । ବୋଧହୁଏ କଲେ, ଆଉ କିଛି କହିଲେ ନାହିଁ । ସେଠାରେ ରାୟ ବାହାଦୂର ଲୋକନାଥ ମିଶ୍ର, ଚିନ୍ତାମଣି ଆଚାର୍ଯ୍ୟ, ରାୟ ବାହାଦୁର ଉମାଚରଣ ଦାସ, ନାରାୟଣ ନନ୍ଦ, retired officer ଏମାନେ ସମସ୍ତେ ଥିଲେ ମୁଁ ଏ କଥା କହିଦେଲି, କିନ୍ତୁ କେହି ଆପତ୍ତି କରି ନାହାନ୍ତି ମୋ କଥାରେ । ମନ୍ତ୍ରୀ ବୋଧହୁଏ ଟିକିଏ ବାହାରକୁ ଯାଇଥିଲେ । ଏହିପରି ଯେଉଁ କଥାବାର୍ତ୍ତା ହେଲା, ମନ୍ତ୍ରୀ ମହାଶୟଙ୍କୁ ସୁଖ ଲାଗିଲା ନାହିଁ । ନ ହେବାର କଥା, ବାହାରିଗଲେ ।

ଶ୍ରୀ ଦୀନବନ୍ଧୁ ସାହୁ (ମନ୍ତ୍ରୀ) : କେଉଁ ମନ୍ତ୍ରୀଙ୍କ କଥା କହୁଛନ୍ତି ?

ଶ୍ରୀ ନୀଳକଣ୍ଠ ଦାସ : ଆପଣ ଯେତେବେଳେ ରଜାଙ୍କର dinner ଖାଇବାକୁ ଚାଲିଗଲେ ସେହିକଥା କହୁଛି, ମନ୍ତ୍ରୀ ଯେତେବେଳେ dinner ଖାଇବାକୁ ଚାଲିଗଲେ ସେ ବୋଧହୁଏ କିଛିଦୂର ଯାଇଥିବେ ସଭାରେ ଆମେ ସମସ୍ତେ ଯାଇଥିଲୁ ସେତିକିବେଳେ ଏ କଥାଟା ହେଲା । ଚିନ୍ତାମଣି ଆଚାର୍ଯ୍ୟ କହିଲେ ଆପଣ temper lose କରି କଥାଟା କହିଦେଲେ । ମନ୍ତ୍ରୀଙ୍କର ଏଇଟା ଖିଆଲ ନ ଥିବ । ମନ୍ତ୍ରୀ ଏହିଭଳି ହେବେ ବୋଲି ଜାଣିକରି ଏବଂ ଦେଖିକରି, କାର୍ଯ୍ୟ ତ ସରିଗଲା ସେ ଚାଲିଗଲେ । ସେଥିରେ ମୁଁ କାହାକୁ ଦୋଷ ଦେଉନାହିଁ । କିନ୍ତୁ କଥାଟା ଏଇଆ ପଡ଼ିଥିଲା । ବର୍ତ୍ତମାନ ଖବର କାଗଜରେ ସବୁ ବାହାରିଯାଉଛି । ଏହା ଭିତରେ ଅଛି କ'ଣ ? ଏଠେଇ ମନ୍ତ୍ରୀ ଗୋଟିଏ କଥା କହିଲେ, ଏହା ଭିତରୁ ବାହାରିବ କେଉଁ ସଂପ୍ରଦାୟ ଦୂରରେ ଅଛି, କ'ଣ ଅଛି, କାହା କାହାକୁ ନେଇ ଗୋଟିଏ କ'ଣ Advisory Committee କରିବେ । ଆଗ ଆଇନରେ ଥିଲା । ସେଥିରେ ସବୁ ଆପତ୍ତି ଅଛି । ଏସବୁ କାଗଜରେ ବାହାରୁଛି । ମୂଳରୁ ବି ସେଇୟା ଅଛି । ଏପରି କେତେକ ଲୋକ ଅଛନ୍ତି ଯେଉଁମାନଙ୍କର ମନ୍ଦିର ସହିତ କିଛି ସଂପର୍କ ନାହିଁ । ମୁଁ କହୁଛି ମଝିରେ ଅବଶ୍ୟ କେତେଦିନ ସେବା ବନ୍ଦ ହୋଇ ଯାଇଥିଲା । ଆପଣ ବୋଧହୁଏ ଜାଣିଥିବେ ଇତିହାସରେ ଅଛି, କଳାପାହାଡ଼ ଏବଂ ତା ଲୋକଙ୍କୁ ଡାକି ଆଣିଥିଲେ ଭକ୍ତମାନେ ଜଗନ୍ନାଥଙ୍କୁ ତାଙ୍କ ହାତରେ ଦେଇ ଦେବାପାଇଁ । କାହିଁ କିନା ପାତାଳୀ ଯେଉଁଠି ହୋଇଥିଲେ, ସେ କଥା କଳାପାହାଡ଼ ଜାଣିଥିଲେ ବୋଲି ଭକ୍ତମାନେ ଜାଣିଥିଲେ । Relegate ହେବା ପୂର୍ବରୁ ଲୋକ ଯେମିତି ହୁଏ କଳାପାହାଡ ସେମିତି ଥିଲେ । ପୁରୀର ଭକ୍ତମାନେ ଜଗନ୍ନାଥଙ୍କୁ ଗଙ୍ଗାକୂଳକୁ ନେଇ ଯାଉଥିଲେ । କଳାପାହାଡ ଜାଣି ପାରିବାରୁ ସେମାନେ ଚିଲିକା କୂଳକୁ ହାତୀରେ ଲଦି ନେଇ ଆସିଲେ । କଳାପାହାଡ ତାହା ଜାଣିପାରିଥିଲା । ସେ କେମିତି ଏସବୁ ଜାଣି ପାରିଲା ତାହା ପରବର୍ତ୍ତୀ କାଳରେ

ବାହାରିଛି । ତା' ପରେ ସେ ତାକୁ ନେଇ ଗଙ୍ଗା କୂଳରେ ପୋଡ଼ି ପକାଇଲା । ସେତେ-ବେଳେ କୁଜଙ୍ଗର ବିଶର ମହାନ୍ତି କେମିତି ଜାଣିଲେ, କ'ଣ କଲେ କେଜାଣି ସେ ସେହି ପୋଡା ଭିତରୁ ୩ ଖଣ୍ଡ କ'ଣ ନେଇ ରଖିଲେ । ସେତେବେଳେ କ'ଣ ସେବା ପୂଜା ବନ୍ଦ ହୋଇ ନ ଥିଲା ? ଏହା କ'ଣ କେହି ନାହିଁ କରିବ ? ମଝିରେ ମଝିରେ ବନ୍ଦ ହେଉଥିଲା । କିନ୍ତୁ ପରଂପରାଟା ଏତେ ପ୍ରବଳ ଯାହାକି ଭାରତରେ ଆଉ କେଉଁଠି ନାହିଁ । ସେ ପରଂପରା ଯାହାଥିଲା ଥରେ ଯଯାତି କେଶରୀ, ରକ୍ତବାହୁ ପାତାଳୀ କରିବାରୁ ବିନ୍‌କା ଛାଡ଼ି ପୁରୀରେ ପ୍ରତିଷ୍ଠା କରିଥିଲେ । ମାଦଳାପାଞ୍ଜିରେ ସେ ରକ୍ତବାହୁ କିଏ ମୁଁ କହିପାରିବି ନାହିଁ । ସେ ୧୦୪ ବର୍ଷ ନା କେତେ ପାତାଳୀ ହୋଇଥିଲେ । ଏହା ଅବିଶ୍ୱାସ କରିବାର କୌଣସି କିଛି କାରଣ ନାହିଁ । ଏ ପରମ୍ପରାଟା ଏତେ ଦୃଢ଼ ଯେ ସେ ଯେପରିଥିଲା ସେହିପରି ରହିଲା । ମୁଁ ଖାଲି କହୁଛି ବୋଧହୁଏ ଏ ସମସ୍ତେ ଧରିପାରିବା ଭଳି କହୁନାହିଁ । ମୋଟାମୋଟି ହେଲା ଯେ ଶଙ୍କରାଚାର୍ଯ୍ୟଙ୍କ ଠାରୁ ମଠ ଆରମ୍ଭ ହେଲା । କିନ୍ତୁ ଏ ପର୍ଯ୍ୟନ୍ତ ମଠର ଦେଉଳ ସେବା ସହିତ କୌଣସି ସଂପର୍କ ନାହିଁ । ଗୋଟିଏ ଭୋଗ ମଣ୍ଡପ ଗୋବର୍ଦ୍ଧନଙ୍କୁ ଭୋଗବର୍ଦ୍ଧନ ନାମ ଦିଆଗଲା । ଯେତେ Endowment ସବୁ ଅଛି ସେ ନ ହେଲେ ମନ୍ଦିରର କିଛି ଭାସିଯାଉନାହିଁ । ସେଠି ୩ ଟା ହେଲେ କିଛି ମନା ନାହିଁ । ସେହିଟାକୁ କାହିଁକି ଆମେ ଏହା ଭିତରେ ଆଣି ଖଞ୍ଜିବା ? ସେଟା ହେଲେ ମନ୍ଦିର ଚଳିବ ନ ହେଲେ ନାହିଁ ଓ ସେତିକି ହେଲେ ଆମର ଯଥେଷ୍ଟ ହେଲା ବୋଲି ଆମେ କାହିଁକି ନ ଭାବିବା ? ଆମକୁ ସେ କଥା ନ ପଚାରି ଏଇଟା ଯଦି ଅନୁସନ୍ଧାନ କରା ହୋଇଥାନ୍ତା ତା' ହେଲେ କ'ଣ କ୍ଷତି ହୋଇଥାନ୍ତା । ମୁ କହୁଛି ମନ୍ତ୍ରୀ ମହାଶୟ ଏହା ଭିତରେ ୩ ଥର ନିମନ୍ତ୍ରଣ ପାଇଲେ । କିନ୍ତୁ ଏହା ଭିତରେ ବେଳ ପାଇନାହାନ୍ତି । ମୁ କହିଥିଲି ଯେ ମୋ ନାଁରେ ଗୋଟିଏ ଦୁର୍ନାମ ହୋଇଗଲା । ମନ୍ତ୍ରୀ ନ ଜାଣିକରି ସେତେବେଳେ ସମସ୍ତେ ମଝିରେ ମଝିରେ କଥାବାର୍ତ୍ତା କରୁଥିଲେ । ଗୋଟିଏ କଥା କହି ପକାଇଲେ ଯେ ମୋର ଦୁର୍ନାମ ହୋଇଗଲାରୁ ମୁଁ ଏହାର ବିରୁଦ୍ଧରେ ଯାଉଛି । ଆପଣ ଦେଖନ୍ତୁ clause ୩ ହେଉଛି operative part. ସେଥିରେ ମୋର କୌଣସି ଆପତ୍ତି ନାହିଁ । ମୁଁ ଜମା ତା ବିରୁଦ୍ଧରେ ନୁହେଁ । ଏଇଟା କିପରି ଶୀଘ୍ର ହେବ ମୋର ଇଚ୍ଛା । କିନ୍ତୁ ମୋର ଗୋଟିଏ ଦୁର୍ନାମ ହୋଇଗଲା । ସେ ଦିନ କଥାବାର୍ତ୍ତାରୁ ମୁଁ ଖୁସିରେ ୫ ଟା ପରେ ରହିବାକୁ ଚାହିଁଲି । ଆପଣ ଭୁଲରେ କହିଦେଲେ ବା ମୁଁ ଭୁଲରେ ବୁଝିଲି ଏଇଟା ହେବନାହିଁ, ସେପରି ମୁଁ ଆପଣଙ୍କ ଆଗରେ ହଲା କରୁଛି, ପାଟି କରୁଛି । ସେତେବେଳେ କ'ଣ ହୋଇଗଲା କେହି ଦାୟୀ ନୁହଁନ୍ତି । କିନ୍ତୁ ମୋର ଦୁର୍ନାମ ହୋଇଗଲା ।

ଶ୍ରୀ ଗଦାଧର ଦତ୍ତ : ସେ ଦୁର୍ନାମ କ'ଣ ?

ଶ୍ରୀ ନୀଳକଣ୍ଠ ଦାସ : ଦୁର୍ନାମ ବ୍ୟାକରଣର ଗୋଟିଏ ଶବ୍ଦ । ଆଉ କ'ଣ ? ମୁଁ ମନେ କଲି 'ର' ଥିବାରୁ 'ନ' ଟା 'ଣ' ହେବ । ଯେଉଁମାନେ ବ୍ୟାକରଣର ଶତ୍ୟ ବିଧାନ ଜାଣନ୍ତି ସେମାନେ ବୋଧହୁଏ ଏଥିରେ ଆପତ୍ତି କରିବେ କିନ୍ତୁ ଏଇଟା ହେଉଛି ନିପାତନସିଦ୍ଧ । ସେ ଯାହାହେଉ, ମୁଁ ଆଉ ବେଶୀ ବକ୍ତୃତା ଦେବା ଦରକାର ମନେ କରୁନାହିଁ । ଆଜି ସକାଳଓଳି ଶେଷ କରିପାରିଲେ ରକ୍ଷା । ମୁଁ ଏ Bill ର ୩ୟ ପାଠ ବେଳେ କିଛି କହିବି, ଏହା କହି ରଖୁଛି । ବର୍ତ୍ତମାନ ମୁଁ ସେଥିପାଇଁ କହୁଛି ସରକାର ବିଚାର କରନ୍ତୁ । ମୁଁ ଯେତିକି amendment କରୁଛି ସେତିକି ରହିଲେ ଆମର ସମସ୍ତ କାର୍ଯ୍ୟ ସାଧିତ ହେବ । ଏସବୁ ଭର୍ତ୍ତିକରି କିଛି ଲାଭ ନାହିଁ । ମନ୍ତ୍ରୀ ମହାଶୟଙ୍କୁ ଅନୁରୋଧ କରିବି ସେ ଏହାକୁ ବିଚାର କରିବେ । ଯଦି ନାହିଁ କରିବେ ମୁଁ ଏହାକୁ press କରିବି ନାହିଁ । କରିବା ଦରକାର ନାହିଁ ।

ଆଇନ ମନ୍ତ୍ରୀ ଯାହା କହିଲେ ସେପରି କରିବାକୁ ମୁଁ ନାହିଁ କରୁନାହିଁ । ଏସବୁକୁ essential ଓ non-essential କରି ଦେଇଥିଲେ ଭଲ ହୋଇଥାନ୍ତା, ଏହା ନକଲେ ସରକାରଙ୍କୁ ଅସୁବିଧା ହୋଇପାରେ । ମୁଁ ସେହି ଯୋଗୁଁ କହୁଛି ଏସବୁକୁ essential, non-essential କରି ଅଲଗା କରିଦେଲେ ଭଲ ହୁଅନ୍ତା ।

The SPEAKER : ମାନ୍ୟବର ସଭ୍ୟ କ'ଣ ତାଙ୍କ ସଂଶୋଧନ ପ୍ରସ୍ତାବକୁ ପ୍ରତ୍ୟାହାର କରିବାକୁ ଚାହାନ୍ତି ?

ଶ୍ରୀ ନୀଳକଣ୍ଠ ଦାସ : ମୁଁ ପ୍ରତ୍ୟାହାର କରିବାକୁ ଚାହୁଁଛି ।

The SPEAKER : Has the hon'ble member the leave of the House to withdraw his amendment ?

Voices : Yes, yes. The amendment was, by the leave of the House, withdrawn.

ଶ୍ରୀ ନୀଳକଣ୍ଠ ଦାସ : ଆଟିକା ବିଷୟରେ ମୁଁ କାଲି କହିସାରିଛି । ଆଉ ସେ ବିଷୟରେ କହିବା ଦରକାର ନାହିଁ । Sir I beg to move that in sub-clause (a) of clause 2 of the Bill the following words be added at the end, namely, "including the *de facto* personal gifts in the name of the deity, such as, the gifts associated with the ceremony of 'Atika observed by the pilgrims'. ଏଥିରେ ଆଉ କିଛି କହିବା ଦରକାର ନାହିଁ, ଏଗୁଡ଼ିକୁ ଏହା ଭିତରୁ ବାହାର କରିଦିଅନ୍ତୁ ।

The SPEAKER : Amendment moved.

ଶ୍ରୀ ଦୀନବନ୍ଧୁ ସାହୁ (ମନ୍ତ୍ରୀ) : ମୋର ପାଖରେ ଯେତେ ଦୂର information ଅଛି ସେଥିରୁ ମୁଁ କହି ପାରିବି ଯେ ଆଟିକା ବିଷୟନେଇ ନାନାଦି ଗୋଳମାଳ ହେଉଛି । ଯାତ୍ରୀମାନେ ଯେତେବେଳେ ଆସନ୍ତି ସେତେବେଳେ ସେମାନେ କୋଇଲିବୈକୁଣ୍ଠରେ ବସି specific endowment କରନ୍ତି । ଯଦି ସେମାନେ ହଜାରେ ଟଙ୍କାର ଆଟିକା କରନ୍ତି ସେମାନେ କହନ୍ତି ଆମେ ଠାକୁରଙ୍କ ଭୋଗପାଇଁ ହଜାର ଟଙ୍କା ଦେଲୁଁ । ସେଥିରୁ କିଏ କେତେ ପାଇବାର କଥା—ରାଜାଘର କେତେ ପାଇବେ, ଠାକୁର ମନ୍ଦିରକୁ କେତେ ଯିବ, ପଣ୍ଡା କେତେ ପାଇବେ, ପଢିଆରୀ କେତେ ପାଇବେ, ସୁଆର କେତେ ପାଇବେ, ଏଥିପାଇଁ ନାନାଦି ଗୋଳମାଳ ହେଉଛି । ଏ ଗୋଳମାଳ ଯଦିଓ ବାହାରେ ହେଉଛି, ଏହାର ପ୍ରତିକ୍ରିୟା ଭିତରେ ଆସି ପଡୁଛି । ସେଥିପାଇଁ ଠାକୁରଙ୍କ ନୀତିରେ ଗୋଳମାଳ ହେଉଛି । ଥରେ ଏହି ଆଟିକା ଗୋଳମାଳ ଯୋଗୁଁ strike ହୋଇଥିଲା । ପଣ୍ଡିତ ମହାଶୟ ଯେତେବେଳେ ଆଉ amendment କରିଥିଲେ ସେଥିରେ ଏ ଆଟିକା include ହୋଇ ଯାଇଥିଲା । ସେଠି ଆଟିକାକୁ include କରିବାକୁ କହି, ଏଠି ଆଟିକାକୁ କାଢିବାକୁ କହିବାର ଉଦ୍ଦେଶ୍ୟ କ'ଣ ମୁଁ ବୁଝିଁ ପାରୁନାହିଁ । ଶୁଣା ଯାଉଛି ଯେ ଆଗେ ଏ ଆଟିକାର ଅଂଶ ମନ୍ଦିରକୁ ଦିଆ ଯାଉଥିଲା । କିନ୍ତୁ ବର୍ତ୍ତମାନ ମନ୍ଦିର fundକୁ ଆଟିକାର ଅଂଶ ଯାଉନାହିଁ । ଯିବା ଉଚିତ କି ନା ତାହା ଅଲଗା କଥା । କିନ୍ତୁ ବର୍ତ୍ତମାନ ଆଟିକାର ଯେଉଁ ସଂସ୍ଥା ଅଛି ସେଥିରେ ଯାହାର ଯେତେ ପାଇବାର ଅଛି ବା ପାଇବାର ପରମ୍ପରା ଅଛି ସେଇଟା recordରେ ରହିଲେ ଆମକୁ ତାକୁ control କରିବାକୁ ସୁବିଧା ହେବ । ଯେତେବେଳେ comprehensive legislation ଆସିବ ସେତେବେଳେ ଏହାର ବିଗ୍ଭର କରାଯିବ ।

ଶ୍ରୀ ନୀଳକଣ୍ଠ ଦାସ : I beg leave of the House to withdraw my amendment.

The SPEAKER : Has the hon'ble member the leave of the House to withdraw his amendment ?

The amendment was by the leave of the House withdrawn.

Shri NILAKANTHA DAS : Sir, I beg to move that sub-clause (*c*) of clause 2 be omitted and sub-clause (*d*) be relettered as sub-clause (*c*).

Shri DINABANDHU SAHU (Minister) : That is a consequential amendment. When sub-clause (*c*) was retained there is no necessity of moving this amendment.

ଶ୍ରୀ ନୀଳକଣ୍ଠ ଦାସ : ଯଦି ଆଟିକା ରଖିଲେ, ତାହାହେଲେ କେଉଁ ମଠ କେତେ ଦେବେ, କିଏ କେତେ ଜମି ଖାଉଛି, କିଏ କ'ଣ ବେଶ କରିବ, ସେସବୁ ନରଖିଲେ କିମିତି ହେବ । ଏପର୍ଯ୍ୟନ୍ତ specific endowmentର ଅର୍ଥ କ'ଣ ମୁଁ ବୁଝିନାହିଁ । Specific endowment କହିଲେ ଜଣେ 5 ବାଟି ଜମି ଖାଉଛି, ସେ ଦିଅଙ୍କୁ ପାଣି ଯୋଗାଇବ । ଏହାକୁ specific endowment କହନ୍ତି । ଏକଥା ମାନ୍ଦ୍ରାଜରୁ ଆସିଛି । ମାନ୍ଦ୍ରାଜରେ କ'ଣ ଅଛି ମୁଁ ଜାଣେ ନାହିଁ । ଏସବୁ ହୋଇ ସାରିଲା ପରେ specific endowmentର ଅବସ୍ଥା କ'ଣ ହେବ ସେ କଥା ମୋତେ ବୁଝାଇ ଦେଲା ପରେ ମୁଁ କହିବି ।

ଶ୍ରୀ ଦୀନବନ୍ଧୁ ସାହୁ (ମନ୍ତ୍ରୀ) : ମାନ୍ୟବର ସଭ୍ୟ ନିଜେ କହିଲେ ଯେ ଯିଏ ପାଣି ଦେବା ପାଇଁ ଜାଗିରୀ ଖାଉଛି ସେଇଟା specific endowment. ସେ ଭାବୁଛନ୍ତି ସେ ହିସାବ ଦେବା ଉଚିତ ନୁହେଁ । ଆମର ଖାଲି ଦେଖିବାର କଥା ସେ ପାଣି ଦେଉଛି କି ନାହିଁ । ସେ କ'ଣ ପାଉଛନ୍ତି କି ନ ପାଉଛନ୍ତି ସେ କଥା ଆମର ଦେଖିବା ଉଚିତ ନୁହେଁ । ଆମେ ଯେତେବେଳେ legislation ଦ୍ୱାରା ଏ ସବୁକୁ control କରିବାକୁ ଯାଉଛେ, ସେତେବେଳେ ସେ ପାଣି ଦେଉଛି କି ନାହିଁ, ସେ କ'ଣ ପାଉଛି କି ନାହିଁ, ତାହା ମଧ୍ୟ ଆମର ଦେଖିବା ଉଚିତ । ମାନ୍ୟବର ସଭ୍ୟ specific endowment କ'ଣ ବୁଝି ସାରିଛନ୍ତି । କିନ୍ତୁ ଏହାକୁ ଏପରି ଭାବରେ ନିୟନ୍ତ୍ରଣ କରିବା ଉଚିତ ନୁହେଁ ବୋଲି କହୁଛନ୍ତି । ଆମେ ଯେତେବେଳେ ଆଇନ ଦ୍ୱାରା ସବୁ specific endowment ଗୁଡ଼ିକୁ control କରିବାକୁ ଯାଉଛୁଁ ସେତେବେଳେ ସେ ପାଣି ଦେଉଥିବାରୁ କେତେ ଜମି ଖାଉଛି ବା କେତେଟା ନଡ଼ିଆ ଗଛ ଖାଉଛି ତା'ର ହିସାବ ରଖିବା ଦରକାର । ଯେଉଁ prescribed form ଯିବ, ସେଥିରେ ତାକୁ prescribed mannerରେ note କରିବାକୁ ହେବ ।

ଶ୍ରୀ ନୀଳକଣ୍ଠ ଦାସ : ତା'ହେଲେ ଏ କ'ଣ sub-clause ($a$) ହେଉଛି । ମୁଁ ଜାଣିବାକୁ ଚାହେଁ consequential sub-clause ($a$)ରେ record କଲାବେଳେ କେଉଁଗୁଡ଼ାକ essential ଓ କେଉଁଟା specific ଏହା କରିବା ପାଇଁ ହୋଇଛି । ଯଦି ଏହା ହୁଏ, ମୋର ଆପତ୍ତି ନାହିଁ ।

ଶ୍ରୀ ଦୀନବନ୍ଧୁ ସାହୁ (ମନ୍ତ୍ରୀ) : Surely ଯେତେବେଳେ ଆମେ form ଦେବା ସେଥିରେ ଯେଉଁ ଯେଉଁ ଗୁଡ଼ାକ record କରିବାକୁ ହେବ, ତାକୁ ଆମେ general duty and specific duty and endowments ବୋଲି କହିବୁ ।

ଶ୍ରୀ ନୀଳକଣ୍ଠ ଦାସ : Specific ବୋଲି କହିଲେ କ୍ଷତି କ'ଣ ?

Mr. SPEAKER : Sub-clause (*a*) ରେ endowmentର definition ଅଛି ଏବଂ sub-clause (*c*) ରେ specific endowment define କରାଯାଇଛି । Is it necessary to differentiate ?

ଶ୍ରୀ ଦୀନବନ୍ଧୁ ସାହୁ (ମନ୍ତ୍ରୀ) : It will be necessitated in the form. The form that is supplied to the Special Officer for recording the duty of particular persons who might have been doing some specific duty unconnected with anybody else.

ଶ୍ରୀ ନୀଳକଣ୍ଠ ଦାସ : ଯେତେ ସବୁ ଅଛି ସବୁ specific ରେ ପଡ଼ିବ । ଯଦି ସେଇଆ ହୁଏ ତା'ହେଲେ କେଉଁଟା specific ନ ହେବ । ମୋର କୌଣସି ଆପତ୍ତି ନାହିଁ ।

ବାଚସ୍ପତି ମହାଶୟ, ଆଉ କେହି ବର୍ତ୍ତମାନ ଶୁଣିବାର ମନୋଭାବରେ ନାହାନ୍ତି । ମୁଁ କିଛି କହିବା ପାଇଁ ଭାବୁଛି, ଏହା ବର୍ତ୍ତମାନ ଶେଷ ସମୟ । ଏହା ପୂର୍ବରୁ ଯେଉଁ ଉତ୍ସାହ ଥିଲା ତାହା ନାହିଁ । କାଲି ରାତିରେ ଯେତେ ପରିଶ୍ରମ କରିଥାଇଁ ଆଜି ସକାଳ ୫ ଟା ବେଳୁ ସମସ୍ତେ ଆସିଥାଇଁ, ହୁଏତ କିଏ ନଖାଇ ଆସିଥିବେ, କିଏ ଚାଲି ଯାଇଥିଲେ ଫେର ଫେରି ଆସିଛନ୍ତି, କାହାର ପୁଝାରୀ ନାହିଁ, ସେଥିପାଇଁ ଖାଇବା ବନ୍ଦୋବସ୍ତ କରି ପାରି ନାହିଁ । ଆପଣ ଏହା ବିଚାର କରିବାର ଥିଲା କିନ୍ତୁ କରି ନାହାନ୍ତି । ସଭ୍ୟଙ୍କର ବହୁତ ଅସୁବିଧା ହୋଇଛି ମୁଁ ବୁଝି ପାରିଛି । ତଥାପି କେତୋଟି କଥା କାଲି ରାତିରେ ମୁଁ ବିଧାନ ମନ୍ତ୍ରୀଙ୍କ ଠାରୁ ଶୁଣିଲି । ସେଥିରେ ମୁଁ ବୁଝିଲି ଯେ କେତେକ ଭ୍ରାନ୍ତି ଧାରଣା ତାଙ୍କର ରହିଛି । ମୁଁ ତିନୋଟି କଥା କହିବି । ଗୋଟିଏ ହେଉଛି ସମସ୍ତଙ୍କୁ ଧରିକରି ଗୋଟିଏ advisory committee ମନ୍ଦିର ଚଳାଇବା ବିଚାର ପୂର୍ବରୁ କରା ଯାଇଥିଲା । ଦ୍ୱିତୀୟଟି ହେଉଛି ପଣ୍ଡାମାନଙ୍କର ଚରିତ୍ର । ସେମାନେ ଗୁଣ୍ଡାମିଗିରି କରୁଛନ୍ତି, ଅପବ୍ୟବହାର କରୁଛନ୍ତି ଏହିଗୁଡ଼ିକୁ objects and reasons ରେ ବର୍ଣ୍ଣନା କରାଯାଇଛି କିନ୍ତୁ ସେଗୁଡ଼ିକରେ କୌଣସି ଭିତ୍ତି ନାହିଁ, ମୁଁ ଜାଣେ । କିଏ କେଉଁଠି କ'ଣ କରିପାରେ କିନ୍ତୁ ସାଧାରଣ ଭାବରେ ଏହିପରି କରାଯାଉ ନାହିଁ । କେଉଁ ଗାଁରେ କ'ଣ ଏହିପରି କିଛି ହେଉ ନ ଥିବ ? ସେଠି କ'ଣ ଖଳ ପ୍ରକୃତିର ଲୋକ ନାହାନ୍ତି ? ଏଟାତ ଅଲଗା କଥା । ତୃତୀୟ କଥା ହେଉଛି ହରିଜନ ପ୍ରବେଶ । ସେ ବିଷୟରେ ଆମର ଗୋଟିଏ ଆଇନ ହୋଇଛି, ଯେଉଁଟା କି ହେବାର ଉଚିତ ନଥିଲା । ଯେତେବେଳେ ଆଇନ ହେଉଥିଲା ସେତେବେଳେ ମୁଁ ହରେକୃଷ୍ଣ ମହତାବ ଓ ଚିନ୍ତାମଣି ମିଶ୍ରଙ୍କୁ ଫୋନ୍ କରିଥିଲି ମୋତେ 4 ଦିନ ଛାଡ଼ିଦିଅ ମୁଁ ଏହା କରିଦେବି । ଏ ଗୋଟିଏ ଅନୁଷ୍ଠାନ ଯେଉଁଥିରେକି ହରିଜନ ଯିବା ପାଇଁ କୌଣସି ବାଧା ନାହିଁ । ଏହାର ପରଂପରା ଅଛି । ଏହିଭଳି ଆଇନ କରିବା ଦ୍ୱାରା ଅପକୀର୍ତ୍ତି ହେବ ସିନା, କିନ୍ତୁ ଆଇନ ପାଶ୍ ହେଲା, ସେ ଦିନ

ମୁଁ କାନ୍ଦିଛି । କିନ୍ତୁ ଏହି କାର୍ଯ୍ୟ ବିନା ଆଇନରେ ହେବ ବୋଲି ମୋର ବିଶ୍ୱାସ ଥିଲା । ମୁଁ କରିଥିଲି ଯେ ଏ ବିଷୟରେ କିଛି କହିବି ବୋଲି । ମୋର ଠିକ୍ ମନେ ପଡ଼ୁଛି । ମୁଁ ଠିକ୍ କରିଥିଲି ମହାତ୍ମା ଗାନ୍ଧି ପଦବ୍ରଜରେ ଗ୍ଲଲିଲା ବେଳେ ଏହି କଥା କରିବି ବୋଲି

× × × × ×

ଶ୍ରୀ ସୁରେନ୍ଦ୍ର ନାଥ ପଟ୍ଟନାୟକ : ଜଗନ୍ନାଥ ମନ୍ଦିରରେ ହରିଜନ ପ୍ରବେଶ କରାଇବା ପାଇଁ କୌଣସି ଆଇନ ହୋଇ ନ ଥିଲା ।

ଶ୍ରୀ ନୀଳକଣ୍ଠ ଦାସ : ଯାହା ହୋଇଛି *de facto* ହୋଇଥିବ । ମୁଁ ଏତେ ଅନୁଧ୍ୟାନ କରି ନଥିଲି । ଅବଶ୍ୟ ଯାହା ହୋଇଥିଲା ସେଠି ଜୋର କରି ହରିଜନଙ୍କୁ ପ୍ରବେଶ କରାଇଲେ । ଯେପରିକି ଗୁରୁଭାଇ, ଆମ ମନ୍ଦିର ସେହିପରି ବୋଲି ଜଣାଅଛି, ଏଇକଥା ଅନେକ ଲୋକ ଜାଣନ୍ତି ଓ ତା'ର ଇତିହାସ ମଧ୍ୟ ଅଛି । ମହାତ୍ମା ଗାନ୍ଧି ଯେତେବେଳେ ତିନି ସପ୍ତାହ ଧରି ପଦଯାତ୍ରା କରିଥିଲେ ସେତେବେଳେ ମୁଁ ଜିନିଷଟା ଦେଖାଇ ଦେବି ବୋଲି ଠିକ୍ କରିଥିଲି । ସେତେବେଳେ ଏମାର ମଠ, ବଡ଼ଛତା ମଠ ଆପତ୍ତି କରିଥିଲେ । ସେତେବେଳେ ଯେଉଁ meeting ହେଉଥିଲା ୪ । ୬ ହଜାର ଲୋକ ସିଂହ ଦ୍ୱାରରେ ଜମା ହୁଅନ୍ତି, ସେଠି ଜଣେ ମଠମହନ୍ତ କହିଥିଲେ "ରଥସ୍ତାମ୍ ବାମନଂ ଦୃଷ୍ଟ୍ୱା, ପୁନର୍ଜନ୍ମ ନବିଦ୍ୟତେ" । ଜଗନ୍ନାଥଙ୍କୁ ରଥରେ ଦେଖିଲେ ପୁନର୍ଜନ୍ମ ପାଇବେ ନାହିଁ । କିନ୍ତୁ ମୁଁ କହିଲି ଏପରି କଦର୍ଥ କର ନାହିଁ । ପକୃତ କଥାଟି ହେଉଛି "ରଥଞ୍ଚ ଯଥା ସ୍ୟାତ୍ ତଥା ବାମନଂ ଜଗନ୍ନାଥ ଦୃଷ୍ଟ୍ୱା ଉପଲଭ୍ୟ, ପୁନର୍ଜନ୍ମ ନ ବିଦ୍ୟତେ" । ଏହା ବୈଦିକ ପୁରାଣରେ ବାଖ୍ୟା ହୋଇଛି, ତା'ର ଅର୍ଥ ହେଉଛି, ରଥରେ ଥିଲା ବେଳେ ଆପଣ ବୋଧହୁଏ ଜାଣନ୍ତି ଆମେ ଜଗନ୍ନାଥଙ୍କୁ ଯାଇ କୁଣ୍ଢାଇ ଥାଉ, କୋଳକରୁ, ଏହା କରିବାର କାରଣ ହେଉଛି, ସେ ଭାଇ, ସେ ବନ୍ଧୁ । ଏହା କରିବାରେ କାହାକୁ ମନା ନାହିଁ ଓ ଏହା କରିବାର ଅର୍ଥ ହେଉଛି ଯେପରି ତାଙ୍କୁ ଆମେ ଭାଇ ଓ ବନ୍ଧୁ ବୋଲି ଆଖ୍ୟା ଦେଉଛ, ଯଦି ଆମେ ସବୁବେଳେ ଏହି ଭାବ ରଖିପାରିବୁ ତାହା ହେଲେ ଆଉ ପୁନର୍ଜନ୍ମ ହେବନାହିଁ । ସେତିକିବେଳେ ମୁଁ ଗାଁ ଗାଁ ବୁଲି ହରିଜନମାନଙ୍କୁ ମନ୍ଦିରରେ ଭର୍ତ୍ତି କରାଉଥିଲି । ଆମର ଯେଉଁ କର୍ମୀମାନେ ଥିଲେ ସେନଗୁପ୍ତ ପଭୃତି ସେମାନେ ମଠ ମହନ୍ତଙ୍କୁ ଧରି ଏହା କରାଇବାକୁ ଚେଷ୍ଟା କରୁଥିଲେ । ମୁଁ ସେମାନଙ୍କୁ କହିଲି ସେମାନେ କିଏ, ସେମାନଙ୍କ ପାଖକୁ କାହିଁକି ଯାଉଛ । ରାଜା ମଧ୍ୟ ଏହି କଥା ଚାହୁଁ ନ ଥିଲେ । ସେ ପଣ୍ଡାମାନଙ୍କୁ ଡ଼କାଇ କହିଲେ ଯେ ଏହା କରାଇ ଦିଅ ନାହିଁ । ତାପରେ ପଣ୍ଡାମାନେ ମୋତେ କହିଲେ ଯେ ରାଜା ଏହିପରି କହୁଛନ୍ତି । ମୁଁ ସେତେବେଳେ ୧୫୦ ବର୍ଷର ବହି ପଢ଼ି କରି ଖବର କାଗଜରେ ବାହାର କଲି ଯେ ଏଠାରେ କୌଣସି ଭେଦାଭେଦ ନାହିଁ । ହରିଜନ ଯିବାରେ କୌଣସି ଆପତ୍ତି ନାହିଁ । ମୁଁ ସେତେବେଳେ ଦେଖାଇଥିଲି ଯେ ବିଜୟନଗରମ୍‌ଠାରୁ ନୋଳିଆମାନଙ୍କୁ ପଣ୍ଡାମାନେ ଯାଇ ଅଣନ୍ତି ଏବଂ ସେମାନେ ଆସି ତାଙ୍କ ବନ୍ଧୁଘରେ ରହନ୍ତି ଓ ସେମାନେ ଯାଇ

ମନ୍ଦିରରେ ଜଗନ୍ନାଥଙ୍କ ଦର୍ଶନ କରନ୍ତି । କିନ୍ତୁ ସେମାନେ ଯାହା ଘରେ ରହିଥାନ୍ତି ସେମାନେ ଯା'ନ୍ତି ନାହିଁ । ସେତିକିବେଳେ ମୁଁ ପଣ୍ଡାମାନଙ୍କୁ କହିଲି ଆମେତ ନୋଳିଆଙ୍କୁ ଆଣି ଜଗନ୍ନାଥଙ୍କ ଦର୍ଶନ କରାଉଛୁ, କିପରି ମନା କରିବୁ ଆମେ ଏହା ପୁରୁଷାନୁକ୍ରମେ କରି ଆସିଛୁ ଏହା କିପରି ଛାଡ଼ି ଦେବୁ ? ଏକଥା ସେମାନେ ଯେତେବେଳେ ରାଜାଙ୍କୁ କହିଲେ, ରାଜା ସେଥିରେ ନୀରବ ରହିଲେ । ତାଙ୍କୁ କିଛି ବୁଦ୍ଧି ଦେଖାଗଲା ନାହିଁ । ସେତିକିବେଳେ ସେନଗୁପ୍ତ ଆସି କହିଲେ, ମହାତ୍ମା ଗାନ୍ଧି ମୋତେ ଅପେକ୍ଷା କରି ବସିଛନ୍ତି । ମୁଁ ସେଠୁ ଗଲି, ମୋତେ ମହାତ୍ମାଜୀ କହିଲେ "ନୀଳକଣ୍ଠଜୀ ତୁମେ ଯାହା କରିବାକୁ ଯାଉଛ, ସେଥିରେ roiting ହୋଇଯିବ ବୋଲି ମୁଁ ଶୁଣିଲି" ସେ କହିଲେ "we shoud lie low so far as temple entry of Puri is concerned". ଯେତେବେଳେ ମୁଁ ତାଙ୍କୁ ଗୋଟିଏ ନମସ୍କାର କରି ଚାଲିଗଲି ।

Mr. SPEAKER : ମୁଁ ଏ ସଂକ୍ରାନ୍ତରେ ଗୋଟିଏ କଥା କହି ଦିଏଁ । ଗାନ୍ଧିଜୀ ଢେ଼ଙ୍କାନାଳରେ ଥିବା ସମୟରେ କସ୍ତୁରବା ମନ୍ଦିରକୁ ଯାଇଥିଲେ ସେଥିପାଇଁ ଗାନ୍ଧିଜୀ ଅନଶନ କରିଥିଲେ ।

ଶ୍ରୀ ନୀଳକଣ୍ଠ ଦାସ : ନାହିଁ ଆଜ୍ଞା, ଆପଣ ଯାହା କହୁଛନ୍ତି ୧୯୨୭ର କଥା । କିନ୍ତୁ ୧୯୩୩ ରେ ଯେତେବେଳେ ପଦବ୍ରଜରେ ଯାତ୍ରା କରୁଥିଲେ ସେତେବେଳେର କଥା କହୁଛି ।

ଶ୍ରୀ ସୁରେନ୍ଦ୍ରନାଥ ପଟ୍ଟନାୟକ : On a point of order ମାନ୍ୟବର ସଭ୍ୟଙ୍କର ପାଣ୍ଡିତ୍ୟ ଅଛି, ସେ ଯଦି ଏହି ସଂକ୍ରାନ୍ତରେ ବକ୍ତୃତା ଦେବେ ତେବେ ସନ୍ଧ୍ୟା ହୋଇଯିବ । ତା'ପରେ ସେ ଯେଉଁ କଥା କହୁଛନ୍ତି , ତାହା ଠିକ୍ କି ନୁହେଁ ସେଥିପାଇଁ ମାନ୍ୟବର ବାଚସ୍ପତି ତାଙ୍କୁ ସୂଚାଇ ଦେଉଛନ୍ତି । ଏହିପରି ଯଦି ବକ୍ତୃତା ଚାଲେ ତାହାହେଲେ ଆଜି ସନ୍ଧ୍ୟା ହୋଇଯିବ ଓ ଏହି Bill ସଂକ୍ରାନ୍ତରେ ଏହା ପ୍ରାସଂଗିକ ନୁହେଁ ।

Mr. SPEAKER : ଗାନ୍ଧିଜୀ ଆଉ ନାହାନ୍ତି, ତାଙ୍କ ସହିତ କ'ଣ କଥାବାର୍ତ୍ତା ହୋଇଥିଲା, ସେ କ'ଣ କହିଥିଲେ ସେସବୁ ବିଷୟ ନ କହିବା ଉଚିତ ।

ଶ୍ରୀ ନୀଳକଣ୍ଠ ଦାସ : କାଲି ବିଧାନ ମନ୍ତ୍ରୀ ଏହିକଥା କହିଥିଲେ ବୋଲି ତା'ର ଉତ୍ତର ମୁଁ ଦେଉଛି । ସେ ଏହି ବିଷୟରେ କହିଥିଲେ ବୋଲି ଏହି କଥା ଉଠୁଛି ।

Shri DINABANDHU SAHU (Minister) : ମୁଁ ସେହି କଥା ଏହି କାରଣରୁ କହିଥିଲି ଯେ ଶ୍ରୀ ଦିବାକର ପଟ୍ଟନାୟକ କହିଥିଲେ ହରିଜନମାନେ ଜଗନ୍ନାଥଙ୍କ ମନ୍ଦିରକୁ ଯିବା ବିଷୟରେ ମୋର କୌଣସି ଧାରଣା ନାହିଁ ଓ ଜଗନ୍ନାଥଙ୍କ ବିଷୟରେ ମୁଁ ସଂପୂର୍ଣ୍ଣ ଅଜ୍ଞ । ସେଥିପାଇଁ ମୁଁ କହିଥିଲି ମହାତ୍ମା ଗାନ୍ଧି ଯେତେବେଳେ

(insist) କଲେ ଯେ ହରିଜନମାନେ ନ ଗଲେ ସେ ମନ୍ଦିରକୁ ଯିବେ ନାହିଁ, ସେତିକିବେଳେ ପଣ୍ଡାମାନେ ମତ ଦେଇଥିଲେ , କିନ୍ତୁ ତାହା ହେଲା ନାହିଁ । ସେଥିପାଇଁ ମୁଁ କହିଥିଲି ଯେ ସ୍ୱତ୍ୱାସ୍ୱତ୍ୱ କାହାର କଣ କାହାକୁ ଜଣାନାହିଁ ।

Mr. SPEAKER : Third reading ବେଳେ Act ଟି କିପରି ଭଲ ଭାବରେ କାର୍ଯ୍ୟକାରୀ ହେବ କେବଳ ସେଇ କଥା ନେଇ ଆଲୋଚନା କରିବା ପ୍ରାସଂଗିକ ହେବ ।

ଶ୍ରୀ ନୀଳକଣ୍ଠ ଦାସ : ତାଙ୍କର ଏହି ଧାରଣା , ମୁଁ କହିବି ଭୁଲ ଧାରଣା । ବହୁ ଆବହମାନ କାଳରୁ ଗଣ୍ଡ, ଘାସି ପ୍ରଭୃତି ଜାତିର ଲୋକେ ଛତିଶିଗଡ଼ରୁ ଆସି ମନ୍ଦିରକୁ ଯାଆନ୍ତି । ସେମାନେ ଲୁଚିକରି ଆସନ୍ତି ନାହିଁ । ତାହା ପଣ୍ଡାଙ୍କ recordରେ ମିଳିବ । ମୋର କହିବାର କଥା ହେଉଛି ଯେ ଏଇଟା ଲୁଗ୍ଛପା କଥା ନୁହେଁ । ଏହା ସବୁ କେହି ଜାଣିପାରୁ ନାହାନ୍ତି କାରଣ ପଣ୍ଡା ପଢିଆରୀଙ୍କ ପାଖକୁ କେହି ଯାଉନାହାନ୍ତି ଏସବୁ ଜାଣୁ ନାହାନ୍ତି ।

Mr. SPEAKER : ମାନ୍ୟବର ଆଇନ ମନ୍ତ୍ରୀ ଯାହା କହିଲେ ତାର ପ୍ରତିବାଦ ସ୍ୱରୂପ ମାନ୍ୟବର ସଭ୍ୟ କହିପାରନ୍ତି ଯେ ଏହା ଠିକ୍ ନୁହେଁ । ମାନ୍ୟବର ସଭ୍ୟ ମୋତେ କ୍ଷମା କରିବେ, ସେ ଏତେ ଗୁଡାଏ କଥା କହି ସମୟ ନେବା ଠିକ୍ ହେଉନାହିଁ । କାରଣ ଏହା ପ୍ରାସଙ୍ଗିକ ହେଉନାହିଁ ।

ଶ୍ରୀ ନୀଳକଣ୍ଠ ଦାସ : ମୁଁ ପ୍ରତିବାଦ କରି କହି ଦେଇଥିଲି । ମୁଁ ଏ କାର୍ଯ୍ୟ କରିଥିଲି । କରିବାର କାରଣ ମଧ୍ୟ ଅଛି । ପୁରୀର ପଣ୍ଡା ପଢିଆରୀ ସମସ୍ତଙ୍କ ମୁହଁରୁ ଶୁଣିଥିବେ ମୁଁ କ'ଣ କରିଥିଲି । ମୁଁ ଯେଉଁ କଥାର ଦାୟିତ୍ୱ ନେଇ ନ ପାରିବି ସେ କଥା କହୁ ନାହିଁ । ମୁଁ ସେଦିନ କହିଥିଲି ଏ ଭାର ନେବି । ମୁଁ ବର୍ତ୍ତମାନ ସେ କଥା କହୁଛି, ବିଧାନ ମନ୍ତ୍ରୀ ଯଦି ପୁରୀ ଯିବେ ଏବଂ ମୋ ଉପସ୍ଥିତିରେ ପଣ୍ଡା ପଢିଆରୀମାନଙ୍କ ସହିତ କଥାବାର୍ତ୍ତା କରିବେ ତା'ହେଲେ ବିଧାନ ମନ୍ତ୍ରୀଙ୍କ ମତ ବଦଳିଯିବ । ସେ ଖାଲି ଏଠୁ ସେଠୁ ଶୁଣୁଛନ୍ତି ।

Mr. SPEAKER : ଏସବୁ ଆଲୋଚନା ବର୍ତ୍ତମାନ ଅପ୍ରାସଙ୍ଗିକ ହେଉଛି । କେବଳ ଏ ବିଲ୍‌ଟି କିପରି କାର୍ଯ୍ୟରେ ପରିଣତ ହେବ ସେ ସଂକ୍ରାନ୍ତୀୟ କଥା କହନ୍ତୁ । ପୂର୍ବେ କ'ଣ ହୋଇଥିଲା" କ'ଣ ନ ହୋଇଥିଲା, କ୍ଷମା କରିବେ, ମାନ୍ୟବର ସଭ୍ୟ, ଏସବୁ ଅପ୍ରାସଙ୍ଗିକ ହେଉଛି ।

ଶ୍ରୀ ନୀଳକଣ୍ଠ ଦାସ : ଆପଣ ମନେକରୁଛନ୍ତି ବିଲ୍‌ଟି କାର୍ଯ୍ୟକାରୀ ହେବା ଦିଗରେ ମୁଁ ଏହା କହୁନାହିଁ । ମୁଁ କହୁଛି ସେଠାକୁ ଯାଆନ୍ତୁ, ଦେଖନ୍ତୁ ତାଙ୍କ ସଙ୍ଗେ ବିଗ୍ଚର କରନ୍ତୁ । ତା'ହେଲେ ସବୁ ଜାଣିପାରିବେ, ଅନ୍ୟ ଆଡୁ ଶୁଣି

ଖବର କାଗଜରୁ ପଢି ଯାହା ଇଚ୍ଛା ତାହା ବିଗ୍ଚର କରିବେ । କାହିଁକି ନାଁ ଆପଣ ଜାଣନ୍ତି ଏହି ସରକାରର ପୂର୍ବ ପୁରୁଷମାନେ ଏମାର ମଠ ମହନ୍ତ ଆଉ ତାଙ୍କ ଚେଲା ଦି ଜଣଯାକ ଯେତେବେଳେ ଇଲେକ୍‌ସନ୍‌ରେ ବାହାରିଥିଲେ, ରାତିରେ ମହତାବ ତାଙ୍କ ପାଖକୁ ଗଲେ ଏବଂ କହିଲେ ମହାରାଜ ଯେଉଁ Advisory Committee ହେବାର ଅଛି ସେଥିରେ ଆପଣଙ୍କୁ ଚେୟାରମ୍ୟାନ କରିଦେବୁ, ଆପଣ ଛାଡ଼ି ଦିଅନ୍ତୁ । Advisory Committee ବର୍ତ୍ତମାନ ଗଢ଼ା ହେଉଛି । ମୁଁ ସେଥିପାଇଁ ମୂଳରୁ କହୁଛି ଯେ ଏଥିରେ ବିପଦ ଅଛି । Advisory Committee, ଏମାନେ କହୁଛନ୍ତି administration କରିବେ । କଲିକତାଠାରୁ ଦିଲ୍ଲୀ ପର୍ଯ୍ୟନ୍ତ ସମସ୍ତେ କହୁଛନ୍ତି ଯେ ଗୋଟିଏ କ'ଣ administration ବଦଳୁଛି । କିନ୍ତୁ administration କ'ଣ ଏଥିରେ ବଦଳୁଛି ? ଏତ ଆଗରୁ ବି ତିଆରି ହୋଇଛି ? ମୁଁ ବିନୀତ ଭାବରେ ଜଣାଉଛି ଯେ ଏସବୁ ଏପରି ହେବା ଉଚିତ ନୁହେଁ ।

ତା'ପରେ ପଣ୍ଡା, ପଡିଆରୀଙ୍କ ନାମରେ ଯେପରି ବାହାରୁଛି ତାକୁ କେହି ଦେଖୁ ନାହାଁନ୍ତି । Puri Gazetteer, District Magistrate ଙ୍କ report ଏସବୁ ଏମାନଙ୍କର ହେଲା ବେଦ, ମୁଁ କହୁଛି ଏଗୁଡ଼ାକ ସବୁ ପୁରୁଣା ହୋଇଗଲାଣି । ମୁଁ ଯାହା କହୁଛି ବର୍ତ୍ତମାନ ସେଗୁଡ଼ିକ କାର୍ଯ୍ୟରେ ପରିଣତ କରାଯାଉ । ବିଧାନମନ୍ତ୍ରୀ, ମୋ ସାଙ୍ଗରେ ପୁରୀ ଆସନ୍ତୁ, ଦେଖିବେ, ମୁଁ ଯାହା କହୁଛି ସେମାନେ ଅତି ଭଦ୍ର ଲୋକ । ଭାରତବର୍ଷରେ ଯେତେ ପଣ୍ଡା ଅଛନ୍ତି ସେମାନଙ୍କ ଭିତରେ ଏମାନେ ଖୁବ୍ ଭଲ ଲୋକ ।

ଶ୍ରୀ ଦୀନବନ୍ଧୁ ସାହୁ (ମନ୍ତ୍ରୀ) : ସମସ୍ତେ Hunter's History accept କରୁଛନ୍ତି, ଆପଣ ତାକୁ କ'ଣ ମାନୁନାହାଁନ୍ତି ?

ଶ୍ରୀ ନୀଳକଣ୍ଠ ଦାସ : Hunter's History ବହୁତ ପୁରୁଣା ହୋଇଗଲାଣି । ଐତିହାସିକମାନେ ତାକୁ ଆଉ ଛୁଉଁ ନାହାଁନ୍ତି । R. D. Banerjee ଙ୍କ History ଦେଖୁ ନାହାଁନ୍ତି ? ଏତେବାଟ କାହିଁକି ଯାଉଛନ୍ତି ? ଆମର ଏହି ଶିଶୁପାଳ ଗଡ଼ ମ୍ୟୁଜିଅମରେ ସୁଶୀଲ୍ ଦେ ଓ ସତ୍ୟନାରାୟଣ ରାଜଗୁରୁ ଅଛନ୍ତି ତାଙ୍କୁ ପଗ୍ଚରନ୍ତୁ । ହଣ୍ଟର ଯାହା କହିଲେ ସେଥିରେ କିଛି ମୂଲ୍ୟ ନାହିଁ ।

Shri DINABANDHU SAHU (Minister) : **It is not a history, it is** a record of events as was happening in those days.

ଶ୍ରୀ ନୀଳକଣ୍ଠ ଦାସ : Webster Dictionary ରେ ଜଗନ୍ନାଥ ମାନେ କ'ଣ ଦିଆଯାଇଛି ଦେଖନ୍ତୁ । Hunter's History ରେ ଅଛି ଯେ ଜଗନ୍ନାଥଙ୍କର ରଥ ଚଳିଲାବେଳେ ଲୋକେ ମୁକ୍ତିପାଇବେ ବୋଲି ରଥ ଆଗରେ ପଡ଼ି ଯାଉଥିଲେ ଓ ରଥ ତାଙ୍କ ଉପରେ ଚାଲିଯାଉଥିଲା । ଏ ସବୁ କଣ ସତ ? ଅନୁସନ୍ଧାନ କରାଯାଉ ।

Mr. SPEAKER : Hunter's History, R. D. Banerjeeଙ୍କ History ଏସବୁ ଆଲୋଚନା କରିବା କଣ ଅପ୍ରାସଙ୍ଗିକ ନୁହେଁ ?

ଶ୍ରୀ ନୀଳକଣ୍ଠ ଦାସ : ଆପଣ ଯଦି ଚାହାଁନ୍ତି ମୋର ଏତିକି ହେଲା । ଆଇନ ମନ୍ତ୍ରୀ ପ୍ରଥମେ ଯାହା କହିଲେ ମୁଁ ଭାବିଲି ବୋଧହୁଏ ଏଇଟା କେହି ଜାଣି ନାହାନ୍ତି । ସେଥିପାଇଁ ମୁଁ ପଦେ କହିଦେଇ । ମୁଁ Appeal କରିବାକୁ ଛିଡ଼ା ହୋଇଥିଲି ଯେ Preamble ଟା ଯାହା ପାସ୍ କଲେ ସେଥିରେ ବିପଦ ଅଛି । କେହି ଯଦି ନ ଚାହିଁବେ ମୁଁ କଣ କାହା ଅଣ୍ଟିରେ ହାତ ପୂରାଇ କହିବି ଆସ ହେ ! ଶୁଣ ।

ଶ୍ରୀ ଶାନ୍ତନୁ କୁମାର ଦାସ (ଉପମନ୍ତ୍ରୀ) : Hunter's History ରେ ଯାହା ଲେଖା ଅଛି ସେଗୁଡ଼ିକ ସତ କି ମିଛ ସେ କଥା ମୁଁ କହିବାକୁ ଯାଉନାହିଁ । କେବଳ ମୁଁ ପଣ୍ଡିତ ମହାଶୟଙ୍କୁ ପଚାରୁଛି ଯେ, ଯେତେବେଳେ ଡକ୍ଟର ଆମ୍ବେଦକର ଜଗନ୍ନାଥଙ୍କ ସଂପର୍କରେ ତାଙ୍କର ଇତିହାସରେ ଲେଖିବା ପାଇଁ ବ୍ୟଗ୍ର ହୋଇ ଜଗନ୍ନାଥ ଦେଖିବାକୁ ଚାହିଁଥିଲେ ଏବଂ ପୁରୀ ଆସିଥିଲେ ସେତେବେଳେ ପଣ୍ଡିତ ମହାଶୟ ତାଙ୍କର ଅନୁମତି ପାଇବା ଦିଗରେ ଚେଷ୍ଟା କରିଥିଲେ କି ?

ଶ୍ରୀ ନୀଳକଣ୍ଠ ଦାସ : କିଏ ମୋତେ ଡାକିଛି ? ପଣ୍ଡା, ପଢିଆରୀ ତ ଅନ୍ୟାନ୍ୟ ଦେଶରୁ ସମସ୍ତଙ୍କୁ ଭିତରକୁ ଯିବାକୁ ଦିଅନ୍ତି । ଏପରି କି ଘାସି ଆସିଲେ ମଧ୍ୟ ଭିତରକୁ ଯାଆନ୍ତି ।

ଶ୍ରୀ ଶାନ୍ତନୁ କୁମାର ଦାସ (ଉପମନ୍ତ୍ରୀ) : ସେହିପରି ମାନ୍ୟବର ଜଗଜ୍ଜୀବନ ରାମ ଯେତେବେଳେ ପୁରୀ ଆସିଥିଲେ ସେତେବେଳେ ମୁଁ ଥିଲି ପୁରୀରେ । ପଣ୍ଡା ପଢିଆରୀ ଆସିଲେ । ତାଙ୍କୁ ପଚରାଗଲା ଯେ "ମୁଁ ମନ୍ଦିରକୁ ଯିବାକୁ ରାଜି ଅଛି । ତମେ ମୋତେ Openly ନେବ କି ? ସେମାନେ କହିଲେ ଆମେ ନେବୁ । କିନ୍ତୁ ଆପଣ କାହାକୁ କିଛି କହିବେ ନାହିଁ !" ତା'ହେଲେ ପଣ୍ଡିତ ମହାଶୟ କେମିତି କହୁଛନ୍ତି ଯେ ପଣ୍ଡା ପଢିଆରୀମାନେ ଜଣାଶୁଣା ଭାବରେ ନିଅନ୍ତି, ଏଇଟା ଠିକ୍ ନୁହେଁ ।

ଶ୍ରୀ ନୀଳକଣ୍ଠ ଦାସ : ଚାଲନ୍ତୁ ତାଙ୍କୁ ଗୋଟିଏ ସଭା କରି ପଚାରିବା । କିଏ କାହାକୁ କଣ କହିଲା ଏସବୁ ନେଇ ଯୁକ୍ତି କରି କିଛି ଲାଭ ନାହିଁ ।

Mr. SPEAKER : ମୁଁ ବନ୍ଦ କରିବାକୁ ଯାଉ ନାହିଁ । ପ୍ରାସଙ୍ଗିକ ଯାହା ହେବ ତାହା କରନ୍ତୁ । ଇତିହାସରୁ କେଉଁଟା ଭଲ କେଉଁଟା ଖରାପ ଜଗଜ୍ଜୀବନ ରାମ, ଆମ୍ବେଦକର, ଏମାନେ ପୁରୀ ମନ୍ଦିରକୁ ଗଲେ କି ନାହିଁ, ଏସବୁ କଥା କହିବା ପ୍ରାସଙ୍ଗିକ ହେଉନାହିଁ । କେବଳ Bill ଟା କେମିତି କାର୍ଯ୍ୟକାରୀ ହେବ ଓ ସେଥିରେ ସୁବିଧା ଅସୁବିଧା କଣ ଅଛି ସେ ବିଷୟରେ ମାନ୍ୟବର ସଭ୍ୟ କହନ୍ତୁ । ପ୍ରାସଙ୍ଗିକ କଥା କହିଲେ ଯେତେ ସମୟ ଚାହିଁବେ ମୁଁ ଦେବି ।

ଶ୍ରୀ ଦୀନବନ୍ଧୁ ସାହୁ (ମନ୍ତ୍ରୀ) : ମୋର ଖାଲି ଏତିକି କହିବାର ଥିଲା ଯେ ଏ ମନ୍ଦିର ବିଷୟରେ ପଣ୍ଡିତ ମହାଶୟ ଯାହା କହୁଛନ୍ତି ସେଇଟା Partly true and partly untrue. Hunter ମଧ୍ୟ ଯାହା କହିଛନ୍ତି ତାହା Partly true. ପଣ୍ଡିତ ମହାଶୟ ଯାହା କହିଲେ ଯେ ଏ ଘଟଣା ହେଉଛି ତାହା ମଧ୍ୟ True କିନ୍ତୁ ସେ ଯାହା କହୁଛନ୍ତି ଯେ ପଣ୍ଡା ପଢିଆରୀଙ୍କ ଆଚରଣ ଶୁଦ୍ଧ, ପୁରାଣରେ ଯାହା ଥାଉ ନା କାହିଁକି, ପରମ୍ପରା ଯାହା ହେଉନା କାହିଁକି ମୋର କହିବାର କଥା ଯେ ସମୟ ସମୟରେ ପଣ୍ଡା ପଢିଆରୀଙ୍କ ଆଚରଣ ଖରାପ ହୋଇଛି ଏବଂ ଅତୀତରେ ଖରାପ ଉଦ୍ଦେଶ୍ୟରେ ମଧ୍ୟ ଯାଇଛି । ଏହି ସଂପର୍କରେ Hunter କହିଛନ୍ତି —

" It would be * * * *

Mr. SPEAKER : ଏସବୁ ପଢିକରି ଗୃହର ସମୟ ନଷ୍ଟ କରିବା ଦରକାର ନାହିଁ ।

ଶ୍ରୀ ନୀଳକଣ୍ଠ ଦାସ : ମୁଁ ବର୍ତ୍ତମାନ ଆପଣଙ୍କୁ ଏତିକି କହିବାକୁ ଚାହେଁ ଯେ ସେ ଯେତେ ପଢୁଛନ୍ତି, ତା' ଭିତରୁ ଅଧିକାଂଶ ମୁଁ ପଢିଛି । ଏମାନେ ସବୁ ବାହାର ଲୋକ ପାଖଲୋକ ମନ୍ଦିରକୁ ଗଲେ ଅସ୍ପୃଶ୍ୟ କି ନୁହେଁ ସେଇଟା ହୁଏତ ଦେଖାଯାଉଥିବ । କିନ୍ତୁ ଏଇଟା ସତ କଥା ଦୂରରୁ କେହି ଆସିଲେ ତାଙ୍କୁ କେହି କେବେ ମନା କରୁନଥିଲେ । ଲୁଚାଇ କରି ନେଇଯିବା କଥା ପୁରୀରେ ଅସମ୍ଭବ । ଆପଣ ଦେଖିବେ, କୋଇଲି-ବୈକୁଣ୍ଠରେ ଯେ ଏହିପରି କେତେ ଲୋକଙ୍କ ନାଁ ,ଗାଁ, ସବୁ ଲେଖା ହୋଇଅଛି । ପୁରୀରେ ହାଡ଼ି ମନ୍ଦିର ଭିତରକୁ ସଫା କରିବାକୁ ଯିବେ । କିନ୍ତୁ ବାକି ଲୋକଙ୍କୁ ପଣ୍ଡା ପଢିହାରୀମାନେ ଭିତରକୁ ଛାଡ଼ନ୍ତି ନାହିଁ । ଏ ଗୋଟିଏ ତାଙ୍କର ଦୁର୍ନାମ । କଲିକତାରେ ଏ ଦୁର୍ନାମ ହେଲା ଆମ କାଗଜମାନେ କିଛି ନବୁଝି ନଶୁଝି ତାକୁ Reproduce କରିଦେଲେ । ମୁଁ କହୁଛି ଯେ ବିଧାନ ମନ୍ତ୍ରୀ ମୋ ସାଙ୍ଗରେ ପୁରୀ ଆସନ୍ତୁ । ଆମେ ସେମାନଙ୍କ ସଙ୍ଗରେ କଥାବାର୍ତ୍ତା କରିବା ତା'ପରେ ତାଙ୍କ ମନକୁ ଯାହା ଆସିବ ସେ କରିବେ, ତାଙ୍କ ପାଖକୁ କେହି ନ ଯାଇ, କେହି ତାଙ୍କ କଥା ନ ଶୁଣି ଯାହା ଇଚ୍ଛା ତାହା କାଗଜମାନେ ବାହାର କରୁଛନ୍ତି ଓ ତାକୁ ଏମାନେ ବିଶ୍ୱାସ କରୁଛନ୍ତି । ମୁଁ ତାଙ୍କର ଗୋଟିଏ

*Ad hoc* Committee କରିଛି । ମୁଁ ତାଙ୍କୁ ଡାକିଛି । ସେ ହଁ କରିଛନ୍ତି । କିନ୍ତୁ ଯିବାକୁ ବେଳ ମିଳୁନାହିଁ । ମୋର କହିବାର ଅଭିପ୍ରାୟ ଯେ ଜିନିଷଟିକୁ ଆମ ଦୃଷ୍ଟିରୁ ଦେଖିବାକୁ ଚେଷ୍ଟା ନ କରି ତାଙ୍କ ନିଜ ଦୃଷ୍ଟିରୁ ଆପଣ ଦେଖନ୍ତୁ । ଆଉ କୌଣସି କଥା ଶୁଣନ୍ତୁ ନାହିଁ । ସେ ଯାହା କହୁଛନ୍ତି ଯେ ଆମେ ବାହାର ଲୋକଙ୍କଠାରୁ ମତ ସଂଗ୍ରହ କରି Hunter's History ପଢ଼ିକରି ଏସବୁ ଠିକ୍ କରିଦେବା । ମୁଁ କହୁଛି ବାଚସ୍ପତି ମହାଶୟ, ଏହି କାମ କରିବାରେ ଏହା ଏକ ପ୍ରଧାନ ଅନ୍ତରାୟ ହେବ । ରଥ ଗଲିଲାବେଳେ ହୁଏତ କେବେ କେହି ଜଣେ ରଥ ଚକତଳେ ପଡ଼ି ଯାଇଥିଲା । ତା ବୋଲି Hunter ଯେ ଲେଖିଦେଲେ, ଭାରତବର୍ଷର ଲୋକେ ମୁକ୍ତି ପାଇବାପାଇଁ ରଥ ଚକତଳେ ପଡ଼ନ୍ତି, ଏଇଟା କଣ ସତ ବୋଲି ଆମେ ମାନିନେବା ? ଏମିତି କେତେ ସାହେବ ଆସି କିଛି ନବୁଝି ନଶୁଝି ଲେଖି ଦେଉଛନ୍ତି । ସେଥିପାଇଁ ମୁଁ କହୁଛି ଆମେ ସେ ଜାଗାକୁ ଯିବା,ତାଙ୍କୁ ସବୁ ପଗ୍ଭରିବା, ତାଙ୍କ ମତ ବୁଝିବା, ତା ନା ସିନା କଥା । ମୁଁ ଜାଣେ ସେମାନେ ଅତ୍ୟନ୍ତ ଭଦ୍ର ଲୋକ । ମୁଁ ଯେତେବେଳେ ସେମାନଙ୍କୁ ଗୁଣ୍ଡାଗିରି କଥା କହିଲି ସେମାନେ ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ ଯେ ଏଇଟା କ'ଣ କଳା କୁଡୁଆ ନା କଳଙ୍କ କୁଡୁଆ ? ହୁଏତ କିଏ ଜଣେ କିଛି ଗୋଟାଏ ଅନ୍ୟାୟ କାମ କରିଦେଲା, ସେଥିପାଇଁ କ'ଣ ଆମେ ଗୋଟିଏ ଜାତିକୁ ଦୋଷୀ ବୋଲି ସାବ୍ୟସ୍ତ କରିବା ?

ଶେଷରେ କେବଳ ମୁଁ ମନ୍ତ୍ରୀ ମହାଶୟଙ୍କୁ ଏତିକି କହିବାକୁ ଚାହେଁ ଯେ *Ad hoc* Committee ର President ହେଉଛନ୍ତି ବାମଦେବ ପଢିଆରୀ ଯେ କି ଆମ ସଙ୍ଗରେ ବହୁତ ଥର ଜେଲ ଯାଇଥିଲେ ଏବଂ ଯାହାଙ୍କୁ ବି ବହୁତ ଲୋକ ଜାଣନ୍ତି ଯେ ତାଙ୍କର ଗୋଟିଏ ସମ୍ମାନ ଅଛି । ସେ ଅତି ଉଚ୍ଚ ଦରର ଲୋକ । ମନ୍ତ୍ରୀ ମହାଶୟ ମୋ ସାଙ୍ଗରେ ପୁରୀ ଆସନ୍ତୁ । ମୁଁ ତାଙ୍କୁ ଅନୁରୋଧ କରିବି ସେ ସେମାନଙ୍କ ପାଖକୁ ଯାଇ ସବୁ କଥା ବୁଝନ୍ତୁ । ମୋର ଆଉ ବିଶେଷ କିଛି କହିବାର ନାହିଁ । ମୋର କେବଳ ଏତିକି ଅନୁରୋଧ ତାଙ୍କ ପାଖକୁ ଯିବାରେ ସାହାଯ୍ୟ କରନ୍ତୁ ।

## 3. ବଜେଟ, 1952-53 (The Budget)

1952-53 ମସିହା ବଜେଟ ଉପରେ ଭାଷଣ ଦେଇ ପଣ୍ଡିତ ନୀଳକଂଠ ସମୁଚିତ ସୌଜନ୍ୟ ପ୍ରଦର୍ଶନ କରି ତତକାଳୀନ ଅର୍ଥମନ୍ତ୍ରୀଙ୍କୁ ପ୍ରଥମେ ରାଜ୍ୟର ସାଂପ୍ରତିକ ଅର୍ଥନୈତିକ ସ୍ଥିତିକୁ ସ୍ପଷ୍ଟଭାବରେ ବିଶ୍ଳେଷଣ କରିବା ସଂଗେ ସଂଗେ କୌଣସି କଥାକୁ ସେ ଗୋପନ ନ ରଖି ବାସ୍ତବତାର ନିଷ୍ଠୁର ସତ୍ୟକୁ ପ୍ରକାଶ କରିଥିବାରୁ ସାଧୁବାଦ ଜଣାଇଛନ୍ତି । ସେ କହିଛନ୍ତି, "ମୁଁ ପ୍ରଥମରୁ କହିଦିଏ ଆମର ଅର୍ଥମନ୍ତ୍ରୀ ଯେଉଁ ବକ୍ତୃତା ଦେଇଛନ୍ତି, ତାହା ବଡ଼ ପ୍ରଶଂସନୀୟ । ତା'ପରେ ସେ ସବୁ ଜିନିଷକୁ ଖୋଲିକରି ଥୋଇଦେଇଛନ୍ତି । ମୋର ମନେହୁଏ ଗତ 20—25 ବର୍ଷ ଭିତରେ କୌଣସି ଅର୍ଥ ସଚିବ ବା ଅର୍ଥ ମେମ୍ବର ଆଗେ ଯେଉଁମାନେ ଥିଲେ, ସେମାନେ ଏପରି ଭାବରେ ପରିଷ୍କାର କରି କେବେ ଥୋଇନାହାନ୍ତି । ସେ ବହୁକଥା ବୁଝାଇକରି ରଖିଛନ୍ତି ।" ବିରୋଧୀଦଳର ସଭ୍ୟ ସରକାରୀ କାର୍ଯ୍ୟର କେବଳ ବିରୋଧ ବା ନିଂଦା ନ କରି ଆବଶ୍ୟକସ୍ଥଳରେ ମଧ୍ୟ ସମର୍ଥନ ଓ ପ୍ରଶଂସା କରିବା ଉଚିତ, ଏହା ପ୍ରବୀଣ ସାଂସଦ ନୀଳକଂଠ ସ୍ପଷ୍ଟ ଭାବରେ ଦେଖାଇ ଦେଇଛନ୍ତି ।

ଓଡ଼ିଶା ଖଣିଜ ସଂବଳରେ ପରିପୂର୍ଣ୍ଣ ହୋଇଥିଲେ ହେଁ କେନ୍ଦ୍ର ଖଣି ଆଇନର ଆଳ ଦେଖାଇ ବାହାର ଶିଳ୍ପପତି ତଥା ପୁଂଜିପତିଗଣ କିପରି ଶୋଷଣ କରି ଚାଲିଥିଲେ, ତାର ଦୃଷ୍ଟାନ୍ତ ଦେଇ ନୀଳକଂଠ କହିଛନ୍ତି "ଆମର ମାଂଗାନିଜ ଟଂ 120 ରେ ବିକ୍ରି ହେଉଛି । ଯେଉଁମାନେ କିଣିକରି ନେଉଛନ୍ତି, ବିରଳା, ଡ଼ାଲମିଆଂକ ଭଳିଆ (Middle man) ମାନେ ଏଥିରୁ ନିଟ୍ ଲାଭ କରୁଛନ୍ତି ପ୍ରତି ଟନ୍‌ରେ 80/90 ଟଂକା ଲେଖାଏଁ, ତା'ସବୁ ସେ ଘରକୁ ଘେନିଯାଉଛନ୍ତି । ଆମେ ତାର ମାଲିକ । ଆମେ ରୟାଲଟି ପାଉଛୁ ଟଂକେ କି ଦୁଇଟଂକା" ଅର୍ଥମନ୍ତ୍ରୀ ତଥାକଥିତ ମହାଭାରତୀୟ ସ୍ୱାର୍ଥ (So-called All-India Interest) ସଂପର୍କରେ କହିଥିବାରୁ ସେ ତାଙ୍କୁ ପ୍ରଶଂସା କରିଛନ୍ତି । ସେ ମୁକ୍ତକଣ୍ଠରେ ପ୍ରକାଶ କରିଛନ୍ତି, "ମୁଁ ତାଂକୁ ଧନ୍ୟବାଦ ଦେଉଛି ଯେ ଏ କଥାଟି ସେ ଆମକୁ ଜଣାଇଛନ୍ତି ଏଥିରେ ଦଳମତଭେଦ ନକରି ଏ ସଭାର ମୁଁ ସମସ୍ତଙ୍କୁ କହୁଛି । ଏ ଅବସ୍ଥାଟି କେତେ ନୈରାଶ୍ୟମୟ । ........ ମୁଁ ଅର୍ଥମନ୍ତ୍ରୀଙ୍କ ସଂଗେ ସଂପୂର୍ଣ୍ଣ ଏକମତ ଯେ ଏହି ତଥାକଥିତ ମହାଭାରତୀୟ ସ୍ୱାର୍ଥରେ ଆମ୍ଭେମାନେ ବଳିପଡୁଛୁ । ଏ ଅସହ୍ୟ କଥା ।" ଜାତିପ୍ରାଣ ନୀଳକଂଠ ଏହି ଅନ୍ୟାୟ କାର୍ଯ୍ୟଧାରା ବିରୁଦ୍ଧରେ ପ୍ରତିବାଦ କରି ଏହିପରି ମନୋଭାବକୁ ତୀବ୍ର ନିଂଦା କରିଛନ୍ତି ।

ଦରିଦ୍ର ଓଡ଼ିଆ କୃଷକ କେବଳ କୃଷି, ପୁଣି ଖାଲି ଧାନଚାଷ ଉପରେ ସବୁତକ ଭରସା ରଖି କିପରି କ୍ରମେ ସର୍ବସ୍ୱାନ୍ତ ହେଉଛି, ପଣ୍ଡିତଜୀ ଦେଖାଇଦେଇଛନ୍ତି । ସେ କହିଛନ୍ତି, "ଧାନ ଚାଉଳକୁ ଛାଡ଼ିଦେଲେ ୟାଂକର ଆଉ ଅଛି କଣ ? ସେଇଥିରୁ ଏସବୁ ଟିକସ ଦେବେ । ସେଇଥିରୁ ଏ ଲୋକେ ବିକି ବୋହୂପାଇଁ ଲୁଗା କିଣିବେ । ଶୁଖୁଆ କିଣି ଝିଅ ଘରକୁ ପଠାଇବେ । ତା'ର ତ ଆଉ ଧାନ ପୁଂଜିକ ଛାଡ଼ିଦେଲେ

ଆଉ କିଛି ନାହିଁ ।” ପରୋକ୍ଷ ଟିକସ ଦେଇ ଦରିଦ୍ରରୁ ଦରିଦ୍ରତର ହେଉଛନ୍ତି ଏବଂ ସେମାନଙ୍କ ଅବସ୍ଥାରେ ଉନ୍ନତି ନ ହୋଇ ବରଂ ଅଧୋଗତି ହୋଇଚାଲିଛି । ଓଡ଼ିଶାରେ ତ ଶିଳ୍ପ ନଥିଲା, ବ୍ୟବସାୟ ମଧ୍ୟ ଉନ୍ନତି କରିନଥିଲା । ଏବେ ବି ତୁଳନାତ୍ମକ ଦୃଷ୍ଟିରେ ଏହି ଅବସ୍ଥାରେ ବିଶେଷ ପରିବର୍ତ୍ତନ ଘଟିନାହିଁ । ସେ କେତେ ସୁନ୍ଦର ଭାବରେ କହିଛନ୍ତି, "ଏହାକୁ ନେଇଯାଇକରି ତୁମେ ତ ବାହାରକୁ ଦେଲ । କଥାରେ ଯାହା କହନ୍ତି, ଗୋରୁ ମାରି ଯୋତା ଦାନ, ସେଇଆ ତ ତୁମେ କରୁଛ ।” କେତେ ସରଳ ତରଳ ଭାବରେ ନିତ୍ୟାନ୍ତ ସତକଥାମାନ ନୀଳକଂଠ କହିଯାଇଛନ୍ତି । ସବୁ ଖୋଲା, ସବୁ ମୁକୁଳା । ତଥାକଥିତ ମହାଭାରତୀୟ ସ୍ୱାର୍ଥପାଇଁ ଓଡ଼ିଆ କୃଷକ ତାର ସ୍ୱାର୍ଥକୁ ଜଳାଂଜଳି ଦେବା ସାର ହୋଇଛି । "ଆମେ କଣ ଚିରଦିନ ଇମିତି ସମସ୍ତଙ୍କ ଅନୁଗ୍ରହ ଭିକ୍ଷା କରୁଥିବୁ ? ଆମକୁ ଇଏ କହୁଛନ୍ତି (constructive criticism) (ଗଠନ ମୂଳକ ସମାଲୋଚନା) କର” । ଏ ଗୋଟିଏ (constructive criticism) ହେଉଛି ବୋଲି ନୀଳକଂଠ ଦେଖାଇ ଦେଇଛନ୍ତି ।

ତୀବ୍ର ପତିବାଦ ନଜଣାଇ ନୀରବ ରହିଲେ କେନ୍ଦ୍ରରେ କେହି ଆମର ଅବସ୍ଥା ବୁଝିବେ ନାହିଁ, ଏହା ସେତେବେଳେ ଥିଲା, ଏବେ ବି ଘଟୁଛି । ତେଣୁ ନୀଳକଂଠ ବତାଇଛନ୍ତି, "କାଲି ସକାଳୁ ଏ ମନ୍ତ୍ରୀମଣ୍ଡଳ ଆମ ସଂଗରେ ବିଚାର କରି ଘରକୁ ଖାଲି କରିଦିଅନ୍ତୁ । ଆମେ ସମସ୍ତେ ବାହାରକୁ ଯିବା, ଏମାନେ ମନ୍ତ୍ରୀପଦ ଛାଡ଼ିଦିଅନ୍ତୁ । ଆମ ଟଙ୍କା ସବୁତ ନେଲ, ଆମକୁ କହୁଚ, ଆମେ କ'ଣ କରିବୁ । ତମ ଅନୁଗ୍ରହରେ ଆମକୁ ଦେବ, ତା'ମଧ୍ୟ ସବୁବେଳେ ଦେବନାହିଁ । ଆମେ ଏ ଅନୁଗ୍ରହ ସହିପାରିବା ନାହିଁ ।” କି ଜ୍ୱଳନ୍ତ ପ୍ରତିକିୟା! ଗଣତାନ୍ତ୍ରିକ ଉପାୟରେ ଆମକୁ ଅନ୍ୟାୟର ବିରୋଧ କରିବାକୁ ପଡ଼ିବ , ଏହା ନୀଳକଂଠ କେତେ ସୁନ୍ଦର ଭାବରେ ବୁଝାଇଯାଇଛନ୍ତି ।

ଶାସନ ବିଭାଗରୁ ବିଚାର ବିଭାଗକୁ ସ୍ୱତନ୍ତ୍ର କରିବାପାଇଁ ପଣ୍ଡିତ ନୀଳକଂଠ ଦାବି କରିଛନ୍ତି । କ୍ଷମତା ଓ କର୍ତ୍ତୃତ୍ୱରୁ ବିଚାର ବିଭାଗକୁ ମୁକ୍ତ ନକଲେ ଲୋକମାନଙ୍କୁ ନ୍ୟାୟ ମିଳିବ ନାହିଁ । ସାଧାରଣ ସେବା ଆୟୋଗ କାର୍ଯ୍ୟକଳାପ ଉପରେ କଟୁ ମନ୍ତବ୍ୟ ଦେଇଛନ୍ତି ଏବଂ ସେମାନଙ୍କର ବିବରଣୀକୁ ଗୃହରେ ଆଲୋଚନା କରିବାକୁ ଚାହିଁଛନ୍ତି । ଜନସାଧାରଣଙ୍କ ସର୍ବୋତ୍ତମ ସ୍ୱାର୍ଥ ଦୃଷ୍ଟିରୁ (In the best interest of the people) ପ୍ରଶାସନରୁ ବିଚାରକୁ ଅଲଗା କରିବା ପାଇଁ ସଂବିଧାନର ନିର୍ଦ୍ଦେଶାତ୍ମକ ନୀତି (Directive principle)ର 50 ଧାରା ଉଦ୍ଧୃତ କରି କହିଛନ୍ତି । ସେ କହିଛନ୍ତି " ମୁଁ ଶୁଣିଥିଲି ଯେ ଏଇ ବିଗ୍ରରକମାନେ ମନ୍ତ୍ରୀଙ୍କ ତଳେ ରହିବେ କି (High Court) ତଳେ ରହିବେ ଏଇ ବିଚାର ଚାଲିଛି । 'ବାଘ ନଦେଖିଲେ ବିରାଡ଼ି ଦେଖ' କଥାଟି ସମସ୍ତେ ଶୁଣିଥିବେ ଏମାନେ ଯଦି ମନ୍ତ୍ରୀଙ୍କ ତଳେ ରହିବେ ତା'ହେଲେ (Separation of the Judiciary) (ବିଚାର ବିଭାଗର ସ୍ୱାତନ୍ତ୍ର୍ୟ) ଆଉ କ'ଣ ହେବ ? ଏଭଳି ବିଚାର ଯଦି ହେଉଥାଏ ତା'ହେଲେ ଏଗୁଡ଼ିକ କିଭଳି ବିଚାର ମୁଁ ବୁଝିପାରୁନାହିଁ ।”

ସ୍ୱାଧୀନ ରାଜ୍ୟରେ ମନ୍ତ୍ରୀମାନଙ୍କର (Discretionary Grant) (ବିବେକାନୁଯାଇ ଅନୁଦାନ) କୁ ନୀଳକଂଠ କଠୋର ଭାବରେ ସମାଲୋଚନା କରିଛନ୍ତି । ପ୍ରକୃତରେ ଏହା ବିବେକାନୁମୋଦିତ ନହୋଇ ମନମୁଖୀ ବା ଅନୁଗ୍ରହମୂଳକ ଅନୁଦାନରେ ପରିଣତ ହୋଇଥାଏ । ସେ ଯଥାର୍ଥରେ କହିଛନ୍ତି, "(Emergency Grant) (ଆପତ୍କାଳୀନ ଅନୁଦାନ) କଥାଟା ମୁଁ ବୁଝିପାରୁଛି, Magistrate, Revenue Commissioner, Heads of Deptts. ଏମାନଙ୍କୁ ଅଧିକାର ଦିଆଯିବ ଯଦି କାହାକୁ ବିଲୁଆ କାମୁଡ଼ିଲା ବା କାହାର ଘର ପୋଡ଼ିଗଲା ତା'ହେଲେ ତାକୁ ଟଙ୍କା ସାହାଯ୍ୟ ଦେବାପାଇଁ ସରକାରଙ୍କୁ ଲେଖାଲେଖି କରି ମଂଜୁର ଆଣିଲାବେଳକୁ ବହୁତ ଡ଼େରି ହୋଇଯାଇଥିବ" । ରାଜ୍ୟପାଳ ପଦ ମଧ୍ୟ ଅନାବଶ୍ୟକ ଓ ଏକ ଖର୍ଚ୍ଚବହୁଳ ସଂସ୍ଥା ବୋଲି ସେ କଟୂକ୍ତି କରିଛନ୍ତି । ତାଙ୍କର ବିଶେଷ କିଛି କାର୍ଯ୍ୟନାହିଁ ଓ ଦାୟିତ୍ୱ ନାହିଁ, ସେପରି ଅବସ୍ଥାରେ ତାଙ୍କୁ ଏମିତି ସ୍ୱେଚ୍ଛାକୃତ ତଥା ବିବେକାନୁଯାୟୀ ଅନୁଦାନ ଦେବାର ଅଧିକାର ଦେବା ଅବାନ୍ତର ।

କେତେ ସଭ୍ୟ ତାଙ୍କ କହିବାକୁ ଅତିରିକ୍ତ ହୋଇଯାଇଛି ବୋଲି କହିବାରୁ ବାଚସ୍ପତି ଜଣଙ୍କର କହିବା ସମୟକୁ ବଢ଼ାଇ ପାରିବେ ବୋଲି କହିଛନ୍ତି । ସେ ତିକ୍ତତାର ସହିତ କହିଛନ୍ତି "ଆଜ୍ଞା, ମୋତେ ଯେତେବେଳେ କହିବେ, ସେତେବେଳେ ମୁଁ ଶେଷ କରିଦେବି । ମୁଁ ତ ନୈରାଶ୍ୟରେ କହୁଛି ହୁଏତ ଅନେକଙ୍କୁ ଏକଥାଗୁଡ଼ିକ ବଡ଼ ପିତା ଲାଗୁଥିବ । କିନ୍ତୁ ମୁଁ ସମସ୍ତଙ୍କୁ ଅନୁରୋଧ କରୁଛି ଯେ କୌଣସି ତିକ୍ତଭବ ରହିବନାହିଁ ବା କୌଣସି ତିକ୍ତଭାବ ସୃଷ୍ଟିକରିବାପାଇଁ ଏସବୁ କହୁନାହିଁ । ମୋର ଯାହା ବୟସ, ମୋର ଯାହା ଅନୁଭବ, ସେଥିରେ ମୋତେ ଏଇଟା ବଡ଼ ନୈରାଶମୟ ବୋଧ ହେଉଛି । ଏ ଦେଶ ହେବ କ'ଣ ?" ଏହା ଏକ ଜ୍ୱଳନ୍ତ ପ୍ରଶ୍ନ ।

ଶିକ୍ଷ ଶିକ୍ଷା ଉପରେ ନୀଳକଂଠଙ୍କ ଭାଷଣ ଚିତାକର୍ଷକ ଓ ଭାବଗର୍ଭକ । ଏହା ମଧୁର ତିକ୍ତହେବା ସ୍ୱାଭାବିକ । ଛଦ୍ମବେଶରେ ସେ ଗୋଟିଏ କୃଷି ପ୍ରଦର୍ଶନୀକୁ ଯାଇ ବିଭିନ୍ନ ଦୋଷ ତ୍ରୁଟି ଲକ୍ଷ୍ୟ କରିଛନ୍ତି । ସେଠାରେ ହୋଇଥିବା ଅଭିଜ୍ଞତାକୁ ସେ ସ୍ପଷ୍ଟଭାବରେ ପ୍ରକାଶ କରିଛନ୍ତି । ତାହା କିପରି ହାସ୍ୟୋଦ୍ଦୀପକ ଦେଖନ୍ତୁ "ତାପରେ ତୁଳା ଯେଉଁଠାରେ ମୁଁ ସେଠାକୁ ଗଲି, ସେଠି ମୁଁ ପଗ୍ଉରିଲି ଏହା କି ତୁଳା, Egypt ତୁଳା କି ନା, ଏହାର Fibre କେତେ, କିନ୍ତୁ ସେ କିଛି କହିପାରିଲେ ନାହିଁ । ମୁଁ ଯଦି ଏହିପରି କହିବି ବହୁତଗୁଡ଼ାଏ ହୋଇଯିବ । ଶେଷରେ ମୁଁ ଗଲି ନଡ଼ିଆ ପାଖକୁ, ମୋର ନଡ଼ିଆ ଜାଗାରେ ଘର, ସେଠି ଗୋଟାଏ ସୁନ୍ଦର ବାଣ ନଡ଼ିଆ-ପେଣ୍ଡା । ମୁଁ ତାଙ୍କୁ ପଚାରିଲି ଏ କ'ଣ ସତ୍ୟବାଦୀ ନଡ଼ିଆ Farm ରୁ ଆଣିଛ ? ସେ କହିଲେ ନାଁ ଏଇଟା ଆମେ ବାହାରୁ କିଣିକରି ଆଣିଛୁ । ତାପରେ ମୁଁ ପଚାରିଲି ବାହାରୁ କାହିଁକି କିଣାହୋଇ ଆସିଛି ? ସେ ତାର କାରଣ କିଛି ବୁଝାଇ ପାରିଲେନାହିଁ ।" ପ୍ରଦର୍ଶନୀରେ ଯେଉଁମାନେ ରହନ୍ତି, ସେମାନଙ୍କର ବିଭିନ୍ନ ଜିନିଷ ଉପରେ ସ୍ପଷ୍ଟ ଜ୍ଞାନ ରହିବା ଉଚିତ

ଏବଂ କେହି ପଚାରିଲେ ନିର୍ଭୁଲ ଭାବରେ ତାହା ବୁଝାଇଦେବା ଦରକାର । ତା' ନହେଲେ ପ୍ରଦର୍ଶନୀର ମୂଲ୍ୟ କିଛି ନାହିଁ । ଏହିପରି ନିରାଟ ସତ୍ୟକଥା କହି ସେ ଆମ ପ୍ରଶାସନିକ ଦୋଷ ତ୍ରୁଟିକୁ ଅଂଗୁଳି ନିର୍ଦ୍ଦେଶ କରିଛନ୍ତି ।

ବଜେଟ ଉପରେ ଭାଷଣ ଦେଲାବେଳେ କେତେ ଗଭୀର ଓ ବ୍ୟାପକ ଭାବରେ ସବୁ କହିଛନ୍ତି, ତାହା ଲକ୍ଷ୍ୟ କରିବାର କଥା । ଢ଼େଙ୍କିଶାଳରୁ ଢ଼େଙ୍କାନାଳ ଯାଏ ସେ ସବୁ ବିଷୟରେ ଯାହାକୁ ନିତ୍ୟାନ୍ତ ଦୋଷ ତ୍ରୁଟିପୂର୍ଣ୍ଣ ବିଚାର କରିଛନ୍ତି, କଠୋର ଭାବରେ ସମାଲୋଚନା କରିଛନ୍ତି । ଜାତୀୟ ସ୍ୱାର୍ଥ, ନିରପେକ୍ଷତା, ସାଧୁତା, ନିଷ୍ଠା ଓ ସାହସ ତାଙ୍କ ଭାଷଣରୁ ପରିସ୍ଫୁଟ ହୋଇଥାଏ ।

ଶ୍ରୀ ନୀଳକଂଠ ଦାସ : ବାଚସ୍ପତି ମହାଶୟ, ଆପଣଙ୍କୁ କହିବାଦ୍ୱାରା ମୁଁ ସମସ୍ତ ମେମ୍ବରଙ୍କୁ କହୁଛି ଯେ ମୁଁ ଆସି ସମସ୍ତ ବିଷୟ ଶୁଣିବାକୁ ସୁବିଧା ପାଇନାହିଁ । ସେଥିଯୋଗୁଁ କହିଲାବେଳେ ଅନେକ କଥା କହିବି ଯାହାକି ଅନ୍ୟମାନେ କହିଯାଇଛନ୍ତି । ମୁଁ ପ୍ରଥମରୁ କହିଦିଏ ଆମର ଅର୍ଥ ମନ୍ତ୍ରୀ ଯେଉଁ ବକ୍ତୃତା ଦେଇଛନ୍ତି ତାହା ବଡ଼ ପ୍ରଶଂସନୀୟ । ତା'ପରେ ସେ ସବୁ ଜିନିଷକୁ ଖୋଲିକରି ଥୋଇଦେଇଛନ୍ତି । ମୋର ମନେ ହୁଏ ଗତ 20-25 ବର୍ଷ ଭିତରେ କୌଣସି ଅର୍ଥ ସଚିବ ବା ଅର୍ଥ ମେମ୍ବର ଆଗେ ଯେଉଁମାନେ ଥିଲେ ସେମାନେ ଏପରି ଭାବରେ ପରିଷ୍କାର କରି କେବେ ଥୋଇ ନାହାନ୍ତି । ସେ ବହୁତ କଥା ବୁଝାଇକରି ରଖିଛନ୍ତି କିନ୍ତୁ ଯାହାହେଉ ଏହାର କାର୍ଯ୍ୟକାରୀ ପରେ ଯାହା କରୁଥାନ୍ତୁ ପଛକେ ମୂଳରୁ ଯେତେ ଯେତେ କହିଛନ୍ତି ସେଥିରେ ଅତି ଭଲ ଭବରେ ସମସ୍ତ ଜିନିଷ ଆମ ଆଗରେ ଥୋଇ ଦେଇଛନ୍ତି । କିଛି ଲୁଚାଇ ନାହାନ୍ତି, ମୋର ଅନ୍ତତଃ ଏହିପରି ମନେହେଲା ଏବଂ ମୁଁ ଭାରି ଖୁସି ହୋଇପଡ଼ିଲି କିନ୍ତୁ ସେ କ'ଣ କହିଛନ୍ତି ? ଯାହା ଦେଖାଇଛନ୍ତି ସେଥିରେ ଯେ କୌଣସି ଲୋକର ପ୍ରାଣ ନିରାଶାରେ ଭରିଯିବାର କଥା । ସେ ପ୍ରଥମରୁ Finance Commission ର ବଡ଼ ପ୍ରଶଂସା କଲେ ଯେ ଆମକୁ ସବୁ ଦେଇଦେଲେ ବର୍ତ୍ତମାନ 80% ବଣ୍ଟାଯିବ, ବାକି 20% ପରେ ଦିଆଯିବ । ତଥାପି ଆମକୁ ଏବେ ଆଉ କେତେ ଲକ୍ଷ ଟଙ୍କା ମିଳିଯିବ । ଶେଷକୁ ଯେତେବେଳେ କହିଲେ ଯେ ଆମର ଖଉଳ କଥା, ଆମର Minings କଥା ସବୁ ବୁଝିଦିଅ । Central Minings Rule ଅଛି । ଆମେ କିଛି ପାଉନାହୁଁ ସବୁ ନେଇଯାଉଛନ୍ତି । ଅବଶ୍ୟ ସେମାନେ ଯୁକ୍ତି ଦେଇଥିବେ ଆମକୁ ଦେବାର କୌଣସି କାରଣ ନାହିଁ ବୋଲି । ସେମାନେ କହିଥିବେ ଆମେ ସବୁ ବୁଝୁଛୁ । ଆପଣମାନଙ୍କର ପାଇବାର କଥା କିନ୍ତୁ ଆମର ତାହା ଦେବାର କ୍ଷମତା ନାହିଁ । ଆମ ବୁଝିବା ବିଷୟ ଭିତରେ ସେ ସବୁ ନାଇଁ । ଏ ସବୁ ପରେ ଆମର ଅର୍ଥ ମନ୍ତ୍ରୀ, ନାରଦ ବାସୁଦେବଙ୍କୁ କ'ଣ କହିଥିଲେ ତାହା ଆମକୁ ଶୁଣାଇଛନ୍ତି ।

ସେମାନେ କ'ଣ ଆଉ କରନ୍ତେ । କିନ୍ତୁ ସେ ପଂଝାଏ ହଡ଼ା ଲଗିଥିଲେ । "ପ୍ରତୀତଃ ସୁଗବୋ ଭାରଂ ବହତି ଦୁର୍ବହଂ " ଏହି ଶବ୍ଦ ସେ ବ୍ୟବହାର କରିଛନ୍ତି । ତା'ର ଅର୍ଥ ହେଉଛି

ପଂଝାଏ ହଡ଼ା ଭଡ଼ା ଟାଣିଲା ବେଳକୁ ପଟୁ ପଡୁଛି । ସେ କ'ଣ କରିବେ ! ଅର୍ଥ ମନ୍ତ୍ରୀଙ୍କ ଘର ପାଖରେ ପୁଷ ମାଘ ମାସରେ ବୋଧହୁଏ ସେ ବାଇଗୁଆଳିଠାରୁ ବାଲିପଡ଼ା ଯାଏ ବାଲିପାଟରେ କଳେଇ ଭଡ଼ାଟଣା ହୁଏତ କେତେ ସେ ଦେଖିଥିବେ । ସେ କହନ୍ତୁ କିମିତି ଟଣା ହେବ ? ଆଗରୁ ତ ପଟୁ ପଡ଼ିଛି । କାହିଁକି ହଡ଼ାଙ୍କୁ ପଟୁଭିତରେ ପକାଇ ଦିଆଗଲା ? ଆମର ଏ ବାପୁଡ଼ା କୌଣସିମତେ ସବୁ କରିବୁ କରିବୁ ବୋଲି ହେଉଛନ୍ତି । ଧାନ ଘୁଡଳକୁ ଛାଡ଼ିଦେଲେ ୟାଙ୍କର ଆଉ ଅଛି କ'ଣ ? ସେଇଥିରୁ ଏ ସବୁ ଟିକସ ନେବେ, ସେଇଥିରୁ ଏ ଲୋକେ ବିକି ବୋହୂ ପାଇଁ ଲୁଗା କିଣିବେ, ଶୁଖୁଆ କିଣି ଝିଅ ଘରକୁ ପଠାଇବେ ତାର ତ ଆଉ ଧାନ ପୁଂଜିକ ଛାଡ଼ିଦେଲେ ଆଉ କିଛି ନାହିଁ । ସେଇ ପୁଂଜିକ ତ ସେ ବିକିବ । ଅର୍ଥ ମନ୍ତ୍ରୀଙ୍କ କଥା ଅନୁସାରେ ଏ ଦେଶ ଭିତରେ ପ୍ରତିଯୋଗିତାର ମହଣରେ ଅନ୍ତତଃ ନ୍ନଟ୍ 5 ଟଙ୍କା ତା' ଦେହରୁ ଟିକସ ନିଆ ଯାଉଛି । ଏଇଟା ଗୋଟାଏ ପରୋକ୍ଷ ଟିକସ । ତା' ପରେ ବାହାର ସାଙ୍ଗରେ ପ୍ରତିଯୋଗିତାର ମହଣରେ ଅନ୍ତତଃ 11/12 ଟଙ୍କାରୁ ତ କମ୍ ନୁହେଁ । Cent per cent ନିଆଯାଉଛି । ବାହାରୁ ଯେଉଁ ଖାଦ ଜିନିଷ ଆସୁଛି ସେଥିରେ ଆମର ଶହେକେ ଶହେ । ଅନ୍ୟ ପ୍ରଦେଶରେ ତାହା ହେଉଛି ଶତକଡା ପଗ୍ଶ । ଏଇଆ ସେ କହିଛନ୍ତି ବାହାର କଥା ଛାଡ଼ି ଦିଅନ୍ତୁ । ମୁଁ ଆମର ଏ ଦେଶ କଥା କହୁଛି, ମୁଁ ପଗ୍ରୁଛି ତେମେ ତ ମହଣକେ 5 ଟଙ୍କା ନେଲ, ଆମକୁ ଦବ କେତେ ? ଆମେ ଦେବୁ 3 ଲକ୍ଷ ଟନ୍ ଅର୍ଥାତ୍ ୫0/୫5 ଲକ୍ଷ ମହଣ ।

ଏଇଭଳି ତ ଗ୍ରରିକୋଟି ଟଙ୍କା ଗଲା ବାହାରି, ଲୋକଙ୍କ ଠାରୁ ଆମେ ଆଉ ପାଇବୁ କ'ଣ ? ଏ ମହଣକେ ଟଙ୍କାଏ ଲେଖାଏ ମାଗୁଛନ୍ତି । ଆଉ ସେଇ ୫0/୫5 ଲକ୍ଷ ଟଙ୍କା ପାଇବାପାଇଁ ୟାକୁ ତ କେତେ ଦୁଆର ହେବାକୁ ହେଉଛି, କିନ୍ତୁ ନ୍ୟାୟ କ'ଣ ? ସମସ୍ତେ ତ କହୁଛନ୍ତି ଓଡ଼ିଶାର ଆଉ କିଛି ନାହିଁ, ଓଡ଼ିଶାରେ ଶିଳ୍ପ ନାହିଁ, ବ୍ୟବସାୟ ନାହିଁ, ଲୋକଙ୍କର ତ ଆଉ ଦେବାର ଶକ୍ତି ନାହିଁ । ଯାହାଦେବେ ଏଇ ଧାନ ପୁଂଜିକରୁ ତ ଦେବେ । ଏହାକୁ ନେଇଯାଇକରି ତୁମେ ତ ବାହାରକୁ ଦେଲ । କଥାରେ ଯାହା କହନ୍ତି, ଗୋରୁମାରି ଯୋତା ଦାନ ସେଇଆ ତ ତୁମେ କରୁଛ । ତା ବି ତ ଆମେ ପାଉ ନାହୁଁ, ଆମେ ଏଠାରେ ରହିବୁ କିମିତି ? ଏଇ କଥାଟାକୁ ସେଦିନ ସରକାର ଲ୍ଲଟ ସାହେବଙ୍କ ଭାଷଣରେ ଭିନ୍ନ ପ୍ରକାର କରି କହିଥିଲେ, ସେଥିରେ ଲ୍ଲଟ ସାହେବଙ୍କର କି ଦୋଷ ? ଏବେ କିନ୍ତୁ ଅର୍ଥ ମନ୍ତ୍ରୀ ଯାହା କହିଛନ୍ତି ମୁଁ ସେଥିରେ ଖୁସି ହେଉଛି କାହିଁକିନା କଥାଟାକୁ ସେ ସଫା-କରି କହିଦେଲେ । ଏତ ଗଲା 'କୃଷି', ପୁଣି କହିଛନ୍ତି ଆମର ଖାଲି ଖଣିଜ ସମ୍ପଦ ଭର୍ତ୍ତି ହୋଇଅଛି । ଦେଖନ୍ତୁ କି ନୈରାଶ୍ୟର କଥା । ଆମର ମାଙ୍ଗାନିଜ 120 ଟଙ୍କାରେ ବିକ୍ରି ହେଉଛି । ଯେଉଁମାନେ କିଣିକରି ନେଉଛନ୍ତି, ବିରଳା, ଡ଼ାଲମିଆଙ୍କ ଭଳିଆ middle man ମାନେ ଏଥିରୁ ନିଟ୍ ଲଭ କରୁଛନ୍ତି । ପ୍ରତି ଟନ୍‌ରେ ୫0/୨0 ଟଙ୍କା ଲେଖାଏ ତା ସବୁ ସେ ଘରକୁ ଘେନି ଯାଉଛନ୍ତି । ଆମେ ତା'ର ମାଲିକ । ଆମେ ରୟାଲଟି ପାଉଛୁ

ଟଙ୍କେ କି ଦୁଇଟଙ୍କା । ଆଉ ବେଶୀ ଆମେ ଯଦି ତାଙ୍କୁ ମାଗୁଛୁ ଏଠାରେ ଅଛି Rules, Central Mining Rules. ସେଥିରେ କେହି ହାତ ଦେବେନାହିଁ । କିନ୍ତୁ କି ସୁନ୍ଦର କଥାଟିଏ କହିଛନ୍ତି ଅର୍ଥ ମନ୍ତ୍ରୀ, So called All-India Interest ରେ ଆମେ ବଳି ବଡୁଛୁଁ । ଏ କଥାଟି ସେ କହିଛନ୍ତି, ମୁଁ କହୁନାହିଁ । ମୁଁ ତାଙ୍କୁ ଧନ୍ୟବାଦ ଦେଉଛି, ଯେ ଏ କଥାଟି ସେ ଆମକୁ ଜଣାଇଛନ୍ତି । ଏଥିରେ ଦଳ ମତ ଭେଦ ନ କରି ଏ ସଭାର ମୁଁ ସମସ୍ତଙ୍କୁ କହୁଛି ଏ ଅବସ୍ଥାଟି କେଡ଼େ ନୈରାଶ୍ୟମୟ । ମଫସଲରେ କ'ଣ କୂଅ ଖୋଳୁଛ ଭୋଟ ପାଇବବୋଲି ? ଏଇଥିରେ ରହିବା ତ ଆମେ ? ମୁଁ ଅର୍ଥ ମନ୍ତ୍ରୀଙ୍କ ସଙ୍ଗେ ସମ୍ପୂର୍ଣ୍ଣ ଏକମତ ଯେ ଏହି ତଥାକଥିତ ମହାଭରତୀୟ ସ୍ୱାର୍ଥରେ ଆମେମାନେ ବଳି ପଡୁଛୁ । ଏ ଅସହ୍ୟ କଥା । ତା' ପରେ ଇଏ କାହିକି ଯିବେ । ଆମକୁ ଇଆ ଦିଅ ବୋଲି କହିବେ । ଆମେ କ'ଣ ଚିରଦିନ ଇମିତି ସମସ୍ତଙ୍କ ଅନୁଗ୍ରହ ଭିକ୍ଷା କରୁଥିବୁ । ଆମକୁ ତ ଇଏ କହୁଛନ୍ତି, "Constructive criticism କର" ଇଏ ଗୋଟିଏ Constructive criticism ହେଉଛି । କାଲି ସକାଳୁ ଇଏ ମନ୍ତ୍ରୀମଣ୍ଡଳ ଆମ ସଙ୍ଗରେ ବିଚାରକରି ଘରକୁ ଖାଲି କରିଦିଅନ୍ତୁ । ଆମେ ସମସ୍ତେ ବାହାରକୁ ଯିବା, ଏମାନେ ମନ୍ତ୍ରୀପଦ ଛାଡିଦିଅନ୍ତୁ । ଆମ ଟଙ୍କା ସବୁତ ନେଲ, ଆମକୁ କହୁଛ ଆମେ କ'ଣ କରିବୁ ତମ ଅନୁଗ୍ରହରେ ଆମକୁ ଦେବ, ତା ମଧ୍ୟ ସବୁବେଳେ ଦେବନାହିଁ । ଆମେ ଏ ଅନୁଗ୍ରହ ସହି ପାରିବା ନାହିଁ । ମୁଁ କହୁନାହିଁ ଯେ ମନ୍ତ୍ରୀମଣ୍ଡଳ ଚ୍ଲିଗଲେ ଆମେ ଯାଇ ସେଠି ବସିବୁ । ମୁଁ ତ ଆଗରୁ ସେ କଥା କହିଥିଲି ଯେ ଏଥିରେ କର୍ତ୍ତବ୍ୟ ନାହିଁ, ଖାଲି ଅଧିକାର ଅଛି । ସେ ଅଧିକାର ନେବାପାଇଁ ଆମେ ଚ୍ହୁଁନାହୁଁ । ଆସ ଏ ଘର ଖାଲି କରିଦେବା, ତୁମେ ମନ୍ତ୍ରୀମଣ୍ଡଳ ଖାଲି କରିଦିଅ । ତାଙ୍କ ଆଇନରେ ତ ଅଛି, ଲଟ ସାହେବଙ୍କୁ ତ ସେ ପଠାଇଛନ୍ତି, ସେ ଶାସନ ଚଳାନ୍ତୁ, ଏ ସବୁ ଦାୟିତ୍ୱ ତୁଲାନ୍ତୁ । ଆମେ ଏ ଦାୟିତ୍ୱ କାହିକି ନେବୁ, ଲୋକଙ୍କ ପାଖକୁ କାହିଁକି ବାରମ୍ବାର ଭୋଟ ପାଇଁ ଯିବୁ । ଏତ ସଫା କଥା । ଚ୍ଷଲ କରିବୁ ଆମେ, ଧାନ କରିବୁ ଆମେ, ତାକୁ କିଏ ନେଇଯିବ । ଆମର ତ ଖଣିଜ ସମ୍ପଦ ଅଛି । ସେଥିରେ ମହାଭାରତୀୟ ସ୍ୱାର୍ଥରେ ତ ଆମେ ବଳି ପଡିବୁ । ଆମେ ରାଜ୍ୟ କାହୁଁ କରିବୁ, କାହିଁକି କରିବୁ ? ଏ Constructive criticism ମୁଁ କରୁଛି । ଆସନ୍ତୁ ସମସ୍ତେ ବସି ବିଚ୍ରକରି କାଲି ସକାଳେ ଏ ଘର ଖାଲି କରିଦେବା । ସରକାର ଯେ କରୁଛନ୍ତି, ଯାହାଙ୍କ ସ୍ୱାର୍ଥପାଇଁ ଓଡ଼ିଶା ଅଛି, ସେ ଏ ସବୁ ତୁଲାନ୍ତୁ, ସେ ଲୋକଙ୍କ ପାଖକୁ ଆସନ୍ତୁ, ଆମେ କାହିଁକି ଯିବୁ ? ଏ ପ୍ରଥମ କଥା । କିନ୍ତୁ ଅର୍ଥ ମନ୍ତ୍ରୀ ପୁଣି କ ଛନ୍ତି ଆମକୁ ଈଶ୍ୱର ଶରୀର ଦେଲେ । ଭକ୍ତିଭାବରେ ଆମେ ଯେତେବେଳେ ପଚ୍ରିଲୁ "ହେଲିନି ହେ ରଣୀ ତବ ପାଶେ ଏହି ଗୃହପାଇଁ" ଇଶ୍ୱର କହିଲେ ଏହାକୁ ଯତ୍ନ କର । ଯତ୍ନ କଲେ କ'ଣ ହେବ ? ଈଶ୍ୱର ତ ହାତଗୋଡ଼ ମୋତେ ଦେଇନାହାନ୍ତି ମୁଁ ଆଉ ଯତ୍ନ କରିବି କ'ଣ ? ଭଂଗା ହାତଗୋଡ଼ ଥିଲେ ଈଶ୍ୱରଙ୍କ କଥାରେ ଯତ୍ନ କଲେ ଅବା କଅଣ ହୁଅନ୍ତା ! ଭଲ କଥାଟିଏ ଉଦ୍ଧୃତ କରିଛନ୍ତି । ଭାରତ ସରକାରଙ୍କୁ ଆମେ ସେଇଆ କହିବା

ଯେ ତମେ ଏ ସବୁ କର । ତମେ ସବୁ କରିସାରିଲାପରେ ଆମେ କରିବୁ । ଆମ ହାତଗୋଡ଼ ତ ହାଣି ଦେଇଛ, ଆମେ କରିବୁ କଅଣ ।

ଆଉ ଗୋଟିଏ କଥା । ଏଥର ମଧ୍ୟ ଭଲହୋଇଛି । ଆରଥର ସମାଲୋଚନା କରିବାରୁ ଏଥର କହିଛନ୍ତି ଯେ ଆମର ଟଙ୍କା ପଇସା ନାହିଁ । ଟଙ୍କା ପଇସାତ ଆମର ନାହିଁ ତା' ପରେ କ'ଣ ହେବ ! ସେ କଥା ମଧ୍ୟ କହିଛନ୍ତି "ସ୍ୱଳ୍ପକୋଷୋ ହିଁ ରାଜା ପୌରଜାନ୍ ପ୍ରଦାନ ଗ୍ରସତେ" । ଏ କଥା କୌଟିଲ୍ୟ ଋଷିଙ୍କୁ ଉଧାର କରି କହିଦେଲେ । ଟଙ୍କା ତ ନାହିଁ; ଆମେ ବର୍ତ୍ତମାନ ଯାଉଛୁ, ତା' ହେଲେ କ'ଣ କରିବାପାଇଁ । ସହର ଲୋକେ, ମଫସଲ ଲୋକେ, ସମସ୍ତଙ୍କୁ ଗ୍ରାସ କରିବାପାଇଁ । ସ୍ୱଳ୍ପକୋଷ ଆମେ, ଆମର ତ କୋଷ ନାହିଁ । ଆମେ କ'ଣ କରିବୁ ? ନାଁ ପୌରଜାନ ପଦମାନଙ୍କୁ ଗ୍ରାସ କରିବୁ । ରାଜା ତ କେହି ନାହାନ୍ତି, ରାଜା ବର୍ତ୍ତମାନ ଏହି ମନ୍ତ୍ରୀମଣ୍ଡଳ । ଏ କଥାଟା ଜାଣି କରି ଆଉ ପୌରଜାନ ପଦମାନଙ୍କ ପାଖକୁ ଆମେ କାହିଁକି ଯାଉଛୁ ? ତାଙ୍କୁ ଗ୍ରାସ କରିବା ଛଡ଼ା ତ ଅନ୍ୟ ଉପାୟ ନାହିଁ । ତେବେ ଏ ସବୁ କରି ଲାଭ କ'ଣ ? ଏକ ଦିଗରେ ଭକ୍ତି, ଅନ୍ୟ ଏକ ଦିଗରେ ବାହାଦୁରୀ, ତା' ପରେ ଗ୍ରାସ କରିବାର ବ୍ୟବସ୍ଥା, ଏ ସବୁର ପୂର୍ବରୁ ସେ ଆଗେ କହିଛନ୍ତି ଅଞ୍ଚଳ ଶାସନକଥା । ସେ Bill ତ ଆସୁଛି । ସେ ବିଷୟରେ ମୁଁ ବର୍ତ୍ତମାନ କାହିଁକି କହିବି ? ଗ୍ରାସ କରିବାପାଇଁ ତ ଗୋଟିଏ ବଡ଼ ଉଦ୍ୟମ ହେଉଛି ସେଥିରେ କୌଣସି କର୍ତ୍ତବ୍ୟ ଦିଆଯାଉନାହିଁ, ଅଧିକାର, ଯାହାକୁ ଇଂରାଜୀରେ କହନ୍ତି Power ଓ Authority । ଏଇଆ ଖାଲି ବାଣ୍ଟିବା ବୁଣିବାର ଚେଷ୍ଟା ହେଉଛି । ଭକ୍ତିରେ କୁହାହେଉଛି "ରଖହେ ନରହରି" । ମୁଁ ଅର୍ଥ ମନ୍ତ୍ରୀଙ୍କୁ ମନା କରିବି ତମେ ଏ ଉଦ୍ୟମ କରନାହିଁ । ଶିକ୍ଷା, ସ୍ୱାସ୍ଥ୍ୟ ସବୁ ଭିନ୍ନଭିନ୍ନ ସମୟରେ ଆସିବ । ଆଜି ମୁଁ ଆଉ ବେଶୀ ସମୟ ନେବିନାହିଁ । ସବୁ ଆସୁଛି, ଏହାଙ୍କର ଯାହା କରିବାର କଥା, ଯେମିତି ଏ ସବୁ କରୁଛନ୍ତି, ଶାସନ ବିଭାଗରୁ ବିଗ୍ରହ ବିଭାଗକୁ ଅଲଗା, ସେମିତି କରିବେ । ଏଇ ଶାସନରୁ ବିଗ୍ରହ ଅଲଗା କରିବା କଥା ଦେଖ, କିମିତି କରିବେ ? ସେଥିରେ ସଫା ଲେଖି ଦେଇଛନ୍ତି । In the best interest of the people କେମିତି ହେବ, ସେଇଟା ଆମେ ବିଗ୍ରହ କରୁଛୁ । ଏଥିରେ ବିଗ୍ରହ କରିବାର କ'ଣ କିଛି ଅଛି ? କେମିତି ହେବ ? କେତେ ଜଣ ଜଜ୍ ରହିବେ ? ସେମାନେ କେତେ ଟଙ୍କା ଦରମା ପାଇବେ । ସେମାନେ retire କଲାପରେ ତାଙ୍କୁ ନେଇ Public Service Commission ଠାରୁ ଆରମ୍ଭ କରି 2/3ଗୁଣ ଦେବାର ଯେତେ ଉପାୟ ଅଛି, ସବୁ ଅବଲମ୍ବନ କରି ତାଙ୍କୁ 2/3 ଗୁଣ ଦେବେ । ତାଙ୍କୁ ସ୍ୱାଧୀନ କରିବେ ନାହିଁ । ବିଗ୍ରହକୁ ସ୍ୱାଧୀନ କରିବାର ମୂଳକଥା ହେଉଛି, ବିଗ୍ରହକମାନଙ୍କୁ ଯେପରି ଅନ୍ୟ କୌଣସି ଲୋଭ ତାକୁ ଗ୍ରାସ ନ କରେ । ଏଗୁଡ଼ିକ in the best interest of the people କିପରି କରିବେ ? କିନ୍ତୁ ଯାକୁ ଅଲଗା ଅଲଗା କରିବାପାଇଁ in the best interest of the people ର ବିଗ୍ରହ କୁଆଡ଼ୁ ଆସୁଛି ? ଏଇଟା ତ ସଂବିଧାନର ନିର୍ଦ୍ଦେଶ (mandate).

The State shall provide for the separation of the Judiciary from Executive, ଏଇଟା ତ Constitution ର article fifty ରେ Directive principle. ଏଥିରେ ତୁମେ ବିଗ୍ରର କରିବ କ'ଣ ? ମୁଁ ଶୁଣିଥିଲି ଯେ ଏଇ ବିଗ୍ରରକମାନେ ମନ୍ତ୍ରୀଙ୍କ ତଳେ ରହିବେ କି High Court ତଳେ ରହିବେ, ଏଇ ବିଗ୍ରର ଗ୍ଲିଛି । 'ବାଘ ନ ଦେଖିଲେ ବିରାଡ଼ି ଦେଖ' କଥାଟା ସମସ୍ତେ ଶୁଣିଥିବେ । ଏମାନେ ଯଦି ମନ୍ତ୍ରୀଙ୍କ ତଳେ ରହିବେ ତା'ହେଲେ separation of the Judiciary ଆଉ କ'ଣ ହେବ ? ଏଭଳି ବିଗ୍ରର ଯଦି ହେଉଥାଏ ତା' ହେଲେ ଏଗୁଡ଼ିକ କିଭଳି ବିଗ୍ରର ମୁଁ ବୁଝି ପାରୁନାହିଁ ।

ତା' ପରେ ମୁଁ Budget କୁ ଆସୁଛି । ମୁଁ ଆଉ ବେଶୀ ସମୟ ନେବି ନାହିଁ । ମୁଁ ଆରଥର କହିଥିଲି ଗୋଟିଏ କଥା Discretionary grant. ଏ ସ୍ୱାଧୀନ ରାଜ୍ୟରେ ଏହାର ଅର୍ଥ କ'ଣ ? Emergency grant କଥାଟା ମୁଁ ବୁଝିପାରୁଛି । Magistrate, Revenue Commissioner ର Heads of Departments ଏମାନଙ୍କୁ ଅଧିକାର ଦିଆଯିବ । ଯଦି କାହାକୁ ବିଲୁଆ କାମୁଡ଼ିଲା, ବା କାହାର ଘର ପୋଡ଼ିଗଲା, ତା'ହେଲେ ତାକୁ ଟଙ୍କା ସାହାଯ୍ୟ ଦେବାପାଇଁ ସରକାରଙ୍କୁ ଲେଖାଲେଖି କରି ମଂଜୁର ଆଣିଲା ବେଳକୁ ବହୁତ ଡେ଼ରି ହୋଇଯାଇଥିବ । ସେମାନେ ଏପରି କ୍ଷେତ୍ରରେ କିଛି ପାଇପାରନ୍ତି । ମୁଁ ଜାଣିପାରୁଛି, ଏପରି କେତେକ ଘଟଣା ଘଟିପାରେ, କିନ୍ତୁ Discretionary grant ପ୍ରଥମେ କାହାକୁ ଦିଆଯାଇଛି ? ପ୍ରଥମେ ଗଭର୍ଣ୍ଣରଙ୍କୁ 20,000 ଟଙ୍କା, କ୍ଷମା କରିବେ ମହାଶୟ ! ରାଜ୍ୟପାଳ, ତାଙ୍କ ନାମ ଦିଆହୋଇଛି । ଆମେ ରାଜ୍ କଥାଟା ଛାଡ଼ିପାରୁନାହୁଁ ସେ ଗୌଣତ୍ୱ ମନୋବୃତ୍ତି ଆମର ରହିଛି । ତାଙ୍କର ରାଜ ପ୍ରମୁଖ, ଆମର ରାଜ୍ୟପାଳ ରାଜଭବନ ଏମିତି ଶବ୍ଦଗୁଡ଼ିଏ ଆମେ ସୃଷ୍ଟି କରୁଛୁ । ଏମାନଙ୍କର ମାନ୍ୟବର ଉପାଧି ଗଲାପରେ ଏସବୁଗୁଡ଼ିଏ ଆଡ଼ମ୍ବର ବା ଦେଖାଇ ଦେବା କଥା । ତା' ପରେ ରାଜ୍ୟପାଳ ଯେ କାହିଁକି ଅଛନ୍ତି ମୁଁ କହିପାରିବି ନାହିଁ ଏଠି ହୁଏତ ଥିବ So-called All-India Interest ଏବଂ ସେଇଥିପାଇଁ ସେ ଥିବେ । ସେଥିରେ ସାଢ଼େ ତିନି ଲକ୍ଷ ଟଙ୍କା Stateରୁ ଆମକୁ ବାଧ୍ୟହୋଇ ଦେବାକୁ ହେବ । ଆଉପୁଣି ଏ 20 ହଜାର କାହିଁକି ? କ'ଣ ଇଏ ? ସେ କ'ଣ କରୁଛନ୍ତି ? ସେ ଏଠାରେ ଗୋଟିଏ ବକ୍ତୃତା ଦେଲେ ତ କୁହା ହେଉଛି ତାଙ୍କୁ କିଆଁ କହୁଛ ? ଆମକୁ କହ ; ଆମେ ସେଥିପାଇଁ ଦାୟୀ । ମୁଁ ଜାଣେ ସେ କୌଣସି ଜିନିଷ ପାଇଁ ଦାୟୀ ନୁହନ୍ତି । ସଂବିଧାନର 356 ଧାରା ଅନୁସାରେ ଯେତେବେଳେ ରାଜ୍ୟଟିକୁ ନେବାକୁ ହେବ ସେଥିପାଇଁ ସେ ଜଗି ବସିଛନ୍ତି । ସେତିକିବେଳେ ତାଙ୍କର ଯାହା କାମ । ଆଉ କାମ କିଛି ନାହିଁ । ସେତିକି କାମ ପାଇଁତ ଆମେ ତାଙ୍କୁ ସାଢ଼େ 3 ଲକ୍ଷ ଟଙ୍କା ଦେଲୁ ଲୋକଙ୍କ ତୋଟି ଚିପି ତଥାକଥିତ ମହାଭାରତୀୟ ସ୍ୱାର୍ଥ ବଜାୟ ରଖିବାପାଇଁ । ଫେରେ ଏ 20 ହଜାର କାହିଁକି ? ଘର ପୋଡ଼ିଗଲାବେଳେ କି ବିଲୁଆ କାମୁଡ଼ିଲାବେଳେ କ'ଣ ତାଙ୍କ ପାଖକୁ କିଏ ଆସିବ ? ତା'ପରେ ସବୁ ମନ୍ତ୍ରୀ-ମାନଙ୍କ ଭିତରେ ଦେଖିଲାବେଳକୁ above the line ହେଉଛନ୍ତି Chief Minister

ସେ ଆଗ, କାହିଁକିନା ତାଙ୍କୁ ମନୋନିତ କରିବେ ରାଜ୍ୟପାଳ, ସେ ଫେରେ ଅନ୍ୟମାନଙ୍କୁ କରିବେ । ଅତଏବ ରାଜ୍ୟପାଳଙ୍କ ସାଙ୍ଗେ ସମାନକରି ତାଙ୍କୁ ଦିଆହୋଇଛି 12 ହଜାର । ତାଙ୍କର ଯେ Deputy ଅଛନ୍ତି ତାଙ୍କୁ ଯାହା ଦିଆହୋଇଛି ସେ ସବୁ ଦେଖିଲେ ତାଙ୍କର ବୋଧେ 20 ହଜାର ହେବ । ବିଚରା ଅର୍ଥ ମନ୍ତ୍ରୀଙ୍କର ମୋଟେ ୫ ହଜାର, ତାଙ୍କର Deputy ନାହିଁ । ତଥାପି ମୁଖ୍ୟମନ୍ତ୍ରୀ ତାଙ୍କଠାରୁ ବଡ଼ । ସମସ୍ତେ ଏହିପରି କିଛି କିଛି ସ୍ତୋକ ପାଇଲେ । ଏମାନଙ୍କୁ ଲୋକେ କ'ଣ କହିବେ । Head of Administration ଓ Emergency grant ଦେଲେ ଇଏ ଫେରେ କାହାକୁ ଦେବେ ? ଯଦି ବା କାହାକୁ ଦେଲ, କିପରି ଭାବରେ ଦେଲ, କାହାକୁ ଦେଲ, କେତେ ଦେଲ ଏ ସବୁର ହିସାବ କାହିଁକି ଦିଆହେଉନାହିଁ ? ପ୍ରତିବର୍ଷ ଏଇଟା କ'ଣଦେବା ଉଚିତ ନୁହେଁ ? ଏଭଳି ଆମେ ଯଦି ରାଜା ହେବାପାଇଁ ବସିବା ତାହେଲେ * * * *

ଶ୍ରୀ ଉପେନ୍ଦ୍ର ମହାନ୍ତି : ଆଜିର ସଭ୍ୟମାନଙ୍କ ପାଇଁ time-limit ଅଛି କି ନାହିଁ ?

Mr. SPEAKER : Limit ଅଛି ? କିନ୍ତୁ Chair ଙ୍କର କ୍ଷମତା ରହିଛି ସେ limit କୁ କମାଇ ଦେଇପାରନ୍ତି, ବଢ଼ାଇଦେଇପାରନ୍ତି ।

ଶ୍ରୀ ନୀଳକଂଠ ଦାସ : ଆଜ୍ଞା, ମୋତେ ଯେତେବେଳେ କହିବେ ସେତେବେଳେ ମୁଁ ଶେଷ କରିଦେବି । ମୁଁ ତ ନୈରାଶ୍ୟରେ କହୁଛି । ହୁଏତ ଅନେକଙ୍କୁ ଏ କଥାଗୁଡ଼ାକ ବଡ଼ ପିତା ଲଗୁଥିବ କିନ୍ତୁ ମୁଁ ସମସ୍ତଙ୍କୁ ଅନୁରୋଧ କରୁଛି ଯେକୌଣସି ତିକ୍ତତା ରହିବାପାଇଁ ବା କୌଣସି ତିକ୍ତଭାବ ସୃଷ୍ଟି କରିବାପାଇଁ ଏ ସବୁ କହୁନାହିଁ । ମୋର ଯାହା ବୟସ, ମୋର ଯାହା ଅନୁଭବ, ସେଥିରେ ମୋତେ ଏଇଟା ବଡ଼ ନୈରାଶ୍ୟମୟ ବୋଧ ହେଉଛି । ଏ ଦେଶ ହେବ କ'ଣ ? ଆଗେ ଥିଲା, ଯେ ଆମେ ପରାଧୀନ ବୋଲି ଇଂରେଜ ସାମ୍ରାଜ୍ୟରେ ତଥାକଥିତ ସ୍ୱାର୍ଥରକ୍ଷାପାଇଁ ଆମ ତୋଟିରେ ବାଡ଼ି ପକାଇ ଇଂରେଜ ନେଉଥିଲେ । ଆମେ ସଫା ଦେଉଥିଲୁ Imperial preference ଇଂରେଜଙ୍କ ତଦଙ୍କେ ଟିକସ୍ । ବର୍ତ୍ତମାନ ଆମେ ସେଇଥିରେ ରହିବା । ଅବଶ୍ୟ ଆମେ ସମସ୍ତେ ଦେଶକୁ ଏକାଠି ଦେଖିବାରେ ଆମ ମନରେ କୌଣସି ସଂଦିଗ୍ଧତାର ରୂପରେଖ ରହିବା ଉଚିତ ନୁହେଁ । ତାହା ଆମକୁ ସ୍ୱୀକାର କରିବାକୁ ହେବ । ତା' ନ ହେଲେ ଆମେ ରହିପାରିବାନାହିଁ । କିନ୍ତୁ ସେତ ଏପରିନୁହେଁ ? ସେଇତିପାଇଁ ମୁଁ କହୁଛି ହେ ଭରତ ସରକାର, ତମେ କର, ତମେ ଆସି ଲୋକଙ୍କୁ ସମ୍ଭାଳ, ଆମେ କାହିଁକି ଲୋକଙ୍କପାଖକୁ ଯିବୁ ? ଆମେ କାହିଁକି ତାଙ୍କୁ ସମ୍ଭାଳିବୁ ? କିପରିବା ସମ୍ଭାଳିବୁ ? ଗୋଟିଏ ସଭାରେ ମୋତେ ପଚାରିଥିଲେ ଯେ ସ୍ୱାଧୀନତା କ'ଣ ? ମୁଁ କହିଲି ସ୍ୱାଧୀନତା ହେଉଛି, "ଯେଉଁ ରାଜ୍ୟରେ ଓ ଶାସନରେ ହାକିମ ଚାକର ହୁଏ" ତାକୁଇ କହନ୍ତି ସ୍ୱାଧୀନତା । ତାହେଲେ ସ୍ୱରାଜ୍ୟ ହେଲା । ମୁଁ ଗୋଟିଏ କଥାରେ ଏ କଥାଟି ଉଲ୍ଲେଖ କରିଥିଲି । ଆଜି ମଧ୍ୟ ମନ୍ତ୍ରୀମାନଙ୍କୁ ଏଇଆ କହୁଛି । ମନ୍ତ୍ରୀମାନେ ବୋଧହୁଏ Servants. ସେମାନେ ବରାବର

ଗ୍ଢକରପରି । କିନ୍ତୁ ଗ୍ଢକରପରି ହେବାର ମାନସିକତା ତାଙ୍କର କ'ଣ ହେଲାଣି ? ସବୁଯାକ ଗ୍ରଉଳ ଯାହାକୁ କହନ୍ତି କୁକୁରିଆଙ୍କୁ ଦେଇ ତାପରେ ଲୋକଙ୍କ ଉପରେ ଟିକସ ବସାଇବା । ଏ କ'ଣ ଗ୍ରକିରିଆର ମନୋଭାବ ! ମୁଁ ତାଙ୍କୁ ଏଇଆ କହୁଛି ଯେ ଏ ରାଜ୍ୟରେ ଆମେ ଚଳିବୁ କିମିତି ?

Industry ହେବ, ଏ କଥା ଅନେକ ଲୋକଙ୍କୁ ଖରାପ ଲାଗିବ । Industry ହେବ ନାଁ ଆଗ ଖଦି ବୋର୍ଡ କରାହେବ ? ଖଦି କାହିଁକି ହେଉଛି ? ମହାତ୍ମା ଗାନ୍ଧି - ଚୀରକାଳ ସେ ନମସ୍ୟ । ସେ ଏ କଥା କହିଥିଲେ । କିନ୍ତୁ ଆଜି କିଏ ଖଦି ପିନ୍ଧୁଛି ? ଅର୍ଥ ମନ୍ତ୍ରୀ ନିଜେ ପିନ୍ଧୁଥିବେ । ମୁଁ ପିନ୍ଧିଛି, ମୋ ମାଇପ ପିନ୍ଧୁଛି କିନ୍ତୁ ମୋ ପୁଅ କ'ଣ ପିନ୍ଧୁଛି ନାଁ ମୋ ନାତି ପିନ୍ଧିବ ? ମୁଁ ସେଥିପାଇଁ ବରାବର କହିଆସୁଛି ଦେଶଟାକୁ ଦେଖ । ବର୍ତ୍ତମାନ ପରିସ୍ଥିତିକୁ ଦେଖ, ଖଦିରେ ଏତେ କାହିଁକି ଲାଗିଛ ।

ତା'ପରେ ଆମର Basic Education କଥା କୁହାଯାଉଛି । ମୁଁ ଏ ବିଷୟରେ ପରେ କହିବି । କିନ୍ତୁ ମୁଁ ଏତିକି କହିବି ମଫସଲରେ Primary ସ୍କୁଲର ଏଇ ଖଦି ଓ ସୂତାକଟାକୁ ଖଟୁଲିରେ ପୂଜାକରିବାକୁ କ'ଣ ସବୁ ହେଉଛି ସେ କଥା ଅର୍ଥ ମନ୍ତ୍ରୀ ଦେଖୁନାହାନ୍ତି । ଯାହାକୁ ଆମେ ନରଖିପାରିବା ଯେ ଜିନିଷର କୌଣସି ନୈତିକ ବା ଅର୍ଥନୈତିକ ମୂଲ୍ୟବୋଧ ନାହିଁ, ସେଥିରେ କାହିଁକି ମାତୁଛନ୍ତି । ଏହିପରି କରି ଆମେ କ'ଣ ଦେଶକୁ ଶାସନ କରିବା ? ଏଇଟା କ'ଣ ଦେଶ ଶାସନ କରିବାର ଧର୍ମ ?

Mr. SPEAKER ଅନେକ ସଭ୍ୟ ଏଥିରେ ଭାଗ ନେବାପାଇଁ ଅଛନ୍ତି । ମାନ୍ୟବର ସଭ୍ୟ 20 ମିନିଟ କହିସାରିଲେଣି, ଏଣିକି ତାଙ୍କ ଭାଷଣ ଶେଷ କରନ୍ତୁ ।

ଶ୍ରୀ ନୀଳକଣ୍ଠ ଦାସ : ମୁଁ ଆଉ ଗୋଟିଏ କଥାକହି ମୋର ବକ୍ତବ୍ୟ ଶେଷକରିବି । ମୋର Agriculture ରେ ଭାରି ମମତା । ଅଳ୍ପଦିନ ତଳେ କଟକରେ ଗୋଟିଏ Agricultural Exhibition ହୋଇଥିଲା । ରାତି 9 ଟା ବେଳେ ଛଦ୍ମ ଭାବରେ ମୁଁ ସେଠାକୁ ଯାଇଥିଲି । ସେଠି ଦେଖିଲି ଗୋଟାଏ ଜାଗାରେ ଡ଼ାଲାକୁ ଡ଼ାଲା କୁଢ଼ା ହୋଇଥିଲା, ନାନାପ୍ରକାର ଧାନ ଥିଲା । ମୁଁ ସେଠି ପଗ୍ରରିଲି ଏ ଧାନର ନାମ କ'ଣ ? ପୁରୀ ଜିଲ୍ଲାରେ ଏହାର ନାମ କ'ଣ ? ଏହା କେବେ କଟାହୁଏ ଓ କେବେ ବୁଣା ହୁଏ କିନ୍ତୁ ସେ କିଛି କହିପାରିଲେ ନାହିଁ । ସେ କେବଳ ନମ୍ବର one, ନମ୍ବର two ଏଇକଥା କହିଲେ, ଆଉ କିଛି କହିପାରିଲେ ନାହିଁ । ତା' ପରେ ତୁଳା ଯେଉଁଠାରେ ଥିଲା । ମୁଁ ସେଠାକୁ ଗଲି, ସେଠି ମୁଁ ପଗ୍ରରିଲି ଏହା କି ତୁଳା Egypt ତୁଳା କି ନାଁ, ଏହାର fibre କେତେ କିନ୍ତୁ ସେ କିଛି କହିପାରିଲେ ନାହିଁ । ମୁଁ ଯଦି ଏହିପରି କହିବି ବହୁତ ଗୁଡ଼ାଏ ହୋଇଯିବ । ଶେଷରେ ମୁଁ ଗଲି ନଡ଼ିଆ ପାଖକୁ, ମୋର ନଡ଼ିଆ ଜାଗାରେ ଘର । ସେଠି ଗୋଟାଏ ସୁନ୍ଦର ବାଣ ନଡ଼ିଆ ପେଣ୍ଡା ଥିଲା । ମୁଁ ତାଙ୍କୁ ପଗ୍ରରିଲି ଏ କ'ଣ ସତ୍ୟବାଦୀ

ନଡ଼ିଆ farm ରୁ ଆଣିଛ ? ସେ କହିଲେ ନାଁ, ଏଇଟା ଆମେ ବାହାରୁ କିଣିକରି ଆଣିଛୁ । ତା' ପରେ ମୁଁ ପଗ୍ଭରିଲି ବାହାରୁ କାହିଁକି କିଣାହୋଇ ଆସିଛି ? ସେ ତା'ର କାରଣ କିଛି ବୁଝାଇ ପାରିଲେ ନାହିଁ । ସେଥିପାଇଁ ମୁଁ କହେ ଆମର experimental farm ଛଡ଼ା ଆଉ କିଛି farm ରଖିବା ଉଚିତ ନୁହେଁ । ଏ କଥା ଜାଣିବା ଆମର ଉଚିତ ଯେ ଯଦି ଲୋକେ ନ କହିବେ କେଉଁ ଖତ ଆମେ ଦେବୁ, କେଉଁ ମଞ୍ଜି ଆମେ ବୁଣିବୁ, ମୋର ଖଣ୍ଡେ ଜମି ଅଛି ତାକୁ କିପରି କ'ଣ କଲେ ଭଲ ହେବ । ଏହିସବୁ ଖବର ଯଦି ସେମାନେ ଆସି ନ ନେବେ ତାହାହେଲେ ଏସବୁ ଆମେ କରି ଲାଭ କ'ଣ ? ଲୋକେ ବା କାହିଁକି ଆସି ପଗ୍ଭରିବେ ? ଯଦି ତାଙ୍କ ଠାରୁ କିଛି ଶିଖିବାର ନାହିଁ । ମୁଁ ତା'ପରେ ଦେଖିଲି ଯେ ଯେତେବେଳେ ଡେପୁଟି ଡ଼ିରେକ୍‌ଟର ଦାମୋଦର ସେଆଡୁ ଆସଛନ୍ତି, ସେ ଆମ ଗାଁ ବାଲା, ମୁଁ ତାଙ୍କୁ ଚିହ୍ନା ନ ଦେଇ ଗ୍ଭଲିଆସିଲି ।

ମୁଁ ଆଉ ବିଶେଷ କିଛି କହିବାକୁ ଯାଉନାହିଁ, ମୋର ଅନେକ କଥା କହିବାର ଅଛି । ତାହା ମୁଁ ପରେ କହିବି ।

ବର୍ତ୍ତମାନ ଶାସନକଳ ଯେପରି ଭାବରେ ଗତି କରୁଅଛି ତା'ର କେଉଁ କଥା ବା କହିବି ମୁଁ ଆଉ ଗୋଟାଏ ଉଦାହରଣ ଦେଉଛି ଯେ କଳାହାଣ୍ଡିରେ Settlement କାର୍ଯ୍ୟ କେତେ ଅଞ୍ଚଳ ସରିଯାଇଅଛି । ବର୍ତ୍ତମାନ ପାଞ୍ଚ ବର୍ଷିଆ ପଟ୍ଟା ଦିଆଯାଉ ଅଛି । ଏହି ପଟ୍ଟାରେ ରାଜସ୍ୱ ଆଦାୟ ଭାର ଗ୍ରାମର ଗୌନ୍ତିଆ ଉପରେ ଦିଆଯାଇଅଛି । ନୂତନ ବନ୍ଦୋବସ୍ତରେ କାହାର ରାଜସ୍ୱ ବଢିଛି ବା କାହାର କମିଯାଇ ଥାଇପାରେ । କିନ୍ତୁ ରାଜସ୍ୱ ଆଦାୟ ଭାର ଗୌନ୍ତିଆମାନଙ୍କୁ ଦେଇ କାହାଠାରୁ କେତେ ଆଦାୟ ହେବ ତାହାର ବିଶେଷ ବିବରଣୀ ଦିଆଯାଇ ନାହିଁ । କେବଳ ମୋଟ ଗ୍ରାମର ରାଜସ୍ୱ କେତେ ସେତିକି ଜଣାଇ ଦିଆଯାଇଅଛି । ବର୍ତ୍ତମାନ ଗୌନ୍ତିଆମାନେ କାହାଠାରୁ କେତେ ରାଜସ୍ୱ ଆଦାୟ କରିବେ ସେ ବିଷୟରେ ସେମାନେ ବଡ଼ ଚିନ୍ତିତ ଏହା କରିବା ଦ୍ୱାରା ଗୌନ୍ତିଆମାନେ ଦଶଥର ବନ୍ଦୋବସ୍ତ ଅଫିସକୁ ଯାଇ ଖୁସାମଦ କରିବେ । ଖୋସାମଦ କଲେ କ'ଣ କ'ଣ ଆବଶ୍ୟକ ହୁଏ, ସେସବୁ ଏହି ଗୃହରେ କହିବା ଅନାବଶ୍ୟକ । ଏପରିଭାବରେ ଯଦି ଜାଣି ବୁଝି ଲୋକଙ୍କୁ ହଇରାଣ କରାଯାଏ ତା'ହେଲେ ଦେଶରେ କିପରି ଶାନ୍ତି ଆସିବ ମୁଁ ବୁଝିପାରୁ ନାହିଁ ।

ଏଣୁ ମୁଁ ମାନ୍ୟବର ମନ୍ତ୍ରୀମାନଙ୍କୁ ଅନୁରୋଧ କରୁଅଛି ଯେ, ଯଦି ଦେଶରେ ପ୍ରକୃତ ରାମରାଜ୍ୟ ପ୍ରତିଷ୍ଠା କରିବେ ଏବଂ ଦେଶବାସୀଙ୍କୁ ଶାନ୍ତି ଓ ସୁଖ ଦେବାକୁ ଗ୍ଭହାନ୍ତି, ତାହାହେଲେ ବ୍ୟକ୍ତି ସ୍ୱାର୍ଥ, ଦଳର ସ୍ୱାର୍ଥକୁ ବର୍ଜନ କରନ୍ତୁ । ତେବେ ଯାଇ ଦେଶବାସୀ ସୁଖୀ ହେବେ ଏତିକି କହି ମୁଁ ମାନ୍ୟବର ବିରୁଦ୍ଧ ଦଳର ନେତାଙ୍କ କାଟ ପ୍ରସ୍ତାବକୁ ସମର୍ଥନ କରି ମୋର ବକ୍ତବ୍ୟ ଶେଷ କରୁଛି ।

Shri NILAKANTHA DAS: ବାଚସ୍ପତି ମହାଶୟ, ଏ ଯେଉଁ କାଟ ପ୍ରସ୍ତାବ ଟ ୧ କମାଇବା ପାଇଁ ଦିଆଯାଇଛି, ଏହାର ଅର୍ଥ ହେଉଛି ଯେ ଆମେ ଏହା ଦେବାକୁ (ଏହି ଖର୍ଚ୍ଚ-ଦେବାକୁ) ରାଜି ନୋହୁଁ । କାରଣ ଏମାନେ ରାଜ୍ୟ ଶାସନ ଚଳାଇବା ପାଇଁ ଆଦୌ ଉପଯୁକ୍ତ ନୁହଁନ୍ତି ଓ ସେଥିରେ ବି ଆମର ବିଶ୍ୱାସ ନାହିଁ । ଏହା ହେଉଛି ଏ ପ୍ରସ୍ତାବର ଅର୍ଥ । ଏହି ପ୍ରସ୍ତାବର ଅର୍ଥ ନୁହେଁ ଯେ କେଉଁଠି କ'ଣ ଖର୍ଚ୍ଚ ହେଲା ସେଇ ଖର୍ଚ୍ଚଟା କର ନାହିଁ ସେଥିପାଇଁ ଟଙ୍କା କମାଇ ଦେବା । ଏ ଜିନିଷଟି ଏହା ଭିତରେ ଅନ୍ତର୍ଗତ । କିନ୍ତୁ ଏଗୁଡ଼ିକ ପାଇଁ ଏ cut motion ଦିଆଯାଇ ନାହିଁ । ଏହାର ଅର୍ଥ ହେଉଛି ଯେଉଁମାନେ ବର୍ତ୍ତମାନ ଦାୟିତ୍ୱ ନେଇଛନ୍ତି ସେମାନେ ରାଜ୍ୟ ଚଳାଇବା ପାଇଁ ଅନୁପଯୁକ୍ତ । ସେଥିପାଇଁ ଏ ଟଙ୍କା ଆମେ ତାଙ୍କ ହାତରେ ଦେବୁ ନାହିଁ । ଏହା ହେଉଛି ତାର ଅର୍ଥ । ଏଠି ମାନ୍ୟବର ସଭ୍ୟମାନେ ବିଭିନ୍ନ ଭାବରେ ପ୍ରତ୍ୟେକ ବିଭାଗରେ ଯାହା ଅସୁବିଧାସବୁ ଅଛି । ତାହା କହି ସାରିଲେଣି ମୁଁ କିନ୍ତୁ ଗୋଟିଏ ଦୁଇଟି ବିଷୟ କହିବି । ଆପଣ ବୋଧହୁଏ ଶୁଣିଥିବେ ଗ୍ରେରକୁ ହାତ କାମୁଡିବା ଶିଖାଇବା କଥା "ଦିନେ ରାତିରେ ଗୋଟିଏ ଅନ୍ଧାରିଆ ଘରେ ଗ୍ରେର ପଶିଲା ବାପ ପୁଅ ତାକୁ ଧଇଲେ । ପୁଅ ଭରି ବଳବାନ ସେ ଗ୍ରେରକୁ ଭିଡି ଧଇଲା । ବାପ ଆର ଘରକୁ ଗଲା ଦଉଡି ଆଣି ଗ୍ରେରକୁ ବାନ୍ଧିବା ପାଇଁ । ବାପ ଯାଇ ସେ ଘରେ ଦଉଡି ଖୋଜି ଖୋଜି ହାଲିଆ, ଦଉଡି ମିଳୁ ନାହିଁ, ଏପରି ସମୟରେ ବାପ ଭାବିଲା ମୋ ପୁଅଠୁ ସିନା ଗ୍ରେରର ବଳ ବେଶୀ ନାହିଁ ସେ ଯଦି କାମୁଡି ଦେଇ ଗ୍ଲିଯାଏ, ସେଥିପାଇଁ ସେ ସେଇ ଘରୁ ରଡି କରି ଡାକିଲା, ପୁଅ, ଗ୍ରେରକୁ ଢାଗୁଡିରେ ଧରି ଥାଆ, କାଳେ ହାତ କାମୁଡି ଗ୍ଲିଯିବ" ଗ୍ରେର ଏହା ଶୁଣି ହାତ କାମୁଡି ଗ୍ଲିଗଲା । ମୁଁ ସରକାରୀ ଦଳକୁ ଯଦି ସେହିପରି ହାତ କାମୁଡ଼ାଟା ଶିଖାଇ ଦିଏ ଅବଶ୍ୟ ଏପାଖର ବନ୍ଧୁ ମାନେ ମୋତେ ପରେ ଆକ୍ଷେପ କରିବେ । ସରକାରଙ୍କ ପକ୍ଷରୁ ଯେଉଁ ସଭ୍ୟମାନେ ଯାହା କହିଲେ ତାହା ମୁଁ ଶୁଣିଲି । ମୁଁ ଭାବିଲି ଏମାନେ ତ ଏଭଳି ଅସନ୍ତୋଷ ଆମେ ହେଲେ ଦୋଷ କଣ ? ମୁଁ ଶୁଣିଲି ଯେ ସେମାନେ କହିବା ଢ଼ଙ୍ଗ ହେଉଛି ଚିରେଇତାରେ ମହୁ ପ୍ରକ୍ଷେପ ଦେଇ ଖାଇଲା ଭଳିଆ । ଚିରେଇତା ଭଳି ପିତା ଔଷଧକୁ ମହୁ ପ୍ରକ୍ଷେପ କରି ଖିଆ ଯାଏ । ମହୁ ପ୍ରକ୍ଷେପ କଲେ ଯେ ଚିରେଇତାର ପିତା କମିଯିବ, ଏହା ନୁହେଁ । ସେହି ଭଳି ସରକାର ପକ୍ଷ ସଭ୍ୟମାନେ କାଟ ପ୍ରସ୍ତାବକୁ ବିରୋଧ କରୁଛନ୍ତି । ମତେ ଆଶ୍ଚର୍ଯ୍ୟ ଲଗୁଛି ଯେ ଏହିପରି ଅବସ୍ଥାରେ ଏମାନେ କାହିଁକି ଅଛନ୍ତି, ଯେତେବେଳେ ଏହାଙ୍କର ନିଜ ପକ୍ଷର ଯେଉଁମାନେ ଅଛନ୍ତି ତାଙ୍କ ଅବସ୍ଥା ଏଇଆ ଏଲ ମଧ୍ଯୁ ପରଖ ଏମାନଙ୍କୁ କେତେ ଦିନ ରଖିବ ।

ତାପରେ ମୁଁ ଏଠି ବସି ଯାହା ଶୁଣୁଛି ଓ ଯାହା ଅନଭବକରୁଛି ତାହା କହିବି । ମୁଁ ଏଇ ବଜେଟ୍ ପଢିବାକୁ ସମୟ ପାଇନାହିଁ । ଏ କଥା ଆପଣ ଜାଣନ୍ତି ଓ ଅନେକ ମାନ୍ୟବର ସଭ୍ୟ ଜାଣନ୍ତି କେତେକ ସଭ୍ୟ ଏଠି କହିଛନ୍ତି ମୁଖ୍ୟମନ୍ତ୍ରୀ କେଉଁଠି ଖାଇଲେ, ଅନ୍ୟ ମନ୍ତ୍ରୀମାନେ କେଉଁଠି ଖାଇଲେ ଏସବୁ ବିଷୟ ନେଇ ଏହିପରି ଆଲୋଚନା ହେଲାବେଳେ ମୋତେ ଆଶ୍ଚର୍ଯ୍ୟ

ଲଗିଲା ସେଥିପାଇଁ ଜବାବ ହେଉଛି ଯେ ରସିଦ ଦିଆଯାଉଛି, କିଏ କେଉଁଠି କଞ୍ଚାମାଲ ଟିକେ ଖାଇଥିବ ମୁଁ କିନ୍ତୁ କହେ ଯେ ଏପରି କହିବାରେ ଅର୍ଥ କ'ଣ ଅଛି ? ଖାଇବାର ବହୁତ ପ୍ରକାର ଅଛି । ଯଦି ଜଣେ ମନ୍ତ୍ରୀ ଯାଇ ପୁରୀରେ କୌଣସି Subdivisional Magistrate ଙ୍କ ଘରେ ଖାଇଲେ ସେ ଗୋଟିଏ ପ୍ରକାର ଏବଂ କୋରାପୁଟ ସବ୍‌ଡ଼ିଭିଜନାଲ ମାଜିଷ୍ଟ୍ରେଟଙ୍କ ଘରେ ଖାଇବା ସେ ଗୋଟିଏ ପ୍ରକାର । ପ୍ରତ୍ୟେକ କଥାରେ ଯେପରି ଖାଆ, ଭୁଞ୍ଜ, ଗିଳ୍ ତନି ପ୍ରକାର ଅଛି, ଏଇ ଖାଇବାର ବି ସେହିପରି ଅଛି । ଧର ଆମର କେଉଁ ମନ୍ତ୍ରୀ ପୁରୀରେ ଯାଇ ପଞ୍ଚାନନ ତ୍ରିପାଠୀଙ୍କ ଘରେ ଖାଇଲେ ସେଠି ଦୃଷ୍ଟି ପଡ଼ି ନ ପାରେ, କିନ୍ତୁ କୋରାପୁଟରେ ଯାଇ ଅଫିସରଙ୍କ ଘରେ ଖାଇବା ଆମ ଆଖି ଆଗରେ ପଡ଼ିବ । ଯେଉଁମାନେ ମନ୍ତ୍ରୀ ହେବେ ସେମାନେ ଏ କଥା ବୁଝିବା ଉଚିତ । ଏଇ କଥାରେ କି ଅନ୍ୟ କୌଣସି ଗୋଟିଏ କଥାରେ ମୁଖ୍ୟମନ୍ତ୍ରୀ କହିଲେ ଯେ "ଟେବୁଲ ଭାଙ୍ଗିଯିବ" ମତେ ଏକଥା ଶୁଣି ବଡ଼ ଆଶ୍ଚର୍ଯ୍ୟ ଲଗିଲା । ମୁଖ୍ୟମନ୍ତ୍ରୀ ସିଏ, ସେ ଟେବୁଲ ଭାଙ୍ଗିବେ ? ତାଙ୍କର ଦାୟିତ୍ୱ ଅଛି, ଆମେ ତାଙ୍କୁ ଟଙ୍କା ଦେଉଛୁ, ଆମେ ତାଙ୍କୁ ଜଗି ବସିଛୁ । ଦାୟିତ୍ୱ ମାନେ କ'ଣ ଏହା ବୁଝିଛୁ ? ପ୍ରତ୍ୟେକ ମନ୍ତ୍ରୀ ଏଠି ଅଛନ୍ତି ତାଙ୍କର ଆଭିମୁଖ୍ୟ ଓ ଦାୟିତ୍ୱ ଯଦି ଏଠି ଦେଖା ନ ଯାଏ ତାହାହେଲେ ଅନ୍ୟମାନେ ଦେଖିବେ କ'ଣ ? ତମର ଯଦି ଆଭିମୁଖ୍ୟ ନ ଥିବ, ଆମେ ଏଠି ଟେବୁଲ ଭାଙ୍ଗି ଦେଇ ପାରୁ । ତୁମର ଅଛି ଦାୟିତ୍ୱ ଓ କ୍ଷମତା ତୁମକୁ ସେଇ ଦାୟିତ୍ୱ ତୁଲାଇବାକୁ ହେବ । ଆମର ହେଉଛି ବିରୋଧ, ଆମେ ଆଭିମୁଖ୍ୟ ନ ପାଉ ଓ ସହଯୋଗ ନ ପାଉ, ତାହାହେଲେ ଆମ ଦାୟିତ୍ୱ ଆମେ କିପରି ବୁଝିବୁ ? ଏ ଅଭିନବ ଘଟଣା ଭାରତ ବର୍ଷରେ ଦେଖାଯାଉଛି । ଆମେ ଯଦି ଚୌକି ଭାଙ୍ଗିଦେବୁ ତାହାହେଲେ ଆମକୁ ତୁମେ ଜବତ୍ କରିବ । ଆମକୁ ଜବତ୍ କରିବା ଭଳିଆ ଆଭିମୁଖ୍ୟ ତୁମଠି ଥିବା ଦରକାର । ଆମେ ଯଦି କୌଣସି ଭୁଲ୍ କଲୁ ଆମକୁ ଏଠି ଟେକି ନେଇ ବାହାର କରିଦେବା ଅଧିକାର ଆପଣଙ୍କଠି ଅଛି । ଅବଶ୍ୟ ନିୟମରେ ଅଛି ଯେ ଦୁଇ ପକ୍ଷରୁ ଯେ ହେଉନା କାହିଁକି ଯଦି କୌଣସି ଗର୍ହିତ କାର୍ଯ୍ୟ କରେ, ଆପଣ ତାକୁ ବାହାର କରିଦେଇ ପାରିବେ । ଏହା ବୋଲି ଯେଉଁମାନଙ୍କ ଉପରେ ଦାୟିତ୍ୱ ସେମାନେ ବି ଶିଷ୍ଟାଗ୍ର ବାହାରକୁ ଯିବେ, ଯାହା ଫଳରେ କି ଆପଣ ତାକୁ ବାହାର କରିବେ, ଏହା କ'ଣ ଶିଷ୍ଟାଗ୍ର ? ତାହାହେଲେ ଟଙ୍କା କ୍ଷତି ହେବ, ହେଉ ସେଥିରେ କିଛି ଶଙ୍କା ନାହିଁ । ଯାହାହେଉ ଏସବୁ ଯେ ହେଉଛି ଏଥିରେ ଆମଠାରୁ ସେମାନେ କିପରି ସହଯୋଗ ପାଇବେ । ଏହି ଆଭିମୁଖ୍ୟ ଯଦି ଦେଖା ନଯାଏ ତାହାହେଲେ ଆମ ଅବସ୍ଥା ପ୍ରତିଦିନ ସେଇଆ ହେବ । ଆମର ଆଉ ଗ୍ରଗ କ'ଣ ? ସେ ବିଷୟରେ ସିନା ସାବଧାନ ହେବାକୁ ହେବ । କିଏ ଯଦି ଖାଇଗଲା, କି କିଏ ରସିଦ ନେଲା । ଏହା କହିଦେଲେ ଏଥିରେ ସୃଷ୍ଟି ପ୍ରଳୟ ହୋଇଗଲା କ'ଣ ? ଏଥିରେ ତ କିଛି ନାହିଁ । ତା' ପରେ କହୁଛ କିଏ କଲା ନାମ କୁହ । କିହୋ ଆମେ କାହିଁକି ନାଁ କହିବୁ ? କାଲି ଯେମିତି ଗୋଟିଏ ଘଟଣା ଘଟିଲା, ସେପରି କଥା କ'ଣ ହେବାର କଥା । ମନେ କରନ୍ତୁ ମୁଖ୍ୟମନ୍ତ୍ରୀ ବିରୋଧୀ ପକ୍ଷର ନେତାଙ୍କୁ ଯାଇ କହିଲେ ତୁମକୁ Public Service

Commission ର Chairman କରାଯିବ ତୁମ ଦଳରୁ ଆଉ ଦୁଇ ଜଣଙ୍କୁ ଗୋଟିଏ ଗୋଟିଏ ମେମ୍ବର କରାଯିବ ତୁମେ ଆସିବ କି ? ଧରନ୍ତୁ ଏଇ କଥା ସେ କହିଲେ—ଏହା ସତ ହୋଇପାରେ ତେବେ ମୁଁ କ'ଣ ଏଠାରେ ନାମ ଧରି କହିବି ଯେ ହଁ ମୁଖ୍ୟମନ୍ତ୍ରୀ କହିଲେ ବା ମଣିଷ ପଠାଇ ଥିଲେ ଏ କଥା କହିବାପାଇଁ । ଆଉ ଶ୍ରଦ୍ଧାକର ସୁପକାରଙ୍କୁ ଏକଥା କହୁଛନ୍ତି । ଏଇଟା କଣ କହିବାର କଥା ପୂର୍ବେ ରାଜାମାନେ ଥିଲେ ଗୁରଚକ୍ଷୁ । ବର୍ତ୍ତମାନ ସରକାର ହେଉଛନ୍ତି ଗୁରଚକ୍ଷୁ । କିହୋ, ତୁମେ ପରା ରାମରାଜ୍ୟ କରିଛ ଦୁଃମୂର୍ଖ ଯେତେବେଳେ ସୀତାଙ୍କ ବିରୁଦ୍ଧରେ ଗାଁଗହଳ ରେ ଲୋକେ କହୁଛନ୍ତି ବୋଲି କହିଲେ ସେ ତ କିଏ କହିଲା ତା'ର ନାଁ କହି ନ ଥିଲେ ତୁମେ ତ ଗୁରଚକ୍ଷୁ, ତୁମେ ତ ଖବରକାଗଜ ପଢୁଛ ତୁମେ ତା ସବୁ ଜାଣିବାର କଥା, କଥାଟି କଣ ତୁମେ ତ ବୁଝିବାର କଥା, ଯେଉଁଠୁ ଯାହାକଥା ଶୁଣିଲ ତୁମେତ ଅନୁସନ୍ଧାନ କରିବା କଥା ତୁମେ ନା ପଚ଼ାରୁଛ କାହିଁକି ? ଯଦି ଆମ ଘରକୁ ଆସ କିଏ କ'ଣ କହି ତୁମେ କ'ଣ ଏଠି ଆସି ଆମକୁ ନାମ ପଚ଼ାରିବ ? ଯଦି ନାଁଟି କହି ଦିଆଗଲା ତୁମେ କଣ ତାକୁ ଶାସ୍ତି ଦେବ ? ନିଜ ଭିତରୁ କାହାକୁ ମନ୍ତ୍ରୀ ପଦରୁ ବାହାର କରିବାକୁ କ'ଣ ନାଁଟି ପଚ଼ାରୁଛ ? ନାଁ ମଗା ହେଉଛି ଅର୍ଥାତ୍ ଏତେ ଦିନର ପୁରୁଣା କଥାଟି କାହାମନରେ କେତେ ପ୍ରକାର ଭାବ ହୋଇପାରେ । ଏଇ ଧରନ୍ତୁ ମଧୁପୁର ପ୍ରସଙ୍ଗରେ ଯେଉଁ କଥା ହାଟରେ ବାଟରେ, ଦାଣ୍ଡରେ ପଡ଼ିଲା ସେଥିରେ କୌଣସି ମନ୍ତ୍ରୀଙ୍କୁ ବାହାର କରି ଦିଆଗଲେ ହୁଏତ ଅନ୍ୟମନ୍ତ୍ରୀମାନେ ସାବଧାନତାର ସହିତ କାର୍ଯ୍ୟକରି ଥାଆନ୍ତେ ; ତାହା କଣ କିଛି ହେଲା ? ନାଁ କରିବାକୁ ମୋତେ ବଡ଼ ଅସୁଖ ଲାଗେ କିହୋ, ନାଁ ଗୋଟେ କଣ ? ତୁମେ ତ ଗୁରଚକ୍ଷୁ—ତୁମେ ସବୁ କଥା ବୁଝି ପକାଇବା—କଥାଟିଏ ଶୁଣିଲା ମାତ୍ରେ ତୁମେ ତ ତାର ସବୁ ଜିନିଷ ଅନୁସନ୍ଧାନ କରି ପକାଇବ । ତୁମକଥା ସବୁ ପଦାରେ ପଡୁଛି ତୁମେ ଟେବୁଲ ବାଡ଼େଇ ସବୁ ନିଷ୍ପତ୍ତି କରି ଦେଉଛ । ଦେଶରେ ଏତଦ୍ୱାରା ଯେଉଁ ଭାବ ସୃଷ୍ଟି ହେଉଛି ତାକୁ କ'ଣ ତୁମେ ବୁଝୁ ନାହଁ । ସେଥି-ପାଇଁ ବୋଧହୁଏ କଟକରେ ନ କରି ବ୍ୟବସ୍ଥା ସଭା ଏଠି କରୁଛ । କଟକରେ କରୁଥିଲେ ଯେପରି କାର୍ଯ୍ୟ କରୁଛ ଦାଣ୍ଡକୁ ବାହାରି ମୁହଁ ଦେଖାଇ ପାରନ୍ତ କି ? ଏଇଟା ଏଠି ହେଉଛି ବୋଲି ବେଶୀ ଲୋକ ଆସି ପାରିବେ ନାହିଁ । ଜନମତ ଯାହାକୁ ଇଂରାଜୀରେ କହନ୍ତି— public opinion ସେଟା ମଧ୍ୟ ବ୍ୟବସ୍ଥା ସଭାର ଗୋଟିଏ ଅଂଶ । ବହୁ ସଂଖ୍ୟାରେ ଏଠାରେ ଏମାନେ ରହୁଥିବାରୁ କ'ଣ ଆମକୁ ଜବତ୍ କରି ସବୁଜିନିଷ ନିଷ୍ପତ୍ତି କରି ହେବ ? ଆମକୁ ଯେପରି ଭାବରେ ଜବତ୍ କରିବାର କଥା ସେ ସ୍ୱତନ୍ତ୍ର । ସରକାର ତ ନିଶ୍ଚୟ ଜୀବନ ରଖିବାପାଇଁ ସବୁବେଳେ ବ୍ୟସ୍ତ କଥାଟି କ'ଣ ହୋଇଛି ଲୋକେ କଣ ଜାଣୁ ନାହାନ୍ତି, ଆପଣ କ'ଣ ଜାଣୁ ନାହାନ୍ତି ନା ସରକାର ଜାଣୁ ନାହାଁନ୍ତି ସମସ୍ତେ ଜାଣନ୍ତି ପ୍ରଥମରୁ ଏମାନଙ୍କର ତ ବହୁତ ଲୋକ ନ ଥିଲେ । ଏ ପ୍ରତିଦିନ ପଚ଼ାରୁଛନ୍ତି କାଲେ କିଏ ଖସି ଆସିବ । ଫେପ୍‌ସୁ ସମ୍ବଧରେ House of People ରେ ଆଲୋଚନା ହେଉଥିଲାବେଳେ କଥା ପଡ଼ିଥିଲା ଯେ ତୁମେ ତ ଓଡ଼ିଶାରେ ସେଇଆ କରିଛ, ତୁମେ ସେଠି କେଉଁ ଲୋକଙ୍କୁ

ନେଇ ସରକାର ସମ୍ଭାଳିଛ ? ଦିଲ୍ଲୀରେ House of people ରେ ଏକଥା ହୋଇଛି । ଏଇଟା ଖବରକାଗଜରେ ବାହାରି ଥିଲ । ଏମାନେ ବୋଧହୁଏ ଖବରକାଗଜ ପଢନ୍ତି ନାହିଁ ।

Voice—ଏଟା ଭୁଲବାହାରିଛି ।

Shri NILAKANTHA DAS : ଯାହା ବାହାରିଛି ମୁଁ ତାହା କହୁଛି । ଭୁଲ ବହୁତ କଥା ବାହାରେ କିନ୍ତୁ ମୁଁ କହେ ଏ ଯେଉଁ କଥାଟି ଭୁଲ ବାହାରିଛି ଯେ ବିରୋଧୀ ଦଳ ପକ୍ଷରୁ କେତେକ ମାନ୍ୟବର ସଦସ୍ୟଙ୍କୁ ନେଇ କାହାକୁ Chairman, କାହାକୁ ମେମ୍ବର କରି ଦିଆଯିବ Public Service Commission ରେ ଓ ତଦ୍ୱାରା ନିଜ ଦଳର ସଂଖ୍ୟା ବଢ଼ାଇ ଦିଆଯିବ ଯାଙ୍କର ତ Publicity Department ଅଛି ତାକୁ ତ Press note କରି ବାହାର କଲେ ନାହିଁ । ଜଗନ୍ନାଥ ଦେଉଳରେ ପଣ୍ଡା ହାଣ୍ଡି ଠିକ୍ ସମୟରେ କରାଇଲ ନାହିଁ, ମାହାରୀ ଠିକ୍ ସମୟରେ ନାଚିଲ ନାହିଁ ଏ ସବୁ ଅଘଟଣ ଘଟିଲାବେଳେ ଅଧଘଣ୍ଟାକ ଭିତରେ Press note ବାହାରିଗଲ । ଏହି Press note ବାହାର ଲୋକଙ୍କୁ ବୁଝାଇ ଦେଉଛି ଏଇକଥାଟାକୁ Press note ରେ ବାହାର କରିଥିଲେ ଭଲ ହୋଇଥାନ୍ତା—କିଏ କିମିତି ଆମ ଭିତରୁ ପ୍ରତିବାଦ କରିଥାନ୍ତୁ ତାହା ତୁମେ କଲ ନାହିଁ । ତୁମେ କ'ଣ କରୁଛ ଆମକୁ କିଛି ଜଣାଯାଉ ନାହିଁ । ତୁମେ ତୁମ ଦଳର ସଂଖ୍ୟା ବୃଦ୍ଧି କରିବାରେ ଲଗିଛ, ତୁମ ଉପରେ ଆମର ବିଶ୍ୱାସ ନାହିଁ ଅତଏବ ତମର ଅଧିକାର ନାହିଁ ଆମଠୁଁ ପଇସାଟିର ମଞ୍ଜୁରି ପାଇଁ । ତା ପରେ ବହୁ ସଂଖ୍ୟାରେ ତୁମେ ଯେତେ ଦିନ ଥିବ ଯାହା ନେବାର କଥା ତୁମେ ନେଇଥିବ ମାତ୍ର ଆମ୍ଭେ କୌଣସି ଖର୍ଚ୍ଚର ମଞ୍ଜୁରି ଦେବୁ ନାହିଁ । ସେ ଦିନ mining prospective licence ନେଇ କ'ଣ ଗୋଟିଏ ପ୍ରଶ୍ନ ପଚରା ଯାଇଥିଲ ଏ ସଭା ଗୃହରେ ମୁଖ୍ୟମନ୍ତ୍ରୀ କହିଲେ ଅମୁକ ଅମକ India ଅର୍ଥାତ୍ ମହାଭାରତୀୟମାନଙ୍କୁ ଦିଆଯାଇଛି । ମୁଁ ପଚାରେ ଆମେ କେତେବର୍ଷ ଏହିପରି ମହାଭାରତୀୟ ଭାବ ଦେଖାଉଥିବା—ଅବଶ୍ୟ ସେହି ମହାଭାରତୀୟ ଭାବରୁ ମନ୍ତ୍ରୀମାନେ ବିଚ୍ୟୁତ ହେବା ଆମେ ଚାହୁଁ ନାହିଁ । ମୁଁ କହେ ନବକୃଷ୍ଣ ଚୌଧୁରୀ ଆଗେ ଯେପରି ଝୁଲମୁଣୀ ଧରି ଏହି ମହାଭାରତୀୟ ଭାବ ଶିକ୍ଷା ଦେଉଥିଲେ ଯେପରି ବର୍ତ୍ତମାନ ଗୋପବନ୍ଧୁ ଚୌଧୁରୀ ଏବଂ ବିନୋବାବାଭେ କରୁଛନ୍ତି କିମ୍ବା missionary ମାନେ କରୁଛନ୍ତି । ସେତେବେଳେ ସେ ଯେ ଏହି କଥା କରୁଥିଲେ ସେଟା ସ୍ୱତନ୍ତ୍ର କଥା କିନ୍ତୁ ଆଜି ଏହି ଆସନରେ ବସି କ'ଣ ସେଇଆ କରିବା ବିଧେୟ । ଏଇଟା ପରା ଗୋଟିଏ ଅର୍ଥନୀତିର ଧାରା—ଏହାଦ୍ୱାରା ଦେଶକୁ ଧରିବାକୁ ହେବ, ଅନ୍ୟ ଭାବରେ ପରା ଦେଶକୁ ଗଢ଼ିବାକୁ ହେବ,—କହୁଛନ୍ତି, ସରକାର ଖଦୀ କରୁଛନ୍ତି—ମୁଁ ତ କହିବି ସରକାର ଖଦୀ କ'ଣ କରିବେ ? ଏଇଟା ଗୋପବନ୍ଧୁ ଚଉଧୁରୀଙ୍କୁ ଛାଡ଼ିଦିଅ, ଅନ୍ୟ କୌଣସି ବ୍ୟକ୍ତି ବିଶେଷଙ୍କୁ ଛାଡ଼ିଦିଅ, ସିଏ କରିବେ—

Shri NABAKRUSHNA CHAUDHURI (Chief Minister) : ସରକାର କାହିଁକି ଖଦୀ କରୁଛନ୍ତି, ଯେପରିକି ସରକାର ଖଦୀ କଲେ ପାପ ହୋଇଯିବ । ସାକ୍ଷୀଗୋପାଳର ମାନ୍ୟବର ସଭ୍ୟ, ଏ ଯେଉଁ ନୂତନ ତଥ୍ୟଟି କହିବାକୁ ଯାଉଥିଲେ, ସେ ତଥ୍ୟଟାକୁ ଟିକିଏ ବ୍ୟାଖ୍ୟା କରିଦେଲେ ଏ ଗୃହରେ ସମସ୍ତେ ଶୁଣିବାକୁ ପାଆନ୍ତେ ।

Shri NILAKANTHA DAS : ସେ ତଥ୍ୟଟାକୁ Education ବେଳେ ବ୍ୟାଖ୍ୟା କରିବି; ବର୍ତ୍ତମାନ କରୁନାହିଁ । ମୁଁ ଆଦର୍ଶକୁ ବିରୋଧ କରୁନାହିଁ । କିନ୍ତୁ ମୋର କହିବାର କଥା ଆଦର୍ଶ ଏବଂ ବାସ୍ତବ ଭିତରେ ବହୁତ ପାର୍ଥକ୍ୟ ଅଛି । ସେ ଦିନ ଯେମିତି ଗୋଟିଏ ବିଲ୍‌ର ଶେଷଦଫାରେ କୁହାଗଲା ସରକାର ଯେତେବେଳେ ଅସୁବିଧାରେ ପଡ଼ିବେ, ସେତେବେଳେ ସେ ବିଲ୍‌ର ଉଦ୍ଦେଶ୍ୟକୁ ଯେ କୌଣସି ପ୍ରକାରେ କାର୍ଯ୍ୟକାରୀ କରିବେ । କୌଣସି ଆଇନ ଅଦାଲତ ସେଥିରେ ହସ୍ତକ୍ଷେପ କରି ପାରିବେ ନାହିଁ, ଯେପରିକି ଆଇନ ଅଦାଲତ ହାତକୁ ଏହାଦ୍ୱାରା କାବୁ କରା ଯାଉଛି । ଏପରି କାହିଁକି କରୁଛ ପଚାରିବାରୁ କହିଲେ ଆମେ ମହାଭାରତୀୟ ଭାବରେ ଅନୁପ୍ରାଣିତ ହୋଇ ଏହା କରୁଛୁଁ । କହିଲେ, ବମ୍ବେରେ ଏମିତି ହୋଇଛି, ମଧ୍ୟପ୍ରଦେଶରେ ଏପରି ହୋଇଛି, ଉତ୍ତର ପ୍ରଦେଶରେ ଏମିତି ହୋଇଛି, ତେଣୁ ଆମେ ଅନୁକରଣ କରୁଛୁଁ । ଏଟା ମହାଭାରତୀୟ ଭାବ କି ଅନୁକରଣ, କି ହନୁ-କରଣ, ମୁଁ ଏଟା ବୁଝି ପାରୁନାହିଁ ।

Mr. SPEAKER : ମାନ୍ୟବର ସଭ୍ୟଙ୍କ ଭାଷାରେ ସେଟା Henery VIII clause.

Shri NILAKANTHA DAS : ହଁ Henery VIII clause । ଏହି ମହାଭାରତୀୟ ଭାବ ବଙ୍ଗଳା, ବିହାର, ମଧ୍ୟପ୍ରଦେଶରେ କିପରି ପ୍ରକାଶ ପାଉଛି ଦେଖିବା ଦରକାର । ମାନ୍ଦ୍ରାଜ କଥା ଛାଡ଼, ଆନ୍ଧ୍ର ପ୍ରଦେଶ ହେଲେ ଯାହା ହେବ । ଏହା ମହାଭାରତୀୟ ଭାବଟା ୟାଙ୍କରତ ବହୁମୁଖୀ ହୋଇ ପଡ଼ିଲାଣି । ମୁଁ କହେ ଏ ଯେ ବହୁମୁଖୀ ମହାଭାରତୀୟ ଭାବ ଦେଖାଉଛନ୍ତି, ଏହା ୟାଙ୍କର ଏକ ଭୟଙ୍କର ଆଭ୍ୟନ୍ତରିଣ ଦୁର୍ବଳତା । ଏହା ଗୋଟିଏ ମୁଖା ଯେପରି ଗୋଟିଏ କୋଷ୍ଠ ରୋଗାକ୍ରାନ୍ତ ବର ବାହ୍ୟ ଆବରଣରେ ଆବୃତ ହୋଇ କନ୍ୟାକୁ ଲୁଚାଏ, ଏଇଟା ସେହିପରି ଗୋଟିଏ ଆବରଣ ଗୋଟିଏ ମୁଖା । କାଲି Tribal ମନ୍ତ୍ରୀ ନା ଆଦିବାସୀ ମନ୍ତ୍ରୀ ତାଙ୍କୁ ଯାହା କହନ୍ତୁ, ଅବଶ୍ୟ ସେ ଯେଉଁ କଥାଟା କହିଲେ ମୁଁ ସେଟା ବୁଝିପାରିଲି ନାହିଁ । କାଲି ଗୋଟିଏ ପ୍ରଶ୍ନ ଥିଲା Backward class, Scheduled Tribes ଏବଂ Scheduled castes ଙ୍କ ପାଇଁ କ'ଣ ହେଉଛି ? ମୁଁ ପଚାରିଲି Backward class ଟା ଏହା ଭିତରେ ଆସୁ ନାହିଁ କି ? ସେ କହିଲେ, constitution ଦେଖନ୍ତୁ । ମୁଁ ବିଚାରିଥିଲି ଆଦିବାସୀ ମନ୍ତ୍ରୀ କହିବେ ଓଡ଼ିଶାଟା ଯାକ ସବୁ Backward । ଅବଶ୍ୟ ମୁଖ୍ୟମନ୍ତ୍ରୀ ବା ଆଦିବାସୀ ମନ୍ତ୍ରୀ ସେଥିରୁ ବାଦ ହୋଇଥିଲେ ଖୁସି ହୋଇଥାନ୍ତି । ଆମେ ସମସ୍ତେ ହେଉଛୁଁ Backward ।

ମହାଭାରତୀୟ ନୀତିରେ ମହାଭାରତୀୟ ମନୋଭାବରେ ସମସ୍ତେ ଆମକୁ ଉପରକୁ ଉଠାଇବା ଦରକାର । ତାହାହେଲେ ସମଗ୍ର ଭାରତର ଉନ୍ନତିହେବ । ଗୋଟିଏ ଗୋଡ଼ ଗୋଦର ହେଲେ ସେଟା ସାରା ଶରୀର ଉପରେ ବୋଝ ହୋଇ ରହେ, ସାରା ଶରୀରର ପ୍ରତିବନ୍ଧକ ହୁଏ । ତା'ପରେ ଏ ଯେଉଁ ମହାଭାରତୀୟ ନୀତିରେ ଆଇ, ଏ. ଏସ୍. ( I. A. S. Officer)ଙ୍କୁ ଅଣାଯାଉଛି ସେ ସଂପର୍କରେ ପ୍ରଶ୍ନ ହେଲାରୁ ମନ୍ତ୍ରୀ କହିଲେ, "ହଁ ନ ମିଳିବାରୁ ଆମେ ବାହାରୁ ଆଣିଛୁଁ" । ଆମ ଓଡ଼ିଶାର ଯୋଗ୍ୟଲୋକ ନାହାନ୍ତି, ମିଳିବେ କିପରି । ତେଣୁ ବାହାରୁ ଆଣୁଛନ୍ତି । କିନ୍ତୁ ମୁଁ ପଚାରେ କେହି ମନ୍ତ୍ରୀ କେବେ ଦେଖିବାକୁ ଚେଷ୍ଟା କରିଛନ୍ତି କି, ଏହି ଯେଉଁ I. A. S. Officer ଙ୍କୁ ଅଣାଯାଉଛି ସେମାନେ ଓଡ଼ିଆ ଭାଷାରେ କିପରି ଶ୍ରୀ ଅକ୍ଷର ବିବର୍ଜିତ । ସେମାନେ ଓଡ଼ିଆରେ କଥା କହିଲା ବେଳେ କହନ୍ତି, "ଆପଣମାନେ କହିଲା", ଯେଉଁମାନେ ପିଲାଦିନୁ ଓଡ଼ିଆ ଶିଖି ନାହାନ୍ତି, ସେମାନେ ଚାକିରୀ କରି ସାରିଲା ପରେ ସରକାରୀ ଅଫିସରେ ଓଡ଼ିଆରେ ପରୀକ୍ଷା ଦେଇ ଓଡ଼ିଆ ଶିଖିବେ, Departmental ପରୀକ୍ଷା ଦେଇ ଓଡ଼ିଆ ଶିଖିବେ, ଆଉ ସେଇଥିରୁ ଯେଉଁ ଓଡ଼ିଆ ଶିଖିବେ ତାଙ୍କୁ ମାଲିମକଦମାରେ ଲଗାଇବେ, ସାକ୍ଷୀଙ୍କ ଜେରା ଜମାନବନ୍ଦୀ ବୁଝିବାରେ ଲଗାଇବେ । ମୁ ତ କହିବି, ଏଟା ବିଲକୁଲ ଅସମ୍ଭବ । ଏମାନେ ଓଡ଼ିଆରେ ଖଡ଼ି ଧରି ନାହାନ୍ତି, ଏମାନେ ଗାଁଗହଳରେ ଗ୍ରାମପଞ୍ଚାୟତ କରିବେ କ'ଣ, କୃଷି କରିବେ କ'ଣ, ଦୁଃଖ ଗୁହାରି ଶୁଣିବେ କ'ଣ, ଗାଁ ଗଣ୍ଡାର ନିମନ୍ତ୍ରଣ ଖାଇବେ କ'ଣ, ଗାଁ ଗଣ୍ଡାର ଲୋକଙ୍କ ପିଣ୍ଡାରେ ବସି ସେମାନଙ୍କର ଦୁଃଖ ଦୁର୍ଦ୍ଦଶା ବୁଝିବେ କଅଣ ? କାଲି ଗୋଟାଏ କ'ଣ ପଢ଼ିଥିଲା ମନ୍ତ୍ରୀ ଯାଇ ଜିଲା ମାଜିଷ୍ଟ୍ରେଟଙ୍କ ଘରେ ନିମନ୍ତ୍ରଣ ଖାଇଲେ ମୁ ତ କହିବି ବାହାଦୁରିଟା କ'ଣ କଲେ । ସେ ଯଦି ଗାଁ ଲୋକଙ୍କ ଘରେ ନିମନ୍ତ୍ରଣ ଖାଇଥାନ୍ତେ, ତାଙ୍କ ଘରେ ସାଗଭାତ ଖାଇ ଥାଆନ୍ତେ, ଗାଁ ଲୋକଙ୍କ ପିଣ୍ଡାରେ ବସି ତାଙ୍କ ସୁଖ ଦୁଃଖ ହାରି ଗୁହାରି ଶୁଣି ଥାଆନ୍ତେ ତା'ହେଲେ ସିନା ବାହାଦୁରି ହୋଇଥାନ୍ତା । ଏମାନଙ୍କ ମୁଣ୍ଡରେ ତ କିଛି ନାହିଁ, ଏମାନେ Magistrate ଙ୍କ ଘରେ ଖାଇବେ ନାହିଁ ଆଉ କଣ କରିବେ । ହାକିମ ହୁକୁମାଙ୍କ କଥାରେ ହଁ ନ ଭରିଲେ ୟାଙ୍କର ଚାରା କାହିଁ ? ତେଣୁ ସେମାନଙ୍କୁ ରକ୍ଷା ନ କରି ଆଉ କାହାକୁ ରକ୍ଷା କରିବେ । ଇଂରେଜମାନେ ଯେତେବେଳେ ଏ ଦେଶରେଥିଲେ ସେତେବେଳେ ଏହି ଯେଉଁ ଅମଲାତନ୍ତ୍ର ତାଙ୍କ ଉପରେ ଗୋଟିଏ ସାମ୍ରାଜ୍ୟ ସେବୀ ଶାସନ ନ୍ୟସ୍ତ ଥିଲା । ସେମାନଙ୍କର ଯେତେହେଲେ ଦେଶ ପ୍ରୀତି ଆସିବ କେଉଁଠୁ । ମନ୍ତ୍ରୀମାନେ ହେଲେ ନୂଆ, ଏମାନେତ କିଛି ଜାଣନ୍ତି ନାହିଁ, ଏମାନେତ ନିଜେ ଚରଖା କରୁଛନ୍ତି, ତେଣୁ ଅମଲାମାନଙ୍କ ଉପରେ ଅଂକୁଶ ଆଣିବେ କେଉଁଠୁ । ଆଜ୍ଞା ଦେଖନ୍ତୁ, ବାଛୁରୀ ଦିନରୁ ଯିଏ ମଣ ହୋଇ ଆସୁଛି ଗୋଟିଏ ପ୍ରକାର । ସେ 40 ହାତ ଦୂରରୁ ଶଗଡ଼କୁ ଦେଖିଲେ ଦୌଡ଼ିଯାଇ କାନ୍ଧ ଲଗାଇ ଦିଏ । ସେହିପରି ଯେଉଁମାନେ ଡେ଼ପଟି ହୋଇକରି ଇଂରେଜ ଶାସନ ଅମଳରୁ ମଣ ହୋଇ ଆସିଲେ ତାଙ୍କର ସ୍ୱାଧୀନ ଚିନ୍ତା ଆସିବ କେଉଁଠୁ । ଦେଶ ଶାସନରେ ନୂଆ ଜିନିଷ କିପରି ଫିଟାଇବେ । ତାଙ୍କର ସେ

ଶିକ୍ଷା ନାହିଁ । ସେ ଗୋଟାଏ ଗତରେ ପଡ଼ିଯାଇଛନ୍ତି ଏବଂ ସେହି ଗତରେ ମନ୍ତ୍ରୀମାନଙ୍କୁ ପକାଇ ଘୋଷାରି ପାରିଲେ ତାଙ୍କର କର୍ତ୍ତବ୍ୟ ହେଲାନ୍ତି ବୋଲି ଭାବୁଛନ୍ତି । ତାଙ୍କୁ ଶାସନ କରିବାପାଇଁ ମୁ ଟିକିଏ ନମ୍ର ଭାଷାରେ କହିବି ତାଙ୍କୁ ପାଳନ କରିବାପାଇଁ ମନ୍ତ୍ରୀମାନଙ୍କ ଶିକ୍ଷା ଅଛି କି ? ତାଙ୍କର ଶିକ୍ଷା ଥାଇପାରେ , ନୂଆହୋଇ ଆସିଛନ୍ତି, ରାଜନୀତି କରୁଛନ୍ତି ତାଙ୍କର ଶିକ୍ଷା ନାହିଁ ବୋଲି ମୁ କହିବି ନାହିଁ, କିନ୍ତୁ ସେମାନେ ପରିସ୍ଥିତିକୁ ଗ୍ରହିଁ ଏପରି କିଛି କରି ପାରିଛନ୍ତି କି ? ଖାଲି କୁହାଯାଉଛି ଆମର Welfare State ହେବ । ଏଇଟା ଆମର ଲକ୍ଷ୍ୟ । କିନ୍ତୁ ସେଥିପାଇଁ କିଏ କାମ କରୁଛି । ଯେମିତି କହିଲେ ମହାଭାରତୀୟ Welfare State, ଏ ଗୁଡ଼ିକ ଆଦର୍ଶ । ଆମକୁ ରାଜନୀତି, ଅର୍ଥନୀତି ଏସବୁ ଧରିକରି ବିଗ୍ଭର କରିବାକୁ ହେବ । ଆଦର୍ଶ ଯାହା ତାହା ଆଦର୍ଶ, ବାସ୍ତବ ନୁହେଁ । ବାସ୍ତବ ବୋଲି ଯେଉଁମାନେ କହିବେ ସେମାନେ ବାହାରକୁ ଗ୍ଭଲିଯାଇ ପୁଣି ଆଦର୍ଶ ଦେଖିକରି ସେଇଟାକୁ ଆଣିବାପାଇଁ ଚେଷ୍ଟା କରିବେ । କିନ୍ତୁ ଆଦର୍ଶ ବାସ୍ତବ ହେବ ନାହିଁ । ଯେଉଁଦିନ ଆଦର୍ଶ ବାସ୍ତବ ହେବ, ସେ ଦିନ ପୃଥିବୀର ପ୍ରଳୟ ହେବ କି ପୃଥିବୀଟା ସ୍ୱର୍ଗ ହେବ ସେଇଟା ମୁ ବୁଝି ପାରୁନାହିଁ । ଆଦର୍ଶ ଓ ବାସ୍ତବ ଭିତରେ ଏହି ତଫାତ୍ ବରାବର ରହିଛି । ତା'ପରେ ଅନେକ ସମୟରେ ମହାଭାରତୀୟ ଭାବ କଥା କୁହାଯାଉଛି । ସରକାର ଆମ ଦେଶରେ ଖଜଣା ବସାଇବା ପାଇଁ ଚେଷ୍ଟା କଲେ । ଗୋଟିଏ ଅଞ୍ଚଳ ଶାସନ ବିଲ୍ ଆସୁଛି, ମୁଁ ଭାବିଥିଲି ଯେପରି Public Health ବିଲ, Education ବିଲ୍, ଏ ସବୁ ଆସିଲା ବାହାରର ଲୋକେ ଏବଂ ଅନ୍ୟାନ୍ୟ ସମସ୍ତେ ବସି ପ୍ରଥମେ ସେ ବିଷୟରେ ବିଗ୍ଭର କରିଥିଲେ । ଏଥିରେ ମଧ୍ୟ ସେହିପରି ହେବ । ମୁ ଶୁଣୁଛି ଗୋଟିଏ education tax ବସିବ । ମାନ୍ୟବର ଅର୍ଥମନ୍ତ୍ରୀ ଏ ବିଷୟରେ କହିସାରିଛନ୍ତି । ତା ବାଦ ଖାଲି ( tax ) ବସାଇବା ପାଇଁ ଗ୍ରାମ୍ୟଶାସନ ହେଉଛି । ଆଇନରେ ଅଛି ଲୋକଙ୍କର ଅବସ୍ଥା ଦେଖି tax ବସିବ । କିନ୍ତୁ ଆପଣ ଗ୍ଭଲନ୍ତୁ । ଆପଣ ତ ଯାଇପାରିବେ ନାହିଁ, ଆପଣ ଲୋକ ପଠାନ୍ତୁ ତାହାହେଲେ ସବୁ ଜାଣିପାରିବେ । ସରକାର ତ କେବେ enquiry committee ବସାଇବା ପାଇଁ ସାହସ କରୁନାହାନ୍ତି । ମୁଁ ନିଜେ ଦେଖିଛି ରୟତି ଜମି ଯେ ଭାଗ ଦିଏ ଏକରରେ ତାହାର ଆଠଅଣା ଏବଂ ଯିଏ ଭାଗ ନିଏ ତାହାର ଟଙ୍କାଏ । ଅବଶ୍ୟ ଯେଉଁ ଆଇନରେ ଜମିରେ Cess ବସୁଛି ସେ ଆଇନଟା ବଦଳି ନାହିଁ , କିନ୍ତୁ ଲକ୍ଷ୍ୟ ସେଇଟା । ବର୍ତ୍ତମାନ ଦେଖନ୍ତୁ ଯାହା ଖଜଣା ବସୁଛି ସବୁ ଆମର ଗ୍ଭଷୀର ଉପରେ । Industry ବୋଇଲେ ଆମର କିଛି ନାହିଁ, Mines ବୋଇଲେ ତାହା ସବୁ ମହାଭାରତୀୟ ଭାବରେ ଦିଆଯାଉଛି । Village Industries ତାହାର ଯେଉଁଠି ଯାହା ଅଛି, ତାହାର ଅବସ୍ଥା ବିଷୟରେ ମୁଁ ମାତୃଭୂମି ସାପ୍ତାହିକ ପତ୍ରିକାରେ ଯାହା ବାହାରିଛି ସେତିକି ଖାଲି କହି ଦେଉଛି । "ଟସର ଶିଳ୍ପରେ ଓଡ଼ିଶା ସରକାରଙ୍କ ନୀତି ଝିଣ୍ଟିକା ମାରି ବଣିପୋଶା ହେଉଛନ୍ତି ।"

Shri SURENDRANATH PATNAIK: ମାନ୍ୟବର ସଭ୍ୟ କ'ଣ ଖବର କାଗଜ ଏଠାରେ ପଢ଼ି ପାରିବେ ?

The SPEAKER: ମାନ୍ୟବର ସଭ୍ୟ ଖବର କାଗଜରେ ଯାହା ବାହାରିଛି ତାହା କହି ପାରନ୍ତି । କିନ୍ତୁ ଖବର କାଗଜ ପଢ଼ନ୍ତୁ ନାହିଁ ।

Shri NILAKANTHA DAS : ଆଜ୍ଞା ମୁଁ ଖବର କାଗଜ ପଢୁନାହିଁ । ଖାଲି ଯାହା ବାହାରିଛି ଟିକିଏ କହି ଦେଉଛି । ଓଡ଼ିଶାର ଢ଼େଙ୍କାନାଳ, ମୟୂରଭଂଜ ପ୍ରଭୃତି ଜଙ୍ଗଲମାନଙ୍କରେ ଜମରେ ଲୋକମାନେ ଟସର ସଂଗ୍ରହ କରନ୍ତି । ତାକୁ ସେମାନେ ମହଣ 20 ଟଙ୍କା ଦରରେ ବିକୁଥିଲେ । ବର୍ତ୍ତମାନ ଅନୁଗୁଳ Central Co-operative Societyକୁ....

The SPEAKER: ଆପଣ ଖବର କାଗଜ ପଢ଼ନ୍ତୁ ନାହିଁ ।

Shri NILAKANTHA DAS : ହଉ ମୁଁ କାଗଜ ରଖି ଦେଉଛି । ମଜୁରି ଦେଇ ଠିକା କରାଇନେଇ 12 ଟଙ୍କା ଲେଖାଁଏ ଲୋକଙ୍କୁ ଦେବାପାଇଁ ବାଧ୍ୟ କରାହେଉଛି । କେତେଦିନ ଏପରି ଭାବରେ ଚ଼ଲିବ । ଟସର ଚ଼ାଷ ଲୋପ ପାଇଯିବ । ଏ କଥା ଦେଖିକରି ମନ୍ତ୍ରୀମାନଙ୍କର ହଠାତ୍ ସେଠାକୁ ଯିବାର କଥା । କିନ୍ତୁ ସେ ସେକଥା ଚିନ୍ତା କରୁଛନ୍ତି କି ନାଁ ମୁଁ କହିପାରିବି ନାହିଁ । Industry ବୋଇଲେ ତ ଆମର କିଛି ନାହିଁ । ଆଉ ଲୁଗା ଯାହା ହେଉଛି । ସୂତାକୁ ଆଣି ଲୁଗାବୁଣା ତାହା ପ୍ରାୟ ବନ୍ଦହେବାକୁ ବସିଲାଣି । ଆମ ଗାଁରେ 100 ଖଣ୍ଡ ତନ୍ତ ଥିଲା, କିନ୍ତୁ ସେ ଲୋକମାନେ ଆଜି ଭିକ ମାଗୁଛନ୍ତି କିମ୍ବା ଚ଼ାଷ କରୁଛନ୍ତି । ତା'ପରେ ଆମର ଭାରତରେ ଯେଉଁ ଖାଦ୍ୟାଭାବ ହେଲା ଆମର 3 ଲକ୍ଷ ଟନ୍ ଚ଼ାଉଳ ବିକ୍ରି ହେଉଛି । ଏଇଟା ବିଦେଶକୁ ଯାଉଛି । ତାହାଛଡ଼ା ଦେଶ ଭିତରେ ମଧ୍ୟ ବିକ୍ରି ହେଉଛି । ଏ ସମସ୍ତ ଦରରେ ଯଦି ମହଣକୁ ଅନ୍ତତଃ ଆମର 5 ଟଙ୍କା ଲେଖାଁଏ କ୍ଷତି ହୁଏ ତାହାହେଲେ ଆମର ବହୁତ କ୍ଷତି ହେଉଛି । ଆମେ ଯଦି ଏଥିରେ Subsidy ନେଉ ତାହାହେଲେ ଲୋକଙ୍କ ଉପରେ ଟିକସ ବସାଇ ପାରନ୍ତୁ । କିନ୍ତୁ ବର୍ତ୍ତମାନ ଲୋକଙ୍କ ପାଖରେ କିଛିନାହିଁ । ଆମେ ତ ମହାଭାରତୀୟ ଭାବରେ ରହିଲେ, ଲୋକେ କରିବେ କ'ଣ । ଆପଣ ଓଡ଼ିଶାର ଇତିହାସ ଦେଖନ୍ତୁ, R. D. Banerjee ଙ୍କର ଇତିହାସ ଦେଖନ୍ତୁ, କିନ୍ତୁ ତା'ର ମୂଳଟା "Statistical Accounts of Bengal" ଦେଖନ୍ତୁ । ସେଥିରେ 1818 ରେ ଯେଉଁ Famine Enquiry Committee ବସିଥିଲା ତାହାର ଗୋଟିଏ ରିପୋର୍ଟ ଉଦ୍ଧାର କରାଯାଇଛି । ସେଥିରେ ଅଛି ଇଂରେଜମାନେ ଏଠାକୁ ଆସିଲାପରେ 4/5 ବର୍ଷ ଧରି ବର୍ଷକୁ ବର୍ଷ ଜମି ଉପରେ ଖଜଣା ବଢ଼ାଇଲେ, ଲୋକେ ଦେଇପାରିଲେ ନାହିଁ, ଜଙ୍ଗଲକୁ ପଳାଇଲେ । ସେତେବେଳେ ଯେଉଁମାନେ ପେଶକାର ହୋଇ ଆସୁଥିଲେ ସେମାନେ ଜମିଦାରୀ ସବୁ କଲିକତାରେ ନିଲାମ କରିବାପାଇଁ କହିଥିଲେ । କଲିକତାରେ

ସବୁ ଜମିଦାରୀଗୁଡ଼ିକ ନିଲାମ ହୋଇଯାଇଥିଲା । ଆମେ ଜମିଦାରୀ ଉଠାଉଛୁ ସତ, କିନ୍ତୁ ଯାହା କରୁଛୁ ସେଥିରେ ରୟତମାନେ ଜମି ଛାଡ଼ି ପଳାଇବେ । ସେମାନେ ଏତେ ଖଜଣା ଦେଇପାରିବେ ନାହିଁ । ଏ କ'ଣ ଦେଶକୁ ଶ୍ମଶାନ କରିବାର ଉଦ୍ୟମ ଚାଲିଛି । ଲୋକେ ଦେଇ ପାରୁଛନ୍ତି କି ନାଁ ଏସବୁ କ'ଣ କିଛି ଦେଖା ହେବନାହିଁ ? ଏହିଭଳି ମହାଭାରତୀୟ ଭାବରେ ଆମେ ଯଦି ଚାଲୁ ତାହାହେଲେ ଦେଶର ଭବିଷ୍ୟତ ଅନ୍ଧକାରମୟ ହୋଇଯିବ । ଆମକୁ ଦେଖିବାକୁ ହେବ ଓଡ଼ିଶାର ଲୋକେ ଯେଉଁମାନେ ଅଛନ୍ତି, ହାକିମମାନେ ତାଙ୍କର ଚାକର ହେଉଛନ୍ତି କି ନାଁ ? ଅବଶ୍ୟ ଓଡ଼ିଶାର ଲୋକେ ବୋଇଲେ ମୁଁ ଯେଉଁମାନେ ଏଠାରେ ରହିଛନ୍ତି ସମସ୍ତଙ୍କୁ ମନେ କରୁଛି । ଇଂରାଜୀରେ ଯାହାକୁ କହନ୍ତି "Life interest" ଓଡ଼ିଶାରେ ଯାହାର Life interest ଅଛି ସେମାନଙ୍କୁ ମୁଁ ଓଡ଼ିଆ ବୋଲି କହିବି । ଆଉ ଗୋଟିଏ କଥା କହୁଛି ଯେ, ମୁଁ 72,000 ଟଙ୍କା move କରିଦେଲି । ସେଇଟା 92,000 ଟଙ୍କା ହେବାର କଥା, ତାହା ଭୁଲ ହୋଇଯାଇଛି । ଗଭର୍ଣ୍ଣର ଏବଂ ଏମାନଙ୍କୁ ମୁଁ discretionary grant ଜମା ଦେବାକୁ ଚାହେଁ ନାହିଁ । ଏମାନଙ୍କୁ ଦେବା ଉଚିତ ନୁହେଁ, କି ପ୍ରଥମରୁ 200 ଟଙ୍କା ଦେବା ଉଚିତ ନୁହେଁ । ଏ ଯେ ବଡ଼ ବଦାନ୍ୟତା କଲେ ବା କୃତି ଅର୍ଜନ କରୁଛନ୍ତି ଏହା ତାଙ୍କର କୌଣସି କାମରେ ଲାଗିବ ନାହିଁ । ମାଜିଷ୍ଟ୍ରେଟ୍‌ଙ୍କୁ ଦେଲ ବା Revenue Commissionerଙ୍କୁ ଦେଲ ସେଥିରେ ମୁଁ ଆପତ୍ତି କରୁନାହିଁ । ମୁଁ ପିଲାଦିନେ ଯାତ କରୁଥିଲି । ଯେଉଁସବୁ ରାଜା. ମନ୍ତ୍ରୀ ହେଉଥିଲେ ମୁଁ ତା ଭିତରେ ମନ୍ତ୍ରୀ ହୋଇ ଗୋଟିଏ ଶୁଆରିରେ ବସୁଥିଲି । ଦୋଳ ପୂର୍ଣ୍ଣିମା ଦିନ ଗାଁ ଭିତରେ ଯାତ୍ରା କରୁଥିଲୁ । ଶୁଆରି ଭିତରେ ଗୋଟିଏ ଫଗୁ ହାଣ୍ଡି ଦେଇଥାନ୍ତି । ମୋର ଜଣେ ଚାଟଶାଳୀ ସଙ୍ଗୀ ଫଗୁ ନେଇ ମୋ ମୁହଁରେ ବୋଳି ଦେଲେ, ମୁଁ ମଧ୍ୟ ସେହି ହାଣ୍ଡିରୁ ଗୁଡ଼ିଏ ଧରି ତାଙ୍କ ଦେହରେ ବୋଳିଦେଲି । ସମସ୍ତେ ତାଳି ମାରି ହସିଲେ । କିନ୍ତୁ ମୁଁ ଯେ discretionary grantରୁ ଦେଉଥିଲି ସେ କଥା ସେ ବୁଝିପାରିଲେ ନାହିଁ । ଏଇଭଳିଆ discretionary grant ନ ରଖନ୍ତୁ, ଏପରି ଅନୁକରଣ ନ କରନ୍ତୁ । ଅତଏବ ଏ ଦିଗରେ ଗୋଟିଏ ପଇସା ଦେବା ଉଚିତ ନୁହେଁ ।

(Interval for Lunch)

**4. 1952-53 ବଜେଟ୍ ବା ଆୟବ୍ୟୟ ପତ୍ର (Budget)—**

ପଣ୍ଡିତ ନୀଳକଣ୍ଠ 1952-53 ବଜେଟ୍ ବା ରାଜ୍ୟର ଆୟବ୍ୟୟ ପତ୍ର ଉପରେ ସାଧାରଣ ଆଲୋଚନା କରି ବିଭିନ୍ନ ପ୍ରଶାସନିକ ଓ ନୀତିଗତ ସମସ୍ୟା ଉପରେ ନିଜର ସୁଚିନ୍ତିତ ମତାମତ ଦେଇଛନ୍ତି । 1952 ମସିହା ଜୁନ୍ 12 ତାରିଖରେ ସେ କହିଛନ୍ତି, "………………ମୁଁ ବରାବର ଦେଖିଆସିଛି ଯେ, ଆମ୍ଭେ ଗୋଟିଏ ଗତାନୁଗତିକ ବାଟରେ ଚାଲିଛୁ ଓ ଏଥିରେ କୌଣସି ଗୋଟିଏ ନୂତନ ଦୃଷ୍ଟିଭଙ୍ଗୀ ନାହିଁ । ସ୍ୱାଧୀନତାର ପ୍ରତିଷ୍ଠିତ ମତବାଦ ଓ ପରିସ୍ଥିତି କିପରି ହେବ, ଏଥିରେ ତା'ର କୌଣସି ଚିହ୍ନ ବର୍ଣ୍ଣ

ପର୍ଯ୍ୟନ୍ତ ନାହିଁ । ଆମେ ଯାହା କହୁଥାଇ ଆମେରିକାରୁ ଟଙ୍କା ଆଣିକରି ଭାରତ ଏ ଦେଶକୁ ଗଢୁଛି । ..........କିନ୍ତୁ ଆମ ସରକାର ବୁଝିବା ଉଚିତ ଯେ, ଏହିପରି ଗୋଟିଏ ଭବୀ ପରାଧୀନତାର ଛାୟାତଳେ ଆମ୍ଭମାନଙ୍କୁ ଜୀବନ ଆରମ୍ଭ କରିବାକୁ ହେଉଛି । କେବଳ ଯେ ଅସ୍ତ୍ରଶସ୍ତ୍ରରେ ପୃଥିବୀରେ ଲୋକ ପରାଧୀନ ହୁଏ, ତାହା ନୁହେଁ, ଅର୍ଥ ବି ଗୋଟିଏ ବଡ଼ ଜିନିଷ, ଏଇଟା ସବୁବେଳେ ମନେରଖି ଅବଶ୍ୟ ଦରକାରହେଲେ ହୁଏତ ଆଣିବାକୁ ହେବ ।" ବଜେଟ ଉପରେ ବଶେଷତଃ ବିଦେଶୀ ଋଣ ଉପରେ ନୀଳକଣ୍ଠଙ୍କ ଏହି ମନ୍ତବ୍ୟର ସତ୍ୟତା ଏବେବି ବିଶେଷ ଅନୁଭୂତ ହେଉଛି । କେତେ ସ୍ପଷ୍ଟ ଭାବରେ ସେ ଆର୍ଥିକ ପରାଧୀନତା ତଥା ଋଣଭାରର କୁପ୍ରଭବ ସମ୍ପର୍କରେ ସରକାରଙ୍କୁ ସତର୍କ କରାଇଛନ୍ତି ।

ହୀରାକୁଦ ବନ୍ଧ ଉପରେ ବରୋଧୀ ଦଳର ନେତା ଶ୍ରୀ ଶ୍ରଦ୍ଧାକର ସୂପକାର ବାରମ୍ବାର ପ୍ରଶ୍ନ କରୁଥିବାରୁ ସେ ଏହି ସମସ୍ୟା ଉପରେ ବିସ୍ତୃତ ଆଲୋଚନା କରିବା ପାଇଁ ଗୃହରେ ସ୍ୱତନ୍ତ୍ର ଦୁଇଟି ଦିନ ରଖିବାକୁ ପରାମର୍ଶ ଦେଇଛନ୍ତି । ଟିକସ ବ୍ୟବସ୍ଥାକୁ କଠୋର ଭବରେ ସମାଲୋଚନା କରି ସେ ଭୂରାଜସ୍ୱ ପରି ପୁରୁଣାକାଳିଆ ଜିନିଷକୁ ଉଠାଇବାକୁ କହିଛନ୍ତି । ଜମି ଉପରେ ଏହାର ଖରାପ ପ୍ରଭବ ପଡୁଛି ବୋଲି ସେ ଦେଖାଇଛନ୍ତି । ବିକ୍ରୟ ଟିକସ (Sales Tax) କୁ ସେ କ୍ରୟ ଟିକସ ବୋଲି କହିଛନ୍ତି ଏବଂ ସରକାରୀ ଆୟ ବଢାଇବାକୁ ଅର୍ଥମନ୍ତ୍ରୀ ବଜେଟରେ ନୂତନ ଦୃଷ୍ଟିଭଙ୍ଗୀ ବା ଚିନ୍ତାଧାରା ଦେଇନାହାନ୍ତି ବୋଲି ସେ ମତ ଦେଇଛନ୍ତି । କୋଟି କୋଟି ଟଙ୍କା କରଜ କରି ତାକୁ ସୁଝିବେ କିପରି, ସେଥିପାଇଁ କୌଣସି ସୂଚନା ନ ଥାଇ ନୂଆ ଯୋଜନାମାନ କେବଳ ପ୍ରଣୟନ କରିବାରେ ସରକାର ଲାଗିଛନ୍ତି ବୋଲି ସେ କଟୁ ମନ୍ତବ୍ୟ ଦେଇଛନ୍ତି, "ଯୁଆଡେ ଦେଖିଲାବେଳକୁ ଖାଲି Scheme ହେଉଛି ଓ Special Officer ନିଯୁକ୍ତି ଚାଲିଛି । ଅଧିକ ଖାଦ୍ୟ ଉତ୍ପାଦନ କରିବାକୁ ହେବ, ଗୋଟିଏ Food Commissioner ବସାଇ ଦିଅ । ବେଶୀ କାମ କରିବାକୁ ହବେ, ବେଶୀ ଦରମା ଦେଇଦିଅ । ଏହି ପ୍ରସଙ୍ଗରେ ସେ ପଞ୍ଚାୟତିରାଜର ନିଷ୍ଫଳତା, ଲୋକ ସଂପର୍କ ବଭାଗର ନିଷ୍କ୍ରିୟତା ଆଦି ସମ୍ପର୍କରେ ସ୍ପଷ୍ଟ ସୂଚନା ଦେଇଛନ୍ତି ।

ଏବେ ତ ସାରା ରାଜ୍ୟରେ ପୁଣି ସବୁ ସ୍ତରରେ ଓଡ଼ିଆ ଭାଷାରେ ପ୍ରଶାସନିକ କାର୍ଯ୍ୟ ଚାଲୁଥିଲେ ବି ବା ଚାଲୁ ଥିବାର ପ୍ରଚାର ହେଉଥିଲେ ହେଁ ଓଡ଼ିଆ ଟାଇପରାଇଟରର ଅବସ୍ଥା କିପରି ଶୋଚନୀୟ ଭୁକ୍ତଭୋଗୀ ଜାଣନ୍ତି । ସେତେବେଳେ ଗ୍ରାମ ପଞ୍ଚାୟତ ସ୍ତରରେ ଓଡ଼ିଆ ଟାଇପରାଇଟର ରଖାଯାଇ ସବୁ କାର୍ଯ୍ୟ ଓଡ଼ିଆରେ କରିବାର ଯୋଜନା ହୋଇଥିଲା । ସେ ସମ୍ପର୍କରେ ନିଜର ତିକ୍ତ ଅନୁଭୂତି ବର୍ଣ୍ଣନା କରି ନୀଳକଣ୍ଠ କହିଛନ୍ତି "ଓଡ଼ିଆ ଟାଇପରାଇଟର ବିଷୟରେ କହିଲେ ସମସ୍ତେ କାନରେ ହାତ ଦେବେ । ଏ ଓଡିଆ ଟାଇପରାଇଟର ଉଦ୍‌ଭାବନ କରିଥିଲେ ଆମର ପୁଣ୍ୟଶ୍ଳୋକ ଶଶିଭୂଷଣ ରଥଙ୍କ ସହୋଦର ଶ୍ରୀ ରଙ୍ଗନାଥ ମହାପାତ୍ର ।" ............ସରକାର ତାଙ୍କୁ କହିଲେ ତୁମେ ଓଡ଼ିଆ ଟାଇପରାଇଟର କର ଆମେ 175 ଟା ନେବା । ସେ ଚେକୋସ୍ଲୋଭାକିଆ

ଘଲେ ଏବଂ ନାନା ଅସୁବିଧା ଭୋଗକରି ଓଡ଼ିଆ ଟାଇପରାଇଟର ତିଆରି କରାଇଲେ । କିନ୍ତୁ ସରକାରଙ୍କର କ'ଣ ଅସୁବିଧା ହେଲା, ସେ ନେଲେ ନାହିଁ । ଯେଉଁଥିପାଇଁ ନ ନେଲେ, ମୁ ଏଠାରେ କହିବି ନାହିଁ । କାହିଁକି ନା ଏଠାରେ ସଦ୍‌ସ୍ୟୋଚିତ ଭଷାରେ ତାକୁ ପ୍ରକାଶ କରି ହେବନାହିଁ । ..................ଯଦି ମନ୍ତ୍ରୀ ମହାଶୟ ଅନୁସନ୍ଧାନ କରିବେ, ତେବେ ସେ ଏସବୁ ବିଷୟରେ ବିବରଣୀ ପାଇପାରିବେ । ମୁଁ ମଧ୍ୟ ସରକାର ହେଲେ ତାଙ୍କୁ ସାହାଯ୍ୟ କରିବି ।" ଏହିପରି ଅବସ୍ଥାରେ ଓଡ଼ିଆ ଟାଇପରାଇଟର ଅବସ୍ଥାରେ ଏପର୍ଯ୍ୟନ୍ତ ଆଶାନୁରୂପ ଉନ୍ନତି ହେଲା ନାହିଁ ।

ବ୍ୟୟବହୁଳତା ଓ ଅପବ୍ୟୟର ନାନା ଦୃଷ୍ଟାନ୍ତ ଦେଇ ସେ ସରକାରଙ୍କର କଠୋର ସମାଲୋଚନା କରିଛନ୍ତି । ଅତିଥିଭବନ, ଅନୁଗ୍ରହାମୂକ ଅନୁଦାନ Discretionary grants, ଗସ୍ତ ଖର୍ଚ୍ଚ, କୃଷି ପରୀକ୍ଷା ଆଦିରେ କିପରି ଅଯଥା ଅପବ୍ୟୟମାନ ହେଉଛି ସେ ଗୋଟି ଗୋଟି କରି କହିଛନ୍ତି । ତାର ଗୋଟିଏ ଉଦାହରଣ ଏଠାରେ ଦେବା ଦରକାର । "ଲୋକମାନଙ୍କର ମନେ ଥିବ ଦାଣ୍ଡମୁକୁନ୍ଦପୁର High Schoolର Prize Distribution Ceremony ରେ କୌଣସି ଜଣେ ମନ୍ତ୍ରୀ ପୁରୋଧା ହୋଇଥିଲେ । ତାଙ୍କ ଉପରେ ଉଡ଼ାଜାହାଜରୁ ଫୁଲମାଳ ପଡ଼ିଥିଲା, ମନ୍ତ୍ରୀ ମହାଶୟ Discretionary grant ଦେଇଥିଲେ ।" ଏଣେ ଗୋଟିଏ ଗୋଟିଏ ବିଭାଗକୁ ଅବହେଳା କରଯାଉଛି । ଯାହା ବ୍ୟୟ ବରାଦ ହେଉଛି ତାହା ନିତାନ୍ତ ସ୍ୱଳ୍ପ । ସେ କହିଛନ୍ତି, "ଗୋଟିଏ Endowment Department ତାକୁ 100 ଟଙ୍କା ଅନୁଦାନ ଦିଆଯାଉଛି । ଏହା ଗୋବରା ଚଢେଇକୁ ପାଚିଲା କଦଳୀ ଦେଖାଇଲା ପରି ।"

ଏହିପରି ନୀଳକଣ୍ଠ ପ୍ରଶାସନର ବିଭିନ୍ନ ସ୍ତରରେ ଥିବା ଦୋଷ ତ୍ରୁଟିକୁ ନିର୍ଭୟରେ ଦେଖାଇଛନ୍ତି ଏବଂ ପ୍ରତିକାରର ବାଟ ମଧ୍ୟ ବତାଇଛନ୍ତି । ତାଙ୍କର ଗଠନମୂଳକ ସମାଲୋଚନା ଖୁବ୍ ଉପାଦେୟ ଓ ଉଚ୍ଚକୋଟୀର ।

Shri NILAKANTHA DAS : ବାଚସ୍ପତି ମହାଶୟ, ଏ ଘଟଣାରେ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ଆବଦ୍ଧ ହୋଇ କହିବା କେଡ଼େ କଷ୍ଟ ତାହା ବୋଧହୁଏ ଆପଣ ଜାଣୁଥିବେ । ତଥାପି ମୁଁ କେତୋଟି ବିଷୟ ମାତ୍ର ସୂଚନାରେ କହି ଦେବି ବୋଲି ମନେ କରୁଛି । ଆମର ବର୍ତ୍ତମାନ ଏହି ଯେଉଁ Budget Speechଠାରୁ Budget Presentation ପର୍ଯ୍ୟନ୍ତ ମୁଁ ବରାବର ଦେଖିଆସୁଛି ଯେ ଆମେ ଗୋଟିଏ ଗତାନୁଗତିକ ବାଟରେ ଚାଲିଛୁ ଓ ଏଥିରେ କୌଣସି ଗୋଟିଏ ନୂତନ ଦୃଷ୍ଟିଭଙ୍ଗୀ ନାହିଁ । ସ୍ୱାଧୀନତାର ପ୍ରତିଷ୍ଠିତ ମତବାଦ ଓ ପରସ୍ଥିତି କିପରି ହେବ, ଏଥିରେ ତା'ର କୌଣସି ଚିହ୍ନ ବର୍ଣ୍ଣ ପର୍ଯ୍ୟନ୍ତ ନାହିଁ । ଆମେ ଯାହା କହୁଥାଇଁ Americaରୁ ଟଙ୍କା ଆଣିକରି ଭାରତ ଏ ଦେଶକୁ ଗଢୁଛି । ତା ଉତ୍ତାରୁ ଭାରତରୁ ଟଙ୍କା ଆଣି ଏବଂ କେତେ ଟଙ୍କା Americaରୁ ସାକ୍ଷାତ ଭାବରେ ଆଣି ଆମେ ଓଡ଼ିଶାକୁ ଗଢିବାକୁ ବସିଛୁ । ଅନ୍ୟମାନେ

ଏହାକୁ ଯେ ଭାବରେ ସମାଲୋଚନା କରୁଛନ୍ତି ମୁଁ ଅବଶ୍ୟ ଠିକ୍ ସେହି ଭାବରେ ସମାଲୋଚନା କରିବାକୁ ଯାଉନାହିଁ । କିନ୍ତୁ ଆମ ସରକାର ବୁଝିବା ଉଚିତ ଯେ, ଏହିପରି ଗୋଟିଏ ଭାବୀ ପରାଧୀନତାର ଛାୟାତଳେ ଆମ୍ଭମାନଙ୍କୁ ଜୀବନ ଆରମ୍ଭ କରିବାକୁ ହେଉଛି । କେବଳ ଯେ ଅସ୍ତ୍ର ଶସ୍ତ୍ରରେ ପୃଥିବୀରେ ଲୋକ ପରାଧୀନ ହୁଏ, ତା ନୁହେଁ , ଅର୍ଥ ବି ଗୋଟିଏ ବଡ଼ ଜିନିଷ, ଏଇଟା ସବୁବେଳେ ମନେ ରଖି ଅବଶ୍ୟ ଦରକାର ହେଲେ ହୁଏ ତ ଆଣିବାକୁ ହେବ । କିନ୍ତୁ ଏ କଥାଟା ଭୁଲି ଗଲେ ଚଳିବ ନାହି । ଏ ସଂପର୍କରେ ଏ Budgetରେ କିଛି ଗୋଟିଏ ଏମିତି ଛାୟା ଅନୁଭବ କଲଭଳି କିଛି ନାହିଁ । ଆମେ ଦେଖୁଛୁ,ଆମେ ଆଜି ଗୋଟିଏ ବାତ୍ୟାରେ ମାତିଛୁ ହୀରାକୁଦ, ଭୁବନେଶ୍ୱର । ଭୁବନେଶ୍ୱର ବିଷୟରେ କେତେ କଥା କୁହା ହୋଇଛି । କିନ୍ତୁ ହୀରାକୁଦ ବିଷୟରେ କିଛି କୁହା ହୋଇନାହିଁ । ଆମେ ହୀରାକୁଦର ବହୁ ଦୂରରେ ଅଛୁ । କିନ୍ତୁ ଏ ସଭାଗୃହରେ ମୋର ବନ୍ଧୁ ଶ୍ରୀ ଶ୍ରଦ୍ଧାକର ସୂପକାର ପ୍ରଭୃତି ବାରମ୍ବାର ସେ ପ୍ରଶ୍ନ ଉଠାଇବାରେ ଯାହା ମନେ ହେଉଛି, ସରକାର କେବଳ ଖାସ ହୀରାକୁଦ ପାଇଁ ଗୋଟିଏ ଦୁଇଟି ଦିନ ଆଲୋଚନା ପାଇଁ ଦେବା ଉଚିତ । ଏ ଯେଉଁ ହୀରାକୁଦ ହେଉଛି ସେଥିର ନଦୀ ଯୋଜନାରେ ଅନନ୍ତଶୟନମ୍ ଆୟଙ୍ଗାର କମିଟି କହିଛନ୍ତି 92 କୋଟିରୁ ବେଶୀ ଟଙ୍କା ହୀରାକୁଦ ପାଇଁ ଆମେ ନେବା । 100 କୋଟି ପର୍ଯ୍ୟନ୍ତ ନେଇ ପାରୁ ବୋଲି କେହି କେହି କହୁଛନ୍ତି । ଏଥିରେ ସାଢ଼େ ତିନ କୋଟି ଟଙ୍କା ସୁଧ ଦେବାକୁ ପ୍ରଥମରୁ ପଡ଼ିବ । ତା ବାଦ 20 ବର୍ଷ ଭିତରେ ବର୍ଷକୁ 5 କୋଟି କରି ଆମେ ଏ ଟଙ୍କା ଶୁଝିବୁ । ଆମେ ମୁଣ୍ଡ ବିକ୍ରି କରି ଯେ ଟଙ୍କା ଆଣୁଛୁ, ଏଇଟା ମନେ ରଖିବା ଉଚିତ । କମିଟି କହୁଛନ୍ତି ବିଦ୍ୟୁତ ବାହାରୁଛି, ବିଦ୍ୟୁତ ବାହାରୁଛି କି ବଦ୍ୟୁତ ବନ୍ଦ ହେଉଛି ମୁଁ ଜାଣିପାରୁ ନାହିଁ । ଆଲୋଚନା ହୋଇଥିଲେ ବୁଝିଥାନ୍ତି ।

ସେହି କମିଟି କହିଛନ୍ତି କେମିତି ଓଡ଼ିଶା ବିଦ୍ୟୁତ୍ ଖର୍ଚ୍ଚ କରିବ ଆମେ ଜାଣିପାରୁ ନାହୁଁ । ସେ ବିଷୟରେ ଓଡ଼ିଶା ସରକାରଙ୍କର କିଛି ଧାରଣା ଥିଲପରି ବୋଧ ହେଉନାହିଁ । ଏତେବଡ଼ ରାଜଧାନୀ ଆମେ 5/7 କୋଟି ଟଙ୍କା କରଜ କରି ଭୁବନେଶ୍ୱରରେ କରିଛୁ । ଏଥିରୁ ହେଲେ କିଛି ପାଉଛୁ, ସେଥିରୁ କିଛି ପାଇବୁ ନାହିଁ । ତା'ପରେ ଆମର ଯେଉଁ Taxation System ଅଛି, ଏତ ଗୋଟାଏ ଗତାନୁଗତିକ ଭାବରେ ଗ୍ରଲିଛି । ଗୋଟିଏ Sales Tax ଯାହାକି ଜିଜିୟାଠାରୁ ମଧ୍ୟ ହୀନତର, ସେ tax ବସୁଛି । ଏଇଟା Sales Tax ନା Purchase Tax ? ଏ ସଂପର୍କରେ ଯଦି ମୁଁ ସୁବିଧା ପାଏ, Appropriation Billର ସଂଶୋଧନ ପ୍ରସ୍ତାବରେ କହିବି । Purchase ଶବ୍ଦଟା କେବଳ ଭାରତ ସଂବିଧାନରେ କାହିଁକି ଓ କିପରି ପଶିଛି, ସେଇଟା ମଧ୍ୟ ବିଗ୍ରର କରିବା କଥା । ଜଣେ ଲୋକ ହାଟରୁ ଟଙ୍କାକର ଗୁଡ଼ ଖଣ୍ଡେ କିଣିଲେ ଏକଟଙ୍କା tax ଦେବ, ଅର୍ଥାତ୍ purchase ବା ଖରିଦ ଉପରେ tax ଏ ଗୋଟାଏ ଅତି କୁତ୍ସିତ Tax

ଏ ସବୁ tax ତ ଅଛି । ତା'ପରେ ଯଦି କୁହାଯାଉଛି ଯେ Land Revenue ଗୋଟାଏ ପ୍ରଗୁଣାକାଳିଆ ଜିନିଷ, ତାକୁ ଉଠାଇ ଦିଅ, ତା'ହେଲେ ଆମ ଦେହ ଥରି ଯାଉଛି । ସେ ଗୋଟିଏ ପରମ୍ପରା ଗ୍ଭଲିଛି ଯାହାକି ନିଶ୍ଚୟ ଉଠିଯିବ କିମ୍ବା ଯଦିବା ଉଠି ନ ଯାଏ, ଭୂମି ଏପରି ଭାଗ ଭାଗ ହେବ ଯେ କେବଳ ଯେଉଁ ଖର୍ଚ୍ଚ ନ କଲେ ନ ହେବ ସେଇତକ ଛଡ଼ା ଆଉ ଜମି କାହାରି ରହିବ ନାହିଁ । ଏହିପରି 10/15 ବର୍ଷ ପରେ ଯେତେବେଳେ ସରକାରଙ୍କର ଆୟ କମିଯିବ ଓ ଆମେ ଯେତେବେଳେ ଏ ହୀରାକୁଦ ଟଙ୍କା ପାଇଁ ମୂଳ ଓ ସୁଧ ଦେବୁ, ସେତେବେଳେ ଆମର ଖଣିଜ ସଂପଦ ଓ ଜଙ୍ଗଲ ସାହାଯ୍ୟରେ ବା ଆଉ ଅନ୍ୟ କୌଣସି ଉପାୟରେ କୌଣସି ନୂଆ ବାଟ ଫିଟାଇବାର ଆଶା ଅଛିକି ନାହିଁ ସେ ସଂପର୍କରେ ଅର୍ଥ ମନ୍ତ୍ରୀଙ୍କ ବକ୍ତୃତାରେ କିମ୍ବା ଆଉ କୌଣସି ଆଶାଜନକ ଚିନ୍ତା ବା ନିର୍ଭରଯୋଗ୍ୟ ନୂତନ ଦୃଷ୍ଟିଭଙ୍ଗୀ ଆମେ ଦେଖୁ ନାହୁଁ । ଆମେ ଯେ କୋଟି କୋଟି ଟଙ୍କା କରଜ କରିଛୁ, ତାକୁ କେମିତି ଶୁଝିବୁ ଏବଂ ତା ସଙ୍ଗେ ସଙ୍ଗେ କିପରି ଦେଶକୁ ଚଳାଇବୁ, ଖଣିଜ ସଂପଦରୁ କିମ୍ବା ଆଉ କୁଆଡୁ ଆମେ ଟଙ୍କା ପାଇବୁ, 5 ବର୍ଷ ଯାହା ହେବାର ହେଲା, ବର୍ତ୍ତମାନ ମନ୍ତ୍ରୀମାନେ ଅନ୍ତତଃ ସେ କଥା ଚିନ୍ତା କରିବା ଉଚିତ । କଣ ନା ଖାଲି Scheme ଆମେ କରି ଦେଇଛୁ ।

ଯୁଆଡ଼େ ଦେଖିଲାବେଳକୁ ଖାଲି Scheme ହେଉଛି ଓ Special Officer ନିଯୁକ୍ତି ଗ୍ଭଲିଛି । ଅଧିକ ଖାଦ୍ୟ ଉତ୍ପାଦନ କରିବାକୁ ହେବ, ଗୋଟିଏ Food Commissioner ବସାଇ ଦିଅ । ବେଶୀ କାମ କରିବାକୁ ହେବ, ବେଶୀ ଦରମା ଦେଇ ଦିଅ । ଆମ ସରକାରଙ୍କ ମତରେ ବେଶି ଦରମା ଦେଇଦେଲେ ବେଶି କାମ ହୋଇଯିବ । Village ପଞ୍ଚାୟତ କରିବାକୁ ହେଲା, Scheme କରି ଦିଆଗଲା, Officer ରଖି ଦିଆଗଲା । Scheme କରିଦେଲେ, Officer ରଖିଦେଲେ କ'ଣ Village Panchayat କାମ ହୋଇଯିବ ? ମନ୍ତ୍ରୀଙ୍କ କଥା ଦୂରେ ଥାଉ Magistrate ପର୍ଯ୍ୟନ୍ତ କେହି ଦିନେ ହେଲେ ମଫସଲ ଦେଖୁ ନାହାନ୍ତି । ଏଣୁ Village Panchayat କାମ କାହିଁକି ସଫଳ ନ ହେଉଛି, ସେମାନେ ଜାଣିପାରୁ ନାହାନ୍ତି ।

ତା'ପରେ ଗୋଟିଏ Public Relations Department ଏବଂ ଗୋଟିଏ Publicity Department ଅଛି । ତାଙ୍କର Orissa Review ଓ 'ଉତ୍କଳ ପ୍ରସଙ୍ଗ' ବିବରଣୀ କିଏ ପଢୁଛି ? ଗ୍ରାମ ପଞ୍ଚାୟତ କଥା ମଫସଲରେ ପ୍ରଗ୍ଭର କରିବା ପାଇଁ ସେମାନଙ୍କୁ ପଠା ନ ଯାଉଛି କାହିଁକି ? ମନ୍ତ୍ରୀମାନେ ମଫସଲ ଅଞ୍ଚଳକୁ ଯାଉ ନାହାନ୍ତି କାହିଁକି ?

**Shri KARUNAKAR PANIGRAHI** : Publicity ଏବଂ Public Relations ଗୋଟିଏ Department, ଯୋଡ଼ିଏ Department ନୁହେଁ ।

**Shri NILAKANTHA DAS** : ମୁଁ ତାହା ଗୋଟିଏ Department ବୋଲି ଜାଣି ନ ଥିଲି । ଏମାନେ ବିନା tenderରେ Press ମାନଙ୍କୁ ଯାହାକୁ ଇଂରାଜୀରେ କହନ୍ତି

Patronise କରି କେତେଗୁଡ଼ିଏ ବହି ଛପାଇ ଯେପରି ଲୋକେ ନିଜ ଲେଖା ନିଜେ ପଢ଼ି ଏବଂ ତାଙ୍କର କେତେକ ସଙ୍ଗୀମାନଙ୍କୁ ପଢ଼ାଇ ଖୁବ୍ ଭଲ ହୋଇଛି ବୋଲି ହେଣ୍ଡି ମାରନ୍ତି, ସେହିପରି ହେଣ୍ଡି ମାରୁଛନ୍ତି । ଏଇମାନଙ୍କ ଯୋଗୁ ସରକାର ବେଶି ଅପ୍ରିୟ ହେଉଛନ୍ତି । Village Panchayat ହେଲା ଗୋଟିଏ ପବିତ୍ର ଜିନିଷ । ଯେଉଁ ମନ୍ତ୍ରୀ ଏହାର ଭାର ନେଇଛନ୍ତି ସେ ମଫସଲକୁ ଯାଇ ଦେଖନ୍ତୁ ଯେ ଏ ଜିନଷ କିପରି କଦର୍ଯ୍ୟ ହେଉଛି । ଖାଲି scheme କରିଦେଲେ Special Officer ରଖିଦେଲେ Village Panchayat କାମ ହେବ ନାହିଁ । ଏହି Village Panchayat Scheme ରେ ଅଛି—ଓଡ଼ିଆ ଟାଇପରାଇଟର ରହିବ, ଓଡ଼ିଆ ଟାଇପିଷ୍ଟ ରହିବେ । ଓଡ଼ିଆ ଟାଇପରାଇଟର ବିଷୟରେ କହିଲେ ସମସ୍ତେ କାନରେ ହାତ ଦେବେ । ଏ ଓଡ଼ିଆ ଟାଇପରାଇଟର ଉଦ୍‌ଭାବନ କରିଥିଲେ ଆମର ପୁଣ୍ୟଶ୍ଳୋକ ଶଶିଭୂଷଣ ରଥଙ୍କ ସହୋଦର ଶ୍ରୀ ରଙ୍ଗନାଥ ମହାପାତ୍ର । ସେଇ ଇଂରେଜୀ ଟାଇପରାଇଟର ଦେଖି, ତାକୁ ଗଣି, ଚିନ୍ତାକରି ଗୋଟିଏ ଓଡ଼ିଆ ଟାଇପରାଇଟର କରିଥିଲେ । ସରକାର ତାଙ୍କୁ କହିଲେ ତୁମେ ଓଡ଼ିଆ ଟାଇପରାଇଟର କର ଆମେ 175ଟା ନେବା । ସେ ଚେକୋସ୍ଲୋଭାକିଆ ଗଲେ ଏବଂ ନାନା ଅସୁବଧା ଭୋଗକରି ଓଡ଼ିଆ ଟାଇପରାଇଟର ତିଆରି କରାଇଲେ । କିନ୍ତୁ ସରକାରଙ୍କର କଣ ଅସୁବିଧା ହେଲା, ସେ ନେଲେ ନାହିଁ । ଯେଉଁଥିପାଇଁ ନ ନେଲେ ମୁଁ ଏଠାରେ କହିବି ନାହିଁ, କାହିଁକି ନା ଏଠାରେ ସଦସ୍ୟୋଚିତ ଭାଷାରେ ତାକୁ ପ୍ରକାଶ କରି ହେବନାହିଁ । ତା'ପରେ ସରକାର କହିଲେ ଯେ ଅମୁକ firm ଦ୍ୱାରା ଟାଇପରାଇଟର କିଣାଇ ଦିଅ । ସେ firm କହିଲା, ଆମକୁ ସେଥିରୁ ଟଙ୍କାରେ ଦଶଅଣା ଦେଲେ ଆମେ ଏ କାର୍ଯ୍ୟର ଭାର ଗ୍ରହଣ କରିବୁ । ଯଦି ମନ୍ତ୍ରୀ ମହାଶୟ ଅନୁସନ୍ଧାନ କରିବେ ତେବେ ସେ ଏସବୁ ବିଷୟରେ ବିବରଣୀ ପାଇପାରିବେ । ମୁଁ ମଧ୍ୟ ଦରକାର ହେଲେ ତାଙ୍କୁ ସାହାଯ୍ୟ କରିବି ।

ତା'ପରେ ଏ ବଜେଟକୁ ଦେଖିଲେ ଜଣାଯାଉଛି ଖାଲି ଅଫିସରମାନଙ୍କ ସଂଖ୍ୟା ବୃଦ୍ଧି କରିବା ଛଡ଼ା ଆଉ କିଛି ଦେଖାଯାଉ ନାହିଁ । ବଜେଟରୁ ଜଣାପଡୁଛି ଯେ, ଆମେ କେତେକ କମିଶନ ଉଠାଇ ଦେଇ ଆମର ଲଭ ହୋଇଥିଲା । ସେ ଲଭତକ Development Commissionerଙ୍କ ଖର୍ଚ୍ଚ ବାବତରେ ଯିବ । Post War Development ବାବଦରେ ଯେଉଁ ଖର୍ଚ୍ଚ ହେଉଥିଲା, ସେଥିରୁ କିଛି ଖର୍ଚ୍ଚ କମିଛି । ତାପରେ ଆଉ ଗୋଟି ଗୋଟି କରି ସବୁ ବିଷୟ କହିବାକୁ ସମୟ ନାହିଁ, ଠିକେ ଠିକେ କହିବି । ଆମର ଯୋଡ଼ିଏ Guest House ଅଛି । ଗୋଟିଏ ମୁଖ୍ୟମନ୍ତ୍ରୀଙ୍କର ଆଉ ଗୋଟିଏ Governor ଙ୍କର । ଯୋଡ଼ିଏ Guest House ରଖିବା ଦରଦାର କ'ଣ ? ଯେଉଁଠି ଘର ମିଳୁଛି ତାକୁ କିଣି ପକାଇ evaqueeମାନଙ୍କୁ ଦେଇ ଦିଆଯାଉଛି । ଯିଏ ଯୁଆଡୁ ଆସୁଛି ତାକୁ ଚାକିରୀ ଦେଇ ଦିଆଯାଉଛି । ଏସବୁର ବିଧିମତ କମିଟି ଗଢି ଅନୁସନ୍ଧାନ ହେଉ । ଯଦି ସେଥିରେ non-official ରହନ୍ତେ ଭଲ ହୁଅନ୍ତା । ଆମ ସାହାଯ୍ୟ ନେଲେ ଆମେ ଦେବୁ ।

Shri NABAKRUSHNA CHAUDHURI (Chief Minister) : ଅର୍ଥମନ୍ତ୍ରୀ କହୁଛନ୍ତି ଯେ, ସେପରି ସାହାଯ୍ୟ ନେଲେ ସରକାର ବହୁତ ଖର୍ଚ୍ଚାନ୍ତ ହେବେ ।

Shri NILAKANTHA DAS : ଯେଉଁ ସରକାର ଏପରି ଖାମଖିଆଲରେ କାମ କରନ୍ତି ତାଙ୍କ ଅବସ୍ଥା ଯାହାହୁଏ, ଇଂରାଜୀରେ ଯାହାକୁ କହନ୍ତି "କାନ୍ଥରେ ଲେଖାଅଛି" ମୁଁ ଆସିଛି ମୋର ଅନେକ ଦିନର ଅଭିଜ୍ଞତା ଘେନି ତାଙ୍କୁ ସାହାଯ୍ୟ କରିବା ପାଇଁ, କିନ୍ତୁ ସେ ମୋର ସାହାଯ୍ୟ ନ ନେଲେ ମୋର ଦୁଃଖ ନାହିଁ ।

ତା' ପରେ Minister ମାନଙ୍କ Discretionary Grant ଏଥିରେ ଅଛି । ସେଥିପାଇଁ ୭୨ହଜାର ଟଙ୍କା ଏଥିରେ ଅଛି । ଏହା ଇଂରେଜ ଅମଳରେ ଥିଲା । ମାଜିଷ୍ଟ୍ରେଟଠାରୁ ଆରମ୍ଭ କରି Governor ପର୍ଯ୍ୟନ୍ତ ଲୋକଙ୍କୁ ସନ୍ତୁଷ୍ଟ କରିବାପାଇଁ ଟ. ୧, ଟ. ୫ ଏମାନେ ଦେଉଥିଲେ । ବର୍ତ୍ତମାନ ମନ୍ତ୍ରୀ କାହିଁକି ଦେବେ ? ଏମାନେ ତ ନିର୍ବାଚିତ ହୋଇ ଆସିଛନ୍ତି । କାଲି ଏ ଗୃହରେ କଥା ପଡ଼ିଥିଲା ଯେ ଜଣେ ମନ୍ତ୍ରୀ ଶ୍ରୀ କପିଳେଶ୍ୱର ପ୍ରସାଦ ନନ୍ଦ ଶେଷକୁ ତାଙ୍କ discretionary grantରୁ ଟ1,500 ତାଙ୍କ ଗାଁର କୌଣସି ଅନୁଷ୍ଠାନକୁ ଦେଇଯାଇଛନ୍ତି ।

Shri DINABANDHU SAHU (Minister) : I think the Hon'ble member should take care to give correct facts. That was not. Rs, 1500 but Rs. 750 which I corrected.

Shri NILAKANTHA DAS : I am sorry, ମୁଁ ଭଲ ଭାବରେ ଶୁଣି ନ ଥିଲି । ମୁଁ ଏହାକୁ ଗ୍ରହଣ କରୁଛି । ମୁଁ ନିଜେ ନିର୍ବାଚନରେ ଜଣେ ପ୍ରାର୍ଥୀ ଥିଲି ଏ କଥା ଆପଣ ଜାଣନ୍ତି । ମୋ ନିର୍ବାଚନ ମଣ୍ଡଳୀରେ କଣାସ ବୋଲି ଗୋଟିଏ ଜାଗା ଅଛି । ସେଠାରେ ଗୋଟିଏ ସ୍କୁଲ ଓ ଲାଇବ୍ରେରୀ ଅଛି । ସରକାର ସେ ସ୍କୁଲ ଏବଂ ଲାଇବ୍ରେରୀ କଥା କେବେ ପଚାରିଥିବା ମୋତେ ଜଣାନାହିଁ । କିନ୍ତୁ ନିର୍ବାଚନ ସମୟରେ ମୁଁ ଯାଇ ଦେଖିଲି ମୁଖ୍ୟମନ୍ତ୍ରୀ, କେନ୍ଦ୍ରର ମନ୍ତ୍ରୀ ଇତ୍ୟାଦି ମନ୍ତ୍ରୀମାନେ ସେଠି ଯାଇ ପହଞ୍ଚିଛନ୍ତି । କାହାକୁ ଟ50 କାହାକୁ ଟ 30 ଏହିପରି ଭାବରେ ତାଙ୍କ discretionary grant ରୁ ଦେଇଛନ୍ତି । ମନ୍ତ୍ରୀମାନଙ୍କର ଏ discretionary grant କାହିଁକି ରହିବ ? ସ୍କୁଲମାନଙ୍କୁ discretionary grant ରୁ ଟଙ୍କା କାହିଁକି ଦିଆଯିବ ? Finance Department ଅଛି, Education Department ଅଛି ସେମାନେ ତ ତା'ର ବ୍ୟବସ୍ଥା କରିବେ । ଲୋକମାନଙ୍କର ମନେଥିବ ଦାଣ୍ଡ ମୁକୁନ୍ଦପୁର High School ର Prize distribution ceremony ରେ କୌଣସି ଜଣେ ମନ୍ତ୍ରୀ ପୁରୋଧା ହୋଇଥିଲେ । ତାଙ୍କ ଉପରେ Aeroplane ରୁ ଫୁଲମାଳ ପଡ଼ିଥିଲା । ମନ୍ତ୍ରୀ ମହାଶୟ discretionary grant ଦେଇଥିଲେ ।

Shri NISHAMANI KHUNTIA : ସେ ମନ୍ତ୍ରୀ କିଏ ? ତାଙ୍କ ନା କ'ଣ ?

Shri NILAKANTH DAS : ତାଙ୍କ ନାଁ ହେଉଛି ଶ୍ରୀ ହରେକୃଷ୍ଣ ମହତାବ । ଏସବୁ ଆମେ ବିଲାତ ସରକାରଙ୍କଠାରୁ ଉତ୍ତରାଧିକାରୀ ସୂତ୍ରେ ପାଇଛୁ । ଫୁଲମାଳ ପାଇଁ ଟଙ୍କା ଦିଆହେବ କାହିଁକି ? ମନ୍ତ୍ରୀମାନଙ୍କୁ ଅଭିନନ୍ଦନ ଦିଆହେବ କାହିଁକି ? ଏମାନେ ଯିବେ ଲୋକଙ୍କ ସୁବିଧା ଅସୁବିଧା ବୁଝିବେ । ଏମାନଙ୍କ ପାଖକୁ କେତେଜଣ ମୁଖିଆ ଲୋକ (deputation)ରେ ଆସିବେ କାହିଁକି ? ଗୋଟିଏ (deputation) ରେ 4-5 ଜଣ ଆସିବେ । ତାଙ୍କୁ ଜଣେ ପୁଣି (lead) କରିବ, ସବୁକଥା ଶୁଣି ସାରି ମନ୍ତ୍ରୀ କହିବେ "Government will very carefully consider the case." ଏସବୁ ଆମକୁ ଆଉ ସୁନ୍ଦର ଦିଶୁନାହିଁ ।

ଗୋଟିଏ Endowment Department—ତାକୁ ଟ. 100 grant ଦିଆଯାଉଛି ଏହା ଗୋବରା ଚଢ଼େଇକୁ ପାଚିଲା କଦଳୀ ଦେଖାଇଲା ପରି । ତାଙ୍କୁ କୁହାଯାଉଛି ଯେ ସେ contribution ଅସୁଲ କରିବେ ତାଙ୍କ Department କୁ ଚଳାଇବେ । ସେ କେତେ ଅସୁଲ କରୁଛନ୍ତି, କେତେ ଖର୍ଚ୍ଚ କରୁଛନ୍ତି ତା'ର ହିସାବ ଏହା ଭିତରେ ନାହିଁ । ଏ ଯେଉଁ consolidated fund ଅଛି ସେ'ଟା କ'ଣ ମୁଁ ବୁଝି ପାରୁନାହିଁ । ସେଥିରୁ District Board କୁ ଯେପରି ଦିଆଗଲା ସେହିପରି Endowment କୁ ଦିଆଯିବା ଉଚିତ । Endowment Department ଯେଉଁ ଟଙ୍କା ଆଦାୟ କରୁଛନ୍ତି, ଯାହାକୁ ଇଂରାଜୀରେ କହନ୍ତି 'Geometrical progression" ସେ ଅନୁସାରେ ସେ ଟଙ୍କା କ୍ରମବର୍ଦ୍ଧନରେ ଆଦାୟ ବର୍ଷକୁ ବର୍ଷ ହେଉଛି କି ନାହିଁ । ବର୍ତ୍ତମାନ ଗାଁ ଗାଁ ବୁଲି Inspectorମାନେ ଟଙ୍କା ଆଦାୟ କରୁଛନ୍ତି । ମୁଁ ପିଲାଦିନେ ଲେଖିଥିଲି:—

ରାଜ ଜନ ବୋଲି ବଂଚକ ତସ୍କର
ବୁଲୁଛନ୍ତି ଗ୍ରାମ ବିପିନ ବିଲେ

ମୋର ଆଜି ସେଇ କଥା ମନେ ପଡୁଛି । ମୁଁ ମନ୍ତ୍ରୀମାନଙ୍କଠାରୁ ଆରମ୍ଭ କରି ମାଜିଷ୍ଟ୍ରେଟ ପର୍ଯ୍ୟନ୍ତ ସମସ୍ତଙ୍କୁ ସାବଧାନ କରିଦେବାକୁ ଚାହୁଁଛି ଯେ, ଗ୍ରାମପଞ୍ଚାୟତ ଓ Endowment ର ଯେଉଁ ଅପଚାର ହେଉଛି, ସେଥିପ୍ରତି ସେମାନେ ଦୃଷ୍ଟି ଦିଅନ୍ତୁ । ମୋର ଆଉ ଅନେକ କଥା କହିବାର ଅଛି । ପ୍ରତ୍ୟେକ କଥା ବର୍ତ୍ତମାନ କହିବାକୁ ଆଉ ବେଳ ନାହିଁ । ପରେ ସୁବିଧା ମିଳିଲେ କହିବି । ବର୍ତ୍ତମାନ ମନ୍ତ୍ରୀଙ୍କୁ ଏତିକି କହୁଛି ଯେ ସେମାନେ ଟଙ୍କା ନିଅନ୍ତୁ । ଆମେ ଆଶା କରୁଛୁ, ସେମାନେ ଆମ ସ୍ୱାଧୀନ ଦେଶର ବିକାଶ ଲାଗି ଲାଗି ପଡ଼ିବେ । ତେବେ ଆମେ ତାଙ୍କର ଜୟ ଜୟକାର କରିବୁ । ଗ୍ରାମମାନଙ୍କରେ ଯେଉଁ ପଞ୍ଚାୟତ ଅଛି ସେଗୁଡ଼ିକୁ ସୁଚାରୁରୂପେ ପରିଚାଳନା କରିବାପାଇଁ ଲୋକଙ୍କର ଯେପରି ମଙ୍ଗଳ ହେବ, ଲୋକଙ୍କର ଯେପରି ବିଶ୍ୱାସଭାଜନ ହେବେ ଓ ସରକାର ପାଇଁ ବି ଟିକସ ଆଦାୟ କରିପାରିବେ, ତାର ବ୍ୟବସ୍ଥା ହେଉ । ପ୍ରତ୍ୟେକ ଗାଁର ବଜେଟ ରହୁ । କେଉଁ ଗାଁର

ବଜେଟ deficit ହେଲା, କେଉଁ ଗାଁର Budget surplus ହେଲା ସେ କଥା ଦେଖାଯାଉ । ଯେଉଁ ଗାଁର ବଜେଟ୍ surplus ହେଲା ସେ ଗାଁକୁ prize ଦିଆଯାଉ ।

ଆଉ ଗୋଟିଏ ହେଉଛି Agriculture, ଚାଲନ୍ତୁ ନଡ଼ିଆ experiment ଦେଖିବେ ସାକ୍ଷୀଗୋପାଳରେ । ଯଦି କୌଣସି ମନ୍ତ୍ରୀ ଏହାର ତତ୍ତ୍ୱାବଧାନ କରନ୍ତେ, ତାହାହେଲେ ଭଲ ହୁଅନ୍ତା । ଆଖପାଖ ଚାଷୀ ସରକାରଙ୍କ ଚାଷ ଦେଖି ଉତ୍ସାହିତ ହୁଅନ୍ତା, ସେ ଆସି tractor ମାଗନ୍ତା, ବିହନ ମାଗନ୍ତା, ସେତେବେଳେ ବୁଝାଯାନ୍ତା ଠିକ୍ କାମ ହେଲା । ଗୋଖେଲ ସାହେବ ଥିଲା ବେଳେ ମୁଁ ତାଙ୍କ ସହିତ ପରାମର୍ଶ କରି ଚାଷର ଗୋଟିଏ co-operative scheme ଦେଇଥିଲି । ସେ ମୋତେ କହିଲେ ପଣ୍ଡିତେ କହିଲ ସବୁ, କଲେ ଭଲ ହୁଅନ୍ତା, ଯାହାକୁଦେବି ସେ କରିବେ ନାହିଁ । ଆମର ଲୋକେ ନାହାନ୍ତି । ଏବେ ବୁଝି ରଖ । ଖାଲି Special Officer ନିଯୁକ୍ତି କଲେ ହେବନାହିଁ ।

## 5. ଓଡ଼ିଶା ବିନିଯୋଗ ବିଧେୟକ (The Orissa Appropriation Bill, 1952).

1952 ମସିହାର ଓଡ଼ିଶା ବିନିଯୋଗ ବିଧେୟକ ଉପରେ ନୀଳକଣ୍ଠ ଏକତ୍ରୀକୃତ ବିଧି (Consolidated Fund) ) ରୁ ଅର୍ଥ ଆଣି ସରକାରଙ୍କ ହାତରେ ଦେବା ବିରୁଦ୍ଧରେ ମତ ଦେଇଛନ୍ତି । ଏହି ପ୍ରସଙ୍ଗରେ ସେ ବିହାର ବିଧାନସଭାରେ ଆଲୋଚିତ ଘଟଣାର ଦୃଷ୍ଟାନ୍ତ ଦେଇ ସରକାର ସେଥିରୁ ଶିକ୍ଷାଲାଭ କରିବାକୁ ପରାମର୍ଶ ଦେଇଛନ୍ତି । ଇଂରାଜୀରେ ଯାହା କହନ୍ତି refusal of supply ଟଙ୍କା ମଞ୍ଜୁର ହୋଇଗଲେ ମଧ୍ୟ supply ଦିଆହେଉନାହିଁ । "ଏ କଥାଟା କହିବାର ଅଧିକାର ଏ ସଭାରେ ଅଛି । କିମ୍ବା ମୁଁ କହିବି ଯେ ତମର ଏଇସବୁ ଭୁଲ ହେଉଛି । ଏଇପରି ଭାବରେ ଖର୍ଚ୍ଚ କର, ଏ ଭୁଲ୍‌କୁ ବନ୍ଦ କର, ସବୁବେଳେ ଯେ refusal of supply କୁ ଚାଲିଯିବ, ତା' ନୁହେଁ । ତାହା ହେଉଛି extreme କଥା ବା ଶେଷ କଥା" । ଅଭିଜ୍ଞ ବିଧାୟକ ନୀଳକଣ୍ଠ ତେଣୁ ସରକାରୀ ଦୋଷତ୍ରୁଟିକୁ ଦେଖାଇ ସରକାରଙ୍କ ଖର୍ଚ୍ଚ ପାଇଁ ଥିବା ଅର୍ଥ ମଧ୍ୟ ନ ଦେବାକୁ ଚାହିଁଛନ୍ତି । ଏହି ବିଧାନଗତ ପ୍ରଶ୍ନକୁ ଅସ୍ୱୀକାର କରିବା ମଧ୍ୟ ଅସମ୍ଭବ । ଶିକ୍ଷା, ଶିଳ୍ପ, ପଞ୍ଚାୟତ ସମ୍ପର୍କୀୟ ଆଇନ, ଦେବୋତ୍ତର ଆଇନ ଆଦି କାର୍ଯ୍ୟକାରୀ ହେବାରେ ଯେଉଁସବୁ ଦୋଷତ୍ରୁଟି ରହିଛି, ସାଂସଦ ନୀଳକଣ୍ଠ ଗୋଟିଗୋଟି କରି ଦେଖାଇଛନ୍ତି ଏବଂ ବାଚସ୍ପତିଙ୍କ ଅନୁମତି ନ ପାଇ ଏକଥା କହିବାକୁ ଅସ୍ୱୀକାର କରିଛନ୍ତି ଏବଂ ନିୟମାନୁସାରେ ଖବରକାଗଜ ପଢି ଶୁଣାଇବାରୁ କ୍ଷାନ୍ତ ହୋଇଛନ୍ତି ।

ନୀଳକଣ୍ଠ ତେଣୁ ସରକାରଙ୍କ ପ୍ରଶାସନିକ ଦୋଷତ୍ରୁଟି ଦେଖାଇ ତା'ର ପରିମାର୍ଜନା କରିବାପାଇଁ ଦାବି କରିବା ସହିତ ସଂସଦୀୟ ନିୟମକାନୁନ୍ ମାନି ଚଳିବାକୁ ଟିକେ ପଛେଇ ନାହାନ୍ତି । ଅର୍ଥ ବିନିଯୋଗ ଉପରେ କଟକଣା ଲାଗୁ କରାଇ ସରକାରଙ୍କୁ

ଅସୁବିଧାରେ ପକାଇବାକୁ ଚେଷ୍ଟାକରି ସେ ଜନସାଧାରଣଙ୍କ ଅଭାବ ଅଭିଯୋଗର ଅବତାରଣା କରିଛନ୍ତି । ଜଣେ ସମର୍ଥ ସାଂସଦଭାବରେ ସେ ନିଜର କର୍ତ୍ତବ୍ୟ ସଂପାଦନରେ ତିଳେ-ହେଲେ ତ୍ରୁଟି ଦେଖାଇନାହାନ୍ତି ।

ଶ୍ରୀ ନୀଳକଣ୍ଠ ଦାସ : ବାଚସ୍ପତି ମହାଶୟ, ଆମ୍ଭମାନଙ୍କର ଏହା ପୂର୍ବରୁ ଏହିପରି ଗୋଟିଏ bill 2/3 ଦିନ ତଳେ ଏ House ରେ ହୋଇଯାଇଛି । ଏଇଟା ହେଉଛି ଏ ବର୍ଷ ମାର୍ଚ୍ଚ 31 ତାରିଖ ଭିତରେ ଯେଉଁ ଟଙ୍କା ଖର୍ଚ୍ଚ ହେବ ତାକୁ ଏ ସଭା ମଞ୍ଜୁର କରିଛନ୍ତି । ସେ ଟଙ୍କାଟା ବର୍ତ୍ତମାନ consolidated fundରୁ ବାହାର କରି ସରକାରଙ୍କ ହାତରେ ଦିଆଯିବ । ସେ ବିଲ୍ ଯେତେବେଳେ ପାଶ ହୋଇଗଲା ତା'ର ଟିକିଏ ଇତିହାସ କହିଦେବା ଉଚିତ ମନେ କରୁଛି । ଯେଉଁ 20 ତାରିଖ ଦିନ ଆମେ ଏହାକୁ ପାଶ କଲୁ ସେତିକିବେଳେ 2 ଦିନ ପୂର୍ବରୁ ପାଟଣାରେ ବିହାର (Legislative Assembly) ବ୍ୟବସ୍ଥା ସଭାରେ ଆମ ଭଳିଆ ବିରୋଧ ନ ଥାଇ ମଧ୍ୟ ସରକାର ପକ୍ଷର ମେମ୍ବରମାନେ ତାଙ୍କ on accountର budgetର ଟଙ୍କାଟାକୁ appropriation ରେ ଦେବାପାଇଁ 2 ଦିନ କାଳ ତର୍କ ବିତର୍କ କରି ସାରିଛନ୍ତି । ମୁଁ ମନେ କରିଥିଲି ବୋଧହୁଏ ଆମ ସରକାର U. P. I. ଓ P. T. I. ଙ୍କଠାରୁ ସେ ସମ୍ବାଦ ପାଇଥିବେ । କିନ୍ତୁ ସେ ସମ୍ବାଦ ସେମାନେ ଦେଇଛନ୍ତି କି ନାହିଁ ମୁଁ କହି ପାରିବି ନାହିଁ । କାହିଁକି ନା 20 ତାରିଖ କାଗଜରେ ଦେଖିଲି ସେ ସମ୍ବାଦ ପାଟଣାରେ ବାହାରିଥିଲା । ତାଙ୍କର ମାର୍ଚ୍ଚ 18-19 ତାରିଖରେ on account budget ର appropriation Bill ଉପରେ ଯେଉଁ discussion (ବିଚାର) ହୋଇଥିଲା 21 ତାରିଖ କାଗଜରେ ସେ ବିବରଣୀ ବାହାରିଥିଲା କିନ୍ତୁ ସେଇଟା ସରକାର ପାଇଥିଲେ କି ନା ମୁଁ କହି ପାରିବି ନାହିଁ । 18-19 ତାରିଖରେ ଏ ସଭାରେ ଆପଣ କହିଥିଲେ ଯେ ଏଇଟା ଗୋଟାଏ ଫର୍ମାଲ (formal) ଜିନଷ, କେବଳ ଟଙ୍କାଟା ଦବା ମଞ୍ଜୁରୀ କଲେ ଏବେ ଦିଆଯିବ କିନ୍ତୁ ଆମ୍ଭମାନଙ୍କ ଭିତରୁ ଅନେକ ସେ ଜିନିଷକୁ ସେପରି ବୁଝି ପାରି ନାହାନ୍ତି । ଫର୍ମାଲ (formal) କହିଲେ ମାମୁଲି ଅର୍ଥାତ୍ ନିଶ୍ଚେ କରି ଦେବାକୁ ହେବ । କିନ୍ତୁ ଟଙ୍କାଟା ଯେତେବେଳେ ମଞ୍ଜୁରୀ କରାଗଲା ତାକୁ ବାକ୍ସରୁ କାଢି ଦେଇଦେବା ହେଉଛି ମାମୁଲି କଥା । ଆମ ସରକାରଙ୍କର ଟଙ୍କା ଦରକାର ଅଛି । ମାର୍ଚ୍ଚ 31 ତାରିଖ ପୂର୍ବରୁ ଏହା ପାଶ ହେବ । ଏଇଟା କହିବା ଗୋଟିଏ କଥା । ଆଉ ଗୋଟିଏ କଥା ଯେ ଆମେ ଏଇ ସରକାରଙ୍କ ହାତେ ସେ ଟଙ୍କା ଦେବୁ । ସମ୍ବିଧାନରେ ଗୋଟିଏ provision ଅଛି, ଯାହାକୁ ଇଂରାଜୀରେ କହନ୍ତି refusal of supply ଟଙ୍କାଟା ମଞ୍ଜୁର ହୋଇଗଲା କିନ୍ତୁ supply ଦିଆ ହେଉନାହିଁ ଏ କଥାଟା କହିବାର ଅଧିକାର ଏ ସଭାର ଅଛି । କିମ୍ବା ମୁଁ କହିବି ଯେ ତମର ଏଇସବୁ ଭୁଲ ହେଉଛି । ଏହିପରି ଭାବରେ ଖର୍ଚ୍ଚ କର, ଏ ଭୁଲକୁ ବନ୍ଦ କର, ସବୁବେଳେ ଯେ refusal of supplyକୁ ଗ୍ଲିଯିବ, ତା ନୁହେଁ । ତାହା ହେଉଛି, extreme କଥା-ବା ଶେଷ କଥା ।

The Hon'ble SPEAKER : ମୋର କହିବାର କଥା ଯେ ମାନ୍ୟବର ସଭ୍ୟ refusal of supply ବିଷୟରେ ଯାହା କହୁଛନ୍ତି ସେଥିରେ ମୁଁ ବିଲକୁଲ ଏକମତ କିନ୍ତୁ Budget demand ଏ Houseରେ ଗୃହୀତ ହୋଇଯିବାପରେ ପୁଣି ଏ ବିଲ୍ ଯେତେବେଳେ ଆଲୋଚିତ ହେବ ସେତେବେଳେ refusal of supply କରିବା in order ହେବ କି ଏ House ପକ୍ଷରେ ?

ଶ୍ରୀ ନୀଳକଣ୍ଠ ଦାସ : ଆମର ଏ Appropriation Bill ପ୍ରାଦେଶିକ ବ୍ୟବସ୍ଥା ସଭାରେ ନ ଥିଲା । ଏଇଟା ଗୋଟାଏ ବିଲତି କଥା । ଆମ କେନ୍ଦ୍ର ବ୍ୟବସ୍ଥା ସଭାରେ ସମସ୍ତ ବଜେଟ ଟଙ୍କା consolidated fundରେ ସେତେବେଳେ ରହୁ ନ ଥିଲା । ସେତେବେଳେ ସରକାରଙ୍କ ହାତରେ ରହୁଥିଲା । ସେ ଟଙ୍କା ସବୁ ବଜେଟ ମଂଜୁର କଲା ମାତ୍ରକେ ସରକାରଙ୍କ ହାତରେ ପଡ଼ି ଯାଉଥିଲା । Refusal of supply ଦୁଇ ରକମ ହେଉଥିଲା । କେନ୍ଦ୍ରରେ ସେତେବେଳେ Executive Department ଗ୍ରାଣ୍ଟ ( Grant ଟଙ୍କାଟା ପାଶ୍ ନ କଲେ ଟଙ୍କାଟା ଫିଙ୍ଗିଦେଲେ ପ୍ରକୃତରେ ସେତିକିବେଳେ refusal of supply (ସରକାରଙ୍କୁ ଟଙ୍କା ନ ଦେବା) ହୋଇ ଯାଉଥିଲା । ଅନ୍ୟ ପ୍ରକାରରେ ଟଙ୍କା ନ ଦେବାଟା ହେଉଥିଲା । Finance Billରେ ବଜେଟରେ କେଉଁ ଟଙ୍କା ନିଅଣ୍ଟ ହେଉଥିଲା ତା ଦେବା ପାଇଁ ଯେଉଁ ବିଲ୍ ହୁଏ ତାକୁ Appropriation Bill କହୁ ନ ଥିଲେ । ତାକୁ Finance Bill ବୋଲି କୁହା ଯାଉଥିଲା । ସେତେବେଳେ ସେଇ ବିଲ୍‌ରେ ଲୁଣ ଉପରେ ଟିକସ ବସିଥିଲା । ପୋଷ୍ଟକାର୍ଡ ପଇସା ବେଶୀ କରାଯାଉଥିଲା । ଏଇପରି କରି 5/10 କୋଟି ଟଙ୍କା ଯାହା ନିଅଣ୍ଟ ହେଉଥିଲା ତାକୁ Finance Bill Supply କରୁଥିଲେ । ଅସଲ refusal of supply ଯେଉଁଟା ସେଇଟା Finance Bill କୁ throwout କରି ଦେବା ବା ଫିଙ୍ଗି ଦେବା ପାଇଁ ଗୋଟାଏ ଚେଷ୍ଟା । 1924 ଠାରୁ 1930 ସାଲ ଯାଏ କହୁଛି 1935 ସାଲ ଯାଏ କହି ପାରିବି ନାହିଁ ଯେ ପ୍ରତି ବର୍ଷ ଏଇ Finance Billଟାକୁ throwout କରିବା ବା ଫିଙ୍ଗି ଦେବା ପାଇଁ ବା refusal of supply କରିବା ପାଇଁ ଚେଷ୍ଟା କରାହୁଏ । ଆଉ କେବଳ ସେତିକି ନୁହେଁ, ସରକାରଙ୍କୁ ଏହି ଟଙ୍କାଟା 31 ତାରିଖ ମାର୍ଚ୍ଚ ଭିତରେ ଦେଇ ଦିଅନ୍ତି କାହିଁକି ନା ଏପ୍ରିଲ ପହିଲା ହୋଇଗଲେ Finance Bill ପାଶ୍ ନ ହେଲେ କୌଣସି ଟଙ୍କା ଖର୍ଚ୍ଚ ହୋଇ ପାରିବ ନାହିଁ । କିନ୍ତୁ ସେତେବେଳେ ଆମେ ସମସ୍ତେ majority ନ ଥିଲୁ ଯେ refusal of supply କରୁଥିଲୁ । ସେତେବେଳେ ମୁଁ କେନ୍ଦ୍ର ବ୍ୟବସ୍ଥା ସଭାରେ ଥିଲି । ଥରେ ଏପ୍ରିଲ 6 ତାରିଖ ହୋଇଗଲା । Finance Bill ପାଶ୍ ହୋଇ ପାରିଲାନାହିଁ । କିଛି କାର୍ଯ୍ୟ ହୋଇ ପାରିଲା ନାହିଁ । ଇଂରେଜ ସରକାର ସାବଧାନ ହୋଇ ଗୋଟିଏ ଆଇନ୍ କଲେ । ପହିଲା ଏଡ଼ାଇ ଯିବାର ବ୍ୟବସ୍ଥା ହେଲେ ordinanceରେ ଟଙ୍କା ଖର୍ଚ୍ଚ କରିଯିବାର ସେଇ ଦିନଠାରୁ ବ୍ୟବସ୍ଥା କରା ହୋଇଥିଲା । ସେ ଅନୁସାରେ ଏବେ କାର୍ଯ୍ୟ ହେଉଛି । ଏବେ ନୂଆ ସମ୍ବିଧାନ

(constitution) ହେବା ଫଳରେ ସେସବୁର ଆୟ ଦରକାର ନାହିଁ । କିନ୍ତୁ ଆଜି ଆମର କାମ ହେଉଛି, ଯେଉଁ ଟଙ୍କାଟା ସରକାରରେ ଖର୍ଚ୍ଚ ବୋଲି ଠିକ୍ କଲୁ, ତାହା ଆମ ସରକାରଙ୍କ ହାତକୁ ଆସୁନାହିଁ । ସରକାର ଯାହାଙ୍କ ହାତରେ ଅଛି, ଏଇ Appropriation ପେଶ୍ କଲ୍ଲବେଳେ 31 ମାର୍ଚ୍ଚ ଭିତରେ ଖର୍ଚ୍ଚ କରିବା ପାଇଁ ଟଙ୍କା ତାଙ୍କ ହାତରେ ଦେଲ୍ଲବେଳେ ଆମେ ସବୁ କଥା କହି କରି ଦେବୁ । ଏତିକି ଅଧିକାର ଆମର ଅଛି । Refusal କଥାଟା କାହିଁକି ପଡୁଛି ?

The Hon'ble SPEAKER: ମୋର କହିବାର କଥା, refusal of supply କରିବାର ଅଧିକାର ଏ ଗୃହର ପୂରା ମାତ୍ରାରେ ଅଛି । କିନ୍ତୁ Demand ବ୍ୟବସ୍ଥା ହୋଇଯିବା ପରେ Appropriation Bill ଆଲୋଚନା ବେଳେ refusal of supply କରିବା ଏ Houseର ଅଧିକାର ନାହିଁ । ଯାହା କହିବାର ଅଛି ବଜେଟ ଆଲୋଚନାବେଳେ କହିପାରନ୍ତି । ଏହା ଗୃହୀତ ହେବାପରେ ଆଉ କହି ପାରିବେ ନାହିଁ । ଏ ସମ୍ପର୍କରେ Articles 204 (2) ରେ ଲେଖାଅଛି ଯେ—

"No amendment shall be proposed to any such Bill in the House or either House of the Legislature of the State which will have the effect of varying the amount or altering the destination of any grant so made or of varying the amount of any expenditure charged on the consolidated fund of the State, and the decision of the person presiding as to whether an amendment is inadmissible under this clause shall be final.

ଶ୍ରୀ ନୀଳକଣ୍ଠ ଦାସ : ଟଙ୍କା ପରିମାଣ (Amount)ଟା vary କରି (ବଦଳାଇ) ହେବ ନାହିଁ କିମ୍ବା destination (ଖର୍ଚ୍ଚର ବିଷୟ) ବଦଳା ହେବ ନାହିଁ । ଯେଉଁ ଟଙ୍କା irrigation (ଜଳସେଚନ) ପାଇଁ ଅଛି, ତାହା education (ଶିକ୍ଷା) ପାଇଁ ଦିଆହେବ ନାହିଁ । ଆରଥର ମୁଁ କହିଥିଲି କୌଣସିମତେ ଯେପରି reappropriation ନ ହୁଏ । ଟଙ୍କାକୁ ବେଶୀ କମ୍ କରି ହେବନାହିଁ ସେପରି amendment (ସଂଶୋଧନ) ମଧ୍ୟ କରି ହେବନାହିଁ । ଆମେ ଯାହା କହିବା refusal of supply, ତାହା amendment ନୁହେଁ । ମୁଁ କହୁଛି ଯେ 2 ଦିନ କାଳ ପାଟନାରେ କଂଗ୍ରେସ ମେମ୍ବରମାନେ—ଏଠାରେ ଖବର କାଗଜ ପଢ଼ିବା ମନା ଅଛି ନୋହିଲେ ମୁଁ ପଢ଼ି ଖବର ଶୁଣାଇଥାନ୍ତି—ନିଜେ ଦୁଇ ଦିନ କାଳ Appropriation Bill ଉପରେ ସରକାରଙ୍କୁ ନାନାପ୍ରକାର କଥା କହିଛନ୍ତି । ଆମର administration ସମ୍ବନ୍ଧରେ ଆମେ ସବୁ କଥା କହି ଟଙ୍କା ଦେବା, ଏ ଅଧିକାର ଆମର ଅଛି । ଆମେ କୌଣସିଟା କାଟିବୁନାହିଁ ନା କମାଇ ପାରିବୁ ନାହିଁ । ସେଥିପାଇଁ ମୁଁ କହୁଛି ଏଇ କଥା ଆମ୍ଭେମାନେ ଭଲ ଭାବରେ ବୁଝି ରଖିବା ଉଚିତ ।

ମାନ୍ୟବର ଶ୍ରୀ ନବକୃଷ୍ଣ ଚୌଧୁରୀ : ସଭାପତି ମହାଶୟ, ସବୁ କଥା ନୁହେଁ Supplementary grant ବିଷୟରେ ଯେତେ କଥା ଅଛି ।

ଶ୍ରୀ ନୀଳକଣ୍ଠ ଦାସ : ସେ ସମ୍ପର୍କରେ General Administration ଅଛି ଅତଏବ ଆମେ ଯଦି କହୁଁ ଯେ ଗତ ୨ ବର୍ଷ ଯେପରି ଚଳିଯାଇଛି ସେଥିରେ ଆମର ଯେଉଁ ବର୍ତ୍ତମାନ ସରକାର ହୋଇଛନ୍ତି ସେ ତ ସବୁ କଥା ପାଇଁ ଦାୟୀ ନୁହନ୍ତି, ଏମାନଙ୍କୁ ଆମର ଦେଶର ଲୋକେ ଏ ସବୁ କଥା ପାଇଁ କିଛି କିଛି ସୂଚନା ଦେଇ କହିଦେବାର ଅଧିକାର ଅଛି । ସେଥିପାଇଁ ଯେଉଁ General Administration ଆମ ପ୍ରଧାନମନ୍ତ୍ରୀଙ୍କ ହାତରେ ଅଛି, ତାଙ୍କୁ ଆମେ ଅନୁରୋଧ କରୁଛୁ, ସେ ଟିକିଏ ଆମ କଥାକୁ ଅନୁଧ୍ୟାନ ଦିଅନ୍ତୁ । ତାଙ୍କର ଟଙ୍କା ଆମେ କିଛି ନେଇ ଯାଉନାହୁଁ କି ଖରାପ କରୁନାହୁଁ କିମ୍ବା ଖରାପ କରିବାର ସୁବିଧା ନାହିଁ । ଯେଉଁ ଆଇନଗୁଡ଼ିକ କାର୍ଯ୍ୟରେ କରୁଛନ୍ତି, ସେଥିପ୍ରତି ତାଙ୍କର ବିଶେଷ ସାବଧାନ ହେବା ଦରକାର । ବର୍ତ୍ତମାନ 2ଟି ଆଇନ ବିଷୟରେ କହିବି ଯାହା କି ମୁଁ ନିଜେ ଅନୁଭବ କରୁଛି । ଗୋଟିଏ ହେଉଛି Endowment ଆଇନ । ମୁଁ ତ କହିବି ଏପରି ଗୋଟିଏ କୁତ୍ସିତ, କଦର୍ଯ୍ୟ, କଦାକାର ଏବଂ ପ୍ରତିକ୍ରିୟାଶୀଳ ଆଇନ ବୋଧହୁଏ ଆଉ କେଉଁଠାରେ ହୋଇଛି କି ନା ସନ୍ଦେହ ।

The Hon'ble SPEAKER: I think in respect of the legislation which has already been passed by this House the Hon'ble member is not entitled to make such a comment. It is out of order.

ଶ୍ରୀ ନୀଳକଣ୍ଠ ଦାସ : Legislation ସମାଲୋଚନା କରିବା ଏଠି ଆମର ଅଧିକାର ଅଛି । Legislation ଖରାପ ହେଲେ ଆମେ ଯାହା କହିବୁ ସେଇ ଅନୁସାରେ Amendment ହେବ । ଏହିପରି Legislations ବ୍ୟବହାର କର, ଆମେ ଟଙ୍କା ଦେଉଛୁ, ସେହି ହିସାବରେ ମୋର କହିବା ଖରାପ କିପରି ହେଲା ? ଯଦି କହିବେ ମୁଁ withdraw କରିନେବାକୁ ପ୍ରସ୍ତୁତ ଅଛି ।

The Hon'ble SPEAKER: ତାକୁ କୁତ୍ସିତ, କଦାକାର କହିବା ଅର୍ଥ ଏ Houseକୁ ଗୋଟିଏ ଆକ୍ଷେପ ।

ଶ୍ରୀ ନୀଳକଣ୍ଠ ଦାସ: ଯେଉଁ House ଏହା କରିଥିଲେ ତାଙ୍କ ଉପରେ ଆକ୍ଷେପ କରିବାର ଅଧିକାର ଆମର ଅଛି । ଆମେ Amendment (ସଂଶୋଧନ) କରିପାରିବୁ ।

The Hon'ble SPEAKER: ଯେକୌଣସି ମୂହୁର୍ତ୍ତରେ କୌଣସି ଆଇନର ସଂଶୋଧନ କରିବାର ଅଧିକାର Houseରେ ଯଥେଷ୍ଟ ଅଛି । ତା' ନ ହେଲା ପର୍ଯ୍ୟନ୍ତ ସେ ଆଇନକୁ କୁତ୍ସିତ, କଦାକାର କହିବା ଅର୍ଥ, House ଯାହା ଗ୍ରହଣ କରିଛି, ତାକୁ ଆକ୍ଷେପ କରିବା ।

ଶ୍ରୀ ନୀଳକଣ୍ଠ ଦାସ: ମୁଁ ବର୍ତ୍ତମାନ ମନ୍ତ୍ରୀ ମହାଶୟଙ୍କୁ ସୂଚନା ଦେଉଛି ଯେ ଏଇସବୁ ବିବାଦ ଅଛି, ଟଙ୍କା ଖର୍ଚ୍ଚ କରିବା ସମୟରେ ଏଇସବୁ ପ୍ରତି ଦୃଷ୍ଟି ଦେବେ। ବର୍ତ୍ତମାନ Endowment Act ବିଷୟରେ ମୁଁ କିଛି କହିବି କାରଣ ସେଥିରେ ଆମ ଲୋକଙ୍କର ସୁବିଧା ହେବ। ଏ ବିଷୟରେ ଗୋଟିଏ Ordinance ଅଛି। ତାକୁ ନାମଞ୍ଜୁର କରିବା ପାଇଁ ଆମ୍ଭେମାନେ ଅତି ଶୀଘ୍ର ବିଚାର କରିବା, ତେଣୁ ସେ ସମ୍ବନ୍ଧରେ ସବୁ ଦେଖାଇବା ମୋର ବର୍ତ୍ତମାନ ଦରକାର ପଡୁନାହିଁ। ମୁଁ ତାକୁ ବର୍ତ୍ତମାନ ପାଇଁ ଛାଡ଼ିଲି। ଆଉ ଗୋଟିଏ ଆଇନ—ଗ୍ରାମପଞ୍ଚାୟତ ଆଇନ। ଏଥିରେ ଗୋଟିଏ ବଡ଼ ଦୋଷ ଅଛି, ସବୁବେଳେ କଚେରୀକୁ ଏଡ଼ି ଦିଆଯାଉଛି। ଏଇଟା କୌଣସି ଆଇନରେ କେବେହେଲେ ରହିବା ଉଚିତ ନୁହେଁ। ମୁଁ ଏଇଆ ସମାଲୋଚନା କରୁଛି ଯେ କଚେରୀକୁ ଏଡ଼ି ଦିଅନାହିଁ। Civil Courtର ଯେଉଁ ଅଧିକାର ଅଛି, ତାକୁ ସବୁବେଳେ ଲୋକଙ୍କ ଆଖି ଆଗରୁ ବାହାର କରିଦେବା ଉଚିତ ନୁହେଁ।

ଯେଉଁ ଗ୍ରାମପଞ୍ଚାୟତ ଆଇନ ହୋଇଛି ତାହା ଗୋଟିଏ ଭଲ ଜିନିଷ। ସେପରି ଗୋଟିଏ ଆଇନ କଲେ ଯେକୌଣସି ଲୋକ କହିବ ଯେ ଏହା ଗୋଟିଏ ଭଲ ଜିନିଷ ହୋଇଛି।

ମାନ୍ୟବର ଶ୍ରୀ ନବକୃଷ୍ଣ ଚୌଧୁରୀ: ଗ୍ରାମପଞ୍ଚାୟତ ଆଇନ କଥା Supplementary Demand ଭିତରେ ଅଛି ନା କ'ଣ ?

The Hon'ble SPEAKER: ମାନ୍ୟବର ସଭ୍ୟ Supplementary Demand ଯେଉଁସବୁ headରେ ଅଛି ସେହିସବୁ head ଉପରେ criticism କରିପାରନ୍ତି। ଗ୍ରାମ-ପଞ୍ଚାୟତ କଥା Supplementary Demandରେ ନାହିଁ। ତେଣୁ ସେ ବିଷୟରେ ଆଲୋଚନା କରିବା ଠିକ୍ ହେଉନାହିଁ। ଯେତେବେଳେ general debate ହେବ, ସେତେବେଳେ ମାନ୍ୟବର ସଭ୍ୟ ସେ ବିଷୟରେ କହିପାରିବେ। ବର୍ତ୍ତମାନ ଯେଉଁ discussion ହେଉଛି ତାହା ଖୁବ୍ ସୀମାବଦ୍ଧ।

ଶ୍ରୀ ନୀଳକଣ୍ଠ ଦାସ: ଯଦି ମାନ୍ୟବର ପ୍ରଧାନମନ୍ତ୍ରୀ କହିବେ ଯେ ଏ Supplementary Demand ଭିତରେ ଗ୍ରାମପଞ୍ଚାୟତ ଆସୁନାହିଁ ତାହାହେଲେ ମୁଁ ସେ ବିଷୟରେ କହିବି ନାହିଁ।

ମାନ୍ୟବର ଶ୍ରୀ ନବକୃଷ୍ଣ ଚୌଧୁରୀ: ପ୍ରଧାନମନ୍ତ୍ରୀ ଯାହା କହିବେ ସେଇଟା ଏଠାରେ ଯେ ଆଇନ ହେବ, ତାହା ନୁହେଁ। ଗ୍ରାମପଞ୍ଚାୟତ ଆଇନର ଏଠାରେ କୌଣସି ସମ୍ପର୍କ ନାହିଁ। ମୁଁ କହିଲେ ସମ୍ପର୍କ ରହିବ, ନ କହିଲେ ରହିବ ନାହିଁ, ଏହା କ'ଣ କଥା ?

The Hon'ble SPEAKER: ମାନ୍ୟବର ସଭ୍ୟଙ୍କୁ May's Parliamentary Practice ପ୍ରତି ଦୃଷ୍ଟି ଆକର୍ଷଣ କରୁଛି :—

"In general terms, any question of administrative polcy may be raised which are implied in such grants of supply. Thus, whereas the field of debate on the main Consolidated Fund Bill of the year and upon the Appropriation Bill is normally commensurate with the whole range of administrative policy, debate upon a Consolidated Fund Bill Introduced for the express purpose of providing funds for some newly undertaken service is limited to that service. Debate on these Bills is thus limited to relevant questions of administration, and, as in Committee of Supply questions of taxation and legislation cannot be discussed.

ଶ୍ରୀ ନୀଳକଣ୍ଠ ଦାସ: ଆଛା ହେଉ, ଏ ବିଷୟରେ ଅନ୍ୟ ସମୟରେ କହିବି । ମୁଁ ଏହାକୁ General Administration ବୋଲି ଭାବିଥିଲି । ବର୍ତ୍ତମାନ ମୁଁ କହୁଛି separation of Judiciary from the Executive. ଏଇଟା ଏହା ଭିତରେ ଅଛି କି ନାହିଁ ?

The Hon'ble SPEAKER: ଏଇଟା ମଧ୍ୟ ଏଠାରେ ଆଲୋଚିତ ହୋଇ ପାରିବ ନାହିଁ । ଯେତେବେଳେ ବଜେଟ ଆଲୋଚନା ହେବ, ସେତେବେଳେ ଆପଣ ଏ ବିଷୟରେ କହିବେ ।

ଶ୍ରୀ ନୀଳକଣ୍ଠ ଦାସ: ବର୍ତ୍ତମାନ ମୁଁ black-marketing ବିଷୟରେ ଦୁଇ ଗୁରିପଦ କହିବାକୁ ଗ୍ରହୁଁଛି । ଏ କଥା ଏହା ଭିତରେ ଅଛି କି ନାହିଁ ? (ହାସ୍ୟରୋଳ)

The Hon'ble SPEAKER: ଚେୟାର କ'ଣ ପ୍ରତ୍ୟେକ ବିଷୟ ଅଛି କି ନାହିଁ କହିବେ ? (ହାସ୍ୟରୋଳ) ଯେଉଁ ବିଷୟ Demand ଭିତରେ ଅଛି ସେ ବିଷୟ ଏଠାରେ ଆଲୋଚିତ ହୋଇପାରିବ, ନ ହେଲେ ହୋଇପାରିବ ନାହିଁ ।

## 6. 1952-53 ବର୍ଷ ଅନୁଦାନ ଦାବି ଉପରେ ଭୋଟଦାନ

## (Voting on Demands for grants for the year, 1952-53)

ପଣ୍ଡିତ ନୀଳକଣ୍ଠ ଦାସ ସରକାରଙ୍କ କେତେକ ବ୍ୟୟଦାବି ଉପରେ ନିଜର ଅସମ୍ମତି ପ୍ରକାଶ କରି ଏହି ଦାବିକୁ ମାତ୍ର ଟ100.00 କୁ ହ୍ରାସ କରିବାକୁ ପ୍ରସ୍ତାବ କରି କର ଆଦାୟ ଓ ଧାର୍ଯ୍ୟନୀତି ଉପରେ ଆଲୋଚନା କରିଛନ୍ତି । ଏଥିରେ ସେ ବିସ୍ତୃତ ଓ ବିଭିନ୍ନ କରଧାର୍ଯ୍ୟ ଓ ଆଦାୟ ଉପରେ ନିଜର ମନ୍ତବ୍ୟ ଦେଇଛନ୍ତି । ସେ ପ୍ରଥମରୁ ସ୍ପଷ୍ଟ କରି ଦେଇଛନ୍ତି, "ମୁଁ ନୀତି ଓ ଆଦର୍ଶ କଥା କହୁଛି । ସେ ସମ୍ବନ୍ଧରେ କହିବାକୁ ଗଲାବେଳେ

ମୁଁ କହିବି ଯେ ସରକାର ଉତ୍ତରାଧିକାରୀ ସୂତ୍ରରେ ଯାହାସବୁ ପାଇଛନ୍ତି, ତାହାସବୁ ବ୍ରିଟିଶ୍‌ଠାରୁ । ସେହି ବ୍ରିଟିଶ୍ ସରକାରଙ୍କ ପରଂପରା ଅନୁସରଣ କରିବାକୁ ଆମେ ଆଦୌ ଛାଡ଼ିପାରୁ ନ ଥାଇଁ ।"

କର ଧାର୍ଯ୍ୟ ଓ ଆଦାୟରେ ସେଇ ପରାଧୀନ ଭାରତର ସରକାରୀ ନୀତି ଅବଲମ୍ବନ କରାଯାଉଛି ବୋଲି ତାଙ୍କର ଅଭିଯୋଗ । ପରିବର୍ତ୍ତିତ ପରିସ୍ଥିତିର କଳ୍ପନା ନକରି ଆମେ ଗତାନୁଗତିକ ଭାବରେ ସବୁ କରୁଯାଉଛୁ। ଏହା ଫଳରେ ବ୍ୟକ୍ତି ସ୍ୱାଧୀନତା ଓ ଗଣତାନ୍ତ୍ରିକ ନୀତିରେ ଜଳାଜଂଳି ଦିଆଯାଉଛି । ସେ ଯଥାର୍ଥରେ କହିଛନ୍ତି, "ଅନେକ ସମୟରେ ଆମେ ଅନୁକରଣ କଲାବେଳେ ଭଲ ଛାଡ଼ି ଖରାପ ଅନୁସରଣ କରୁ । ନିଜେ ଯାହାକି କରୁ ତାହା କି ସଂଶୋଧନ ଆକାରରେ କରିପାରୁ ନାହିଁ ।" ପ୍ରତ୍ୟକ୍ଷ ଓ ପରୋକ୍ଷ କର ଏବଂ ଏହି ଦୁଇଟି କର ଧାର୍ଯ୍ୟ ଓ ଆଦାୟ ମଧ୍ୟରେ ଥିବା ପାର୍ଥକ୍ୟକୁ ସେ ପରିଷ୍କାର କରି କହିଛନ୍ତି । ଲୋକସ୍ୱାର୍ଥ ବିରୁଦ୍ଧରେ ଗଲେ ମଧ୍ୟ ଅଧିକାରୀଗଣଙ୍କୁ କର ସଂଗ୍ରହ କରିବାକୁ ବାଧ୍ୟ କରାଯାଉଛି । ସେଥିରୁ କେତେକ ପ୍ରଚଳିତ ଆଇନ ବିରୁଦ୍ଧ ହେଲେ ମଧ୍ୟ କରଯାଉଛି । ସେ ଏହି ପ୍ରସଂଗରେ ମତ ଦେଇଛନ୍ତି, "ଆମେ ତ ଘଣ୍ଟାକେ ୧୦ ଟା କେଶ ଯଦି କରିଦେବୁ, ତାହାହେଲେ Promotion ପାଇବୁ । ଆପଣ ଶତକଡ଼ା ୯୦ଟି କେଶ ଡ଼ିସ୍‌ମିସ କରିଦେବେ କରନ୍ତୁ । କ'ଣ ଆମର ଭାସିଯିବ ?" ଏହି ହେଲା ଆମ ଅଧିକାରୀ ମାନଙ୍କ ମନୋବୃତ୍ତି ।

ନୀଳକଂଠ ସେମିତି ବିକ୍ରିକର (Sales Tax)କୁ ସର୍ବଦା କିଣାକର (Purchase Tax) ବୋଲି କହିବାକୁ ଠିକ୍ ମନେ କରିଛନ୍ତି । ସେ ବ୍ୟଂଗ ତଥା କଟାକ୍ଷପାତ କରି କହିଛନ୍ତି, "ଏପରି (Purchase Tax) ଦେଖିଲେ ମନେହୁଏ । ଜିଜିୟା' ବଂଦ ହୋଇ ନାହିଁ, ଆମ Union ର ସବୁ State ନିଜର ବୁଭୁକ୍ଷା ନିବାରଣ ପାଇଁ, ଆମେ ପ୍ରତ୍ୟେକ କିଣିବା । ହାଟ ବଜାର, ଦୋକାନରେ ମାଗୁଥାଇଁ ହେ, ଟଙ୍କାକର କିଣିଲୁ ଏ ଦୋକାନରୁ ଚାରି ପଇସା ସରକାରଙ୍କୁ ଦେଇଯା । ସେ ଯଦି ପଚାରିଲା ଏଇଟା କ'ଣ ? ତାକୁ କୁହାଯାଉଛି ଏଇଟା Sales Tax ବା ବିକ୍ରିକର । ସେ ବୁଝୁଛି ଏହା ବିକ୍ରି କର ନୁହେଁ ଯଥାର୍ଥରେ କିଣାକର ।" ଏହାର ଉତ୍କଟତା ମଧ୍ୟ ଓଡ଼ିଶାରେ ସର୍ବାଧିକ । ତେଣୁ ସେ ଏହାକୁ ଜିଜିୟାକର ବୋଲି ବ୍ୟଂଗ କରି କହିଛନ୍ତି । "ଆମକୁ ବଂଚିବାକୁ ହେଲେ କିଣିବୁ ଆଉ କିଣିଲେ Tax ଦେବୁ । ତା ହେଲେ ଆମେ ଜାଣିବୁ ଯେ ଏ ଗୋଟିଏ ଜିଜିୟା । ମୁସଲମାନମାନଙ୍କ ସମୟରେ ଏହା ଗୋଟିଏ ପ୍ରକାର ଥିଲା, ଏ ଆଉ ଗୋଟିଏ ପ୍ରକାରର । ଯେଉଁମାନେ ସେତେବେଳେ ଥିଲେ, ସେମାନେ ଧର୍ମ ବିଷୟରେ ଭୁଲବଶତଃ କରିଥିଲେ । ବର୍ତ୍ତମାନ ଆମେ ଆଉ ଗୋଟିଏ ଭୁଲ କରୁଛୁ ।"

ଗ୍ରାମ ପଞ୍ଚାୟତଗୁଡ଼ିକ କର ଧାର୍ଯ୍ୟ ଓ ସଂଗ୍ରହ କରିବାରେ ଦାୟିତ୍ୱ ଦିଆଯିବା ଉଚିତ ବୋଲି ନୀଳକଂଠଙ୍କର ମତ । ସେଗୁଡ଼ିକୁ କିପରି ଅଧିକ ସକ୍ରିୟ କରିବାକୁ ହେବ, ସେଥିପାଇଁ ତାଙ୍କର ପରାମର୍ଶ ମଧ୍ୟ ବିଶେଷ ଗୁରୁତ୍ୱପୂର୍ଣ୍ଣ । " ପୂର୍ବରୁ ଯେପରି ଟିକସ ଆଦାୟ କରି କେନ୍ଦ୍ରକୁ ଦେଉଥିଲେ , ସେହିପରି କରିପାରିବେ । ତାହା ବିଗ୍ଭର କରନ୍ତୁ । ଭୟ କରିବା ଦରକାର ନାହିଁ ଯେ ପଂଚାୟତଗୁଡ଼ିକ ଭଲ କାମ କରିପାରିବେ ନାହିଁ, ଲୋକଙ୍କ ଉପରେ ଅତ୍ୟାଗ୍ଭର କରିବେ । ଆମେ ତାହେଲେ ସରକାର କାହିଁକି ଗଢ଼ିଛୁ ?" ପଂଚାୟତଗୁଡ଼ିକୁ ଦାୟିତ୍ୱସଂପର୍ଣ୍ଣ ଓ ବିଶ୍ୱାସଭାଜନ କରିବାକୁ ହେବ । ଅର୍ଥ ବ୍ୟବସ୍ଥାରେ ଗ୍ରାମ ପଞ୍ଚାୟତକୁ ଅଧିକ ସଂବେଦନଶୀଳ ଓ କର୍ମଠ କରିବାକୁ ହେବ । ନୀଳକଂଠଙ୍କ କଥାର ସତ୍ୟତା ଓ ଯଥାର୍ଥତା ସଂପ୍ରତି ପଂଚାୟତରାଜ ଆଇନରେ ଯେଉଁ ଅଧିକ ସମ୍ବଳ ସଂଗ୍ରହର ବ୍ୟବସ୍ଥା ରହିଛି, ସେଥିରୁ ପ୍ରମାଣିତ ହୁଏ । ଶେଷରେ ସେ ପରାମର୍ଶ ଦେଇଛନ୍ତି ଓ ଆଶା ପ୍ରକାଶ କରିଛନ୍ତି, "...............ଦେଶ କେମିତି ବଢ଼ୁ । ରାଜ୍ୟ କେମିତି ରହୁ । ଆମର ଭବିଷ୍ୟତ କେମିତି ଉଜ୍ଜ୍ୱଳ ହେଉ । ଆମେ ସମସ୍ତେ କେମିତି ଲୋକପ୍ରିୟ ହୋଇ ଲୋକଙ୍କର କାର୍ଯ୍ୟ କରିବା । ଏହି ଭାବରେ ମୁଁ କହୁଛି, ଏହି ଭାବରେ ସରକାର ଗ୍ରହଣ କରନ୍ତୁ ।"

ଶ୍ରୀ ନୀଳକଣ୍ଠ ଦାସ : Sir, I beg to move that the demand be reduced to Rs. 100 to discuss the method and principles of levy and realisation of taxes. ମୁଁ ବେଶୀ କଥା କହିବି ନାହିଁ । କେବଳ ଗୋଟିଏ ଦୁଇଟି କଥା କହିବି । କହିବା ପୂର୍ବରୁ ମୁଁ ଗୋଟିଏ କଥା କହିବି ଯାହାକି ଏ ସମ୍ବନ୍ଧରେ ନୁହେଁ ଆଜି ମାଇକ୍ ବନ୍ଦ ହେବାରୁ ଆମେ ଭଲ ଶୁଣି ପାରୁଛୁ । ମୁଁ ଆଜି ସେ ପାଖରେ ବସି ଶୁଣି ଥିଲି, ଭଲ ଶୁଭୁଥିଲା । କିନ୍ତୁ ଏ ପାଖରେ ବସି ଆମେ କିଛି ଶୁଣିପାରୁ ନାହୁଁ । ବୋଧହୁଏ ମାଇକ୍‌ରେ ଏପରି କିଛି ହୋଇଛି ଯାହାଦ୍ୱାରା କି ଏପରି ଅସୁବିଧା ହେଉଛି । ସେଥିପାଇଁ ଆମେ କୌଣସି ଜାଣିବା ଲୋକକୁ ଡ଼କାଇ ଆଣି ଠିକ୍ କରି ଦେବା ଭଲହେବ ।

ଆଉ ଗୋଟିଏ କଥା ଆପଣ ଉପମନ୍ତ୍ରୀଙ୍କୁ କହିଲା ବେଳେ କହିଛନ୍ତି । ସେଥିରେ ଆମର ଅସୁବିଧା ହେବ । ମୁଁ ସେହିଟା ବୁଝାଇ କରି କହିଦିଏଁ । ଆପଣ କହିଲେ ଯେ ଦ୍ୱିତୀୟ ପୁରୁଷ ବେଶୀ ବ୍ୟବହାର କରିବେ ନାହିଁ । ବୋଧହୁଏ ଆପଣ ମଧ୍ୟମ ପୁରୁଷ ମନେକରୁଛନ୍ତି । ଇଂରାଜୀରେ 'you' 'ତୁମେ' ଓ ଆପଣ ଏ ଭିତରେ ଯିବ । ଆମେ ସାଧାରଣତଃ ତାହା ଇଂରେଜିରୁ ଅନୁବାଦକରୁ । ଆପଣଙ୍କୁ ମୁଁ ବୁଝାଇ ଦେବାକୁ ଗ୍ଭହେଁ, ଇଂରାଜି ୨ୟ ପୁରୁଷ ଅନୁବାଦକଲେ ଓଡ଼ିଆରେ ଆମର ସେଇଟା ହେଉଛି ମଧ୍ୟମ ପୁରୁଷ । ମାତ୍ର ତାହା ଏଠାରେ impersonal use ହେଉଛି । ଏହା ଓଡ଼ିଆରେ ଅନୁବାଦକଲେ ହେବ ଯେ ପୁରୁଷତ୍ୱହୀନ ପୁରୁଷ, ମୁଁ ଅନେକ ସମୟରେ ବ୍ୟବହାର କରେ 'ତୁମେ' ଓ ଆପଣ ବି ହୋଇପାରେ । କିନ୍ତୁ ତାହା ଆପଣଙ୍କର ୨ୟ ପୁରୁଷ ନୁହେଁ ମୁଁ ତାହା ବେଶୀ ବ୍ୟବହାର କରେ ।

ବର୍ତ୍ତମାନ ଆଉ ମୁଁ ଗୋଟିଏ କଥା କହିବି ଯେ, ମୁଁ କହିଲାବେଳେ ଦରକାର ନ ପଡ଼ିଲେ କୌଣସ ବ୍ୟକ୍ତି ବିଶେଷଙ୍କ କଥା ବା କୌଣସି ଘଟଣା କଥା ଉଲ୍ଲେଖ କରୁନାହିଁ । ସେଥିରେ ମୁଁ ଦେଖୁଛି ଅପେକ୍ଷା କରୁଛି ଆମ ସରକାର ବୋଧହୁଏ ବିଶେଷ କିଛି ସେ ବିଷୟରେ ବିଗ୍ୱର କରୁଛନ୍ତି କି ନାହିଁ । ତଥାପି ମୁଁ ସେପରି ଭାବରେ କରୁଛି ମୁଁ ବର୍ତ୍ତମାନ ଦେଖୁଛି, ଦେଶଟା ନୂଆହୋଇ ଗଢ଼ାହେବ, ମୋତେ କେତେଗୁଡ଼ାଏ କଥା ଲାଗୁଛି ଯେ ଏହିପରି କରି ଦେଲେ ଭଲହୁଅନ୍ତା । ମୁଁ ଅନୁରୋଧ କରୁଛି ଯେ ସରକାର ଏଠି ଯାହା ଉତ୍ତର ଦିଅନ୍ତୁ ନା କାହିଁକି ସେଇ କଥାଟାପ୍ରତି ଦୃଷ୍ଟି ଦେବେ । ଏଠି ଉତ୍ତର ଦେଉଛନ୍ତି ବୋଲି ମୁଁ ଆଶାକରୁ ନାହିଁ ଯେ ସେମାନେ ଦୃଷ୍ଟି ଦେଉ ନାହାଁନ୍ତି । ମୁଁ ନୀତି ଓ ଆଦର୍ଶ କଥା କହୁଛି । ସେ ସମ୍ବନ୍ଧରେ କହିବାକୁ ଗଲାବେଳେ ମୁଁ କହିବି ଯେ ସରକାର ଉତ୍ତରାଧିକାରୀ ସୂତ୍ରରେ ଯାହାସବୁ ପାଇଛନ୍ତି ତାହାସବୁ ବ୍ରିଟିଶଠାରୁ । ସେହି ବ୍ରିଟିଶ ସରକାରଙ୍କ ପରମ୍ପରା ଅନୁସରଣ କରିବାକୁ ଆମେ ଆଦୌ ଛାଡ଼ି ପାରି ନ ଥାଇଁ । ଏଇଟା ଆମେ ସ୍ୱୀକାର କରିବା ଯେ, ଆମେ ଯାହା କରିବାକୁ ଗଲେ ବି ସେଇ ଅନୁକରଣ କରୁଛୁ । ଆମେ taxation କରିବାରେ ମଧ୍ୟ ସେଇଆ କରିଛୁଁ । ସବୁଥିରେ ଯେପରି ଅନକରଣ କରୁଛୁ ଏଇ taxationରେ ମଧ୍ୟ ସେହିପରି ଅନୁକରଣ କରୁଛୁ ନିଜ ପରିସ୍ଥିତିକୁ କଳନା ନ କରି । ଅନେକ ସମୟରେ ଆମେ ଅନୁକରଣ କଲାବେଳେ ଭଲ ଛାଡ଼ି ଖରାପ ଅନୁସରଣ କରୁ । ନିଜେ ଯାହା ବି କରୁ, ତାହାବି ସଂଶୋଧନ ଆକାରରେ କରିପାରୁ ନାହୁଁ । ଆମର ସାଧାରଣରେ ଦୁଇ ପ୍ରକାର କର ଅଛି, ଗୋଟିଏ ହେଉଛି direct tax, ଅନ୍ୟଟି ହେଉଛି indirect tax, ଯଥା—ସାକ୍ଷାତ କର ବା 'ବଳି', ଅନ୍ୟଟି ହେଉଛି ଅସାକ୍ଷାତ କର ଯାହାକି ଲୋକେ ନ ଜାଣି ଦିଅନ୍ତି । ଲୋକଙ୍କର ଦେଶାତ୍ମବୋଧ ପ୍ରତିଷ୍ଠିତ ନ ଥିଲେ ସାକ୍ଷାତ କର ସରକାର ପକ୍ଷରେ ବିପଜ୍ଜନକ । ଇଂରେଜ ସରକାର income-tax ନେଲେ ବହୁତ ଦିନପରେ ତାହା ପୁଣି ଯେଉଁମାନେ ଦେଇ ପାରିବେ ତାଙ୍କଠୁ ନେଲେ । ତୋଦରମଲ ସମୟରେ ଯେଉଁ land rent ହେଲା ସେଟା ଭୂମି 'ବଳି' ନୁହେଁ । ତାହା ରାଜସ୍ୱ । ରାଜାଙ୍କର ଭୂମିରେ ଯେଉଁ ସ୍ୱତ୍ୱ ସେଇ ସ୍ୱତ୍ୱ ପାଇଁ ସେଇଟା ନିଆହେଲା, ସେଇଟା ଠିକ ଭୂମି ଆୟର 'ବଳି' ନୁହେଁ । ବିଦେଶୀ ସରକାର, ଇଂରେଜିମାନେ ସେଇ ମୋଗଲ ରୀତି ଅନକରଣ କରିନେଲେ, ରେଭିନ୍ୟୁ ଓ ରେଣ୍ଟ ଏହା ସାକ୍ଷାତ କର—ପରଂପରାରେ ଥିଲା । ସେମାନେ ଅପ୍ରିୟ ହୋଇଯିବେ ବୋଲି ଭାବି ଆଉ ଏପରି ସାକ୍ଷାତ କର ପ୍ରାୟ ନେଉ ନ ଥିଲେ । ବର୍ତ୍ତମାନ ଆମେ ବ୍ୟାକୁଳ ହୋଇ ସାକ୍ଷାତ କର ନେବା ଆରମ୍ଭ କରି ଦେଇଛୁ । ସାକ୍ଷାତ କର ଭିତରେ ଗୋଟିଏ ହେଉଛି Agricultural Income-tax, ଏଇ Agricultural Income-tax ଦ୍ୱାରା ଆମର ଯେ ଅସୁବିଧା ହେବ ଏକଥା ସରକାର ବୁଝିକରି ବୁଝୁ ନାହାଁନ୍ତି । ଏ ଗୋଟିଏ ସାକ୍ଷାତ କର ବସାହେଲା । ତାକୁ କିପରି ବସାଉଛନ୍ତି ତାହା କିପରି ଆଦାୟ କରୁଛନ୍ତି ତାହାପ୍ରତି ସରକାର ଆଦୌ ମନ ଦେଉ ନାହାଁନ୍ତି । ସତ କି ମିଛ ମୁଁ ଜାଣି

ନାହିଁ । ସରକାର ଅନୁସନ୍ଧାନ କରନ୍ତୁ । ମୁଁ ଯାହା ଜାଣେ confidentially Revenue Department ପ୍ରତ୍ୟେକ ଅଞ୍ଚଳର ଅଫିସରମାନଙ୍କ ପାଖକୁ ଲେଖିଛନ୍ତି ଯେ ଏତେ ଲକ୍ଷ ଏତେ ହଜାର ତୁମକୁ କର ବସାଇବାକୁ ହେବ । ଏଇ କଥାଟି ମିଛ ହେଲେ ମୁଁ ବଡ଼ ସୁଖୀ ହେବି । କିନ୍ତୁ ମୋର ବିଶ୍ୱାସ ଏହା ଭିତରେ କିଛି ସତ୍ୟ ଅଛି ଯେକୌଣସି ମତେ ଆଦାୟ ନ ଦେଖାଇଲେ ତାଙ୍କ ଉପରେ black mark ହୋଇଯିବ । ପୂରୀ ଜିଲ୍ଲାରୁ ବୋଧହୁଏ କୋରାପୁଟକୁ transfer ହୋଇଯିବ । କୋରାପୁଟ transfer ହେଲେ ସେ ଆଦିବାସୀଙ୍କ ଭିତରେ କାଦୁଅ ଘାଣ୍ଟିବେ, ଏ ଭୟ ସେମାନଙ୍କର ଅଛି । ତାବାଦ୍ ମୁଁ ବି ଶୁଣୁଛି ଯେ ଅଫିସରମାନେ ବସିକରି ଯାହା ଇଚ୍ଛା ତାହା କରୁଛନ୍ତି । ଗୋଟିଏ case କଥା ମୁଁ ଶୁଣିଥିଲି । ଜଣେ ଅଫିସର ଟ୍ୟାକ୍ସ ବସାଇ ଦେଲେ, ତାଙ୍କୁ ଆଉ ଜଣେ ପଚାରିଲେ ହଇହେ ତମେ ଏପରି କଲ ଏତ ଭୁଲ ହୋଇଗଲା । ତାର ଭାଗଚାଷର ଅଧେ ଆଦାୟ ଉପରେ ତୁମେ ଟ୍ୟାକ୍ସ ବସାଇ ଦେଲ । କିନ୍ତୁ ଭାଗଚାଷ ଆଇନରେ ଅଛି ୫ ଭାଗରୁ ୨ ଭାଗ । ଏହା କିପରି କରିଦେଲ ? ସେ ଉତ୍ତର ଦେଲେ ଯଦି ଭାଗଚାଷର ଅଧେ ଉପରେ ଆଦାୟ ନ କରାଯାଏ, ତାହାହେଲେ ୫ ହଜାର ଆୟ କମିଯିବ । ସେ ପଚାରିଲେ courtକୁ ଗଲେ ଅବସ୍ଥା କଣ ହେବ ? ଏହି କଥା କୌଣସି District Judge ଶୁଣିପାରିଲେ, ଜଜମାନେ ଏପରି କଥାକୁ ତ ସହଜ ଭାବରେ ନେବେ ନାହିଁ ଯେଉଁ Administrative ଅଫିସରମାନେ ଅଛନ୍ତି ସେମାନେ I. A. S. ହୁଅନ୍ତୁ ବା ଯେକୌଣସି ଅଫିସର ହୁଅନ୍ତୁ ତାଙ୍କର ତ ଆଇନ ବିଚାର ସଙ୍ଗେ ସଂପର୍କ ନାହିଁ କି ବିଚାରକୁ ଖାତର ନାହିଁ । କଥାବାର୍ତ୍ତା ହେଲାବେଳେ ଜଜ କହିଲେ ଆପଣ case ଗୁଡ଼ାକ ଏପରି କରୁଛନ୍ତି, ଠିକ୍ ବିଚାର କରୁନାହାନ୍ତି, ବୁଝିକରି କରୁ ନାହାନ୍ତି, ଏଇଟା କଣ କରିବା ଉଚିତ ? ସେ ଅଫିସର ତାଙ୍କୁ କହିଲେ ଆଜ୍ଞା, କାହିଁକି ଆମକୁ କହୁଛନ୍ତି, ଆମେ ତ ଘଣ୍ଟାକେ ୧୦ଟା କେଶ୍ ଯଦି କରିଦେବୁ ତାହାହେଲେ promotion ପାଇବୁ । ଆପଣ ଶତକଡ଼ା ୯୦ଟି କେସ୍ ଡ଼ିସମିସ୍ କରିଦେବେ, କରନ୍ତୁ କଣ ଆମର ଭାସିଯିବ । ଆମେ ଠିକ୍ ଅଛୁଁ, ଆମେ କଣ ଏ କଥା ବୁଝି ନାହୁଁ । ଏହିପରି ହେଲେ ଅବସ୍ଥା କଣ ହେଉଥିବ । ସରକାର ଏହିପରି ସବୁ କରି କରାଉଛନ୍ତି । ଏଣେ କହୁଛନ୍ତି Communist କରି ଦେଉଛନ୍ତି, Socialist କରି ଦେଉଛନ୍ତି, ଏମାନେ ସବୁ କହିକରି ଗଛ କଟାଇ ଦେଉଛନ୍ତି, ସବୁ ଗୋଳମାଳ ଭିଆଉଛନ୍ତି ଏହିପରି ସବୁ କହିଲେ କଣ ହେବ ? ଏହିସବୁ କାର୍ଯ୍ୟକଳାପଯୋଗୁଁ ଲୋକଙ୍କର ରନ୍ଧ୍ରେ ରନ୍ଧ୍ରେ ସରକାରଙ୍କପ୍ରତି ଅପ୍ରିୟତା ପଶିଯାଉଛି । ଅଥଚ ଅନ୍ୟ ଉପରେ ଦୋଷ ଦେଉଛନ୍ତି ।

ତାପରେ ଦ୍ୱିତୀୟ କଥା ହେଉଛି sales tax, ଏ ଗୋଟିଏ ଅପରାଧ । Sales taxର ନିୟମ କଣ ମୁଁ ଜାଣେ ନା । ମୁଁ ଅବଶ୍ୟ ସେଟା ପଢିନାହିଁ । ଆମର ଯେ sales taxଟା ଟା State list ର ୫୪ । ଏଇଟା ଆପଣ ଦେଖିବେ ଯେ ୧୯୫୩ରେ ଏହା ନଥିଲା । ଆମେସବୁ ଅନୁକରଣ କରୁଛୁ । ବହୁତ ଅନୁକରଣ କରି ମଧ୍ୟ ଆମେ Constitution ତିଆରି କରିଛୁ । କିନ୍ତୁ ଇଂଲଣ୍ଡରେ ଏହା ନାହିଁ । ଆମେ ଏହା ଗୋଟିଏ ନୂତନ କଲୁ ।

ଏହି ବିଷୟରେ ମୁଁ Constituent Assembly ର Proceeding ପଢି ନାହିଁ । ଆମର ଯେତେବେଳେ Constituent Assembly ସଂବିଧାନ ତିଆରି କଲେ, ସେମାନେ ବୋଧହୁଏ ଭାବି ନ ଥିଲେ sales tax, purchase tax ହେବବୋଲି । ବୋଧହୁଏ ମନେକରାଯାଇଥିଲା, ଇଉନିଅନ ଭିତରେ ଏକ ଷ୍ଟେଟର ବେପାରି ନିଜ ଷ୍ଟେଟରେ ବିକିବା ପାଇଁ ଅନ୍ୟ ଷ୍ଟେଟକୁ ଚିନି, ଲୁଗା ପ୍ରଭୃତି ପରି ଜିନିଷ କିଣିଲାବେଳେ ପରଚେଜ୍ ଟ୍ୟାକ୍ସ ଦେବେ । ସେଇ ଦୃଷ୍ଟିରେ ଷ୍ଟେଟ ଲିଷ୍ଟର 54 ଦଫାରେ ଏହା ସ୍ଥାନ ପାଇଥିଲା । ତା' ନହେଲେ ଦୋକାନରେ ପ୍ରତ୍ୟେକ କିଣାଳୀଠାରୁ ଯଦି purchase tax ନିଆଯାଏ, ଏହା ଗୋଟିଏ ବିଭତ୍ସ ପରିସ୍ଥିତି ସୃଷ୍ଟି କରିବ । Pri ate କିଣାଳୀ ଠାରୁ purchase tax ହେଉଛି, 'ଜିଜିଆ' ପରି ଗୋଟିଏ ମୁଣ୍ଡକର—ଏପରି urchase tax ଦେଖିଲେ ମନେ ହୁଏ 'ଜିଜିଆ' ବନ୍ଦ ହୋଇ ନାହିଁ । ଆମ Union ର ସବୁ State ନିଜର ବୁଭୁକ୍ଷା ନିବାରଣ -ପାଇଁ ଆମେ ପ୍ରତ୍ୟେକ କିଣିବା । ହାଟ ଦୋକାନି,ବଜାରରେ ମାଗୁଥାଇଁ—ହେ ଟଙ୍କାକର କିଣିଲୁ ଏ ଦୋକାନରୁ—ଗ୍ଚରି ପଇସା ସରକାରଙ୍କୁ ଦେଇଯା, ସେ ଯଦି ପଚ୍ଚାରିଲା ଏଇଟା କଣ ? ତାକୁ କୁହାଯାଉଛି, ଏଇଟା sales tax ବା ବିକ୍ରିକର । ସେ ବୁଝୁଛି ଏହା ବିକ୍ରିକର ନୁହେଁ, ଯଥାର୍ଥରେ କିଣାକର । ସରକାରଙ୍କର ପୁଣି ଏଇ କିଣାକର ଉପରେ ମାଡ଼ବେଶି—ବିକ୍ରିକର ନାମରେ, ଏହା ପଇସାକରୁ ବାହାରି ଗ୍ଚରିପଇସାକୁ ଆସିଲାଣି ! କିଣିବା ଲୋକର ଏକ ସଲାମି । ସେ କାହିଁକି ବଞ୍ଚିଛି, କାହିଁକି କିଣଛି ଏଥିପାଇଁ ସଲାମି Sales tax, States tax ହେବାର କଥା । କିନ୍ତୁ ଏହା ନିଆଯାଉଛି କିଣିବା ଲୋକଠାରୁ ଏହା ଅତି ଅସଂଗତ । ଏହା କଣ ହୁଏ ? ଏ କଣ ସ ତ ଜିଜିଆ ବଞ୍ଚିବାପାଇଁ ଟିକସ ? ମୁଁ ଏଦେଶରେ ରହିବି ବୋଲି ଟିକସ ଦେବି, ପାଣି ପବନ ପାଇଁ ଟିକସ ଦେବି, କଣଏ ? ମୁ କହୁଛି ଏଇଟା କେବେ ନିଅନାହିଁ । ସରକାର ପକ୍ଷରେ ଏହାଠାରୁ ଅପ୍ରିୟ ଜିନିଷ ପୃଥିବୀରେ ଆଉ କିଛି ନାହିଁ । Sales tax ଅର୍ଥ ହେଉଛି ଯେଉଁମାନେ ଲାଭ କରୁଛନ୍ତି ସେମାନଙ୍କଠାରୁ ଗୋଟିଏ ଅଂଶ ସରକାର ନେଇଯିବେ ତାହା ପେର ବିଗ୍ଚର କରି ଏପରି ଭାବରେ ନେବେ ଯେ, ଇଂରେଜୀରେ କଥାଟା ହେଉଛି that can not be easily transferred to the consumer ଅର୍ଥାତ୍ କିଣବା ଲୋକ ଉପରକୁ ସେ tax ଟା ଫିଙ୍ଗି ଦେଇ ନ ହେବ । ଅତଏବ purchase ର ଯଦି କିଛି ଅର୍ଥ ଥାଏ ସେଇଟା ହେଉଛି ଯେକୌଣସି State ଅନ୍ୟ State ରୁ hase କଲେ ସେଇଟା purchase tax ବା sales tax. ସେହି ଅର୍ଥରେ ବୋଧହୁଏ ଏହା Madras ସମ୍ପର୍କରେ, Bombay ସଂପର୍କରେ ହୋଇଥିଲା କିନ୍ତୁ ଆମ Constitution ରେ ସେଇଟା କେମିତି ଭୁଲରେ ହୋଇଯାଇଛି ।

The SPEAKER : Sales tax ଆମର ସଂବିଧାନରେ ଅଛି । Sales tax Administration ବିଷୟରେ ଯଦି କିଛି ଦୋଷ ତ୍ରୁଟି ଥାଏ ମାନ୍ୟବର ସଭ୍ୟ ସେ ବିଷୟରେ ଆଲୋଚନା କରି ପାରନ୍ତି । କିନ୍ତୁ sales tax ବିଧାନ ନେଇ ସନ୍ନିଧାନକୁ

criticise କରି କିଛି କହିବେ ନାହିଁ । That will be decided in the Indian Parliament.

ଶ୍ରୀ ନୀଳକଣ୍ଠ ଦାସ: ବିଧାନର ବ୍ୟାଖ୍ୟା Courtରେ, Legislative Assembly ରେ ସବୁଠାରେ ହୋଇପାରିବ । ମୁଁ ବ୍ୟାଖ୍ୟା କରୁଛି । ସମ୍ବିଧାନର ସମାଲୋଚନା କରୁନାହିଁ । ଏହି ଭାବରେ କଗ ହୋଇଥିଲା ବୋଲି ମୁଁ କହୁଛି । ଅବଶ୍ୟ ମୁଁ ସେ କାଳର Proceedings ପଢ଼ିନାହିଁ । ମୁଁ ଅନୁମାନ କରୁଛି purchase ଅର୍ଥ ଆମେ ଯେମିତି ନେଇଛୁ ତାହା ନୁହେଁ, ଯଦି ତା'ହୁଏ ମୁଁ ସରକାରଙ୍କୁ କହୁଛି ଏଇଟାକୁ ବଝନ୍ତୁ, କି ଭାବରେ ଏଇଟା କରାହୋଇଛି । ତା ନ ହେଲେ ସରକାର ଅପ୍ରିୟ ହେବେ । ମୁଁ ସେ କଥା କହୁଛି । ମୁଁ ସରକାରଙ୍କ ସମାଲୋଚନା କରୁନାହିଁ । ଏ tax purchase ଉପରେ ନ କରି sale ଉପରେ କରିବା ପାଇଁ କହୁଛି । ବିକିବା ଲୋକଠାରୁ ସେ tax ନିଆଯାଉ । S. T. ବା sales tax ବୋଲି ଲେଖାଯାଉଛି । କିନ୍ତୁ sales man ଠାରୁ ତ ସେ ନିଆଯାଉନାହିଁ । Saes tax ଆମେ ଦେଉଛୁ । ପ୍ରତ୍ୟେକ purchaserଠାରୁ ଯେତେବେଳେ ଏଇଟା ନିଆଯାଉଛି, ଏହା sales tax କିପରି ହେଲା ? Sales ଉପରେ tax ନିଆହେଲାନାହିଁ । Purchase tax ବୋଲି ଲେଖିଦିଅ । ତା' ହେଲେ ଆମେ ଜାଣିବୁ ଆମ ପ୍ରଦେଶରେ ଏପରି ହେଲା । ଆମକୁ ବଞ୍ଚିବାକୁ ହେଲେ କିଣିବୁ ଆଉ କିଣିଲେ tax ଦେବୁ । ତା' ହେଲେ ଆମେ ଜାଣିବୁ ଏ ଗୋଟିଏ ଜିଜିୟା । ମୁସଲମାନମାନଙ୍କ ସମୟରେ ଏହା ଗୋଟିଏ ପ୍ରକାର ଥିଲା, ଏ ଆଉ ଗୋଟିଏ ପ୍ରକାରର । ଯେଉଁମାନେ ସେତେବେଳେ ଥିଲେ ସେମାନେ ଧର୍ମ ବିଷୟରେ ଭୁଲବଶତଃ କରିଥିଲେ, ବର୍ତ୍ତମାନ ଆମେ ଆଉ ଗୋଟିଏ ଭୁଲ କରୁଛୁ ।

The SPEAKER: ମାନ୍ୟବର ସଭ୍ୟ କଣ କହିବାକୁ ଚାହାନ୍ତି ଯେ ଏ ରକମ Tax Constitutionର ultra vires ?

ଶ୍ରୀ ନୀଳକଣ୍ଠ ଦାସ: ମୁଁ ଯୁକ୍ତି କରୁନାହିଁ । ମୁଁ କହୁଛି ultra vires କି ନାହିଁ ଦେଖନ୍ତୁ । Sales ଉପରେ ନ କଲେ ନାହିଁ । Purchase ଉପରୁ ଉଠାଇ ଦେଲେ ଆମକୁ ତ Constitution ନାହିଁ କରୁ ନାହିଁ । Constitution ରେ ଏତେ ଯେ tax ଅଛି ଆମେ କଣ ସବୁ ବସାଇଛୁ ? ଏଇଟା ନ ହେଲେ କିଛି କ୍ଷତି ନାହିଁ । ମୁଁ କଣ ଓକିଲ ହୋଇଛି ? Costitution ଆଇନର ବିଚାର କରି କହିବି ଯେ ଏଇଟା ultra vires କି ନୁହେଁ ? ମୁଁ କାହିଁକି ଏତେ ଗହିରରେ ପଶିବି ? ମୁଁ Constitutionର ସମାଲୋଚନା କରୁନାହିଁ । ମୁଁ କେବଳ ସରକାରଙ୍କୁ କହୁଛି, ପରାମର୍ଶ ଦେଉଛି ଯେ ଏପରି ଗୋଟିଏ ଅପ୍ରିୟ ଜିନିଷକୁ ସେ ନ ନେଇ କରି ଆଉ ବାଟେ ନିଅନ୍ତୁ । Realisation ପ୍ରଣାଳୀ ବିଷୟରେ ବଡ଼ ସାବଧାନ ହେବା ଦରକାର । ମୁଁ ବରାବର ଅନେକ ଘଟଣାରେ କହିଆସିଛି ଯେ ଗ୍ରାମ ପଞ୍ଚାୟତକୁ ଭଲକରି କରନ୍ତୁ । ୫ ବର୍ଷ ପରେ କିପରି ଗ୍ରାମ ପଞ୍ଚାୟତମାନେ ଗ୍ରାମ ପଞ୍ଚାୟତର ଇତିହାସ ଏବଂ ପରମ୍ପରା ଅନୁସାରେ ପୂର୍ବରୁ ଯେପରି ଟିକସ ଆଦାୟ କରି

କେନ୍ଦ୍ରକୁ ଦେଉଥିଲେ, ସେହିପରି କରିପାରିବେ, ତାହା ବିଗ୍ଭର କରନ୍ତୁ । ଭୟ କରିବା ଦରକାର ନାହିଁ ଯେ ପଞ୍ଚାୟତଗୁଡ଼ିକ ଭଲ କାମ କରିପାରିବେ ନାହିଁ, ଲୋକଙ୍କ ଉପରେ ଅତ୍ୟାଗ୍ଭର କରିବେ । ଆମେ ତା'ହେଲେ ସରକାର କାହିଁକି ଗଢିଛୁ ? ଆମେ କଣ ଏପରି ପଞ୍ଚାୟତ ଗଢିବା ଯାହାଦ୍ୱାରା କି ଗୋଳମାଳ ହେବ, ସେମାନେ ଆୟର ହିସାବ ରଖିପାରିବେ ନାହିଁ । ଆମେ ଏପରି ପଞ୍ଚାୟତ ଗଢିବା ଯେ ସେ ଗ୍ରାମର ବଜେଟ ଆୟ ବ୍ୟୟ ସଙ୍ଗେ ପ୍ରତ୍ୟେକ ଗ୍ରାମବାସୀ ପରିବାରର ଆୟ ବ୍ୟୟ ହିସାବ ରଖିବେ । ପ୍ରତ୍ୟେକ ଗାଁର ପ୍ରତ୍ୟେକ କୁଟୁମ୍ବର Budget ରଖିବେ । ଯେଉଁ ଗାଁର ବା ଯେଉଁ କୁଟୁମ୍ବର ବ୍ୟୟ ଆୟଠାରୁ ବଢିଗଲା ସେଠାରୁ tax ନେବେ ନାହିଁ । ଏହିପରି ଭାବରେ ପରୀକ୍ଷା କରି ମନ୍ତ୍ରୀ ମହାଶୟ ନିଜେ କାର୍ଯ୍ୟ କରି ପ୍ରତ୍ୟେକ ଜିଲ୍ଲାରେ ଏହିପରି ଗୋଟିଏ ଗୋଟିଏ ପଞ୍ଚାୟତ ଆଗ ଗଢନ୍ତୁ । ଆଉ ବର୍ଷକୁ ଦେଖିବା ଯେ ସେମାନେ କୃତିତ୍ୱ ସହିତ କାମ କରିଛନ୍ତି । ତାପରେ ଗ୍ରାମ Budget ତାଙ୍କ ହାତରେ ଦେବା । ତା' ନ ହେଲେ ଏ ଗ୍ରାମ ପଞ୍ଚାୟତ ଖାଲି tout ସୃଷ୍ଟି କରିବେ । ତାହା ହିଁ ଏବେ ହେଉଛି, ତାହାର ଉଦାହରଣ ଦେବି । ଏଠି ଦେବା ବୋଧହୁଏ ଦରକାର ନାହିଁ । ଦେବା ପାଇଁ ଦରକାର ହେଲେ ମନ୍ତ୍ରୀ ମହାଶୟଙ୍କୁ ମୁଁ ଅନୁରୋଧ କରୁଛି ସେ ମୋତେ ଘରକୁ ଡ଼ାକନ୍ତୁ ମୁଁ ତନ୍ନ ତନ୍ନ କରି ପ୍ରମାଣ ସହିତ ବୁଝାଇ ଦେଖାଇ ଦେବି, ଗ୍ରାମ ପଞ୍ଚାୟତମାନ ଏବେ କି ଅନିଷ୍ଟ କରୁଛନ୍ତି । ଏଠି କାହା ନାମ ଘାଣ୍ଟିବା ଦରକାର ନାହିଁ । ମୁଁ କହୁଛି ଗ୍ରାମ ପଞ୍ଚାୟତର ମୁଖ୍ୟ ହେଉଛନ୍ତି ସରପଞ୍ଚ । ସେ ଯାଇଁ tout ଗିରିକରି Deputyକୁ କହୁଛନ୍ତି । ସେଥିରୁ ରୋଜଗାର କରୁଛନ୍ତି । ଗୋଟିଏ ଉଦାହରଣ ଦେଉଛି । ଆମ ଗାଁରେ ଜଣେ ଲୋକ 10/20 ଟଙ୍କାରେ ଗୋଟିଏ ଦୋକାନ କରିଥିଲା । ବିଚରା ନିରୀହ ଲୋକ, ତା ନାଁରେ ରିପୋର୍ଟ ହୋଇଗଲା । ସରପଞ୍ଚ ଅଛନ୍ତି, ପଞ୍ଚାୟତ ଅଛି, ଅଦାଲତି ପଞ୍ଚ ବି ଆମ ଗାଁରେ ଅଛି । ବର୍ତ୍ତମାନ 3 ବର୍ଷ ହେଲା । କିନ୍ତୁ ସେଇ ବିଚରା ଦୋକାନୀ ଉପରେ ଟିକସ ଜୁଲମ ଲାଗିଛି , ତା ଦୋକାନ ତ ବହୁତ ଦିନୁ ଗଲାଣି । ଏବେ ତାର 7 ମାଣ ଜମିରୁ 3 ମାଣ ଜମି ବିକ୍ରି ହୋଇଗଲାଣି, ଦୋକାନ ଭାଙ୍ଗି ଦେଇସାରି ବି ସେ sales tax ଟଙ୍କା ଦେଉଛି, ଓକିଲ ଦେଉଛି, ତଥାପି ତା ନାଁରେ record ଯାଉ ନାହିଁ । ତାର ଅପରାଧ ତା' ଦୋକାନର ହିସାବ ନ ଥିଲା । ଏହିପରି ଗୋଟିଏ କଣ ଶହ ଶହ ଉଦାହରଣ ଦେବି । ଏ ସବୁ ଗ୍ରାମ ପଞ୍ଚାୟତ ଲୋକେ କରୁଛନ୍ତି । ହାକିମ କହୁଛନ୍ତି, ଖର୍ଚ୍ଚ କରୁଛନ୍ତି, ସେମାନେ tax ବସାଉଛନ୍ତି । ଆମ ଅଞ୍ଚଳରେ କେତେ ଲୋକଙ୍କର ହିସାବ ତଲବ ହେଲା । ଆଉ agriculture ପାଇଁ ଯାହା ଖର୍ଚ୍ଚ ହୁଏ ହିସାବ ରଖିବାପାଇଁ ତାର 4 ଗୁଣ ଖର୍ଚ୍ଚ ହୁଏ, ଏହା ସମସ୍ତେ ଜାଣନ୍ତି, ସେ ହିସାବ ଅନେକ ରଖନ୍ତି ନାହିଁ । ମୁଁ କହୁଛି ଏପରି harassment ଘୋଷରା ଘା, କାହିଁକି ହେଉଛି? ସରପଞ୍ଚକୁ ଯେ 10 ଟଙ୍କା ଦେଉଛି ସେ ରକ୍ଷା ପାଉଛି । ଯେ ନ ଦେଲା ତାକୁ ତଲବ ହେଉଛି । ଏମାନଙ୍କ ଦାଉରୁ ଦେଶକୁ ରକ୍ଷା କରିବାପାଇଁ, ଜନତାକୁ ରକ୍ଷା କରିବାପାଇଁ, ପ୍ରଜାଙ୍କୁ ରକ୍ଷା କରିବାପାଇଁ, ଗ୍ରାମ ପଞ୍ଚାୟତ ଭଳି ଜନିଷକୁ ନିଜେ ମନ୍ତ୍ରୀ ରହି 12ଟି ଜିଲ୍ଲାରେ ଅନ୍ତତଃ 12ଟି ଗ୍ରାମ ପଞ୍ଚାୟତ ସେ ନିଜେ କୃତିତ୍ୱ ସହ କରିବେ ବୋଲି ଆମ ଆଗରେ

କହନ୍ତୁ । ନିଜେ ଗୋଟିଏ ଯୋଜନା ଦିଅନ୍ତୁ । ଲୋକ ବାଛି ରଖନ୍ତୁ ଯେଉଁମାନେ କି ଦେଶ କଣ ବୁଝିବେ, ବିଶ୍ୱାସରେ ସରକାରଙ୍କ କାମ କରିବେ ଓ ଲୋକଙ୍କୁ ବୁଝାଇବେ । ଏହା ଯଦି ନ କରିବା ତା'ହେଲେ ଗ୍ରାମ ପଞ୍ଚାୟତ କରିବା କି ଦରକାର ? ଆଉ ସେହିପରି ଅନେକ ଆଇନ ଅଛି । ସେସବୁ ଆଇନରେ ପୁଣି ଅଦାଲତ ବିଗ୍ରରକୁ ଡ଼ର । ସେ ଆଇନ-ଗୁଡ଼ିକରେ ଏହିପରି ହେଉଛି ଯେ ଖାଲି tout ତିଆରି ହେଉଛନ୍ତି । ଲୋକଙ୍କ ଉପରେ ଅତ୍ୟାଗ୍ରର କରୁଛନ୍ତି । ଅନେକ ସମୟରେ ଏପରି ହେଉଛି ଯେ ଏହି sales tax ଆଉ agricultural income-tax ଏହି ଦୁଇଟି ଆଇନ ମଫସଲରେ କେତେ ଲୋକଙ୍କର ଭଲ ରୋଜଗାର କରିବା ଲାଗି ହୋଇଛି ବୋଲି ମନେ ହେଉଛି । ଏଥିରେ ଖାଲି tout ବଢ଼ୁଛନ୍ତି ଓ ସରକାର ଲୋକଙ୍କ ଭିତରେ ଅପ୍ରିୟ ହେଉଛନ୍ତି । ସରକାର ଜାଣିପାରୁ ନାହାନ୍ତି । ଏ ସରକାର କଣ ଖାଲି ଡ଼ାକ୍ତରଖାନା କଲେ ବଞ୍ଚିବେ, ଖାଲି ସ୍କୁଲ କଲେ ବଞ୍ଚିବେ, rural welfare କରି ଟଙ୍କା ମଂଜୁର କଲେ ବଞ୍ଚିବେ ? ଏଗୁଡ଼ିକ ସବୁ ପନ୍ଥା, ମୁଁ ନାହିଁ କରୁନାହିଁ । କିନ୍ତୁ ମୂଳ ନୀତି ଆଉ ପ୍ରଣାଳୀ, ଠିକ୍ ରଖି ଲୋକଙ୍କୁ ଶାସନ କରିବେ ଓ ଲୋକଙ୍କଠାରୁ ଟଙ୍କା ନେବେ, ଏ ନୀତି ଆଉ ପ୍ରଣାଳୀ ଠିକ୍ ନ କଲେ ଆମ ସରକାର ତିଷ୍ଠି ପାରିବ ନାହିଁ । ଏ ସରକାର ଆଜି ତାଙ୍କର ଅଛି କାଲି ଆମର ହେବ, ପଅରଦିନ ଆଉ କାହାର ହେବ କିନ୍ତୁ ଦେଶର ସ୍ୱାଧୀନ ସରକାର ବୋଇଲେ ସମସ୍ତେ ଏହା ମନେ କରନ୍ତି ଯେ ବିରୋଧ ଆଉ ସରକାର ଦୁହେଁ । ଏ ଦୁହେଁ ମିଶି ତିଆରି କରାନ୍ତୁ, ଦେଶ କେମିତି ବଢ଼ୁ, ରାଜ୍ୟ କେମିତି ରହୁ ଆମର ଭବିଷ୍ୟତ କେମିତି ଉଜ୍ୱଳ ହେଉ । ଆମେ ସମସ୍ତେ କେମତି ଲୋକପ୍ରିୟ ହୋଇ ଲୋକଙ୍କର କାର୍ଯ୍ୟ କରିବା ଓ ଶାସନ କରିବା । ଏହି ଭାବରେ ମୁଁ କହୁଛି ଏହି ଭାବରେ ସରକାର ଏହାକୁ ଗ୍ରହଣ କରନ୍ତୁ । ବିଶେଷ ଗୁଡ଼ାଏ ଉଦାହରଣ ଦେଇ କହିବା ଆଉ ଦରକାର ନାହିଁ ।

## 7. ଓଡ଼ିଶା ଅଭ୍ୟାସଗତ ଅପରାଧୀ କଟକଣା ଚିଠା ଆଇନ୍ 1952

## (The Orissa Restriction of Habitual Offenders Bill, 1952)

ସମାଜରେ ଯେଉଁମାନେ ବାରମ୍ବାର ଅପରାଧ କରନ୍ତି ଏବଂ ଆଇନଗତ ଦଣ୍ଡବିଧାନ କରାଗଲେ ମଧ୍ୟ ସେମାନଙ୍କର ସଂଶୋଧନ ହୁଏ ନାହିଁ, ସେମାନଙ୍କର କଟକଣାପାଇଁ ଓଡ଼ିଶା ଅଭ୍ୟାସଗତ ଅପରାଧୀ କଟକଣା ଚିଠା ଆଇନ୍, 1952 ଆଗତ ହୋଇଥିଲା । ତା' ଉପରେ ପଣ୍ଡିତ ନୀଳକଣ୍ଠ ମତାମତ ଦେଇ ଏହା ଏକ ମନୋବୈଜ୍ଞାନିକ ପ୍ରଶ୍ନ ଏବଂ ଆଇନ କରି ଏହାକୁ ଦୂର କରାଯାଇପାରିବ ନାହିଁ ବୋଲି କହିଛନ୍ତି, "ଏହାର ଗୋଟିଏ ପରଂପରା ହେଉଛି ଯେ ଯାହା ଆମ ମନକୁ ନ ପାଇଲା ତାକୁ ଆମେ ଘୃଣା କରିବୁ ଆଉ ବିଦ୍ୱେଷ କରିବୁ । ଏହି ଘୃଣା ଓ ବିଦ୍ୱେଷ ଦିଗରୁ ଆଜିକାଲି ହେଉଛି କ'ଣ ନା' ଯାହାର ଯାହାପ୍ରତି ଘୃଣା ବା ବିଦ୍ୱେଷ ସେ ସମସ୍ତଙ୍କୁ ଏକାଠି ରଖିଦେବେ ଯେଉଁ ଲୋକଟି ନାହିଁ

କରିବ, ସେ ଦଣ୍ଡନୀୟ ହେବ । କିନ୍ତୁ ଏ ଗୋଟିଏ ମନସ୍ତତ୍ତ୍ୱ ଯେ ଏଇଟାର ନିରାକରଣ ନ ହେଲେ କ'ଣ ହେବ ? ଶୋଧନ ହେବ ନାହିଁ, ସମାଜ ସୁନ୍ଦର ହେବ ନାହିଁ"। ତେଣୁ ଏହି ଗୁରୁତ୍ୱପୂର୍ଣ୍ଣ ସମସ୍ୟାର ସ୍ଥାୟୀ ସମାଧାନପାଇଁ ଆମକୁ ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ବିଚାର ବିମର୍ଶ କରି ପଦକ୍ଷେପ ନେବା ଉଚିତ । ନଚେତ ସରକାରୀ ଅଧିକାରୀ ଓ ମନ୍ତ୍ରୀମାନେ ଯାହାକୁ ଘୃଣା କରିବେ ବା ଶତ୍ରୁ ବୋଲି ଭାବିବେ ତାକୁ ଏହି ପ୍ରସ୍ତାବିତ ଆଇନ ଅନୁସାରେ ଦଣ୍ଡିତ କରିବେ ।

ସୁଧାରାଳୟ (Reformatory) ରେ ବାଳଅପରାଧୀମାନଙ୍କୁ ଏକାଠି ରଖିଦେଲେ ସେମାନଙ୍କର ସୁଧାର ହେବା ସମ୍ଭବ ନୁହେଁ । ଏହା ସେମାନଙ୍କ ମନସ୍ତତ୍ତ୍ୱ ଅନୁଧ୍ୟାନ କରି ଆବଶ୍ୟକ ବ୍ୟବସ୍ଥା କରିବା ଦ୍ୱାରା ସମ୍ଭବ ହୋଇପାରିବ । ନୀଳକଣ୍ଠ ତେଣୁ କହିଛନ୍ତି, "ଯେଉଁମାନେ ଅଳ୍ପବୟସ୍କ ତାଙ୍କୁ ନେଇକରି ଗୋଟିଏ Reformatory (ସୁଧାରାଳୟ) ଜେଲରେ ରଖି ସଂଶୋଧନ କରିବେ । କିନ୍ତୁ ସେପରି ରଖିଦେଲେ ଫଳ କ'ଣ ହୋଇଛି, ନ ହୋଇଛି କହିବା ନିଷ୍ପ୍ରୟୋଜନ । ନମନୀୟ ମାନବ ମସ୍ତିଷ୍କ ସବୁବେଳେ କ'ଣ ଶୋଧନ କରାଯାଇପାରିବ ?" ଏହି ପ୍ରଶ୍ନ ପଚାରି ଦାର୍ଶନିକ ନୀଳକଣ୍ଠ ମନସ୍ତତ୍ତ୍ୱ ଓ ଦର୍ଶନ ଆଡକୁ ସମାଧାନପାଇଁ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ବରଂ ସେ ସନ୍ଦେହ କରିଛନ୍ତି ଯେ "କିନ୍ତୁ ଏଠାକୁ ତ ପିଲାମାନେ ଯିବେ ନାହିଁ, ଯିବେ ବଡ ମଣଷମାନେ । ଏ ବଡ ମଣିଷମାନେ ଯାଇ ଗୃଷକାମ ଶିଖିନେବେ, ଏଇଟା କ'ଣ ସମ୍ଭବ କଥା । କାନରେ କଲମ ଖୋସି ଯେଉଁ ଓକିଲ, ମୋହରିରମାନେ କଚେରୀରେ ବୁଲନ୍ତି, ଯାହାର ଆୟ ଓକିଲଙ୍କ ଠାରୁ ବେଶୀ, ତାଙ୍କୁ ଯଦି ଗୃଷ ବିଷୟ ଶିଖେଇବେ, ତାହାହେଲେ କ'ଣ କିଛି ହେବ ? ସେ କ'ଣ କେବେ ଶିଖିବେ ? ସେଇଭଳି କେତେ ଲୋକ ଅଛନ୍ତି ?" ଏହା ହେଲା ନୀଳକଣ୍ଠଙ୍କର ଅନୁଭୂତି—ଆଧାରିତ ।

କେତେଗୁଡିଏ ଗୋଷ୍ଠୀକୁ ଚିର ଅପରାଧୀ ଭାବରେ ସାବ୍ୟସ୍ତ କରି ଆମେ କିପରି ଭୁଲ କରିଛୁ, ସେ ବିଷୟରେ ନୀଳକଣ୍ଠ ବୁଝାଇ କହିଛନ୍ତି; "Criminal Tribes (ଅପରାଧୀ ଆଦିବାସୀ) ସମ୍ବନ୍ଧରେ ଉପମନ୍ତ୍ରୀ ମହାଶୟ ଯାହା କହିଗଲେ ହୁଏତ ଏଥିରେ ସେଇୟା ନ ହେବ କିଏ କହିପାରିବ ? ତା'ପରେ ଅନେକ ସ୍ଥଳରେ ବଡଲୋକ ବା ଉପରେ ଥିବା ଲୋକେ ଏ ଗୁଣ୍ଡାମିର ପଛରେ ଥାନ୍ତି । ଏଥି ଭିତରେ କେତେ ଲୋକଙ୍କୁ ସେମାନେ ଜେଲ ଦିଆଇଥିବେ, ଏହା କ'ଣ ସମସ୍ତେ ଜାଣନ୍ତି ନାହିଁ ? ଏହାଦ୍ୱାରା ଅସଲ ଲୋକ କ'ଣ ଧରାପଡିବେ ?" ଏହି ପ୍ରଥା ଏକ "ଘୃଣ୍ୟ କଥା" ବୋଲି ସେ କହି "ବର୍ତ୍ତମାନ ଆମେ ଏ ସମାଜ ଓ ଶାସନକୁ କିପରି ସଂଶୋଧନ କରିବା ଏହା ଆମର ଚିନ୍ତାର ବିଷୟ ହେବା ଉଚିତ" ବୋଲି ମତ ଦେଇଛନ୍ତି । ଅତୀତରୁ ଓ ଅନ୍ୟ ଦେଶର ବହୁ ଦୃଷ୍ଟାନ୍ତ ଦେଇ କହିଛନ୍ତି "ସରକାର ଏହାକୁ ବର୍ତ୍ତମାନ ବନ୍ଦ କରନ୍ତୁ । 4/6 ମାସ ପରେ ବିଚାର କରି ଏ ବିଷୟରେ ଯାହାକୁ କହନ୍ତି ରଚନାତ୍ମକ କାର୍ଯ୍ୟ, ସେଇଭଳି ଯଦି କିଛି କରାଯାଇପାରେ

କରିବାପାଇଁ ମୁଁ କହୁଛି" । ଫଳତଃ ନୀଳକଂଠ ଏହି ସମସ୍ୟାକୁ ମନସ୍ତାତ୍ତ୍ୱିକ ଓ ଦାର୍ଶନିକ ଦୃଷ୍ଟିକୋଣରୁ ବିଚାର କରି ଏହାର ସ୍ଥାୟୀ ସମାଧାନ କରାଯିବା ଉଚିତ ବୋଲି ପରାମର୍ଶ ଦେଇଛନ୍ତି ।

**Shri NILAKANTHA DAS:** ବାଚସ୍ପତି ମହାଶୟ, ଏ ବିଲଟିକୁ ହଠାତ ଦେଖିଦେଲେ ଯେ କେହି କହିବ ଏଇଟା ସେତେ କିଛି ଖରାପ ନୁହେଁ । ସାଧାରଣତଃ ଯେଉଁମାନେ ବେଶୀ ଦୋଷ କରିବେ ତାଙ୍କୁ ନେଇକରି ରଖିଦିଆଯିବ । ଏହି ବୁଦ୍ଧିରେ ସରକାର ଏଇଟା ଆଣିଛନ୍ତି । ଏ ଗୋଟିଏ ସାଧାରଣ କଥା, ଏଥିରେ ଅଛି କ'ଣ ? କିନ୍ତୁ ଏଇଟା ଦେଖିବାକୁ ଯେତେ ସାଧାରଣ ଲାଗୁଛି ଜନିଷଟା ତାହା ନୁହେଁ । ଏହାର ମା ଅଛନ୍ତି କି ନାଁ, ମାଆ ବାପା ଅଛନ୍ତି କି ନାହିଁ ସେ କଥା ବାଣପୁରର ସଭ୍ୟ ମହାଶୟ କହିଗଲେ । ଅବଶ୍ୟ ଜମା ବାପ ନ ଥାଇ ପୃଥିବୀରେ ମହାପୁରୁଷ ଜନ୍ମ ହେବା କଥା ଆଜିକି ୬,୦୦୦ ବର୍ଷ ତଳରୁ ଚାଲି ଆସିଛି, ବୋଧହୁଏ ପ୍ରସ୍ତର ଯୁଗରୁ ଏହି ପରମ୍ପରା ଚାଲି ଆସିଛି । ଲିବିଆରେ ଲିଥଦେବୀ ବିନା ବାପରେ ପୁଅ ଦେଇଁଥିଲେ, ଯିଶୁଖ୍ରୀଷ୍ଟଙ୍କର ବାପ ନଥିଲେ, ରାମକୃଷ୍ଣଙ୍କର ମା' ବି ସେଇପରି ଏବେ ହୋଇଛନ୍ତି, ପୃଥିବୀରେ ଏହାର ଦୃଷ୍ଟାନ୍ତ ବଡ଼ କମ ନୁହେଁ, ସେ କଥା ନେଇ ଏଠାରେ ଆଲୋଚନା କରି କିଛି ଲାଭ ନାହିଁ । ଖାଲି ମା' ରେ ବି ପୁଅ ହୁଏ । ଆମକୁ ଜମା ନପଚାରି ସରକାର ଯଦି ଏହା କରି ପାରନ୍ତି ଆମର ସେଥିରେ କିଛି ଆପତ୍ତି ନାହିଁ । କିନ୍ତୁ କଥା ହେଉଛି, ଏଯାହା ସବୁ ହେଉଛି, ଏଇଟା ଗୋଟିଏ ଘୃଣାତ୍ମକ ମନୋବିଜ୍ଞାନ । ସମାଜରେ ଏଇଟା ଯେତେବେଳେ ଦେବଦେବୀଙ୍କ ଠାରୁ ଆରମ୍ଭ କରି ରାଜା ମହାରାଜାଙ୍କ ପର୍ଯ୍ୟନ୍ତ ବ୍ୟାପକ ଭାବରେ ଗୋଟିଏ ସାମ୍ରାଜ୍ୟବାଦ ଧରି କରୁଥିଲେ, ଜେହୋବାଙ୍କର ସଇତାନ ଭୟ ହୋଇଥିଲା ସେହିପରି ସାମ୍ରାଜ୍ୟ ବାଦରେ ଅସୁର ଥିଲେ , ଏମାନେ କ'ଣ କରୁଥିଲେ ? ଏପର୍ଯ୍ୟନ୍ତ ଜେହୋବା ବା Godଙ୍କ ସଙ୍ଗେ ସଇତାନ ଅଛନ୍ତି ତାଙ୍କ ପ୍ରତି ଏହି ବ୍ୟବହାର କରାଯାଇଛି । ତାଙ୍କ ପ୍ରତି ଘୃଣା, ତାଙ୍କ ପ୍ରତି ବିଦ୍ୱେଷ ଏହି ମନସ୍ତତ୍ତ୍ୱ ଗୁଡ଼ିକ ବିଶ୍ଳେଷଣ କଲେ ଘୃଣା ଓ ବିଦ୍ୱେଷ ଏହି ଦୁଇଟିରୁ ପୃଥିବୀରେ ଯେଉଁ ଆଧ୍ୟାତ୍ମିକ ଓ ଭୌତିକ ସାମ୍ରାଜ୍ୟବାଦ ଏପର୍ଯ୍ୟନ୍ତ ଚାଲି ଆସିଛି ଏହାର ଗୋଟିଏ ପରମ୍ପରା ହେଉଛି ଯେ ଯାହା ଆମ ମନକୁ ନ ପାଇଲା ତାକୁ ଆମେ ଘୃଣା କରିବୁ ଆଉ ବିଦ୍ୱେଷ କରିବୁ । ଏହି ଘୃଣା ଆଉ ବିଦ୍ୱେଷ ଦିଗରୁ ଆଜିକାଲି ହେଉଛି କ୍'ଣ ନା ଯାହାର ଯାହା ପ୍ରତି ଘୃଣା ବା ବିଦ୍ୱେଷ ସେ ସମସ୍ତଙ୍କୁ ଏକାଠି ରଖିଦେବେ ଯେଉଁ ଲୋକଟି ନାହିଁ କରିବ ସେ ଦଣ୍ଡନୀୟ ହେବ । କିନ୍ତୁ ଏ ଗୋଟିଏ ମନସ୍ତତ୍ତ୍ୱ ଯେ ଏଇଟାର ନିରାକରଣ ନହେଲେ କ'ଣ ହେବ ? ଶୋଧନ ହେବ ନାହିଁ, ସମାଜ ସୁନ୍ଦର ହେବ ନାହିଁ । ବୈଷମ୍ୟରୁ ସମତା ଆସିବ ଏ କଥାଟି ଯେ ଜମା ଆମେ ବୁଝୁନଥାଇ । ଏପର୍ଯ୍ୟନ୍ତ ଭାରତରେ କଳିଯୁଗ ଥିଲା । ତା'ର ଅର୍ଥ ଏପର୍ଯ୍ୟନ୍ତ ଆମେ ପରାଧୀନ ଥିଲୁ । ଆମେ କଳିଯୁଗରେ ଥିଲୁ, ସତ୍ୟଯୁଗ ଆସିଛି । ଭକ୍ତମାନେ କଳ୍ପନା କରି ଯାଇଛନ୍ତି, ସତ୍ୟଯୁଗ ଆସିଲେ "ମ୍ଳେଚ୍ଛନ୍ନି ବହନିଧନେ

କର୍ମୀୟସୀ କରବାଳ” ଧରିକରି ଗୋଟିଏ ଘୋଡ଼ା ଉପରେ ବସି କଳକି ଅବତାର ହେବ, ଆହୁରି ଆମ ଓଡ଼ିଶାରେ ଅଛି, ଖଣ୍ଡଗିରି ଗଲେ ପଣ୍ଡାମାନେ ଦେଖାନ୍ତି ଯେ ମନ୍ଦିରର ଦୁଆର ବାଟେ ୫୨ ହାତ ଖଣ୍ଡା ବାହାରିବ । ସେ କ'ଣ କରିବେ ନାଁ ମାଳି ତିଳକ ଯେଉଁଠି ଦେଖିବେ ତାଙ୍କୁ ଛାଡ଼ି ବାକି ସମସ୍ତଙ୍କୁ ହାଣି ଦେଇ ଯିବେ । ତା'ହେଲେ ସତ୍ୟଯୁଗ ଆସିଗଲ, ଭକ୍ତମାନେ ଏହି କଳ୍ପନା କରିଛନ୍ତି । ଏଥିରେ ବର୍ତ୍ତମାନର ଚିନ୍ତାକୁ ଶୋଧନ କରି ଦେବାପାଇଁ ଯଦି ସେହିପରି କିଛି ଥାନ୍ତା ତା'ହେଲେ ମୋର କିଛି କହିବାର ନଥିଲା । କିନ୍ତୁ ଏଥିରେ ସମାଜର ପ୍ରଗତି ଅବରୁଦ୍ଧ ହେବ । ଆପଣ ଗୋଟିଏ କାର୍ଯ୍ୟ କରୁଛନ୍ତି, ଏଥିରେ ଠକର ସାହେବଙ୍କ ନାମ ମଧ୍ୟ ଅଛି ଯେ ସେ କ'ଣ ଗୋଟିଏ କମିଟି କରିଥିଲେ ତାଙ୍କ ଅତି ମହନୀୟ ନାମ, ସେ କ'ଣ ଲେଖିଥିଲେ କେଜାଣି କିନ୍ତୁ ତା ଭିତରୁ ଆମେ ଇଂରାଜିରେ ଯାହାକୁ କହନ୍ତି Side light ପାଇଲୁ ଯେ ଗୋଟିଏ କ'ଣ କରିବାକୁ ହେବ । ସେ ଏକଥା କହି ନାହାନ୍ତି ଯେ criminal offender ମାନଙ୍କ ପାଇଁ ଗୋଟିଏ Act କର । ସେ ଯାହା କହିଗଲେ criminal tribes ପାଇଁ କରନାହିଁ, ସେଥିରୁ ଆମେ ବୁଝିଲୁ ଯେ ସେ ଯେବେ ଯିବେ ଗୋଟିଏ କିଛି ହେବ । ଏଇଟା ହେଉଛି Side light ଏବଂ ତାଙ୍କ ନାମ ଧରି ଆମେ objects and reasons ଲେଖିଲୁ ଓଲଟା ହେଉ, କିମ୍ବା ସିଧା ହେଉ ଯାହା ଗୋଟିଏ କଥା ହେଉଛି । ଏଇଟା ଗୋଟିଏ ଘୃଣାତ୍ମକ ମନୋବିଜ୍ଞାନର ଧାରା ଯେ ସବୁବେଳେ ଲୋକଙ୍କୁ ଆମେ ଜବତ କରିବୁ । କେତେତ ଏମିତି ହେଲାଣି, ବାଣପୁରର ସଭ୍ୟ ବହୁତ ଉଦାହରଣ ମଧ୍ୟ ଦେଇଛନ୍ତି । ଏ ଜଗତରେ ଏମିତି ଜବତ୍‌କରି କେଉଁଠି ଶୋଧନ ହୋଇଛି । ଆପଣ Charles Dickens ଙ୍କର Oliver Twist ବହି ପଢିଥିବେ । ସେ ସମାଜର ଯେଉଁ ଚିତ୍ର ଦେଇଛନ୍ତି ସେଥିରେ କ'ଣ ସମାଜ ଶୋଧନ ହୋଇଛି । ଆମ୍ଭେମାନେ ଏମାନଙ୍କୁ ନେଇ settlementରେ ଠିଆ କରିବୁ, କିନ୍ତୁ ଏମାନଙ୍କୁ କ'ଣ ଶାନ୍ତି ଦେଇ ପାରିବୁ ? ଅବଶ୍ୟ ଅନେକ ସାମ୍ରାଜ୍ୟବାଦୀଙ୍କ କଳ୍ପନା ଯେ ଯେଉଁମାନେ ଅଳ୍ପ ବୟସ୍କ ତାଙ୍କୁ ନେଇ କରି ଗୋଟିଏ reformatory jail ରେ ରଖି ସଂଶୋଧନ କରିବେ । କିନ୍ତୁ ସେପରି ରଖି ଦେଲେ ଫଳ କ'ଣ ହୋଇଛି. ନ ହୋଇଛି କହିବା ନିଷ୍ପ୍ରୟୋଜନ । ନମନୀୟ ମାନବ ମସ୍ତିଷ୍କ ସବୁବେଳେ କ'ଣ ଶୋଧନ କରାଯାଇପାରିବ ? ତା'ଭିତରେ ଅଛି ମନୋବିଜ୍ଞାନ ଦର୍ଶନ ଏଥିରେ ଏ ଚିନ୍ତାଧାରା କିପରି ଭାବରେ କାର୍ଯ୍ୟରେ ପରିଣତ କରୁଥିଲେ । ସେ ସ୍ୱତନ୍ତ୍ର କଥା, ସେ ବିଷୟରେ ମୁଁ ଏଠି କିଛି କହୁନାହିଁ । କିନ୍ତୁ ଏଠାକୁତ ପିଲାମାନେ ଯିବେ ନାହିଁ । ଯିବେ ବଡ଼ ମଣିଷମାନେ । ଏ ବଡ଼ ମଣିଷମାନେ ଯାଇ ଗୃଷ କାମ ଶିଖି ନେବେ ଏଇଟା କ'ଣ ଗୋଟିଏ ସମ୍ଭବ କଥା । କାନରେ କଲମ ଖୋସି ଯେଉଁ ଓକିଲ ମୋହରିରମାନେ କଚେରିରେ ବୁଲନ୍ତି ଯାହାଙ୍କର ଆୟ ଓକିଲଙ୍କଠାରୁ ବେଶୀ । ତାଙ୍କୁ ଯଦି ଗୃଷ ବିଷୟ ଶିଖେଇବେ ତା' ହେଲେ କ'ଣ କିଛି ହେବ ? ସେ କ'ଣ କେବେ ଶିଖିବେ ସେହିଭଳି କେତେ ଲୋକ ଅଛନ୍ତି ପାଞ୍ଚ ବର୍ଷ ଭିତରେ ଯେତେସବୁ ଯୋଜନା ହୋଇଗଲା. ତା'ର

ଫଳ କ'ଣ ହେଲା ସମସ୍ତେ ଜାଣନ୍ତି, ଯୁଦ୍ଧୋତ୍ତର ପରିକଳ୍ପନା ଯାହା କରାଗଲା ସେହିଭଳି କେତେଗୁଡ଼ିଏ ଲୋକ ଏହା ଭିତରେ କ'ଣ କରିଛନ୍ତି ସରକାର କ'ଣ ଏ ପର୍ଯ୍ୟନ୍ତ ଜାଣି ନାହାନ୍ତି ? କେତେକ Grow More Food ଶୁଷ୍କ ହୋଇଗଲାଣି, ଆପଣ ଜାଣି ନ ଥିଲେ କିନ୍ତୁ ଏବେ ଜାଣିବେଣି ଏସବୁ କ'ଣ ହୋଇଛି । ଏହିଭଳି ଲୋକମାନଙ୍କ ଯୋଗୁଁ ସବୁ ନଷ୍ଟ ହୋଇଗଲା, ଖାଲି ଟାଉଟର ଯାକ କାନରେ କଲମ ଖୋସି ଟଙ୍କା ନେଲେ, ପୁଅ ବିଭାଘର, ଝିଅ ବିଭାଘର କଲେ । ବର୍ତ୍ତମାନ ଚିନ୍ତା ପଡ଼ିଛି ଟଙ୍କା କିପରି ଉଦ୍ଧାର ହେବ । ଏହିପରି ଯେତେବେଳେ ଅବସ୍ଥା ସେତେବେଳେ ଆମେ କ'ଣ ମନେ କରୁଛୁ ଯେଉଁମାନଙ୍କୁ habitual offender ବୋଲି କହୁଛନ୍ତି, ସେମାନଙ୍କୁ ଏମିତି ନେଇ ଗୋଟିଏ ଜାଗାରେ ରଖିଦେଲେ ତାଙ୍କୁ ଆମେ ସଂଶୋଧନ କରିଦେବୁ, ଆଉ ଗୋଟିଏ କିଛି ନୂଆ କଳ୍ପନା କାହିଁକି ସରକାରଙ୍କୁ ଦେଖାଯାଉ ନାହିଁ । ଏ ବିଷୟରେ ଟିକିଏ ଭଲ ଭାବରେ ବିଚାର କରନ୍ତୁ, ଆମ୍ଭମାନଙ୍କୁ ଡାକନ୍ତୁ, ସରକାର ଯାହା କହୁଛନ୍ତି ସେଇଟା ଯେ ଖରାପ କଥା, ତାହା ନୁହେଁ ମନଟି ଭଲ କିନ୍ତୁ ଦିଗଟି ଦିଶୁନାହିଁ, ଦିଗ୍ ଦର୍ଶନରେ ଭ୍ରମ ହେଉଛି । ଏ ଯାହା ହେଉଛି ଏହାଦ୍ୱାରା କ'ଣ ତାଙ୍କର କିଛି ହେବ ? ସମାଜର ଏହାଦ୍ୱାରା କିଛି ଲାଭ ହେବନାହିଁ, କେବଳ କେତେକ ଲୋକ ସୁବିଧା ନେବାପାଇଁ ଚାହିଁବେ । ଆଉ ଯେଉଁଗୁଡ଼ାକ ଚୋରି କରୁଥିବେ ସେମାନେ କେତେଦିନ ପରେ ଯେ ସେଠାରେ ରହିକରି ଗୋଟିଏ ଚୋର ଦଳ ତିଆରି କରିପାରିବେ ଏହାମଧ୍ୟ ହୋଇପାରେ । Criminal tribes ସମ୍ବନ୍ଧରେ ଉପମନ୍ତ୍ରୀ ମହାଶୟ ଯାହା କହିଗଲେ ହୁଏତ ଏଥିରେ ସେଇଆ ନ ହେବ କିଏ କହିପାରିବ ? ତା'ପରେ ଅନେକ ସ୍ଥଳରେ ବଡ଼ଲୋକ ବା ଉପରେ ଥିବା ଲୋକେ ଏ ଗୁଣ୍ଡାମିର ପଛରେ ଥାନ୍ତି । ଏଥିଭିତରେ କେତେଲୋକଙ୍କୁ ସେମାନେ ଜେଲ ଦିଆଉଥିବେ, ଏହା କ'ଣ ସମସ୍ତେ ଜାଣନ୍ତି ନାହିଁ ? ଏହାଦ୍ୱାରା ଅସଲ ଲୋକେ କ'ଣ ଧରା ପଡ଼ିବେ ? ଏପରି ଗୋଟିଏ tribes ଯାହାକି ଗୋଟିଏ ଘୃଣ୍ୟ କଥା ତାହା ବହୁତଦିନରୁ ଥିଲା ସେଥିରେ ଆମେ ଠିକ୍ ଯେ ଲୋକଙ୍କୁ ଧରି ପାରିବା ଏହା କ'ଣ ପ୍ରମାଣ ହେବ ? ଆଉ ଗୋଟିଏ କଥା :—ଯାହାକୁ କହନ୍ତି କ୍ରିୟାଶୀଳ ସେ ଦିଗରୁ ଏହାକୁ ଦେଖିଲେ ସେଥିରେ ଆମର ବର୍ତ୍ତମାନ ଅବସ୍ଥା କ'ଣ, ଆମେ କ'ଣ କରିବାକୁ ଯାଉଛୁ ଗତ ପାଞ୍ଚବର୍ଷ ପରେ ବର୍ତ୍ତମାନ ଆମେ ଏ ସମାଜ ଓ ଶାସନକୁ କିପରି ସଂଶୋଧନ କରିବା ଏହା ଆମର ଚିନ୍ତାର ବିଷୟ ହେବା ଉଚିତ । କିନ୍ତୁ ଏ ଶାସନକୁ ସଂଶୋଧନ କରିବାପାଇଁ କି ପନ୍ଥା ଅବଲମ୍ବନ କରିବାକୁ ହେବ । ଆପଣ ଦେଖିବେ ଆମର ମାଜିଷ୍ଟ୍ରେଟ-ମାନେ ଯଦିଓ ସବୁଠାରେ ନୁହେଁ ଅନେକ ସ୍ଥଳରେ ଲାଞ୍ଚ ମିଛର ଆଶ୍ରୟ ନେଉଛନ୍ତି, ମନ୍ତ୍ରୀମାନେ ଜାଣି ସୁଦ୍ଧା କିଛି କରିପାରୁ ନାହାନ୍ତି ଏବଂ I. A. S. Officer ବୋଲି ଡରି ଯାଉଛନ୍ତି, ମୁଁ କୌଣସି କୌଣସି ବିଶିଷ୍ଟ ଲୋକଙ୍କଠାରୁ ଶୁଣିଛି, ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କଲେ କାଳେ ସେମାନେ ଷ୍ଟ୍ରାଇକ୍ କରିବେ ଏହି ଭୟ ଆମ ମନ୍ତ୍ରୀମାନଙ୍କର ହେଉଛି ।

Shri NILAMANI ROUTRAY (Deputy Minister) : ତାଙ୍କର ନାମ କହୁ ନାହାନ୍ତି ?

Shri NILAKANTHA DAS : ନାମଟା ନ ପଗ୍ଭରିଥିଲେ ବୋଧହୁଏ ଠିକ୍ ହୋଇଥାନ୍ତା । ମୁଁ ଶୁଣିଲି ଆମେ ଆଙ୍କୁ ଶାସନ କଲେ ଷ୍ଟ୍ରାଇକ୍ କରିଦେବେ । ଯାହା-ହେଉ ମୁଁ ଯେତିକି ମୂଲ୍ୟ ଦେବାକୁ କହୁଛି ମୋର ବନ୍ଧୁମାନେ ସେତିକି ମୂଲ୍ୟ ଦିଅନ୍ତୁ । ଇଂରାଜିରେ ଯାହା କହନ୍ତି ଗୋଟିଏ Sweeping remark, ଗୋଟିଏ ଜାତିକୁ ବା ଦଳକୁ ମୁଁ ସେପରି କହୁନାହିଁ । ଅବଶ୍ୟ କେହି କେହି ଏପରି ଅଛନ୍ତି । ଏହା ଅସତ୍ୟ ନୁହେଁ । ଏପରି ଅବସ୍ଥାରେ ଆମେ ତାଙ୍କ ହାତରେ ଏହାକୁ ଦେଉଥାଇଁ । କେହି କେହି ଟଙ୍କା ନେବେ, ମଟର କାର ନେବେ, ରିଫ୍ରିଜେରେଟର ନେବେ, କଦଳୀ ପେଣ୍ଡା ନେବେ । ସେଥିରେ କି ଶ୍ରେଣୀର Habitual offender ରହିବେ ? ଆମେ ଜାଣୁ ଅନେକ ଲାଞ୍ଚ ନେଉଛନ୍ତି, ଆମେ ଲାଗିଥାଉ ଆକୁ ସୁଧାରିବାପାଇଁ । ଭୁଲରେ ହେଉ ବା ଭଲରେ ହେଉ ଏ କଥା ହେଉଛି । ଏହା ସତ୍ୟ ଘଟଣା ଏହାକୁ ଗୋପନ କରିବାର କିଛି ନାହିଁ । ଏତିକିବେଳେ ଆମେ ତରତର ହୋଇ ଏହା କରିବା କ'ଣ ଦରକାର ପଡୁଛି ? ଏ ହେଲା ଗୋଟିଏ କଥା । 2ୟ କଥା ହେଉଛି ସରକାରର ଏପର୍ଯ୍ୟନ୍ତ ଗୋଟିଏ ମୋହ ଯାଇନାହିଁ ଯେ ଆମର ସ୍ୱାଧୀନତା ଯୁଗରେ ଆମେ ସବୁ କରିଯିବୁ କୋର୍ଟକୁ କିଛି ଦେବୁନାହିଁ । ଏ ଯେଉଁ ମାନସିକ ପ୍ରଭୃତି ଆମର ହେଉଛି ସବୁ ଆଇନରେ ରଖାଯାଉ, ଏଇଟାକୁ ଶୀଘ୍ର ପରିହାର କରିବା ଉଚିତ । ଏହା ଭିତରେ ଯାହା ଅଛି, କୋର୍ଟକୁ ଦିଆଯିବନାହିଁ , ପାଲିଆମେଣ୍ଟରେ ଯେପରି ହୁଏ ଯାହାକୁ କି କହନ୍ତି Transferred authority ତମେ ସେପରି କରିବାକୁ ଗ୍ଭହୁଁଛ । ଏହା ଯେ ଇଂଲଣ୍ଡରେ ନାହିଁ, ମୁଁ କହୁନାହିଁ, କିନ୍ତୁ ଆପଣଙ୍କୁ ମୁଁ କହିଦିଏ ଇଂଲଣ୍ଡରେ ଏହା ଥିବାରୁ କ'ଣ ନା କ'ଣ ହୋଇଯାଇଥିଲା । ଯୁଦ୍ଧରେ ଯେତେବେଳେ ଏହା ଆରମ୍ଭ ହେଲା, 1929 ମସିହାରେ ଅବସ୍ଥା ଏପରି ହୋଇଗଲା କାହିଁକି ନାଁ ଇତିହାସ ଦେଖିଲେ ଜଣାଯିବ ଯେ ପୂର୍ବେ Impeachment ଥିଲା । ମନ୍ତ୍ରୀଙ୍କଠାରୁ ଆରମ୍ଭକରି ମାଜିଷ୍ଟ୍ରେଟ ଏବଂ ସାଧାରଣ ଯେଉଁମାନେ ଶିଳ୍ପି, ବ୍ୟବସାୟୀ ପର୍ଯ୍ୟନ୍ତ ସମସ୍ତଙ୍କୁ Impeach କରାଯାଉଥିଲା । କିନ୍ତୁ ସେ Impeachment ତାଙ୍କର ଆଉ ଦରକାର ହେଲାନାହିଁ । ତାଙ୍କର ଲୋକେ ବୁଝିଗଲେ ଭୋଟର ଅର୍ଥ କ'ଣ କ୍ରମେ ତାହିଁ ହେଲା । କିନ୍ତୁ ଯୁଦ୍ଧ ପରେ କେତେଗୁଡ଼ିଏ ଅବସ୍ଥାରେ ଏହି Transferred authority ଦରକାର ପଡ଼ିଲା । ସଭ୍ୟତା ବଢିବା ସଙ୍ଗେ ସଙ୍ଗେ କେତେ Legislation କରିବେ, ସବୁତ କରି ପାରିବେ ନାହିଁ । Transferred authority କେତେଗୁଡ଼ିଏ ହେବାର କଥା ତାହା ହୋଇକରି ତାଙ୍କର ଏପରି ଅବସ୍ଥା ହୋଇଗଲା ଯେ Lord Chancellor in 1929 appointed the Committee on Ministers' powers to consider *inter alia* the powers exercised by the Minister by way of delegated legislation—May's Parliamentary Practice, 14th Edition, P. 805 ଏହିଭଳି

ଆଇନରେ ଯାହା ଦିଆଗଲା ସରକାର ଯାହା ପରିବର୍ତ୍ତନ କରିଯିବେ । ଏଗୁଡ଼ିକପାଇଁ ତାଙ୍କ ଦେଶରେ 1929 ରେ ନିଜେ Lord Chancellor ଗୋଟିଏ କମିଟି ବସାଇଥିଲେ, on Ministers' powers. ସେ ରିପୋର୍ଟରେ ଅଛି, ଆପଣ ଦେଖିବେ ଯେଉଁ କଥାଟା ଆମର ଏଠାରେ ଅନେକଥର ହୁଏ—Objection has been taken to a form of enabling enactment sometimes called the 'Henry VIII Clause' (ଏଇ କଥା ସଭାରେ କୁହାଯାଇଛି) । Whereby a statute permits the appropriate Minister to modify its provision as far as may appear to him necessary for the purpose of bringing them into operation. ତା'ପରେ "The use of this clause usually transitory. Was specially examined by the Committee on Ministers' powers". ତାପରେ ତାର Utility ବିଷୟରେ କହିଛନ୍ତି ଯେ "it is extremely convenient for making minor adjustments to fit a few principles into the fabric of existing legislation, general or local and to meet cases of hardships to local authorities, but the argument of convenience might obviously be pushed too far"—*Ibid* p. 809. ଏଇଟା ପ୍ରତି ମୁଁ ଦୃଷ୍ଟି ଆକର୍ଷଣ କରୁଛି ଯେ ଏଭଳି ଏଥିରେ କ୍ଲଜ୍ ଅଛି no court shall question the authority of any notification or order issued under this Act. କାହିଁକି, ବରଂ କହିବାର ଥିଲା ମାଜିଷ୍ଟ୍ରେଟ ଯାହାକୁ ତିନି ଥର Habitual offender କଲେ Civil Court ମଧ୍ୟ ତିନିଥର ଯାକ ତାକୁ ମନା କରିଦେଲେ ତେବେ that Magistrate will have a black mark, ତେଣୁ ଆଉ ସେ Magistrate ହେବେନାହିଁ । ଏହା ଯଦି ହୋଇଥାଆନ୍ତା ତା'ହେଲେ ଗୋଟିଏ ମଙ୍ଗଳ ହୋଇଥାଆନ୍ତା । ସବୁବେଳେ କୋର୍ଟ କ୍ଷମତାକୁ ବହିର୍ଭୁତ କରି ଆମର କିପରି ଅବସ୍ଥା ହେଲାଣି । ଇଂଲଣ୍ଡରେ ଏହା ହେଇଛି, ଆମେ ତାଙ୍କୁ ଅନୁକରଣ କରୁଥାଇଁ । ସେମାନେ ସାମ୍ରାଜ୍ୟବାଦୀ ଥିଲେ, ଏବେ ବି ଅଛନ୍ତି । ସେମାନେ ତ ବଡ଼ ରକ୍ଷଣଶୀଳ । ଆମେ ସେହି ରକ୍ଷଣଶୀଳଙ୍କ କଥାଟାକୁ ବି ଦୃଷ୍ଟି ଦେଉନାହୁଁ । ଏହାସବୁ କି ବିପଦଜନକ ଏବଂ ଭୟାବହ । ଆଉ ଏ ସମାଜରେ ଏହା ଏକ ବିଭତ୍ସ ପରିଣାମ ହୋଇପାରେ । ଏହି କଥା ସରକାର କାହିଁକି ବୁଝୁନାହାନ୍ତି । ସରକାରଙ୍କର ଏପରି କିଛି ଦରକାର ପଡ଼ିନାହିଁ ଯେ 2/4 ଦିନ ଭିତରେ କିମ୍ବା ମାସକ ଭିତରେ ଏ ଆଇନ୍ ନ ହେଲେ ଏଇ ସମାଜର କିଛି ବିଶେଷ ଜାଣିଲା ଭଳିଆ କ୍ଷତି ହୋଇଯିବ, ସେଭଳି କିଛି ନାହିଁ ।

Shri SURENDRANATH DAS : ମାନ୍ୟବର ସଭ୍ୟ ଯଦି ମେ ଓ ଜୁନ୍ ମାସରେ ବାଲେଶ୍ୱର ଯାଇଥାନ୍ତେ କିମ୍ବା ବର୍ତ୍ତମାନ ଯେଉଁମାନେ ଜେଲରେ ଅଛନ୍ତି ତାଙ୍କ ସଙ୍ଗେ କଥାବାର୍ତ୍ତା କରିଥାନ୍ତେ ତା'ହେଲେ ଏ ଆଇନ୍‌ର ପ୍ରୟୋଜନୀୟତା ଉପଲବ୍ଧି କରିପାରନ୍ତେ ।

Shri NILAKANTHA DAS : ବାଲେଶ୍ୱରର ଲୋକ ଏ ଘରେ ମଧ୍ୟ ଅଛନ୍ତି, ସେ କଥା ନୁହେଁ । ମୁଁ ବାଲେଶ୍ୱର ଯାଇଛି କି ନାହିଁ ମୋର ସଙ୍ଗୀମାନେ ଏକଥା ଶୁଣନ୍ତୁ । ଏହି ସଭାରେ ବାଲେଶ୍ୱରର ଲୋକ କହିବାପାଇଁ ଅଛନ୍ତି । ମୋ ଘର ପାଖରେ habitual offenders କ'ଣ ନାହାନ୍ତି ? ମୁଁ କହୁଛି ମୋ ଘର ଓଡ଼ିଶା ବାହାରେ କିଛି ନୁହେଁ ବା ବାଲେଶ୍ୱରଠାରୁ ମୋ ଘର କିଛି ବେଶୀ ଉନ୍ନତତର ନୁହେଁ । ବାଲେଶ୍ୱର ସବୁଠାରେ ଅଛି, ମୁଁ ବି ସବୁଠାରେ ଅଛି, ସେକଥା କହୁନାହିଁ । ଗୋଟିଏ ସମାଜର ପ୍ରଗତି କାମନା କରି ଏ ଯେଉଁ ବାରଣାତ୍ମକ ମନୋବିଜ୍ଞାନ କରଣୀ ଏହା ଗୋଟିଏ ଭ୍ରାନ୍ତି । ଏହା ଯେପରି ଖଣ୍ଡଗିରିରୁ ଗୋଟିଏ ଆନହତ ଖଣ୍ଡା ବାହାରିବ, କଳ୍କି ଅବତାର ହେବ, ତାଙ୍କର ବାରଟା ହାତ ହେବ, ସମସ୍ତଙ୍କୁ ହାଣିବ । ସେହିପରି ଏହା ଗୋଟିଏ ହାଣ ଆଣିବା ଉଦ୍ୟମ । ମୁଁ ଅନୁରୋଧ କରୁଛି ଏମିତି କିଛି ହଠାତ୍ ନ ହେଲେ ସୃଷ୍ଟି ପ୍ରଳୟ ହେଉ ନାହିଁ । ଟଙ୍କାଟା ମହୁର ନ ହେଲେ କାମ ଚଳିବ ନାହିଁ, ସେଥିପାଇଁ ଆମେ ରାଜି ହେଲୁ । ଏହା circulation ପାଇଁ କେହି କରୁଛନ୍ତି । Circulationରେ ଯେ ବିଶେଷ କିଛି ହୋଇଯିବ ମୁଁ ଭାବୁ ନାହିଁ । ଆମ ଦେଶରେ ସମାଜ ଯାହା ହୋଇଛି ସମସ୍ତେ ଯେ ଏଥିରେ ମତ ଦେବେ ତାହା ନୁହେଁ । ସେ କଥା କହୁ ନାହିଁ ।ସରକାର ଏହାକୁ ବର୍ତ୍ତମାନ ବନ୍ଦ କରନ୍ତୁ । 4/6 ମାସ ପରେ ବିଗ୍ୱର କରି ଏ ବିଷୟରେ ଯାହାକୁ କହନ୍ତି ରଚନାତ୍ମକ କାର୍ଯ୍ୟ, ସେଇଭଳି ଯଦି କିଛି କରାଯାଇପାରେ, ସମସ୍ତଙ୍କର ପ୍ରକୃତ ମଙ୍ଗଳ କରିବା ପାଇଁ habitual offenders କିପରି ନହେବେ ତହିଁର ବ୍ୟବସ୍ଥା କରିବା ପାଇଁ ମୁଁ କହୁଛି, circulationରେ ଆମର କେହି କିଛି କହନ୍ତି ନାହିଁ । କାରଣ ସେପରି ଶିକ୍ଷା ନାହିଁ, ଗୋଟିଏ ସମୟ ଆସିବ ତାକୁ ଆଣିବା ପାଇଁ ସମସ୍ତେ ଚେଷ୍ଟା କରନ୍ତୁ । ବର୍ତ୍ତମାନ ଏ ବିଲ୍‌କୁ ଆଇନରେ ପରିଣତ କରିବା ପାଇଁ ବିଶେଷ ବ୍ୟଗ୍ରତା ଦେଖାଇବାର କୌଣସି କାରଣ ନାହିଁ । ଅତଏବ ଏ ବିଲ ସରକାର ବନ୍ଦ କରି 4/6 ମାସ ପରେ କରି ହେବ, ସେତେବେଳେ ଆମର ପରାମର୍ଶ ନେବା ପାଇଁ କିଛି ଆପତ୍ତି ନାହିଁ । ଆମେ ବି ତାଙ୍କ ସଙ୍ଗରେ ସହଯୋଗ କରିବାପାଇଁ ରାଜି ଅଛୁଁ । ଏପରି ଗୋଟିଏ ସମୟରେ Habitual Offenders Bill କରି ସମାଜକୁ ଶୋଧ କରିବା ପାଇଁ ଆମେ କ'ଣ ନାହିଁ କରୁଛୁ ? କିନ୍ତୁ ସବୁ ଭାର ଦିଆଯିବ ମନ୍ତ୍ରୀ ବା ମାଜିଷ୍ଟ୍ରେଟଙ୍କୁ, ଏହା କେବେ କରିବା ଉଚିତ ନୁହେଁ । ମୁଁ ଆଉ ବିଶେଷ ସମୟ ନେବା ପାଇଁ ଗ୍ୱହୁଁ ନାହିଁ । ମୁଁ ପ୍ରାର୍ଥନା କରୁଛି, ଅନୁରୋଧ କରୁଛି ସରକାର ଏହାକୁ ବନ୍ଦ କରନ୍ତୁ । ସରକାରଙ୍କର ଉଦ୍ଦେଶ୍ୟ ଭଲ, କିନ୍ତୁ ଏ ଯେଉଁ ପ୍ରଣାଳୀ ତାହା ଭୁଲ । ସେଥିପାଇଁ ମୁଁ କହୁଛି ।

Shri SURENDRANATH DAS: ଏ ଆଇନ୍‌ରେ କେଉଁଠି ମନ୍ତ୍ରୀଙ୍କୁ କ୍ଷମତା ଦିଆ ଯାଇଛି ତାହା ତ ନାହିଁ ?

Shri NILAKANTHA DAS : Clause 13ରେ କ୍ଷମତା ଦିଆ ଯାଇଛି ।

## 8. ଓଡ଼ିଶାର ଗ୍ରାମପଞ୍ଚାୟତ କାର୍ଯ୍ୟାନୁସନ୍ଧାନ ସମିତି ଗଠନ ପ୍ରସ୍ତାବ

## Resolution for appointment of a Committee to enquire into the working of the Grama Panchayats of Orissa.

1953 ମାର୍ଚ୍ଚ 6 ତାରିଖରେ ନୀଳକଣ୍ଠ ଓଡ଼ିଶା ଗ୍ରାମ ପଞ୍ଚାୟତଗୁଡ଼ିକର କାର୍ଯ୍ୟକାରିତା ସଂପର୍କରେ ଅନୁସଂଧାନ ପାଇଁ ଏକ ସମିତି ଗଠନ ପ୍ରସ୍ତାବ ସଂପର୍କରେ କହିବାକୁ ଯାଇ ଗୋଷ୍ଠୀ ଉନ୍ନୟନ କାର୍ଯ୍ୟକ୍ରମର ଦୋଷ ତ୍ରୁଟି ସଂପର୍କରେ ଆଲୋକପାତ କରିଛନ୍ତି । ଗ୍ରାମ୍ୟ ସମସ୍ୟା ସଂପର୍କରେ ତାଙ୍କର ପ୍ରତ୍ୟକ୍ଷ ଅନୁଭୂତି କେତେକ ବିଷୟରେ ସରକାରଙ୍କର ମଧ୍ୟ ଆଖି ଖୋଲି ଦେଇଥିଲା ।

ଗ୍ରାମ ପଞ୍ଚାୟତ କିପରି ଲକ୍ଷ୍ୟ ସାଧନରେ ଅସମର୍ଥ ହେଉଛି, ତାହା ଦେଖାଇ ନୀଳକଣ୍ଠ କହିଛନ୍ତି ଯେ ଏହା ଏକ ସ୍ଲୋଗାନରେ ପରିଣତ ହୋଇଛି । ଜନମଙ୍ଗଳ ରାଷ୍ଟ୍ର (Welfare State) ଗଠନରେ ଏହାର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ସେ ଯଥାର୍ଥରେ କହିଥିଲେ, "ଆମ ଲୋକଙ୍କୁ ସ୍ୱାଧୀନତା ଆଡ଼କୁ ନେବାକୁ କହୁଛୁଁ, କିନ୍ତୁ ଗ୍ରାମ ପଞ୍ଚାୟତ ଛଡ଼ା ଏସବୁ କାମ ହୋଇପାରିବ ନାହିଁ ବୋଲି ମୋର ପୂର୍ଣ୍ଣ ବିଶ୍ୱାସ । ଗ୍ରାମ ପଞ୍ଚାୟତ ଗୋଟିଏ ଭଲ ଜିନିଷ । କିନ୍ତୁ ଯେପରିଭାବରେ ତାହା ହୋଇ ଆସୁଛି, ତାହା ପ୍ରହସନ ଛଡ଼ା ଆଉ କିଛି ନୁହେଁ । ଏସବୁ ଦେଖି ମୋତେ ଦୁଃଖ ଲାଗୁଛି ।"

ଗ୍ରାମ ପଞ୍ଚାୟତ କିପରି ଆମର ଏକ ପ୍ରାଚୀନ ପରଂପରା ଓ ପୂରାକାଳରୁ ଆମ ରାଜ୍ୟରେ ପ୍ରଚଳିତ ଥିଲା, ତାହାର ପ୍ରମାଣ ସେ ଅଶୋକଙ୍କ କଳିଙ୍ଗ ଯୁଦ୍ଧ ସମୟର ଅବସ୍ଥାରୁ ଦୃଷ୍ଟାନ୍ତ ଦେଇଛନ୍ତି । ଏଠାରେ ଥିଲା ପ୍ରକୃତ ଗଣତନ୍ତ୍ର । ସାମ୍ରାଜ୍ୟବାଦ ବିରୁଦ୍ଧରେ ସେମାନଙ୍କର ଗଣଯୁଦ୍ଧ କରିଥିଲେ । ସତେବେଳେ କେହି କଳିଙ୍ଗର ସମ୍ରାଟ ନ ଥିଲେ । ଜନତା ଜନାର୍ଦ୍ଦନ ହିଁ ଗ୍ରାମ ପଞ୍ଚାୟତ ମାଧ୍ୟମରେ ଗଣତନ୍ତ୍ରର ପରାକାଷ୍ଠା ଦେଖାଇଥିଲେ । କଳିଙ୍ଗ ଯୁଦ୍ଧରେ ସେମାନେ ଯେଉଁ ଆତ୍ମବଳୀ ଦେଇଥିଲେ, ଭାରତୀୟ ତଥା ବିଶ୍ୱ ଇତିହାସରେ ଥିଲା, ଅଭୁତପୂର୍ବ ଓ ଅତୁଳନୀୟ ।

ସଂପ୍ରତି ଗ୍ରାମରେ ଥିବା ମହାଜନ ସଭାର ଉଦାହରଣ ଦେଇ ନୀଳକଣ୍ଠ କହିଛନ୍ତି, "ଆମର ମହାଜନ ସଭା ଅଛି, ଯେଉଁଠି କି ଯାହାର ଗ୍ରାମମୁଖ୍ୟ ବା ମହାଜନମାନେ, ଧର ଯାହାକୁ 35 ବର୍ଷରୁ ଊଣା ହୋଇ ନଥିବ, ସେଇମାନେ ଯାଇ ବସନ୍ତି । ଗାଁର ଶିକ୍ଷା, ସ୍ୱାସ୍ଥ୍ୟ, ବନ୍ଧ ପକାଇବା ଇତ୍ୟାଦି ସମସ୍ତ କାର୍ଯ୍ୟ ବୁଝନ୍ତି । ଏବେ ମଧ୍ୟ ତାହାର ଟିକିଏ ଛାୟା ଅଛି । ଜଣେ ଲୋକର ଖାଲି ଘରଡ଼ିହ ଅଛି, ଅନ୍ୟଲୋକର 50 ବାଟି ଜମି ଅଛି, କିନ୍ତୁ ଉଭୟଙ୍କର ଅଧିକାର ସେ ମହାଜନ ସଭାରେ ସମାନ । ତେଣୁ ଏ ଯେଉଁ ଗ୍ରାମ ପଞ୍ଚାୟତ ଚାଲିଛି, ଏ ଗଟା ଆମକୁ ବିଶେଷ କିଛି ନୂଆକଥା ନୁହେଁ ।" ଅତୀତର ଇତିହାସରୁ

ମଧ୍ୟ ଅନେକ ତଥ୍ୟ ପରିବେଷଣ କରି କର୍ମତତ୍ପରତା, ସାଧୁତା, ନିଷ୍ଠା ଇତ୍ୟାଦି କିପରି ଗ୍ରାମ ପଞ୍ଚାୟତରେ ଥିଲ ଏବଂ ଏବେ ମଧ୍ୟ ଗ୍ରାମ୍ୟ ଜୀବନରେ ନାନା ରୂପରେ ରହିଛି ଦେଖାଇଛନ୍ତି ।

କିନ୍ତୁ ଆଜିକାଲି ଗ୍ରାମ୍ୟଜୀବନ ସହିତ ସମ୍ପର୍କ ନ ରଖି ଉପରେ ଉପରେ ସବୁ ଶାସନ ଚ଼ାଲିଛି । ମନ୍ତ୍ରୀମାନେ ମଧ୍ୟ ଗ୍ରାମ ପଞ୍ଚାୟତକୁ ଯାଇ ଦେଖୁନାହାଁନ୍ତି । ପ୍ରଶାସକମାନେ ମଧ୍ୟ ତତୋଧିକ । ଡାକବଙ୍ଗଳାକୁ ଡାକି ବଡ଼ ଅଧିକାରୀମାନେ ପଞ୍ଚାୟତ କଥା ବୁଝନ୍ତି । ଏମିତିକି ସର୍କୁଲର ଇତ୍ୟାଦି ମଧ୍ୟ ଗ୍ରାମ ପଞ୍ଚାୟତକୁ ଇଂରଜୀ ଭାଷାରେ ଯାଉଛି ବୋଲି ନୀଳକଣ୍ଠ ଆପତ୍ତି କରିଛନ୍ତି । ସେ ମଧ୍ୟ ଏ ଦିଗରେ ଥିବା ଭଲ କାର୍ଯ୍ୟକୁ ପ୍ରଶଂସା ନ କରି ରହିପାରିନାହାନ୍ତି । ସେ ବିଧାନ ସଭା ଗୃହରେ କହିଛନ୍ତି, "ଆଉଥରେ ଆମ୍ଭମାନଙ୍କର ଯେ ମନ୍ତ୍ରୀ ଥିଲେ ଶ୍ରୀ କପିଳେଶ୍ୱର ପ୍ରସାଦ ନନ୍ଦ, ସେ ବରାବର ମଫସଲରେ ଯେଉଁଠି ଯାହା ଆପତ୍ତି ହେଲ ସେ ଆପତ୍ତି କିପରି ନ ହୋଇପାରିବ ସେଥିପାଇଁ ଆଇନ ତିଆରି କରୁଥିଲେ ।" ଆଜିକାଲି ସେପରି ଆନ୍ତରିକତାର ଘୋର ଅଭାବ । ଫଳରେ ପଞ୍ଚାୟତଗୁଡ଼ିକ ବିକାଶ ସମ୍ଭବ ହେଉନାହିଁ

ମନ୍ତ୍ରୀମାନେ ସବୁକଥା ବୁଝିବାକୁ ଚେଷ୍ଟା କରିବା ଓ ନବୁଝିପାରିଲେ ବିଧାୟକଙ୍କ ସହିତ ଆଲୋଚନା କରିବାକୁ ସେ ଚାହିଁଛନ୍ତି । "ମୁଁ ଜବାବ ଦେଉଛି ଆମ୍ଭେମାନେ ପରାମର୍ଶ ଦେବୁ, ସାହାଯ୍ୟ କରିବୁ, ସବୁ କରିବୁ ଯେପରି କି ଏ ଗ୍ରାମ ପଞ୍ଚାୟତଗୁଡ଼ିକ ଭଲ ହେବ ।" ଏଥିରେ କୌଣସି ଦଳଗତ ଭେଦଭାବର ସ୍ଥାନ ରହିବା ଉଚିତ ନୁହେଁ । "ସରକାର କୌଣସି ଦଳର ନୁହେଁ ବୋଲି ଭାବିବା ଦରକାର ।" ଏହା ନୀଳକଣ୍ଠଙ୍କ ନୀତି ଏବଂ ଯେଉଁଠି ସେ ଏପରି ଆଦର୍ଶର ସୂଚନା ପାଇଛନ୍ତି, ସେଠାରେ ସେ ପ୍ରଶଂସାରେ ଶତଜିହ୍ୱା ହୋଇଛନ୍ତି । ସେ କହିଛନ୍ତି—ବଡ଼ ସୁଖର କଥା, କୌଣସି ଜଣେ ମନ୍ତ୍ରୀ ଗୋଟିଏ ଜାଗାକୁ ଯାଇଥିଲେ । ସେ ଗୋଟିଏ ବଡ଼ ସଭାରେ କହିଥିଲେ "ମୋତେ ତୁମ୍ଭେମାନେ କଂଗ୍ରେସବାଲା ବା କଂଗ୍ରେସ ଲୋକ ଭାବି କଥା କୁହନାହିଁ ।" ଅବଶ୍ୟ ସମସ୍ତେ ଏପରି କହିପାରିବେ ନାହିଁ । କିନ୍ତୁ ସମସ୍ତେ ଏହିପରି କହିବା ଉଚିତ ।

ଗ୍ରାମ ପଞ୍ଚାୟତ ପରିଚାଳନାରେ ଯେଉଁ ଦୋଷ ତ୍ରୁଟି ପରିଦୃଷ୍ଟ ହେଉଛି, ସେଗୁଡ଼ିକ ସମୂହ ସହଯୋଗ ଓ ନିଷ୍ଠାପର ଉଦ୍ୟମ ଫଳରେ ଦୂର କରାଯାଇପାରିବ ବୋଲି ନୀଳକଣ୍ଠଙ୍କ ବିଶ୍ୱାସ । ତେଣୁ ଗୃହର ସଭ୍ୟମାନେ ବଭିନ୍ନ ଗ୍ରାମ ପଞ୍ଚାୟତକୁ ଯାଇ ପ୍ରତ୍ୟକ୍ଷ ଅନୁଭୂତି ଲଭ କରନ୍ତୁ ଏବଂ ସରକାରଙ୍କୁ ଯଥାଯଥ ପରାମର୍ଶ ପ୍ରଦାନ କରନ୍ତୁ, ଏହା ତାଙ୍କର ଦାବି । ସେ ଯଥାର୍ଥରେ କହିଛନ୍ତି, "ଏଥିରେ ଯେଉଁସବୁ ଦୋଷ ତ୍ରୁଟି ରହିଛି ତାକୁ ଦୂର କରାଯାଉ । ତାହାନହେଲେ ଏ ଯେଉଁ ଭାଣ୍ଡ କାରଖାନା ଚାଲିଛି, ତାକୁ ବନ୍ଦ କରାଯାଉ । ମୁଁ ଅନୁରୋଧ କରୁଛି ଏସବୁ ଦୋଷ ତ୍ରୁଟି ଦୂର କରି ନପାରିଲେ ଦୁର୍ନିତି ଓ ଦୁରାଗ୍ରହ ଦେଶର

ରନ୍ଧ୍ରେ ରନ୍ଧ୍ରେ ପଶିଯିବ । କୌଣସି ସୁଶାସନ ଫୁଟିବ ନାହିଁ । " କି ଦୂରଦୃଷ୍ଟି ଓ ନିଷ୍ଠାର ସହିତ ସେ ଦେଶର ବିକାଶପାଇଁ ଦିଗ୍‌ଦର୍ଶନ ଦେଇଛନ୍ତି ! ତାଙ୍କର ପରାମର୍ଶ ଏବେ ବି ଖୁବ୍ ପ୍ରାସଂଗିକ ଓ ପ୍ରଣିଧାନଯୋଗ୍ୟ !

Shri NILAKANTHA DAS : ବାଚସ୍ପତି ମହାଶୟ, ଆଜି ବେଶୀ କହିବାର ସୁବିଧା ନାହିଁ । ଏ ସମ୍ବନ୍ଧରେ ଅଞ୍ଚଳ ଶାସନ ବିଷୟରେ ଗୋଟିଏ ଆଇନ ଆସୁଛି । ସେ ବିଷୟରେ କହିବି ବୋଲି ଭାବୁଥିଲି, କିନ୍ତୁ ଆଜି ଏ ବିଷୟରେ ଏତେ ଶୀଘ୍ର ମୋତେ କହିବାକୁ ପଡିଯିବ ବୋଲି ମୁଁ ମନେ କରି ନ ଥିଲି । ସେ ଯାହାହେଉ ଆଜି ଏ ବିଷୟରେ କହିବାପାଇଁ ପଡିଲା । ମୁଁ ପ୍ରଥମେ ମୋର ବନ୍ଧୁ Shri V. Sitaramayyaଙ୍କୁ ସାଧୁବାଦ କରୁଛି, କାରଣ ସେ ଏ ବିଷୟ ଏଠାରେ ଉପସ୍ଥାପିତ କରିଛନ୍ତି । ଏହା ଯେତେ କମ୍ ହେଲେ ମଧ୍ୟ ଏହାର ବ୍ୟବହାର ଅଛି । ଆଜି ଆରପାଖ ବେଞ୍ଚରେ ଯେଉଁ ଦଳ ବସନ୍ତି ସେମାନେ, ବୋଧହୁଏ ଯାହାଙ୍କ ମୁଣ୍ଡଉପରେ ଏ ବିଷୟଟି ଅଛି, ତାଙ୍କ ଉପରେ ଘପ ଦେବା ଆଉ ସମସ୍ତେ ଅଲଗା ହୋଇ ଯାଇଛନ୍ତି । ଏ ଗୋଟିଏ ବିଷୟ ଯାହା ଉପରେ ସମସ୍ତେ ଧ୍ୟାନ ଦେବା ଉଚିତ । ଏହାତ ଆମେ ଅନୁଭବ କରୁଛୁ । ସେମାନେ କେତେ ଦୂର କରୁଛନ୍ତି ମୁଁ କହିପାରିବ ନାହିଁ । 'ଗ୍ରାମପଞ୍ଚାୟତ' ଏହି ନାମଟି ଭଲ ନାମ କିନ୍ତୁ ଭଲ ନାମରୁ ବାହାରେ slogan ଓ shilboleth । କାର୍ଯ୍ୟରେ ତା ହୋଇଯାଏ । ଇଂରେଜୀରେ ଯାହାକୁ କହନ୍ତି fad and fetish । ଗ୍ରାମପଞ୍ଚାୟତ ତାହା ନୁହେଁ, ମାତ୍ର ଅନ୍ୟାନ୍ୟ ଅନେକ ଜିନିଷ ପରେ ଗ୍ରାମପଞ୍ଚାୟତ କଥାଟି ଆମର ସେଇଆ ହୋଇଯାଇଛି । ଯେପରି ଖାଲି କହି ଦେଉଛନ୍ତି ଖଦୀ, ଗ୍ରାମପଞ୍ଚାୟତ ଇତ୍ୟାଦି । କିନ୍ତୁ ତାହାଭିତରେ କ'ଣ ଅଛି ସେ ଜନିଷଟା କ'ଣ ଏହା ବୋଧହୁଏ ଅନେକ ବୁଝୁ ନାହାଁନ୍ତି । ଆମେ ଏ ଦେଶକୁ Welfare State କରିବାକୁ କହୁଛୁ । ଆମ ଲୋକଙ୍କୁ ସ୍ୱାଧୀନତା ଆଡକୁ ନେବାକୁ କହୁଛୁ, କିନ୍ତୁ ଗ୍ରାମପଞ୍ଚାୟତ ଛଡା ଏସବୁ କାମ ହୋଇ ପାରିବ ନାହିଁ ବୋଲି ମୋର ପୂର୍ଣ୍ଣ ବିଶ୍ୱାସ । ଗ୍ରାମପଞ୍ଚାୟତ ଗୋଟିଏ ଭଲ ଜିନିଷ । କିନ୍ତୁ ଯେପରିଭାବରେ ତାହା ହୋଇ ଆସୁଛି, ତାହା ପ୍ରହସନ ଛଡା ଆଉ କିଛି ନୁହେଁ । ଏସବୁ ଦେଖି ମୋତେ ଦୁଃଖ ଲାଗୁଛି । ଆମର ଶିକ୍ଷା ମନ୍ତ୍ରୀ ଯାହା ହେଉ ଶିକ୍ଷା ପାଇଁ ଗୋଟିଏ ଜିନିଷ କରୁଥିଲେ । ସବୁ ଦଳର ସବୁ ମତର ଲୋକଙ୍କୁ ଡାକି ସେମାନଙ୍କର ମତକୁ ପ୍ରଣିଧାନ ଦେଇ କରୁଥିଲେ । Select Committee ରେ ଯାହା ସବୁ ହୁଏ, ତାକୁ କହନ୍ତି ନାହିଁ ।

The SPEAKER: Select Committee Report presented ହୋଇ ସାରିଲାଣି । ବର୍ତ୍ତମାନ Select Committeeରେ ଯାହା ହୋଇଥିଲା, ତାହା କହିଲେ ଆପତ୍ତି ନାହିଁ ।

ଶ୍ରୀ ନୀଳକଣ୍ଠ ଦାସ : ସେ ଯାହାହେଉ ଗ୍ରାମପଞ୍ଚାୟତ ପାଇଁ ଗୋଟିଏ କମିଟି ପ୍ରସ୍ତାବ ହେଉଛି । ଏତେକାଳ ମନ୍ତ୍ରୀ ମହାଶୟ ଗ୍ରାମପଞ୍ଚାୟତ କାମ କରି କେତେଟା ପରୀକ୍ଷା ସ୍ୱରୂପ ଆମକୁ ଦେଖାଇ ଦିଅନ୍ତେ ଗ୍ରାମପଞ୍ଚାୟତ ଫଳରେ ଲୋକଙ୍କର ଏହି ଭାବ ହୋଇଛି, ଆସ ଦେଖିବ ବୋଲି ଆମକୁ କହନ୍ତେ, ଆମେ ବିରୋଧୀ ଲୋକ ବିରୋଧୀମାନେ ମୁଥ ମାରିବା ନୁହେଁ । ଗ୍ରାମପଞ୍ଚାୟତ କଥାଟା ନୂଆନୁହେଁ, ଏହା ଭାରତୀୟ ଜିନିଷ । ଓଡ଼ିଶାରେ ବହୁକାଳରୁ ଏହା ଚାଲିଥିଲା । ସେ ଦିନ ମୁଁ କଲେଜରେ କହୁଥିଲି ଯେ କଳିଙ୍ଗ ଜିଣିବାକୁ ଆସଥିଲେ ଅଶୋକ, ଲକ୍ଷେ ଲୋକ ମଲେ । ଦେଢ଼ ଲକ୍ଷ ଲୋକ ବନ୍ଦୀ ହେଲେ ଆଉ କେତେ ଲୋକ ଘରଦ୍ୱାର ଶୂନ୍ୟ ହେଲେ । ଆପଣମାନେ ଜାଣିଛନ୍ତି ସେତେବେଳେ କଳିଙ୍ଗର ସମ୍ରାଟ କିଏ ଥିଲା, କଳିଙ୍ଗର ଲୋକେ ଯେପରିକି ପିଂପୁଡ଼ି ମରିକରି ଭାସି ଅନ୍ୟ ପିଂପୁଡ଼ିଙ୍କପାଇଁ ପୋଲ ତିଆରି କରିଦଅନ୍ତି, କଳିଙ୍ଗର ଲୋକେ ଯୁଦ୍ଧରେ ସେହିପରି କରୁଥିଲେ । କଳିଙ୍ଗର ଗ୍ରାମ୍ୟ ଶାସନ ଓ ସଭ୍ୟତା ଇତିହାସ ଓ ସଂସ୍କୃତି ଆକାରରେ ରହିଛି, ତାକୁ ସେମାନେ ରକ୍ଷା କରୁଥିଲେ । ସାମ୍ରାଜ୍ୟବାଦକୁ ପୁରାଇ ଦେଉ ନ ଥିଲେ । ଯୁଦ୍ଧରେ ଏହିପରିଭବରେ ଆତ୍ମଦାନ କରୁଥିଲେ । ଏଥିପୂର୍ବରୁ ଆପଣମାନେ ଶାସନମାନଙ୍କରେ ଦେଖନ୍ତୁ । ଯେତେବେଳେ ମୋଗଲ ରାଜତ୍ୱ ଥିଲା ସେତେବେଳେ ମାନସିଂହ ଆସି ରାମଚନ୍ଦ୍ରଙ୍କୁ ରାଜା କରିଦେଇଗଲେ । ତାପରେ ରାମଚନ୍ଦ୍ର ଦେବ ଏହିସବୁ ଶାସନ ବସାଇଥିଲେ । ସେହି ଶାସନର ସେ ପ୍ରାଚୀନ ପରମ୍ପରାର ଛାୟା ବର୍ତ୍ତମାନ ସୁଦ୍ଧା ଅଛି । ଆମର କୋଠ ଦେବତ୍ତର ଅଛି । ଆମର ମହାଜନ ସଭା ଅଛି, ଯେଉଁଠିକି ଯାହାର ଗ୍ରାମ୍ୟମୁଖ୍ୟ ବା 'ମହାଜନମାନେ', ଧର ଯାହାକୁ ୨୫ ବର୍ଷରୁ ଊଣା ହୋଇ ନ ଥିବ, ସେଇମାନେ ଯାଇ ବସନ୍ତି । ଗାଁର ଶିକ୍ଷା, ସ୍ୱାସ୍ଥ୍ୟ, ବନ୍ଧ ତୋଳାଇବା ଇତ୍ୟାଦି ସମସ୍ତ କାର୍ଯ୍ୟ ବୁଝନ୍ତି । ଏବେ ମଧ୍ୟ ତାହାର ଟିକିଏ ଛାୟା ଅଛି, ଜଣେ ଲୋକର ଖାଲି ଘରଡ଼ିହ ଅଛି, ଅନ୍ୟ ଲୋକର ୫୦ ବାଟି ଜମି ଅଛି । କିନ୍ତୁ ଉଭୟଙ୍କର ଅଧିକାର ସେ ମହାଜନ ସଭାରେ ସମାନ । ତେଣୁ ଏ ଯେଉଁ ଗ୍ରାମପଞ୍ଚାୟତ ଚାଲିଛି, ଏଇଟା ଆମକୁ ବିଶେଷ କିଛି ନୂଆ କଥା ନୁହେଁ । ଆମ ଦେଶରେ ଗ୍ରାମପଞ୍ଚାୟତ ପର୍ଯ୍ୟନ୍ତ ଚାଲି ଆସିଛି । ସାରଳା ଦାସ ଲେଖିଛନ୍ତି, ସେ'ଟା ଅବଶ୍ୟ ମୁଁ ଏଠାରେ ଆଉଥରେ କହିଥିଲି "ଯେ ଯାହା ଅର୍ଜଇ ତହିଁରୁ ଦୁଇ ଭାଗ, ସୈନ୍ୟ ପାଳିବାକୁ ନେଇ ଥୁଏ ରାଜା ଆଗ" ବୋଧହୁଏ ଯେ ଯାହାର ଆୟର ଦୁଇ ଅଣା ରାଜ କାର୍ଯ୍ୟପାଇଁ କେନ୍ଦ୍ରକୁ ଦେଉଥିଲେ । ଏହିପରିଭାବରେ ଗ୍ରାମର କାର୍ଯ୍ୟ ଚାଲୁଥିଲା । ଗ୍ରାମରେ ଭୋଇ ବୋଇଲେ ବୌଦ୍ଧକାଳରୁ 'ଭୋଜକ' । ଏହି ଭୋଇମାନେ ସମସ୍ତ ଅସୁଲ କରି ରାଜାଙ୍କୁ ଦେଉଥିଲେ ଓ ପଞ୍ଚାୟତ ଖର୍ଚ୍ଚ ପାଇଁ ରଖୁଥିଲେ । ସେ ଭୋଇମାନେ ଲୋକଙ୍କର ଆୟ, ଜମିବାଡ଼ି ସବୁ ଦେଖି ଠିକ୍ ଜାଣୁଥିଲେ ଓ ହିସାବ ରଖୁଥିଲେ । ଗାଁଆଲୋକଙ୍କର ସଂଗତି ସେମାନଙ୍କୁ ଜଣା ଥାଏ । ବର୍ତ୍ତମାନ ଆମେ ଯାହାକୁ ଟିକସ କହୁଛୁ ସେମାନେ ସେସବୁ ନେଉଥିଲେ । ଗାଁଆରେ ଭୋଇ ବସିକରି ସବୁ ଠିକ୍‌କରି ଦେଉଥିଲେ କିଏ କେତେ ଦେବ । ତା'ପରେ

ସମସ୍ତେ ଯାଇ ମହାଜନ ସଭାରେ ବସି ବଡ଼ ବଡ଼ ସମସ୍ୟାର ସମାଧାନ କରି ଦେଉଥିଲେ । ଭୋଇ ଯାଇ ମହାଜନ ସଭରେ କହିଦିଅନ୍ତି ଗୋଟିଏ ବନ୍ଧ ବଢ଼ିରେ ଭାଙ୍ଗିଗଲା ତାକୁ ବାନ୍ଧିବାକୁ ହେବ, ସାଙ୍ଗେ ସାଙ୍ଗେ 5 ମିନିଟ୍ ଭିତରେ କଥା ଠିକ୍ ହୋଇଯାଏ । ଗ୍ରାମବାସୀମାନେ କାମ କରିବାକୁ ବାହାରି ପଡ଼ନ୍ତି । 4/5 ଘଣ୍ଟାରେ ବଡ଼ ବଡ଼ ବନ୍ଧ ବନ୍ଧା ହୋଇଯାଏ, ଏହା ମୁଁ ନିଜ ଆଖିରେ ସବୁ ଦେଖିଛି । ସେସବୁ ମୋର ପିଲାଦିନେ ଦେଖିଥିଲି । ବର୍ତ୍ତମାନ ଲୋକଙ୍କୁ ଆକ୍ଟ କରି authority ଏବଂ power ଦିଆଯାଉଛି । ଏଥିରେ କ'ଣ ହେବ ? ଆମେତ ମନ୍ତ୍ରୀମାନଙ୍କୁ authority power ଦେଇଛୁଁ କିନ୍ତୁ କାମ କିପରି ହେଉଛି, ତାହାତ ଆମେ ଦେଖୁଛୁଁ । ପଞ୍ଚାୟତ ଆଇନ ହେଲା, ତାହା କାର୍ଯ୍ୟକାରି ହେଉଛି କିନ୍ତୁ ମୁଁ ଜାଣିବାକୁ ଚାହେଁ କେତେ ଜଣ ମନ୍ତ୍ରୀ ନିଜେ ଯାଇଁ ଏସବୁ ପଞ୍ଚାୟତ ଦେଖିଛନ୍ତି । ସେମାନେ ନିଜେ ଯାଉ ନାହାଁନ୍ତି କି ଆମମାନଙ୍କୁ କି ସୁବିଧା ଦେବା ଉଚିତ ଥିଲା ତାହା ଦେଉ ନାହାଁନ୍ତି । ଆମ୍ଭମାନଙ୍କ କହନ୍ତେ ତୁମ consi-tuency ରେ ଏତେଗୁଡ଼ିଏ ପଞ୍ଚାୟତ ଅଛି, ତୁମେ ତାକୁ ଦେଖିବ, ତାହା ବି କହୁ ନାହାନ୍ତି । ଆମର ସତ୍ୟବାଦୀରେ ଗୋଟିଏ ଗ୍ରାମପଞ୍ଚାୟତ ଅଛି । ଅଦାଲତି ପଞ୍ଚାୟତ ମଧ୍ୟ ସେଠାରେ ହୋଇଛି । ଏସବୁ ବିଷୟରେ Subdivisional Magistrate ବା ଏଇମାନେ ତ ହେଉଛନ୍ତି ସବୁ । ମନ୍ତ୍ରୀମାନେ ତ କିଛି ଜାଣୁ ନାହାଁନ୍ତି । Subdivisional Officer ଯେତେବେଳେ ସେଠାକୁ ଯାଉଛନ୍ତି, ଡାକବଙ୍ଗଳାରେ ଯାଇଁ ବସୁଛନ୍ତି । ସେଇଠାରେ ସବୁ କଥା ବୁଝୁଛନ୍ତି । ଗାଁଆର କେତେକ ଲୋକ ସେଠାକୁ ଆସନ୍ତି । ସେମାନେ ହୁଏତ ସେମାନଙ୍କର ଅନୁଗୃହୀତ ଲୋକ ହୋଇଥିବେ କି ଆଉ କିଛି ମୁଁ କହି ପାରିବି ନାହିଁ । ଏ ଯେଉଁ ଆଇନଗୁଡ଼ିକ ହେଉଛି ସେ ଗୁଡ଼ିକ ଇଂରାଜୀରେ ହେଉଛି ଏବଂ ଆମେ ବୁଝି-ପାରୁନାହୁଁ । ଯାହାହେଉ ସତ୍ୟବାଦୀକୁ ଆମର ଯେଉଁ ଆଇନଗୁଡ଼ିକ ଯାଉଛି ସେ-ଗୁଡ଼ିକ ଇଂରାଜୀରେ ଯାଉଛି । ଅବଶ୍ୟ ଓଡ଼ିଆରେ ଯିବା ଉଚିତଥିଲା । ଅଞ୍ଚଳ ଶାସନ ବିଲ୍ ଆଲୋଚନାବେଳେ ମୁଁ ଏ ବିଷୟରେ ବହୁତ କଥା କହିବି । ବର୍ତ୍ତମାନ ଆଉ ଗୋଟିଏ କଥା କହୁଛି । ଆରଥର ଆମ୍ଭମାନଙ୍କର ଯେ ମନ୍ତ୍ରୀ ଥିଲେ ଶ୍ରୀ କପିଳେଶ୍ୱର ପ୍ରସାଦ ନନ୍ଦ ସେ ବରାବର ମଫସଲରେ ଯେଉଁଠି ଯାହା ଆପତ୍ତି ହେଲା ସେ ଆପତ୍ତି କିପରି ନ ହୋଇ ପାରିବ, ସେଥିପାଇଁ ଆଇନ ତିଆରି କରୁଥିଲେ । ତାଙ୍କର ବରାବର ଚେଷ୍ଟା ଥିଲା ଆଇନରେ ଆପତ୍ତିଗୁଡ଼ିକୁ ବନ୍ଦ କରିବାପାଇଁ । ଲୋକଙ୍କର ଅସୁବିଧା ହେଉ ପଛକେ ସେମାନେ ଯେପରି ଆପତ୍ତି କରିବାର ସୁବିଧା ନ ପାଇବେ । ସେଥିପାଇଁ ସେ ଆଇନକୁ ବାରମ୍ବାର ସଂଶୋଧନ କରୁଥିଲେ । ଗ୍ରାମବାସୀ, ସରପଞ୍ଚ, ନାଏବ ସରପଞ୍ଚ ବାଛିବାର କଥା । ନାଏବ ସରପଞ୍ଚ ଅବଶ୍ୟ Vice-President, ତାଙ୍କର କଥା ଉଠୁ ନାହିଁ । କିନ୍ତୁ ଯେ ସରପଞ୍ଚ ହେବେ ସେ ସମସ୍ତଙ୍କର ବିଶ୍ୱାସର ପାତ୍ର ହୋଇଥିବେ । ସେ କୌଣସି ଗୋଟିଏ ବିଶିଷ୍ଟ ଦଳର ଲୋକ ହେବେ ନାହିଁ । ଅଥଚ ସେହି ନିର୍ବାଚିତ ଲୋକଟିକୁ ପ୍ରଥମେ nominated କରାଯାଇଥିଲା । ଲୋକେ ଆଇନ ଅନୁସାରେ ନିର୍ବାଚିତ ସରପଞ୍ଚ ଦାବି କଲେ । ତେଣୁ ସଙ୍ଗେ ସଙ୍ଗେ ଆଇନଟିକୁ

ସଂଶୋଧନ କରିଦେଲେ । ଆଇନରେ ଆଗେ ସେ ସରପଞ୍ଚ ପଞ୍ଚାୟତର member ନ ଥିଲେ । ପରେ ଯେତେବେଳେ ସରପଞ୍ଚ ନର୍ବାଚନ କରିବା ସମୟ ହେଲା ଓ ଗ୍ରାମବାସୀ ବା ଗ୍ରାମ ସଭାର ମେମ୍ବରମାନେ କହିଲେ ଯେ ଆମର ନିଜ ଭିତରୁ ଜଣେ ଲୋକ ସରପଞ୍ଚ ହେବ, ଆଇନ ସଂଶୋଧନ କରି ଦିଆ ହେଲା; ଗ୍ରାମ ସଭା ମେମ୍ବର ନୁହେଁ, କେବଳ ପଞ୍ଚାୟତ ସଭା ମେମ୍ବରମାନେ ସରପଞ୍ଚ ବାଛିବେ । ମାତ୍ର ସେଥିରେ ମନ୍ତ୍ରୀଙ୍କ ନିଜ ମନୋନୀତ ହୋଇ ରହିଥିବା ସରପଞ୍ଚମାନେ ନିର୍ବାଚିତ ହେବାର ସଂଭାବନା ରହିଲା ନାହିଁ । ଏଇ ନୂଆ ସଭା ହୋଇ ଯାଇଥିଲା । ତେଣୁ ସରକାର ଆଉ ଏ କଥାଟିକୁ ଏଠାରେ ଉଠାଇଲେ ନାହିଁ, କି ଉଠାଇବାପାଇଁ ସାହାସୀ ହେଲେ ନାହିଁ । ସରକାର ଗୋଟାଏ ବେଆଇନ circular କରି ଦେଲେ ଯେ election ସମୟରେ ଯେ ସରପଞ୍ଚ , ନାଏବ ସରପଞ୍ଚ ଥିବେ ସେମାନେ member ବୋଲି ଧରାଯିବେ ଏବଂ ସେମାନେ ଭୋଟ ଦେଇ ଓ ଭୋଟ ପାଇ ନୂଆ ସରପଞ୍ଚ ହୋଇ ପାରିବେ । ଲୋକେ କ'ଣ ଏ ସବୁ ପଢୁଛନ୍ତି ? ଏହିଭଳିଭାବରେ elected ହୋଇ ବର୍ତ୍ତମାନ ଏମାନେ ଓଡ଼ିଶାର ଚାରିଆଡ଼େ ଯେତେକ ଜାଗାରେ ପଞ୍ଚାୟତ ହୋଇଛି ସେଠାରେ କାର୍ଯ୍ୟ ଚଳାଉଛନ୍ତି । ଏସବୁ ପଞ୍ଚାୟତ ଏବେ ବେଆଇନ । ଏମାନେ ବର୍ତ୍ତମାନ ଯେଉଁସବୁ ବେଆଇନ ଟଙ୍କା ଆଦାୟ କରୁଛନ୍ତି ତାହା କରିବାର ତାଙ୍କର କି ଅଧିକାର ଅଛି ? ଅବଶ୍ୟ ଲୋକେ ଏହି ଟଙ୍କାପାଇଁ କୋର୍ଟ କଚେରୀକୁ ଯିବେନାହିଁ କିନ୍ତୁ ଏହାର enquiry ହେଉ । ଏଭଳି ଭାବରେ ଟଙ୍କା ଆଦାୟ କରିବାଟା ବେଆଇନ କି ନା ଜଣାଯିବ । ବର୍ତ୍ତମାନ ଯାହାସବୁ ଚାଲିଛି ସବୁ ବେଆଇନ । ସରକାର ଯାହା କରୁଛନ୍ତି ତାହା ବେଆଇନ । ଯଦି ଗ୍ରାମପଞ୍ଚାୟତ କରିବ, ଆଇନ ଅନୁସାରେ କରିବ । ଆଇନରେ ନ କରି ଏ କି ପ୍ରହସନ ଚାଲିଛି ? ବର୍ତ୍ତମାନ ବେଆଇନରେ ପଞ୍ଚାୟତମାନେ ଆଦାୟ କରୁଛନ୍ତି । ଲୋକେ କାହିଁକି ଟଙ୍କା ଦେବେ ? ଆଇନ କଥା ଯଦି ଏଠି କହିବି, କୋର୍ଟ କଚେରୀ କଥା ଯଦିଏଠି କହିବି, ତାହାହେଲେ ସଙ୍ଗେ ସଙ୍ଗେ କୁହାଯିବ କୋର୍ଟ କଚେରୀକୁ ଗଲେ ସର୍ବନାଶ ହୋଇଯିବ । କିନ୍ତୁ ଏ କ'ଣ ହେଉଛି ? ପୁଣି ସରପଞ୍ଚଙ୍କର ନିଜର କେତେକ ଲୋକଙ୍କୁ ବାଦ୍‌ଦେଲେ ଗ୍ରାମରେ ଅନ୍ୟ ଲୋକେ ରାଗ ଓ ବିଦ୍ୱେଷରେ ପଡ଼ି, 5 ଟଙ୍କାଙ୍କୁ ଯୋଗ୍ୟ ନ ଥିବା ସ୍ଥଳେ ବେଳେ ବେଳେ ପଚାଶ ଟଙ୍କା ଦେଉଛନ୍ତି । ସେଥିପାଇଁ ପୁଣି ଘର କୋରଖ । ଏପରି ଅତ୍ୟାଚାରର ଆପତ୍ତିରେ ଠାଏ ଠାଏ ଡେପୁଟିମାନେ ଯାଇ ଅନୁସନ୍ଧାନ କରି ଭୀଷଣ ଓ ବୀଭତ୍ସ ରିପୋର୍ଟ ଦେଇଥିବାର ମୁଁ ଜାଣେ । କିନ୍ତୁ ତାହାସବୁ ଶୁଣୁଛି କିଏ ? ଏହାର ବହୁତ ଉଦାହରଣ ମୁଁ ଦେଇପାରେ । କିନ୍ତୁ କାହାକୁ କହିବି, କ'ଣ କହିବି ? ସବୁ administration ତ ଏହିପରି । ମୁଁ ଏସବୁ ଦେଖିକରି କହେ ଏହା ତ ଆଇନରେ ନାହିଁ, ତମେ ବୁଝି ବିଚାରି ଆଇନ କରିବ ନାହିଁ, ଆଇନ କଲେ ତାକୁ ପଢିବ ନାହିଁ, ପଢିଲେ ମାନିବ ନାହିଁ କି କୋର୍ଟକୁ ଛାଡ଼ିବ ନାହିଁ । ଏସବୁ କ'ଣ କରୁଛ ? ଯଦି ତୁମେ

ଗ୍ରାମ ଶାସନ କରିବ, ଆଇନ ପଢିବ ନାହିଁ, ଆଇନ ଜାଣିବ ନାହିଁ, ତାହାହେଲେ ଏ ଯେଉଁ ଆଇନ କରିଛ ତାହାର କିଛି ମୂଲ୍ୟ ନାହିଁ । ତା'ପରେ ଏସବୁ ପଞ୍ଚାୟତରେ ମାମଲତକାର ଭର୍ତ୍ତିହୋଇଯାଉଛନ୍ତି । ମୁଁ କହୁଛି ଆଇନରେ ଏପରି ହେବା ଦରକାର ଯେ ମାମଲତକାର ବୋଲି ଯାହାକୁ କଚିରି କହିଦେବ ସେ ୨ ବର୍ଷପାଇଁ ଗ୍ରାମପଞ୍ଚାୟତର ମେମ୍ବର ହୋଇପାରିବ ନାହିଁ । ଏସବୁ କଥା ବୁଝିବ କିଏ ? Secretariat ରେ ଯିଏ Secretary ଅଛନ୍ତି ସେ ଯାହା ଜାଣୁଛନ୍ତି ତାହା ଲେଖିଦେବେ। ତାକୁ ବିଚାର କରିବ କିଏ ? ଏହିଭଳି ଭାବରେ ଏ କାର୍ଯ୍ୟ ଏ ପର୍ଯ୍ୟନ୍ତ ଚାଲିଛି । ଯଦି ତୁମେ କଥାଟିକୁ ବୁଝି ନ ପାରୁଛ ତାହାହେଲେ ଆମମାନଙ୍କ ସଙ୍ଗରେ ପରାମର୍ଶ କର । ମୁଁ ଜବାବ ଦେଉଛି ଆମ୍ଭେମାନେ ପରାମର୍ଶ ଦେବୁ, ସାହାଯ୍ୟ କରିବୁ, ସବୁ କରିବୁ ଯେପରି କି ଏ ଗ୍ରାମପଞ୍ଚାୟତଗୁଡ଼ିକ ଭଲ ହେବ । ଯେଉଁମାନେ ଏ ବିଷୟ ଜାଣନ୍ତି ତାଙ୍କୁ ଦରକାର ହେଲେ ସରକାର honorarium ପର୍ଯ୍ୟନ୍ତ ଦେଇମଧ୍ୟ ଏ କାର୍ଯ୍ୟ କରାନ୍ତୁ । ଏସବୁ ପ୍ରକାର କରି ଗ୍ରାମପଞ୍ଚାୟତଗୁଡ଼ିକୁ ସୁନ୍ଦର ଭାବରେ, ପରିଷ୍କାର ଭାବରେ କରିବା ଦରକାର । ଏଥିରେ ସରକାର କୌଣସି ଦଳର ନୁହେ ବୋଲି ଭାବିବା ଦରକାର । ବଡ଼ ସୁଖର କଥା କୌଣସି ଜଣେ ମନ୍ତ୍ରୀ ଗୋଟିଏ ଯାଗାକୁ ଯାଇଥିଲେ, ସେ ଗୋଟିଏ ବଡ଼ ସଭାରେ କହିଥିଲେ "ମୋତେ ତୁମ୍ଭେମାନେ କଂଗ୍ରେସବାଲା ବୋଲି କହନାହିଁ, ମୁଁ ବର୍ତ୍ତମାନ ମନ୍ତ୍ରୀ, ମୋତେ ମନ୍ତ୍ରୀ ଭାବରେ ସବୁକଥା କୁହ, ମୋତେ କଂଗ୍ରେସବାଲା ବା କଂଗ୍ରେସ ଲୋକ ଭାବି କଥା କୁହ ନାହିଁ" । ଅବଶ୍ୟ ସମସ୍ତେ ଏପରି କହିପାରିବେ ନାହିଁ । କିନ୍ତୁ ସମସ୍ତଙ୍କର ଏହିପରି କହିବା ଉଚିତ । ମୋର ଆଉ ବିଶେଷ କିଛି କହିବାର ସମୟ ନାହିଁ । ମୁଁ ସରକାରଙ୍କୁ କହୁଛି ଆମ୍ଭେମାନଙ୍କ ସାଙ୍ଗରେ ପରାମର୍ଶ କର । ଆମ୍ଭେମାନେ ସାହାଯ୍ୟ କରିବୁ, ପ୍ରାଣପଣେ ଚେଷ୍ଟା କରିବୁ ତଥାପି ଯଦି ନ ହୋଇପାରେ ତାହାହେଲେ ତମର ଏକଲା ଦୋଷ ହେବନାହିଁ, ସମସ୍ତଙ୍କର ଦୋଷ ହେବ । ସମସ୍ତଙ୍କର ଭୁଲ ହୋଇପାରେ, ବୀରକିଶୋର ରାଏ ବା ରାଧାବିନୋଦ ପାଲ, ତାଙ୍କର ବି ଭୁଲ ହୋଇଯାଇପାରେ । ଖାଲି ମନ୍ତ୍ରୀମାନେ ସବୁ ଜାଣିଛନ୍ତି ଭାବିଲେ ହେବନାହିଁ । ଯଦି ଦରକାର ହୁଏ କିଛି ଟଙ୍କା ଖର୍ଚ୍ଚକରି ଆମ୍ଭମାନଙ୍କୁ 10/20 ଟି ଗ୍ରାମପଞ୍ଚାୟତ ବୁଲାଇକରି ଦେଖାଇ ଦିଆଯାଉ, ଆମେ କ'ଣ ଦୋଷ ତ୍ରୁଟି ଅଛି ବୁଝିବାକୁ ଚେଷ୍ଟା କରିବୁ । ଏସବୁ କାର୍ଯ୍ୟ 3/4 ବର୍ଷ ହେଲା ଚାଲିଛି । ଏଥିରେ ଯେଉଁସବୁ ଦୋଷ ତ୍ରୁଟି ରହିଛି ତାକୁ ଦୂର କରାଯାଉ । ତାହା ନ ହେଲେ ଏ ଯେଉଁ ଭାଣ୍ଡ କାରଖାନା ଚାଲିଛି ତାକୁ ବନ୍ଦ କରାଯାଉ । ମୁଁ ଅନୁରୋଧ କରୁଛି । ଏସବୁ ଦୋଷ ତ୍ରୁଟି ଦୂର କରି ନ ପାରିଲେ ଦୁର୍ନୀତି ଓ ଦୁରାଚାର ଦେଶର ରନ୍ଧ୍ରେରନ୍ଧ୍ରେ ପଶିଯିବ । କୌଣସି ସୁଶାସନ ଫୁଟିବ ନାହିଁ ।

## 9. ବିହାର-ଓଡ଼ିଶା ଶିଳ୍ପଗୁଡ଼ିକୁ ରାଜ୍ୟ ସାହାଯ୍ୟଦାନ ବିଲ (ଓଡ଼ିଶା ସଂଶୋଧନ)

## The Bihar and Orissa State-aid to Industries (Orissa Amendment) Bill, 1952

ରାଜ୍ୟରେ ଶିଳ୍ପ ବିକାଶ ନାଁରେ ଅର୍ଥର ଅପବ୍ୟୟକୁ ନୀଳକଣ୍ଠ କଠୋର ସମାଲୋଚନା କରିଛନ୍ତି । ମନମୁଖୀ ଭାବରେ ଶିଳ୍ପମାନଙ୍କୁ ଋଣ ଦିଆଯାଉଛି ଓ ସାହାଯ୍ୟ କରାଯାଉଛି । ଏଠାରେ ଅର୍ଥଶ୍ରାଦ୍ଧକୁ ବ୍ୟଙ୍ଗ କରି ସେ କହିଛନ୍ତି, "ମୁଁ ବୁଝିପାରୁନାହିଁ ଏସବୁ କ'ଣ Industry ପାଇଁ ହେଉଛି ? ଏହା Industry ର ଶ୍ମଶାନ କ୍ରିୟା ବା ଶୁଦ୍ଧିକ୍ରିୟା ପରି ମୋତେ ବୋଧ ହେଉଛି । Industry ମାନଙ୍କୁ ଆଖିବୁଜି ଟଙ୍କା ଦିଆଯାଇଥିଲା । ସେ ସବୁର ମୂଳ ବି ଏବେ ନାହିଁ । ତାକୁ ସବୁ ଭାଙ୍ଗି ବିକ୍ରି ବା ନିଲାମ କରି ଟଙ୍କା ଆଦାୟ କରିବା ପାଇଁ ଏବେ ଏ ଆଇନ । ଏଥିରେ ହୁଏତ ଟଙ୍କାକେ ଅଣାଏ ମିଳିବ ନାହିଁ । ପୁଣି ଆଦାୟରେ ଲାଞ୍ଚ ମିଛ" ଏହି ନିରାଟ ସତକଥାକୁ ଆଖି ବୁଜିଦେବା ସେତେବେଳେ ସେମିତି, ଏବେ ବି ସେମିତି ବିରାଟ ଭୁଲ । ତାହା ଦୂରଦ୍ରଷ୍ଟା ବିଧାୟକ ଭାବରେ ସେ ସବୁର ଆଖି ଖୋଲି ଦେଇଛନ୍ତି । ଏହିପରି ଅପବ୍ୟୟକୁ ସେ ଯଥାର୍ଥରେ "ଡ଼କାୟତି" କହିଛନ୍ତି ।

ନୀଳକଣ୍ଠ ପ୍ରକୃତ ଜନନାୟକ । ଜନସାଧାରଣଙ୍କ ସ୍ୱାର୍ଥର ସେ ଥିଲେ ଜାଗ୍ରତ ପ୍ରହରୀ। ଅର୍ଥର ଅପବ୍ୟୟ ପରେ ନିର୍ବିଗ୍ରହଭାବରେ ଶିଳ୍ପପ୍ରତିଷ୍ଠା ବା କୃଷି ପରୀକ୍ଷା ସବୁ କିପରି ନିଷ୍ଫଳ ହେଉଛି ତାହା ଜାଣିବା ତାଙ୍କ ପକ୍ଷେ କଷ୍ଟକର ନଥିଲା । ବରଂ ସେ ଦୂରଦୃଷ୍ଟିର ସହିତ ସମସ୍ତଙ୍କୁ ସାବଧାନ କରାଇଥିଲେ । ସ୍ୱାଧୀନତାପରେ ସବୁ କରିଯିବାର ବ୍ୟାକୁଳତା ପ୍ରକୃତ ଭାବରେ ରୂପାୟିତ ହୋଇନପାରିବାରୁ ତାଙ୍କର ଦୁଃଖ, ଏବେ କି ଆମ ଅନୁଭୂତିର ବିଷୟ । ସେ କହିଛନ୍ତି "ଅବଶ୍ୟ ମୁଁ କାହାକୁ ନିନ୍ଦା କରୁନାହିଁ । ଆମେ ଯାହାସବୁ କରି ଯାଇଛୁ ସବୁ ବ୍ୟାକୁଳତାରେ କରିଯାଇଛୁ । ସ୍ୱାଧୀନତା ଆମେ ଦେଖିନଥିଲୁ । ପିଞ୍ଜରାରୁ ବାହାର କରିଦେଲେ ଶୁଆ ଯେପରି ଫଡ଼ ଫଡ଼ ହୋଇ ବୁଲେ, ଆମର ସେହି ଅବସ୍ଥା ହେବାର କଥା । ଆମେ କହିଲୁ ଦିଲ୍ଲୀରେ ଅମୁକ ହେଉଛି, ଆମର ଏଠି କରିଦିଅ । ବମ୍ବେରେ ଅମୁକ ହେଉଛି ଏଠି କରିଦିଅ । କିନ୍ତୁ ସେଥିରେ ସାପ ଥିଲା କି ବେଙ୍ଗ ଥିଲା ତାହା ଆମେ ବୁଝିନଥିଲୁ । ବର୍ତ୍ତମାନ ମଧ୍ୟ ବୁଝିନାହୁଁ । ସମସ୍ତଙ୍କ ଭିତରେ ଶ୍ମଶାନର ଭୂତ । ବାହାରର ପ୍ରେତ ଆସି ଆମକୁ ଗ୍ରାସ କରିଛି ।" ଏହିସବୁ ମନ୍ତବ୍ୟ କଟୁ ହେଲେହେଁ ଦେଶର ବିକାଶ ପାଇଁ ଏକାନ୍ତ ବିଚାରଯୋଗ୍ୟ । ଏହାକୁ ଅବହେଳା କରିବା ହିଁ ଆତ୍ମଘାତୀ ।

ନୀଳକଣ୍ଠ ସବୁ ସମାଲୋଚନା ମଧ୍ୟରେ ଭଲକଥାରେ ସରକାରଙ୍କୁ ପ୍ରଶଂସା କରିବାକୁ ଭୁଲିନାହାନ୍ତି । ସେ କୁଟୀର ଶିଳ୍ପ ପାଇଁ ସରକାରୀ ସାହାଯ୍ୟକୁ ସମର୍ଥନ କରି ତା'ପାଇଁ ଉପଯୁକ୍ତ ବିଚାର ଓ ଯୋଜନା କରିବା ପାଇଁ ପରାମର୍ଶ ଦେଇଛନ୍ତି । ଅଯୋଗ୍ୟ

ଲୋକଙ୍କୁ ଶିଳ୍ପପାଇଁ ଋଣ ଯୋଗାଇ ଆଦାୟ କରିବାକୁ କୋର୍ଟ କଚେରୀକୁ ଯିବା ନିଦାର କଥା । ନୀଳକଣ୍ଠ ଯଥାର୍ଥରେ କହିଛନ୍ତି " Cottage Industries କୁ ଟ. 500 ପର୍ଯ୍ୟନ୍ତ ଦିଆଯାଇପାରିବ, ଯେଉଁମାନେ ଏହା କରିଛନ୍ତି, ତାଙ୍କୁ ସାଧୁବାଦ ଦେଉଛୁ । ବାକୀ ଯେତିକି ଆବର୍ଜନା ଅଛି, ତାକୁ ବାହାର କରିଦେଲେ ଭଲହେବ । ମୋ ମତରେ କୋର୍ଟକୁ ଯିବା ଗୋଟିଏ ଖରାପ ଜିନଷ । ଏତିକି କହି ମୁଁ ବିଲ୍‌ର ମର୍ମକୁ ସମର୍ଥନ କରୁଛି ଏବଂ ଫର୍ମକୁ ବିରୋଧ କରୁଛି ।" ଜଣେ ସଭ୍ୟ ଶ୍ରୀ ଗଦାଧର ଦତ୍ତ ସାକ୍ଷୀ-ଗୋପାଳର ମାନ୍ୟବର ସଭ୍ୟ ଅପ୍ରାସଂଗିକ କଥା କହୁଛନ୍ତି ବୋଲି ଆପତ୍ତିକରିବାରୁ ବାଚସ୍ପତି ଉତ୍ତର ଦେଇଥିଲେ, "ସେ ଯାହା କହୁଛନ୍ତି, ବିଲ୍‌କୁଲ ପ୍ରାସଂଙ୍ଗିକ କଥା କହୁଛନ୍ତି" ।

ବିହାର ନାମଟି ବିଲ୍‌ରେ ଯୋଡ଼ିବା ଅପ୍ରାସଙ୍ଗିକ ବୋଲି ନୀଳକଣ୍ଠ କହିବାରୁ ପଣ୍ଡିତ ଗୋଦାବରୀଶ ଥଟ୍ଟାରେ କହିଲେ, "ମାନ୍ୟବର ବାଚସ୍ପତି ମହାଶୟ, ମୁଁ ସତ୍ୟବାଦୀର ସଭ୍ୟଙ୍କ ସହିତ ଏକମତ ହୋଇ ପାରୁନାହିଁ । କାହିଁକିନା ଆମେ ଯେଉଁ ସମୟରେ ବିହାରରେ ଥିଲୁ ସେ କଥା ମନେ ରଖିବା ଦରକାର ।" ନୀଳକଣ୍ଠ ତେଣୁ ଅତି ଭଦ୍ର ଓ ସରଳ ଭାବରେ ପ୍ରସ୍ତାବ ଦେଇଛନ୍ତି "ପଣ୍ଡିତ ଗୋଦାବରୀଶ ମିଶ୍ର ଏ ସ୍ମୃତି ରକ୍ଷା କରିବା ପାଇଁ ଯାହା କହୁଛନ୍ତି, ବୋଧହୁଏ ଥଟ୍ଟାରେ କହୁଛନ୍ତି । ମୁଁ କହୁଛି ସେଗୁଡ଼ିକ ଆଉ ରହିବା ଦରକାର ନାହିଁ । ଏ ବିଲ୍ ଯେତେବେଳେ ହେଉଛି ତାହା କାଟିଦିଆନଯାଉ ଏହା ଗୋଟିଏ ସୂଚନା ମାତ୍ର" । ଏହି ପରି ନୀଳକଣ୍ଠ ସାଧାରଣତଃ ଧୀର ସ୍ଥିର ଓ ଯୁକ୍ତଯୁକ୍ତ ଭାବରେ ନିଜର ମତାମତ ଦେଇଛନ୍ତି । ମାତ୍ର ଯେତେବେଳେ ସେ ଭାବାବେଗର ସହିତ କହିଛନ୍ତି, ଓଡ଼ିଆ ଜାତିର ସମ୍ମାନ ଓ ସ୍ୱାଭିମାନ ବିଷୟରେ କହିଛନ୍ତି, ଗୁରୁଗମ୍ଭୀର ସ୍ୱରରେ ଉତ୍ତେଜନାପୂର୍ଣ୍ଣ ଓ କଠୋର କର୍କଶ ଭାବରେ ନିଜର ଭାଷଣ ଦେଇଛନ୍ତି । ଗୋଟିଏ ଦିଗରେ ତାଙ୍କର ଭାଷଣ ଯେମିତି ଭାବପୂର୍ଣ୍ଣ ଓ ବୁଦ୍ଧିଦିପ୍ତ, ସେମିତି ଅନ୍ୟଦିଗରେ ତାହା ଆବେଗପୂର୍ଣ୍ଣ ଓ ଆକ୍ରମଣାତ୍ମକ ହୋଇଛି । କେତେବେଳେ ତାଙ୍କ ବକ୍ତବ୍ୟ ସୌଜନ୍ୟପୂର୍ଣ୍ଣ ଓ ଧୀର ମନ୍ଥର ହେଲାବେଳେ, କେତେବେଳେ ତାହା ପ୍ରବଳ ଆକ୍ଷେପମୂଳକ ଓ ବ୍ୟଙ୍ଗାତ୍ମକ ହୋଇଛି । ମୂଳତଃ ନୀଳକଣ୍ଠଙ୍କ ଭାଷଣ ଉଚ୍ଚକୋଟିର ମାନସିକତା, ଭାବାବେଗ, ବ୍ୟଙ୍ଗବିଦ୍ରୂପର ସମାହାରରେ ସାର୍ଥକ ଓ ସରସ ହୋଇପାରିଛି ।

Shri NILAKANTHA DAS : ବାଚସ୍ପତି ମହାଶୟ, ଏ ଆଇନଟି ଏପରି ସମୟରେ ଆସିଲା ଯେତେବେଳେ କି ଆମେ ଏହାକୁ ଭଲଭାବରେ ବିଗ୍ରରି ଆଲୋଚନା କରିବାକୁ ନ ଯାଇ କହୁଛୁ । ପ୍ରଥମତଃ କାଲି ପର୍ଯ୍ୟନ୍ତ ଏହାର ମୂଳ ଆଇନଟା ଆମକୁ ମିଳି ନ ଥିଲା । ଆଜି ତାହା ମିଳିଲେ ମଧ୍ୟ ବର୍ତ୍ତମାନ ଏପରି ପାଣିପାଗ ହୋଇଛି ଯେ ଦିନଯାକ କୁକୁରପରି ଧକେଇ ଧକେଇ 24 ଘଣ୍ଟାରୁ 23 ଘଣ୍ଟା ଖଟିଲାପରି ଲାଗୁଛି । କିପରି ଆମର ମନ୍ତ୍ରୀମାନେ ଏଥିରେ ଏସବୁ ବିଷୟ ପ୍ରତି ଧ୍ୟାନ ଦେଇପାରୁଛନ୍ତି ସେଥିଲାଗି ମୁଁ ସେମାନଙ୍କୁ ବାହା ବାହା ଦେଉଛି ।

Shri GODAVARIS MISRA : ବାଚସ୍ପତି ମହାଶୟ, ସତ୍ୟବାଦୀର ମାନ୍ୟବର ସଦସ୍ୟଙ୍କୁ ମୁଁ କହିବାକୁ ଗ୍ରହୁଛି ଯେ ସେମାନେ ପାରୁଛନ୍ତି ବୋଲି ମନ୍ତ୍ରୀ ହୋଇଛନ୍ତି । କିନ୍ତୁ ଯେ ତ ପାରୁ ନାହାନ୍ତି କିପରି ମନ୍ତ୍ରୀ ହେବେ ?

Shri NILAKANTHA DAS : ସେମାନେ ବର୍ତ୍ତମାନ ଯୁବକ ଥିବାରୁ ଅନେକ ହୁଏତ କହିପାରନ୍ତି ଯେ ଏ ବୁଢ଼ା ହୋଇଥିବାରୁ ଏପରି କହୁଛି । କିନ୍ତୁ ମୋର ଯେତେବେଳେ ତାଙ୍କରି ବୟସ ଥିଲା ମୁଁ ମଧ୍ୟ ପାଣିପାଗର ଏପରି ଅବସ୍ଥାରେ ଏପରି ଧ୍ୟାନ ଦେଇ ପାରନ୍ତି ନାହିଁ । ସେଥିପାଇଁ ମୁଁ ପ୍ରସ୍ତାବ କରିଥିଲି ଯେ ପ୍ରଧାନ ମନ୍ତ୍ରୀ ବିଗ୍ରର କରି ଅନ୍ତତଃ ଏ ଘରଟିକୁ ଭବିଷ୍ୟତରେ Air-conditione କରି ଦିଅନ୍ତୁ । ଏଠାରେ ଖର୍ଚ୍ଚ କରିବାରେ ଯେଉଁ କୁଣ୍ଠାଭାବ ଥିଲା ମୁଁ ତାକୁ ଏକାଧିକ ଥର ପ୍ରତିବାଦ କରୁଛି ଯେ ଏଥିରେ କୁଣ୍ଠାକରିବା ଉଚିତ ନୁହେଁ । ଏଠି ଆମ୍ଭେମାନେ ଦେଶର ଆୟ ବ୍ୟୟ ଦେଖିବୁ । ଏଠି ଆମ୍ଭେମାନେ ଆଇନ ତିଆରି କରିବୁ । ଏ ଘରକୁ Air-conditioned କରନ୍ତୁ ବା ଆମ୍ଭେମାନଙ୍କ ପାଇଁ conveyance ବ୍ୟବସ୍ଥା କରନ୍ତୁ । ଏଠି ଯେତେ ଖର୍ଚ୍ଚ ହେବ ସେଥିରେ କୁଣ୍ଠା କରିବା ଉଚିତ ନୁହେଁ । ଆମ୍ଭେମାନେ ଯେଉଁ ଘରେ ବାସ କରୁଛୁ ତାହା କେଡ଼େ କଦର୍ଯ୍ୟ ହୋଇଛି ମୁଁ ବାଚସ୍ପତି ମହାଶୟଙ୍କୁ ନିମନ୍ତ୍ରଣ କରୁଛି ସେ ଦିନବେଳେ ଯଦି ପାରନ୍ତି ଗୋଟାଏ ଠାରୁ ୨ଟା ଭିତରେ ଯାଇ ଦେଖି ଆସନ୍ତୁ ଯେ ତାଙ୍କ ମେମ୍ବରମାନେ କି ଅବସ୍ଥାରେ ତାଙ୍କ ବ୍ୟବସ୍ଥାରେ ଅଛନ୍ତି । ସେ ଯାହା-ହେଉ ଏପରି ଅବସ୍ଥାରେ ଏପରି ଗୋଟିଏ ଆଇନ ହେବାକୁ ଯାଉଛି ମୁଁ ଜାଣି ନ ଥିଲି । ଏହାକୁ ଏବେ ଦେଖିଲି । ଏ ସମ୍ପର୍କରେ ବହୁତ କଥା କୁହା ଗଲାଣି । ଦେଶସାରା ବହୁତ କାମ ହୋଇଗଲାଣି । ମୁଁ ବୁଝିପାରୁନାହିଁ ଏସବୁ କ'ଣ Industry ପାଇଁ ହେଉଛି ? ଏହା Industry ର ଶ୍ମଶାନ କ୍ରିୟା ବା ଶୁଦ୍ଧି କ୍ରିୟା ପରି ମୋତେ ବୋଧହେଉଛି । Industry ମାନଙ୍କୁ ଆଖିବୁଜି ଟଙ୍କା ଦିଆଯାଇଥିଲା । ସେ ସବୁର ମୂଳ ବି ଏବେ ନାହିଁ । ତାକୁ ସବୁ ଭଙ୍ଗି ବିକ୍ରି ବା ନିଲାମ କରି ଟଙ୍କା ଆଦାୟ କରିବାପାଇଁ ଏବେ ଏ ଆଇନ । ଏଥିରେ ହୁଏତ ଟଙ୍କାକେ ଅଣାଏ ମିଳିବ ନାହିଁ । ପୁଣି ଆଦାୟରେ ପୁଣି ଲାଞ୍ଚମିଛ । ଏଠାରେ ମୋର ଗୋଟିଏ କଥା ମନେ ପଡୁଛି, ଯେତେବେଳେ ଜଗନ୍ନାଥଙ୍କ ପାଖକୁ ୧୮୨୨ ସାଲରେ ରେଲ ଲାଇନ ହୋଇଗଲା, ସେତେବେଳେ ସହଜରେ ମହାପ୍ରସାଦ ଓ ଦର୍ଶନ ମିଳିଯିବବୋଲି ଭାବି ବହୁ ସଂଖ୍ୟାରେ ଦଳ ଦଳ ହୋଇ ଯାତ୍ରୀ ପୁରୀକୁ ଆସି ଜମା ହୋଇଗଲେ । ଆଖ ପାଖ ଗ୍ରାମମାନଙ୍କରେ ହଇଜା ବ୍ୟାପିଗଲା । ଏତେଲୋକ ମଲେ ଯେ ଶୁଦ୍ଧି କ୍ରିୟା ପାଇଁ ବ୍ରାହ୍ମଣ ମିଳିଲେ ନାହିଁ । ଏପର୍ଯ୍ୟନ୍ତ ସେମାନଙ୍କର ଶୁଦ୍ଧିକ୍ରିୟା ହୋଇନାହିଁ । ସେମାନଙ୍କ ପ୍ରେତ ଛାଡ଼ିଲାଣିକି ନାହିଁ ସନ୍ଦେହ । ସେହିପରି ଯେମିତି ସ୍ୱାଧୀନତା ହୋଇଗଲା ମୋର ମନେ ପଡୁଛି ଥରେ ବୋଧହୁଏ କାଗଜରେ ପଢିଥିଲି ଯେ ଆମର ଭୂତପୂର୍ବ ପ୍ରଧାନମନ୍ତ୍ରୀ କହିଥିଲେ ଯେ ମୁଁ ଟଙ୍କା କେଉଁ ବାଟରେ ଖର୍ଚ୍ଚ କରିବି

ବାଟ ପାଉନାହିଁ । ସେ ବହୁତ ଟଙ୍କା ଖର୍ଚ୍ଚ କରି Grow More Food କଲେ, Industry ଇତ୍ୟାଦି କଲେ, ଯେମିତି ଯାହା ପ୍ରସାଦ ଖାଇ ହଇଜାରେ ମଲେ ଓ ସେମାନଙ୍କର ଶୁଦ୍ଧି କ୍ରିୟା ହୋଇ ନଥିବାରୁ ସେମାନଙ୍କ ପ୍ରେତ ଲାଗିଛି, ସେହିପରି ସ୍ୱାଧୀନତା ପରେ ଖାଲି ଲୋକେ ଟଙ୍କା ଖର୍ଚ୍ଚରେ ଲାଗିଗଲେ— Industry କଲେ, ସେଇ Industryର ଶୁଦ୍ଧିକ୍ରିୟା ଆମକୁ ଆଜି କରିବାକୁ ପୁରୋହିତ ମିଳୁନାହାଁନ୍ତି । ଏସବୁର ଅବସ୍ଥା କଣ ହୋଇଛି ? ଏହି ଗୋଟିଏ ଆଇନରେ ଦେଖନ୍ତୁ Industry ପାଇଁ ଟଙ୍କା ଦିଆଗଲା, ଏଥିପାଇଁ Director of Industries ଅଛନ୍ତି । ସେ କ'ଣ ହିସାବ ଦେଖୁ ନ ଥିଲେ ? ନା ସେ ଦିନକୁ ଦିନ ମାସକୁ ମାସ, ବର୍ଷକୁ ବର୍ଷ ହିସାବ ଦେଖି ନ ଥିଲେ । ଆମ ଦେଶରେ Industry ନ ଥିଲା । ତାହା ହେବାପରେ କି ଅବସ୍ଥା ହୋଇଛି ? ଏବେ ଏଇ ଆଇନ କରି କୁହାଯାଉଛି, Industry ରୁ ଯାହା ବାକି ଅଛି ତାକୁ ସବୁ ବିକିକରି ଘେନି ଆସ । ସେ ସବୁର ଶ୍ମଶାନ କ୍ରିୟା କରିଦିଅ, କେଉଁଠି 3 ଲକ୍ଷ ଯାଗାରେ 3 ହଜାର ମିଳିବତ, ଏହିପରି ସବୁ ଚାଲିଛି । ଅବଶ୍ୟ ମୁଁ ସବୁ ଗୁଡ଼ିକ କଥା କହୁ ନାହିଁ । କାହାର, audit ନାହିଁ, କେଉଁଠି supervision ନାହିଁ, ତା'ଭିତରେ ହୋଇଛି କଣ ନା Managing Agency ସବୁ ହୋଇଛି । ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ ଯେତେବେଳେ କେନ୍ଦ୍ର ବ୍ୟବସ୍ଥା ସଭାରେ ମୋର Deputy Leader ଥିଲେ ମୁଁ ସେତେବେଳେ ସେକ୍ରେଟାରି ଥାଇ ଆମେ ଗୋଟିଏ ଦଳ କରିଥିଲୁ । Industryରେ Managing Agency ଉଠାଇ ଦେବା ପାଇଁ ଆମେ ଭୟଙ୍କର ଲଢିଥିଲୁ । ସେଥିରେ ଆମେ ଶେଷକୁ ରାଜି ହୋଇଥିଲୁ ଯେ ଅନ୍ତତଃ କୋଡ଼ିଏ ବର୍ଷପରେ Managing Agency ଉଠାଇ ଦଆଯାଉ । କିନ୍ତୁ ଆମେ ଲଢିବା ସତ୍ତ୍ୱେ Industry ମାନେ Managing Agency ରଖିଥିଲେ । କାରଣ ଏ ଦେଶରେ ଇଂରେଜମାନଙ୍କର ସବୁ ବ୍ୟବସାୟ ଥିଲା । ତା ବାଦ ସେମାନେ ଅହମଦାବାଦ ବା ବମ୍ବେ ପ୍ରଭୃତିରେ ତାଙ୍କର ପୁରୁଣା machinery ସବୁ ବକ୍ରି କରୁଥିଲେ, ଆମକୁ ସବୁବେଳେ ବ୍ୟବସ୍ଥା ସଭାରେ କହୁଥିଲେ ତମେ ଶିଳ୍ପକୁ ସାହାଯ୍ୟ କର ବୋଲି । ଆମ ଖଜଣାଖାନାରେ ଟଙ୍କା ନ ଥିଲେ ସେମାନେ Excise duty ବସାଇକରି ଖଜଣାଖାନା ଭର୍ତ୍ତି କରୁଥିଲେ । ସବୁ ତାଙ୍କର ପୁରୁଣା କଳଯାକ ବିକୁ-ଥିଲେ । ସେମାନେ ସେଥିପାଇଁ ଚାହୁଁଥିଲେ ଯେ ଆମର Industry ମାନେ Managing Agency ରଖନ୍ତୁ । ବର୍ତ୍ତମାନ ଯେ କୌଣସି Industry ଦେଖିଲେ ଦେଖାଯିବ ଯେ ସେଥିରେ ସରକାର ଅଛନ୍ତି ଏବଂ ପ୍ରାୟ ଅଧିକରୁ ବେଶୀ ଟଙ୍କା ଦେଇଛନ୍ତି । ଅଥଚ ସେଥିରେ Managing Agency ଅଛି । ଏହାକୁ ଯେଉଁ ଭାଷାରେ କୁହାଯିବ, ସେପରି କୁହା ଯାଇ ଥିଲେ ତାହା ବ୍ୟବସ୍ଥା ସଭାରେ ବ୍ୟବହାର ଉପଯୋଗୀ ଭାଷା ହୋଇ ନ ଥାନ୍ତା । ( Voice : ତାହା କଣ ? ) ତାକୁ ଡ଼କାୟତି ଛଡ଼ା ଆଉ କଣ କୁହାଯିବ ? ଅବଶ୍ୟ ମୁଁ ଏ ଭାଷା ଏଠାରେ ପ୍ରୟୋଗ କରୁନାହିଁ । ଏସବୁ Industryକୁ

ଆମେ ଟଙ୍କା ଦେବା , ସବୁ କରିବା, Managing Agency କଣ କରିବେ ; Managing Director ଜଣେ ରହିଥାନ୍ତେ । (Audit) ବ୍ୟବସ୍ଥା ଥାନ୍ତା । ଯଦି Managing Agent କଥା ବିଗ୍ରର କରାଯାଏ ତା ହେଲେ ମୁଁ ବହୁତ କଥା କହିବି । ଆମେ ଯେତେ ନୂଆ Industry କରୁଥାଇଁ ତାକୁ ଯାହା ତାହା କରି କରିଦେବା ଠିକ୍ ନୁହେଁ । ଅବଶ୍ୟ ମୁ କାହାକୁ ନିନ୍ଦା କରୁନାହିଁ । ଆମେ ଯାହା ସବୁ କରିଯାଇଛୁ ସବୁ ବ୍ୟକୁଳତାରେ କରିଯାଇଛୁ । ସ୍ୱାଧୀନତା ଆମେ ଦେଖି ନଥିଲୁ । ପିଂଜରାରୁ ବାହାରକରି ଦେଲେ ଶୁଆ ଯେପରି ଫଡ଼ ଫଡ଼ ହୋଇ ବୁଲେ ଆମର ସେହି ଅବସ୍ଥା ହେବାର କଥା । ଆମେ କହିଲୁ ଦିଲ୍ଲୀରେ ଅମୁକ ହେଉଛି, ଆମର ଏଠି କରିଦିଅ, ବମ୍ବେରେ ଅମୁକ ହେଉଛି ଆମର ଏଠି କରିଦିଅ କିନ୍ତୁ ସେଥିରେ ସାପ ଥିଲା କି ବେଙ୍ଗ ଥିଲା ତାହା ଆମେ ବୁଝି ନ ଥିଲୁ । ବର୍ତ୍ତମାନ ମଧ୍ୟ ବୁଝିନାହୁଁ । ସମସ୍ତଙ୍କ ଭିତରେ ଶ୍ମଶାନର ପ୍ରେତ । ବାହାରର ପ୍ରେତ ଆସି ଆମକୁ ଗ୍ରାସକରିଛି । ତାହା ଭିତରେ ଏପରି ଗୋଟିଏ ମନୋଭାବ ଆମର ହୋଇଛି ଯେ ଆମେ କହୁଛୁ ଆମର ଏହା ହେଲାନାହିଁ, ତାହା ହେଲାନାହିଁ । Village Industryକୁ 500 ଟଙ୍କା ଦିଅ, ଏ ସମସ୍ତପାଇଁ ବିଲ୍ ହେବା ଉଚିତ । ଯାହା ଯେଉଁଠି ମିଳୁଛି ଘେନିଆସ । ଅବଶ୍ୟ ଏ ବିଲରେ ମେଘ ଘୋଟିଗଲାବେଳେ ଯାହାକୁ Silver lining ବୋଲି କହନ୍ତି ସେହିପରି Village Industryକୁ 500 ଟଙ୍କା ଦେବା କଥାଟା ଅଛି । Cottage Industry ହେବ । ସେ ବିଷୟରେ କଣ ଯୋଜନା ହୋଇଛି ଆମେ ଜାଣୁନାହିଁ । ହୁଏତ ତାହା ଆମ ପାଖକୁ ଦିନେ ଆସିବ ବା ନ ଆସିବ ।

ଆଉଗୋଟିଏ ବଡ଼ ଭୀଷଣ କଥା ଏହା ଭିତରେ ଅଛି । ଯେଉଁ ଟଙ୍କା ଦିଆଯାଇଛି ତାହା ମିଳିବ କି ନାହିଁ 'ମା ଗଙ୍ଗେ' ଜାଣନ୍ତି । ଯେଉଁ Industry କୁ ଆମେ କରଜ ଦେଉଛୁ ସେ Industry ର ଯନ୍ତ୍ରପାତି ଆମ ପାଖରେ ବନ୍ଧା ପଡୁଛି । ସେହି ବନ୍ଧା ଜିନିଷକୁ କିମିତି ସେମାନେ ବିକ୍ରିକରି ଦେବେ ? ଯେଉଁ ଜିନିଷ ବନ୍ଧାପଡ଼ିଛି ସେ ଜିନଷ ବିକ୍ରିହୋଇ ଯାଉଛି । ଅବଶ୍ୟ ଖୁବ୍ କମ୍ Industry ରେ ଏହା ସମ୍ଭବ ହେଉଥିବ । ପୂର୍ବ ସରକାରଙ୍କ ଭିତରେ ଗୋଟିଏ ଭୀଷଣ ବିଭତ୍ସତା ପସିଥିଲା । ଯେଉଁଠି ଯେତେ ସବୁ କାମ ଆମ ଅଫିସରମାନେ କରିଦେବେ ବୋଲି ଆମର ଧାରଣା ଥିଲା ସେ ସଂପର୍କରେ ଅନ୍ୟାନ୍ୟ ଆଇନ ପଢିଲାବେଳେ ମୁ କହିବି, ସେମାନଙ୍କ ଭିତରେ ଅତି ବିଭତ୍ସ କାଣ୍ଡ ଗ୍ୱଲିଛି, ଲାଞ୍ଚମିଛ ଗ୍ୱଲିଛି, ଯାହାକୁ କି ଇଂରାଜୀରେ କହନ୍ତି Corruption. Administrative officer ଯାହାକୁ କହୁଛନ୍ତି ସେମାନେ Judicial officer ହେବେ କିପରି ? ଏ ସଂପର୍କରେ ମୋପାଖରେ file ଅଛି । ମୁଁ ତାକୁ ଯଥା ସମୟରେ ମନ୍ତ୍ରୀମାନଙ୍କ ଆଗରେ ଏବଂ ଆପଣଙ୍କ ଆଗରେ ଥୋଇବି । ମୁଁ ନିଜେ ଏଥିରେ ଭୁକ୍ତ ଭୋଗୀ । ସେମାନେ ଯେ ସବୁ କରିଦେବେ ଏସବୁ ଅଭିମୁଖ୍ୟ ବନ୍ଦ କରିବା ଦରକାର ।

Shri GADADHAR DUTTA: ସ୍ୱଭାପତି ମହାଶୟ, ବର୍ତ୍ତମାନ ସାକ୍ଷୀଗୋପାଳର ମାନ୍ୟବର ସଭ୍ୟ ଯେଉଁ ଭାଷଣ ଦେଉଛନ୍ତି ତାହା ଏ ଆଇନ ସଂପର୍କରେ ନୁହେଁ । ଏହା ଅପ୍ରାସଂଗିକ ହେଉଛି ।

Mr. SPEAKER: ସେ ଯାହା କହୁଛନ୍ତି ତାହା ବିଲ୍‌କୁଲ ପ୍ରାସଙ୍ଗିକ କଥା କହୁଛନ୍ତି ।

The NILAKANTHA DAS: ଟଙ୍କା ଆଦାୟ କରିବାପାଇଁ ଏ ବିଲ୍‌ରେ ଗୋଟିଏ clause ଅଛି । Clause 5ର ଶେଷରେ କୁହାଯାଇଛି ଯେ "* * *It shall* * *have power to take possession of the assets as well as the right to sell and dispose of the properties so mortgaged without the intervention of a Court of Law" ଏ ଯେଉଁ ବ୍ୟବସ୍ଥା କରାଯାଇଛି ଏହାକୁ ବର୍ତ୍ତମାନ ଉଠାଇଦେବା ଉଚିତ । ଏ ଆଇନ ଦରକାର ନାହିଁ । Court of Lawକୁ କେତେଟା ଲୋକ ବା ଯିବେ ? ଯିଏ Court of Law କୁ ଗଲା, ଯାଉ । Mortgage ରେ ଲୋକ କାହିଁକି Court of Law କୁ ଯିବ ? ଯଦି ଯିବ, ସେ ଫିସାଦି କରି ଯିବ । ବର୍ତ୍ତମାନ Court କୁ ଯିବା ବନ୍ଦ କରିବା ସିନା କିନ୍ତୁ Constitution ର 226 ଧାରା ଅନୁସାରେ ବନ୍ଦ କରିପାରିବା ନାହିଁ । 26-1-1950 ପର୍ଯ୍ୟନ୍ତ ତାହା ହୋଇ-ପାରୁଥିଲା । ବର୍ତ୍ତମାନ Court of Law କୁ ବନ୍ଦ କରିବାଦ୍ୱାରା ଲୋକେ High Courtକୁ ଟଣା ହେବେ । ଆମର Advocate-General ବରାବର engage ରହି ଟଙ୍କା ପାଇବେ । Court କୁ ନ ଯିବା ମାନେ High Court କୁ ଯିବାକୁ ହେବ ।ତେଣୁ Court କୁ ବନ୍ଦ କରିବା ଉଚିତ ନୁହେଁ । Court କୁ ବନ୍ଦ କରିବାର ଯେଉଁ ଭାବନା ହେଉଛି, ଯଦି ଏହା ଭିତରେ କିଛି ଥାଏ ଯଦ୍ୱାରା କି ଆମର ମଙ୍ଗଳ ହେବ, ମୁଁ ସେ କଥା ବିଗ୍ରରକରି କହୁଛି ଯେ ଆମର ମଙ୍ଗଳ ହେବ ନାହିଁ । Court କୁ ବନ୍ଦ କଲେ ଦେଶର ମଙ୍ଗଳ ହେବନାହିଁ । ସେଇଥି ପାଇଁ Executive ଓ Judiciaryକୁ ଅଲଗା କରିବାପାଇଁ ପ୍ରସ୍ତାବ ହେଉଛି । Court କୁ ଯିବା ବନ୍ଦ କରିବାଦ୍ୱାରା ଲୋକଙ୍କୁ High Court କୁ ଯିବାକୁ ବାଧ୍ୟ କରାଯାଉଛି । ମୁଁ ନିଜେ ସେଥିରେ ଭୁକ୍ତଭୋଗୀ । ଅନ୍ୟ ଘଟଣାରେ ସେ କଥା କହିବି । ଯେଉଁମାନେ ଟଙ୍କା ମାରି ନେବାକୁ ବସିଛନ୍ତି ତାଙ୍କ ବିରୁଦ୍ଧରେ ଏହାକୁ ପ୍ରୟୋଗ କରି ଟଙ୍କା ଆଣି ପାରିବା ଏହା ଅସମ୍ଭବ କଥା । ତେଣୁ ଏହା କରିବା ଉଚିତ ନୁହେଁ । ଏ ଗୋଟିଏ ଆଇନ ହୋଇଛି । ଅବଶ୍ୟ ସମୟ ଥିଲେ Select Committee କୁ ଦେଇ ଏହାକୁ ବନ୍ଦ କରି ହୋଇଥାନ୍ତା । ମୁଁ ଏତିକି କହୁଛି ଯେ କୋର୍ଟକୁ ନ ଯିବା ବ୍ୟବସ୍ଥାଟି କାଟି ଦିଆଯାଉ ।

ଆଉ ଗୋଟିଏ କଥା ହେଉଛି Bihar and Orissa State-Aid to Industries Bill ବିଷୟରେ ଯେଉଁ ଆପତ୍ତି ଉଠୁଛି............

Shri NABAKRUSHNA CHAUDHURI (Chief Minister) : ସଭାପତି ମହାଶୟ, ମାନ୍ୟବର ସଭ୍ୟମାନେ ଯେଉଁ Select Committee କଥା ବାରମ୍ବାର କହୁଛନ୍ତି ତାହା ଅପ୍ରାସଙ୍ଗିକ ବୋଲି ବୋଧ ହେଉଛି । କାହିଁକି ନା ଯଦି Select Committee କୁ ଯାଉ ବୋଲି କିଛି motion ନ ଦେଇ ଜ୍ଞାନହୀନ ଭାବରେ Select Committee କୁ ଯାଉ ବୋଲି କହିଲେ କିଛି ହେବ ନାହିଁ । ସୁତରାଂ ସେ ବିଷୟରେ ବାରମ୍ବାର କୁହାଯାଉଛି କାହିଁକି, ମୁଁ ବୁଝିପାରୁ ନାହିଁ ।

Mr. SPEAKER Select Committeeକୁ ଯାଉ ବୋଲି ଗୋଟିଏ motion ଦେବାପାଇଁ ମାନ୍ୟବର ସଭ୍ୟମାନଙ୍କର ଯଥେଷ୍ଟ ଅଧିକାର ଥିଲା । ସେଥିପାଇଁ ସେ Notice ଦେଇ ପାରିଥାନ୍ତେ । ସେପରି କୌଣସି ପ୍ରସ୍ତାବ ନ ଥିଲା ବେଳେ Select Committee କଥା କହିବାର କୌଣସ ପ୍ରୟୋଜନ ନାହିଁ ।

Shri NILAKANTHA DAS : ମୁଁ କହୁଛି ସରକାରଙ୍କର ଏହା କରିବାର ଥିଲା । ଆମ ଭିତରେ ଇଂରାଜୀରେ ଯାହାକୁ Inadvertently କହନ୍ତି, ସେଇଟା ହୋଇ ପାରିବ ନାହିଁ । କିନ୍ତୁ ଏହା କିପରି ଅପ୍ରାସଙ୍ଗିକ ହେଲା ମୁଁ ବୁଝିପାରୁ ନାହିଁ । କାହିଁକି, ଦରକାର ପଡ଼ିଲେ ଆପଣ ନିଜେ ସବୁ କାଟି ଦେଇ ପାରନ୍ତେ । ମୁଁ କ'ଣ ଆପଣଙ୍କୁ ଏଥିଲାଗି ପ୍ରାର୍ଥନା କରି ପାରିବି ନାହିଁ ? ମୁଁ ତ Select Committee କୁ ଯାଉ ବୋଲି କହୁ ନାହିଁ, ଯାଇଥିଲେ ଭଲ ହୋଇଥାନ୍ତା ବୋଲି କହୁଛି ।

Mr. SPEAKER : Select Committee ସମ୍ପର୍କରେ ମାନ୍ୟବର ସଭ୍ୟ ଯାହା କହିଲେ ତାହା ଅପ୍ରାସଙ୍ଗିକ ବୋଲି ମୁଁ କହୁନାହିଁ ।

Shri NILAKANTHA DAS : ସଭାପତି ମହାଶୟ, ମୁଁ ସେଥିପାଇଁ ଆପଣଙ୍କୁ ସାଧୁବାଦ କରୁଛି । ବର୍ତ୍ତମାନ ଆଉ ଗୋଟିଏ କଥା କହିବି । ମୋର ପୂର୍ବବର୍ତ୍ତୀ ବକ୍ତା ବୋଧହୁଏ ଖୁଣ୍ଟିଆ ମହାଶୟଙ୍କ କହିବା ଅନୁସାରେ ଏହି ଯେଉଁ Bihar and Orissa State-aid to Industries ବୋଲି ଅଛି, ସେଥିରେ ବିହାର ଶବ୍ଦଟି ରହିବା ଦରକାର ନାହିଁ, କେବଳ ଓଡ଼ିଶା ପାଇଁ ଏଥିରେ ବ୍ୟବସ୍ଥା କରାଯାଉଛି ।

Shri GODAVARIS MISRA : ମାନ୍ୟବର ବାଚସ୍ପତି ମହାଶୟ, ମୁଁ ସତ୍ୟବାଦୀର ସଭ୍ୟଙ୍କ ସହିତ ଏକମତ ହୋଇ ପାରୁ ନାହିଁ । କାହିଁକିନା ଆମେ ଯେଉଁ ସମୟରେ ବିହାରରେ ଥିଲୁ, ସେ କଥା ମନେ ରଖିବା ଦରକାର । ହୁଏତ ତାହା Bengal କରିଥିଲେ ଭଲ ହୋଇଥାନ୍ତା । ତେଣୁ ଏହି ସ୍ମୃତି ଲୋପ କରିବା ପାଇଁ ମାନ୍ୟବର ସଦସ୍ୟ ଯେଉଁ ପ୍ରସ୍ତାବ କରୁଛନ୍ତି ମୁଁ ତାଙ୍କ ସହିତ ଏକମତ ହୋଇ ପାରୁନାହିଁ ।

**Mr. SPEAKER:** ଏହି ଯେଉଁ Bihar and Orissa Bill ସଂଶୋଧନ ପାଇଁ ଆସିଛି ସେଥିରେ କେବଳ ମାତ୍ର ଯେ ବିହାର ନାମ ଅଛି ତାହା ନୁହେଁ । ମୋର ଯେତେ-ଦୂର ମନେହୁଏ ଅନ୍ୟାନ୍ୟ ଯେଉଁସବୁ Bill ଅଛି ତାର ମଧ୍ୟ ନାମକରଣ ଏପରିଭାବରେ ଥାଇପାରେ ।

**Shri NABAKRUSHNA CHAUDHURI (Chief Minister):** ସଭାପତି ମହାଶୟ, ଆପଣଙ୍କୁ ଯାହା ଜଣାଅଛି, ମାନ୍ୟବର ସଭ୍ୟଙ୍କୁ ତାହା ଜଣାଅଛି, ଏପରି ଧାରଣା କରିବାର କୌଣସି ଆବଶ୍ୟକତା ନାହିଁ ।

**Shri NILAKANTHA DAS:** ଆମ୍ଭେମାନେ ଧରି ନେଇଛୁ ଯେ ବାଚସ୍ପତି ମହାଶୟ ଆମ୍ଭମାନଙ୍କଠାରୁ ବେଶୀ ଜିନିଷ ମନେ ରଖୁଛନ୍ତି । ଆମ୍ଭମାନଙ୍କର ଗୋଟିଏ ଭୁଲ ଧରାଇ ଦେଲେ ଆମ୍ଭେ ତାକୁ ମାନିବୁ । ଅନ୍ୟାନ୍ୟ ବିଲ୍‌ରେ ଏପରି ନାମ କରଣ ଥାଇପାରେ ପଣ୍ଡିତ ଗୋଦାବରିଶ ମିଶ୍ର ଏ ସ୍ମୃତି ରକ୍ଷା କରିବା ପାଇଁ ଯାହା କହୁଛନ୍ତି, ବୋଧହୁଏ ଥଟ୍ଟାରେ କହୁଛନ୍ତି । ମୁଁ କହୁଛି ସେଗୁଡ଼ିକ ଆଉ ରହିବା ଦରକାର ନାହିଁ । ଏ ବିଲ ଯେତେବେଳେ ହେଉଛି ତାହା କାଟି ଦିଆଯାଉ, ଏହା ଗୋଟିଏ ସୂଚନା ମାତ୍ର । ମୁଁ ଏହା କହିବାଦ୍ୱାରା ବାଧ୍ୟ କରୁ ନାହିଁ ; କିନ୍ତୁ ଏହା କଲେ ଭଲ ହୁଅନ୍ତା । ତାହା ଛଡ଼ା ଏଥିରେ ଯାହା ଅଛି, Cottage Industriesକୁ ଟ 500 ପର୍ଯ୍ୟନ୍ତ ଦିଆଯାଇ ପାରିବ, ଯେଉଁମାନେ ଏହା କରିଛନ୍ତି ତାଙ୍କୁ ସାଧୁବାଦ ଦେଉଛି । ବାକୀ ଯେତିକି ଆବର୍ଜନା ଅଛି ତାକୁ ବାହାର କରିଦେଲେ ଭଲ ହେବ । ମୋ ମତରେ କୋର୍ଟକୁ ଯିବା ଗୋଟାଏ ଖରାପ ଜିନିଷ । ଏତିକି କହି ଏ ବିଲର ମର୍ମକୁ ମୁଁ ସମର୍ଥନ କରୁଛି ଏବଂ Form କୁ ବିରୋଧ କରୁଛି ।

## 10. ଓଡ଼ିଶା ଜମିଦାରୀ ବା ମାହାଲ ଉଚ୍ଛେଦ (ସଂଶୋଧନ) ବିଲ୍, 1952 [Orissa Estates Abolition (Amendment) Bill, 1952]

ଜମିଦାରୀ ଉଚ୍ଛେଦ ଉପରେ କହିବାକୁ ଯାଇ ନୀଳକଣ୍ଠ ଖଜଣା ଛାଡ଼ ଉପରେ ଗୁରୁତ୍ୱ ଦେଇଛନ୍ତି । ଭୋଟ ସଂଗ୍ରହ କରିବାକୁ ଯାଇ ଅନ୍ୟ ନେତାମାନେ ଯେମିତି ଖଜଣା କମାଇ ଦେବେ ବା ଛାଡ଼ କରିଦେବେ ବୋଲି କହୁଥିଲେ, ସେ ସେଥିରେ ବିଶ୍ୱାସୀ ବା ପକ୍ଷପାତୀ ନ ଥିଲେ । ସେ କହିଥିଲେ, "ମୁଁ କାହାକୁ ଭୁଲାଇ ଭୋଟ ନେବାକୁ ସେସବୁ କଥା କହି ନ ଥିଲି । ମୁଁ କହିଥିଲି ତମେ ସ୍ୱାଧୀନ ହେଲେ ତମର ଖଜଣା ଟିକସ ବଢ଼ିବ । କିନ୍ତୁ ତମର ଦେବାର କ୍ଷମତା ବଢ଼ାଇ ଦିଆଯିବ । କିଏ କହିଲା ଆମକୁ ଭୋଟ ଦିଅ, ଆମେ ଟଙ୍କାରେ ଆଠଅଣା ଖଜଣା କମାଇ ଦେବୁ । କିଏ କହିଲା ଆମେ ପୂରାପୂରି ଖଜଣା କମାଇଦେବୁ, ଆମକୁ ଭୋଟଦିଅ, କିନ୍ତୁ ମୁଁ ଏପରି କଥା କେବେ କହିନଥିଲି ।"

ଆଜିକାଲି ନେତାମାନେ କିପରି ବ୍ୟକ୍ତିତ୍ୱହୀନ, ତାହା କହିବାକୁ ଯାଇ ସେ ଉଲ୍ଲେଖ କରିଛନ୍ତି, ଆମର ମନ୍ତ୍ରୀମାନେ, ଶାସକମାନେ ଓ ନେତାମାନେ ଏ ଜିନଷଟିକୁ ଜମା ଦେଖୁ ନାହାନ୍ତି । ଯଦି ଗୋଟିଏ ବ୍ୟକ୍ତିତ୍ୱର କଳ୍ପନା କରିବାକୁ ହୁଏ, ତା ଭିତରେ ତିନୋଟି କଥା ପ୍ରତି ଲକ୍ଷ୍ୟ କରିବାକୁ ହୁଏ । ଗୋଟିଏ ହେଉଛି ପରମ୍ପରା, ଦ୍ୱିତୀୟଟି ହେଉଛି ପରିସ୍ଥିତି ଏବଂ ତୃତୀୟଟି ହେଉଛି ଦୂରଦୃଷ୍ଟି । ''ତାଙ୍କ ମତରେ ଇଂରେଜମାନେ ବା ମୋଗଲମାନେ ସେମାନଙ୍କର ସାମ୍ରାଜ୍ୟବାଦର ସୁବିଧାପାଇଁ ଜମିଦାର ତିଆର କରିଥିଲେ । କେବଳ ଜମିଦାର ଯେ ତିଆରି ହୋଇଥିଲେ, ତାହା ନୁହେଁ, ଜମି ଉପରେ ଯେଉଁ ଖଜଣା ଧାର୍ଯ୍ୟ ହୋଇଥିଲା, ତାହା ଗୋଟିଏ ଅସଂସ୍କୃତ ଜିନିଷ, ଏହା କୌଣସି ସରକାର ଗ୍ରହଣ କରିବା ଅନୁଚିତ ।'' ସେ ପ୍ରଶ୍ନ କରିଛନ୍ତି "ଖଜଣା ଗୋଟାଏ କ'ଣ ? ମୁଁ ଜମିରେ ରହିଛି ବୋଲି ଖଜଣା ଦେବି ? ମୁଁ ଯଦି ଜମିରୁ ଆୟ କରେ ମୋ ପାଖରେ ଯଦି ବଳେ ଏବଂ ମୋର ଜିନିଷ ଯଦି ସରକାର ଜଗନ୍ତି, ତାହାହେଲେ ସିନା ମୁଁ ଖଜଣା ବା ଟିକସ ଦେବି" ।

"ଲଙ୍ଗଳ ଯାର ଜମି ତା'ର" ଏହି ସ୍ଲୋଗାନରେ ଥିବା ତ୍ରୁଟିକୁ ସେ ଦେଖାଇଛନ୍ତି । ସେ କହିଛନ୍ତି ସବୁ ଜମିକୁ ଯଦି କେବଳ ହଳ କରିବା ଲୋକଙ୍କୁ ବାଣ୍ଟି ଦିଅ, ତାହେଲେ ଜମି ପ୍ରଜାଙ୍କ ହାତରେ ଆଉ ରହିବ କିପରି ? ଏ କଥା କେହି ବୁଝୁନାହାନ୍ତି ଏହା ଭିତରେ କୌଣସି ଦୂରଦୃଷ୍ଟି ନାହିଁ। ଲୋକଙ୍କ ହାତରେ ଜମି ରହିବ । କିନ୍ତୁ କାହା ହାତରେ ଜମି ରହିବ ? ଚାଷୀ ହାତରେ ନା ରୟତ ହାତରେ ? ଏହି ଜିନଷଟା ତାଳୁଠୁଁ ତଳିପା ପର୍ଯ୍ୟନ୍ତ କେହି ବୁଝୁନାହାନ୍ତି, ସେ ଉଦାହରଣ ଦେଇ ଭାଇମାନେ ଭଗ ଭଗ କରି ଜମିନେଲେ ଜମିର ଆୟ କିପରି କମିଯିବ, ସେ ବିଷୟ ବୁଝାଇଛନ୍ତି ।

ଏ ସମ୍ପର୍କରେ ନୀଳକଣ୍ଠ ଆଉ କହିଲାବେଳେ ଜଣେ ସଭ୍ୟ ସେ ଅପ୍ରାସଙ୍ଗିକ କଥା ସବୁ କହୁଛନ୍ତି ବୋଲି ଅଭିଯୋଗ କରିଥିଲେ। ମାତ୍ର ଗୁଣଗ୍ରାହୀ ବାଚସ୍ପତି କହିଥିଲେ "ସେ ଯେଉଁ ଉପାଦେୟ କଥା କହୁଛନ୍ତି ତାହା ମୁଁ ଏତେ ତନ୍ମୟ ହୋଇ ଶୁଣୁଥିଲି ଯେ ତାହା ପ୍ରାସଙ୍ଗିକ କି ନା ମୋ ମନକୁ ଆସିନାହିଁ । ମୁଁ ଭାବୁଛି ସେ ଯାହା କହୁଛନ୍ତି କେତେଗୁଡ଼ିଏ ବିଷୟ ପ୍ରାସଙ୍ଗିକ" । ରୟତ ହାତରେ ଜମି ରହିବାର ଅସୁବିଧା ଦେଖାଇ ନୀଳକଣ୍ଠ କହିଛନ୍ତି, "ରୟତର ଜମି ଯେ ଚାଷ କରିବେ ବା ଭାଗଚାଷୀ ହେବେ, ସେ ହେବେ ଚୁକ୍ତିବଦ୍ଧ Labourer ବା ମଜୁରିଆ । ସରକାର ତାକୁ ମଜୁରି ଆଇନ Labour Law ରେ ତିନି ପଞ୍ଚମାଂଶ ବା ଦୁଇ ତୃତୀୟାଂଶ ଦିଅନ୍ତୁ । ତହିଁରୁ ବେଶୀ ବି ଦେଇପାରନ୍ତି । ସରକାରଙ୍କର ମଜୁରି ବଢାଇବାର କ୍ଷମତା ଅଛି । କିନ୍ତୁ ଏହା ନ କରି ନ ବୁଝି ଭାଗ-ଚାଷୀଙ୍କୁ ପୁଣି ରୟତିସ୍ୱତ୍ୱ ଦଆଯାଉଛି । ତାକୁ ରକ୍ଷାକରିବାର ଆଇନର ନାମ ଦିଆଯାଇଛି Tenants Protection Act ରୟତ ରକ୍ଷା ଆଇନ । ତେବେ

ଭାଗଗ୍ରଷୀ ଉପର ରୟତ ପୁଣି ହେଲା ମଧ୍ୟ ସ୍ୱତ୍ୱାଧିକାରୀ, ଏ ଗୋଲକ ଧନ୍ଦାରୁ ଦେଶର ଉଦ୍ଧାର ଅଛିତ ?"

ଇଂରେଜ ଶାସନରେ ଜମିଦାରୀସବୁ କିପରି ଶସ୍ତାରେ ନିଲାମଧରି ବଙ୍ଗାଳୀମାନେ ରାତାରାତି ଜମିଦାର ହୋଇଗଲେ ନୀଳକଣ୍ଠ ବିଶ୍ଳେଷଣ କରି ଦେଖାଇ ଦେଇଛନ୍ତି । କଲେକ୍ଟରେଟରେ ଚାକିରୀ କରୁଥିବା ବଙ୍ଗୀୟ ପେସ୍କାରମାନେ ଗୋରା କଲେକଟରଙ୍କୁ ବୁଝାଇଦେଲେ, "ଓଡ଼ିଆମାନଙ୍କର ପଢାଶୁଣା ନାଇ, ଲିପି ନାଇ, ସମୟରେ ଖଜଣା ଦେବା କ'ଣ ତା ସେମାନେ ଜାଣନ୍ତି ନାଇ, ସେଥିପାଇଁ ସେକାଳ ଫୋଟ ଉଇଲିୟମ ବଙ୍ଗଳାରେ ଓ ଇଂରଜୀରେ ନୋଟିସ ଦିଆହୋଇ ଓଡ଼ିଶାର ଜମିଦାରୀସବୁ ଶାଗମାଛ ମୂଲ୍ୟରେ ନିଲାମ ହୋଇଥିଲା । ହଣ୍ଟର ସାହେବ ନିଜ ବିବରଣୀରେ ବଙ୍ଗୀୟ ରାଖାଲଦାସ ବାନର୍ଜୀ ମଧ୍ୟ ନିଜ ଇତିହାସରେ ସେଇ କଥାକୁ ନିନ୍ଦା କରି ଲେଖିଛନ୍ତି । ନୀଳକଣ୍ଠ ଗୋଟି ଗୋଟି କରି କେତୋଟି ଦୃଷ୍ଟାନ୍ତ ମଧ୍ୟ ଦେଇଛନ୍ତି । ସେ ସରକାରଙ୍କୁ ସାବଧାନ କରାଇଦେଇ କହିଛନ୍ତି "ମୁଁ ପୁଣି କହୁଛି, ଏକାବେଳକେ ଜମିଦାରୀ ଉଠାଇବାର କଥା, ଏହା ସରକାର ବିଚାର କରିପାରନ୍ତି, ନ କରିବି ପାରନ୍ତି । କିନ୍ତୁ ଶେଷକୁ ମୁଁ କହୁଛି ସରକାର ମନେ ରଖନ୍ତୁ ଇଂରଜୀରେ ଯାହାକୁ କହନ୍ତି " writings on the wall " ମୁ କହୁଛି ଏଥିରେ ଭଲ ଫଳ ହେବ ନାହିଁ । .....ମୁଁ ସରକାରଙ୍କୁ ଜବାବ ଦେଇଛି, ସାତକୋଟି ଟଙ୍କା ଦେଶରୁ ଉଠିବ । ଜମିଦାରୀ କଳଙ୍କ ବନ୍ଦ କରିବେ ତ ଏହାକୁ "ଝଟକା"ରେ କାଟିଦିଅନ୍ତୁ, ହଲାର କରନ୍ତୁ ନାହିଁ ।"

ସତକୁ ସତ ତାଙ୍କ କହିବାନୁସାରେ ପରେ ଜମିଦାରୀ ଉଠିଲା । ମାତ୍ର ବିଳମ୍ବ ହେବାରୁ ଜମିଦାର, ଭାଗଗ୍ରଷୀ, ରୟତମାନଙ୍କ ମଧ୍ୟରେ ବହୁ ଗଣ୍ଡଗୋଳ, ମାଲି-ମକଦ୍ଦମା ଲାଗି ରହିଲା । ସରକାରଙ୍କର ମଧ୍ୟ କିଛି ଲାଭ ହେଲାନାହିଁ । ଦୂରଦୃଷ୍ଟିର ସହିତ ନୀଳକଣ୍ଠ ଯାହା କହିଥିଲେ ତାହାହିଁ ପରେ ହେଲା । କି ଗଭୀର ଜ୍ଞାନ : କି ପୁରୋଦୃଷ୍ଟି" ! ବିରୋଧୀ ଦଳର ବିଧାୟକ ଭାବରେ ନୀଳକଣ୍ଠଙ୍କ ଭାଷଣ ସତେ କି ତଥ୍ୟପୂର୍ଣ୍ଣ, ମାତ୍ର ସେ "ବିରୋଧ ପାଇଁ ବିରୋଧ" କରିବା ଜାଣିନଥିଲେ । ସେ ଯାହା କହନ୍ତି ଗଠନମୂଳକ ସମାଲୋଚନା (constructive criticism ). ତାହାପୁଣି ଜନସାଧାରଣଙ୍କ ସର୍ବୋତ୍ତମ ସ୍ୱାର୍ଥ ରକ୍ଷା ଦୃଷ୍ଟିରୁ In the best interest of the people, ସେଥିରେ ନିଜର ବା କୌଣସି ଦଳର ସ୍ୱାର୍ଥ ସାଧନର ସନ୍ଧା ନଥିଲା ।

Shri NILAKANTHA DAS : ବାଚସ୍ପତି ମହାଶୟ, ମୁଁ କହିବି ନାହିଁ ବୋଲି ମନେ କରିଥିଲି । କିନ୍ତୁ ମୋର ନାମଟା ଉଠିବାରୁ ମୁଁ କହିବାକୁ ବାଧ୍ୟ ହେଉଛି । ଶ୍ରୀ ରାମଚନ୍ଦ୍ର ମିଶ୍ରଙ୍କର କହିବାର ଥିଲା କିନ୍ତୁ ସେ ଚାଲିଗଲେଣି । ଏ ବିଲର ଦ୍ୱିତୀୟ ପାଠ ବେଳେ ମୋର ବିଶେଷ କିଛି କହିବାର ନ ଥିଲା । ମୁଁ ଜାଣେ ବର୍ତ୍ତମାନ ଆମେ କାହାକୁ କହିଲୁ । ସରକାରଙ୍କୁ କହି ନ ଥାନ୍ତୁ । କାହିଁକିନା ସରକାର ଶୁଣିବା

ଦରକାର ନାହିଁ । ଏଠାରେ ବର୍ତ୍ତମାନ କେହି ନାହାନ୍ତି । ବିଗ୍ଭର କରାହେଉ ବା କୌଣସି ଅଭିସନ୍ଧି ରଖି ହେଉ ବା ସରଳଭାବରେ ହେଉ ଏତିକିବେଳେ ଏ ବିଲ ଆସିଛି । ଲୋକେ 26 ତାରିଖ ପର୍ଯ୍ୟନ୍ତ ରହିବେ ବୋଲି ଆସିଥିଲେ । ତେଣୁ ବହୁତ ଲୋକେ ଗ୍ଭଲିଗଲେଣି । ଆମେରିକାରେ ଜଣେ ପଗ୍ଭରିଲେ ତମେ କଥା କାହାକୁ କହୁଛ । ବକ୍ତା ଉତ୍ତର ଦେଲେ ମୁଁ କହୁଛି bunkumକୁ । ମୁଁ ଏଠାରେ କହିଲେ ସତ୍ୟବାଦୀ Constituencyକୁ କହିବି । ଏ ବିଷୟରେ ମୋର ସତ୍ୟବାଦୀ Constituencyକୁ କିଛି କହିବାର ନାହିଁ । ମୋର ଦୀର୍ଘ ଜୀବନର ଇତିହାସରେ ଏ ବିଷୟରେ ବହୁତ କରିସାରିଛି । ମୁଁ ବିଶ୍ୱନାଥ ମନ୍ତ୍ରୀମଣ୍ଡଳକୁ ଦାଖଲ ଖାରଜ ଉଠାଇ ଦେବାପାଇଁ, ବାହାରି ନାକୁ ବେଆଇନ କରିବାପାଇଁ ଏବଂ ଆଉ କେତେଗୁଡ଼ିଏ କଥା କହିଥିଲି । କେବଳ ଏତିକି ସେ ଅନୁଗ୍ରହକରି କରିଛନ୍ତି । ବର୍ଷ ବର୍ଷ ଧରି ଜମିଦାରୀ କିପରି ଉଠିବ ସେ ସଂପର୍କରେ "ନବଭାରତ" ରେ ବହୁତ ଲେଖିଛି । ସେତେବେଳେ କ୍ଷତି ପୂରଣ ନ ଦେଇ ଜମିଦାରୀ ନେବା ପ୍ରଶ୍ନ ନ ଥିଲା । ସେ କଥା ଆମେ ସେତେବେଳେ କହି ପାରି ନ ଥାନ୍ତେ । ଜମିଦାରୀ କିପରି ଉଠାଇବାକୁ ହେବ ସେ ବିଷୟରେ "ନବଭାରତ" ରେ ମୁଁ ଗୋଟିଏ ଗ୍ରନ୍ଥ ଲେଖିଥିଲି । ମୁଁ ସେତେବେଳେ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଥିଲି । ମୁଁ ଭାବୁଥିଲି ମୋର ଦେଶ, ମୋର ସରକାର । କଣ କଲେ ଦେଶର ଭଲ ହେବ ଓ ଜନସାଧାରଣଙ୍କର ଭଲ ହେବ । ବର୍ତ୍ତମାନ ମୋର ଆଉ ନୂଆ କଥା କହିବାର କିଛି ନାହିଁ । ମୁଁ "ନବଭାରତ" ରେ ଯାହାସବୁ ଲେଖିଥିଲି ତାକୁ ଅନେକେ ପଢିଥିବେ । ଯଦି କେହି ପଢିନଥାନ୍ତି, ବର୍ତ୍ତମାନ "ନବଭାରତ" ର ପୃଷ୍ଠା ଲେଉଟାଇ ତାହା ଦେଖି ପାରନ୍ତି । ମୁଁ କାହାକୁ ଭୁଲାଇ ଭୋଟ ନେବାକୁ ସେ ସବୁ କଥା କହି ନ ଥିଲି । ମୁଁ କହିଥିଲି ତମେ ସ୍ୱାଧୀନ ହେଲେ ତମର ଖଜଣା ଟିକସ ବଢ଼ିବ । କିନ୍ତୁ ତମର ଦେବାର କ୍ଷମତା ବଢାଇ ଦିଆଯିବ । କିଏ କହିଲା ଆମକୁ ଭୋଟ ଦିଅ, ଆମେ ଟଙ୍କାରେ ଆଠ ଅଣା ଖଜଣା କମାଇ ଦେବୁ । କିଏ କହିଲା ଆମେ ପୂରାପରି ଖଜଣା କମାଇଦେବୁ, ଆମକୁ ଭୋଟ ଦିଅ । କିନ୍ତୁ ମୁଁ ଏପରି କଥା କେବେ କହି ନ ଥିଲି । ବର୍ତ୍ତମାନ ଯାହା ହେଉଛି ମୋର ସେଥିରେ କୌଣସି ମମତା ହେଉ ନାହିଁ । କାହିଁକି ନା ଜମିଦାରୀ ଉଠୁ ନାହିଁ । ବର୍ତ୍ତମାନ ଯାହା ହେଉଛି ତାହା ନାହିଁ ମାମୁଁଠାରୁ କଣାମାମୁଁ ଭଲ ବୋଲି ମୁଁ ବିଗ୍ଭରୁଛି । ଯାହା କହିଲେ ଶ୍ରୀ ଦିବାକର ପଟ୍ଟନାୟକ ତାହା ଠିକ୍ ଆମର ପରିସ୍ଥିତି ବଦଳାଇଲା ଭଳି ବିପ୍ଳବ ଭିତରେ ଏହା ଆସୁ ନାହିଁ । ବୋଧହୁଏ ସେହି ଯୋଗୁଁ ଯାହାକୁ କହନ୍ତି ନ ବୁଝିପାରିଲା ଭଳି ସବୁ ହେଉଛି । ଗ୍ଭଇନାରେ ଯେଉଁ ବିପ୍ଳବ ହୋଇଗଲା ସେ ବିପ୍ଳବ ରକ୍ତପାତର ବିପ୍ଳବ । ଆମର ମନ୍ତ୍ରୀମାନେ, ଗ୍ଭଳକମାନେ ଓ ନେତାମାନେ ଏ ଜିନିଷଟିକୁ ଜମା ଦେଖୁ ନାହାଁନ୍ତି । ଯଦି ଗୋଟିଏ ବ୍ୟକ୍ତିତ୍ୱର କଳ୍ପନା କରିବାକୁ ହୁଏ, ତା ଭିତରେ ତିନୋଟି କଥା ପ୍ରତି ଲକ୍ଷ୍ୟ କରିବାକୁ

ହୁଏ । ଗୋଟିଏ ହେଉଛି ପରଂପରା, ଦ୍ୱିତୀୟଟି ହେଉଛି ପରିସ୍ଥିତି ଏବଂ ତୃତୀୟଟି ହେଉଛି ପୁରୋଦୃଷ୍ଟି । ଏହା ଭିତରେ ଆମର ପରଂପରା କଣ ଅଛି । ଏହା କୈମିକି କାଳର ପରଂପରା ନୁହେଁ । ମୋଗଲ କାଳରୁ ଇଂରେଜମାନେ ସେମାନଙ୍କ ସାମ୍ରାଜ୍ୟବାଦର ସୁବିଧାପାଇଁ ଜମିଦାର ତିଆରି କରିଥିଲେ । କେବଳ ଜମିଦାର ଯେ ତିଆରି ହୋଇଥିଲେ ତାହା ନୁହେଁ, ଜମି ଉପରେ ଯେଉଁ ଖଜଣା ଧାର୍ଯ୍ୟ ହୋଇଥିଲା ତାହା ଗୋଟିଏ ଅସଂସ୍କୃତ ଜିନିଷ । ଏଇଟାକୁ ଆଜିକାଲି ଯୁଗରେ କୌଣସି ସରକାର ଠିକ୍ ବୋଲି କଳ୍ପନା କରିବା ଉଚିତ ନୁହେଁ । ଖଜଣା ଗୋଟାଏ କ'ଣ ? ମୁଁ ଜମିରେ ରହିଛି ବୋଲି କ'ଣ ଖଜଣା ଦେବି ? ମୁ ଯଦି ଜମିରୁ ଆୟ କରେ, ମୋ ପାଖରେ ଯଦି ବଳେ ଏବଂ ମୋର ଜିନିଷ ଯଦି ସରକାର ଜଗନ୍ତି, ତାହାହେଲେ ସିନା ମୁଁ ଖଜଣା ବା ଟିକସ ଦେବି । ତେଣୁ ଖଜଣା ଉଠାଇ ଦିଅ ବୋଲି ଗୋଟିଏ ଯେଉଁ ନୀତି ଧରି ଆଇନ ଚଠାଟି ଦିଆଯାଇଥିଲା, ତାହା ସରକାରଙ୍କ ମନକୁ ଏ ପର୍ଯ୍ୟନ୍ତ ପାଉ ନାହିଁ । ମୋର ବିଶ୍ୱାସ ଖଜଣା ଉଠାଇ ଦେଇ ସବୁ ଟିକସ ଉପରେ ନର୍ଭର କରି ଚାଲିବା । ଏପରିକି ଜମି ଟିକସ୍ ଉପରେ ଆଦୌ ନିର୍ଭର କରିବା ନାହିଁ । କାହିଁକି ନା ଜମିକୁ ବାଣ୍ଟିଦେଲେ କେଉଁ କୁଟୁମ୍ବରେ କେତେ ଜମି ପଡ଼ିବ ସେ କଥା ସରକାର ବିଗ୍ଭର କରନ୍ତୁ । ତେଣୁ ରକ୍ତାକ୍ତ ବିପ୍ଳବ ନ ହୋଇ ଆମେ ଯଦି ସେ ଦଗରେ ଯାଇ ପାରିବା ତା'ହେଲେ ଦଶ ବର୍ଷ ଭତରେ ଆମେ ଜମିରୁ ଖଜଣା ଛାଡ଼ିଦେବା । ମୁଁ କହୁଛି ଏହି ଖଜଣା ଛାଡ଼ି ଦିଅ ଏବଂ ଖଜଣା ଛାଡ଼ିଦେବାର ଉପାୟ କରିଦେଲେ ଲୋକେ ନିଜେ ନିଜ ଟିକସ ଆଦାୟ କରିଦେବେ ତା' ନ ହେଲେ ଆମେ ଏବେ ଯାହା 30 ବର୍ଷରେ କରିବାକୁ ଯାଉଛୁ, ତା'ର ପରିଣାମ କ'ଣ ହେବ ? 1937-38 ସାଲରେ ମୁ ଯାହା କଳ୍ପନା କରିଥିଲି ଓ ଲେଖିଥିଲି, ସେ ଅନୁସାରେ କାର୍ଯ୍ୟ ଏବେ କରାଯାଇପାରେ । ଏକାବେଳକେ ଜମିଦାରଙ୍କୁ ଟଙ୍କା ଦେଇଦିଅ । ମୋଟେ ସାତ କୋଟି ଟଙ୍କା । ଏହା ଲୋକଙ୍କଠାରୁ ଜାତୀୟ ଋଣ ପତ୍ରରେ ଆଦାୟ କର । ବର୍ଷପରେ ବଳକା ବଜେଟ୍ ଦେଖାଇ ଏଇତକ ଋଣ କରିବାକୁ ତମର ସାହାସ ହେଉ ନାହିଁ କାହିଁକି ? ତମର ଆତ୍ମର ବିଶ୍ୱାସ ନାହିଁ । ଲୋକଙ୍କର ତମଠ ବିଶ୍ୱାସ ନାହିଁ । ସେଇ ଜମଦାରମାନେ ନଜର ପ୍ରାପ୍ୟ ଟଙ୍କା ଋଣ ଦେବେ । ମୁଁ 1937-38 ସାଲରେ ଏହା କଳ୍ପନା କରିଥିଲି ଏବଂ ଲେଖିଥିଲି ଯେ ଋଣ ପତ୍ରରେ ଟଙ୍କା ନେବାପାଇଁ । ଜମିଦାରମାନଙ୍କ ସାଙ୍ଗରେ agreement କରାଯାଉ । ଜମଦାର କ'ଣ ତାହା କରନ୍ତେ ନାହିଁ ? $2\frac{1}{2}$ per cent ବା ସେହିଭଳି ଯଦି ସୁଧ ସ୍ଥିର କରାଯାଇଥାନ୍ତା ତା' ହେଲେ କ'ଣ Agreement ରେ ଏହା କରାଯାଇ ପାରିନଥାନ୍ତା? ସରକାରଙ୍କର ନିଜ ଉପରେ ସେତକ ବିଶ୍ୱାସ ନାହିଁ । ତେବେ କଣ କୁକୁର ଲାଙ୍ଗୁଳକୁ ଟିକିଏ ଟିକିଏ କରି କାଟିବାକୁ ହେବ ? ସରକାର ବର୍ଷକୁ ବର୍ଷ ଏପରି କରୁଛନ୍ତି କାହିଁକି ନା ତାଙ୍କର ନିଜ ଉପରେ ବିଶ୍ୱାସ ନାହିଁ । ଜମିଦାରୀ ଉଠାଇ ଦେବାତ ସହଜ କଥା;

କିନ୍ତୁ ଜମିଦାରୀ ଉଠାଇ ଦେଲେ ବି ଏହି $3\frac{1}{2}$ per cent ଟା ପୁଣି ଚିରସ୍ଥାୟୀ ଜମି-ଦାରୀ ହୋଇ ରହିବ । ଏ କ'ଣ । ତା' ପରେ ଧରନ୍ତୁ ଜମିଦାରୀ ଉଠିଗଲା । କିନ୍ତୁ ଏ ଯେଉଁ କୁହାଯାଉଛି land to the tillers of the soil. ସେଇଟା କିପରି ହେବ ? ସବୁ ଜମିକୁ ଯଦି କେବଳ ହଳକରିବା ଲୋକଙ୍କୁ ବାଣ୍ଟି ଦିଅ, ତା' ହେଲେ ଜମି ପ୍ରଜାଙ୍କ ହାତରେ ଆଉ ରହିବ କିପରି ? ଏ କଥା କେହି ବୁଝୁ ନାହାନ୍ତି । ଏହା ଭିତରେ କୌଣସି ଦୂରଦୃଷ୍ଟି ନାହିଁ । ଲୋକଙ୍କ ହାତରେ ଜମି ରହିବ । କିନ୍ତୁ କାହା ହାତରେ ଜମି ରହିବ ? ଚାଷୀ ହାତରେ ନା ରୟତ ହାତରେ ? ଏହି ଜିନିଷଟା ତାଳୁଠୁଁ ତଳିପା ପର୍ଯ୍ୟନ୍ତ କେହି ବୁଝୁ ନାହାନ୍ତି । ଧରନ୍ତୁ ମୋର 4 ଟି ପୁଅ । ମୁଁ ଜମି ଚାଷ କରିବି । ମୋ ହାତରେ 5 ଏକର କରି 20 ଏକର ଜମି ଚାଷ କରିବାପାଇଁ ଦିଆଗଲା, ମୋର 2 ଟି ପୁଅ ମରିଗଲେ । ତା' ହେଲେ କାଲି 10 ଏକର ମନକୁ ଅନ୍ୟ ହାତକୁ ଚାଲିଗଲା । ଜମରେ ସ୍ୱତ୍ୱ କାହାରି ରହିଲା ନାହିଁ । ସବୁ ଜମିହେଲା ସରକାରର ବା କମ୍ୟୁନିଟିର । ସରକାରଙ୍କର କର୍ମଚାରୀ ବର୍ଷକୁ ବର୍ଷ ବସିବେ ବା ଅବଶ୍ୟ ଏପରି ହୋଇପାରେ ଚାଷୀ ହାତରେ ଜମି ରହିବ, ଗ୍ରାମ ପଞ୍ଚାୟତ ବସିବେ, ପ୍ରତିବର୍ଷ ସମସ୍ତଙ୍କୁ ଡ଼ାକି ପଚାରିବେ କିଏ କେତେ ଜମି ଚାଷ କରିପାରିବ ଏବଂ ସେହି ଅନୁସାରେ ଜମି ବାଣ୍ଟି ଦେବେ । ତାରି ଉପରେ ହୁଏତ ଚାଷୀ ଟିକସ୍ ଦେବେ । କିନ୍ତୁ ସେଥିରେ ତା'ର ସତ୍ୱ କିପରି ରହିବ ? ଯାହାର ପ୍ରକୃତ ଲଙ୍ଗଳ ବା ଯିଏ ଚାଷ କରୁଛି ତା'ର ସ୍ୱତ୍ୱ ରହିପାରିବ ନାହିଁ , ସରକାରଙ୍କର ସ୍ୱତ୍ୱ ରହିବ । ଆଉ ଯଦି କିଏ କହିବ, ମୁଁ ବିଧବା ହୋଇଗଲି, ବର ମରିଗଲା ବା ଚାକିରି କରିବାକୁ ବଦେଶକୁ ଚାଲିଗଲା, ଏଣେ ଜମି ବେଶୀ ହେଲା, ମୁଁ ଚାଷ କରାଇବାପାଇଁ ଲୋକ ଲଗାଇଲି, ସେପରି କ୍ଷେତ୍ରରେ ଜମଟା ରୟତ ହାତରେ ରହିଲା, ଚାଷୀ ହାତରେ ରହିଲା ନାହିଁ । ଜମି ଯେତେ ଦିନ ରୟତ ହାତରେ ରହିବ, ସେତେଦେନ ପୁଣି ବର୍ତ୍ତମାନ ବ୍ୟବସ୍ଥା ଅନୁସାରେ କଥା ହେଉଛି 30 ଏକରରୁ ବେଶୀ ରହିବ ନାହିଁ । ଏହାର ଅର୍ଥ ହେଉଛି ଯାହାର 32 ଏକର ଜମିଥିବ ସେ ଦୁଇ ଏକର ଜମି ବିକିଲା ବେଳକୁ ଜମା ଦାମ ପାଇବ ନାହିଁ । କିନ୍ତୁ ଯାହାର 20 ଏକର ଜମି ଅଛି ତାପକ୍ଷରେ ସେଇ ଜମିର ଦାମ୍ ଅତ୍ୟନ୍ତ ବେଶୀ ହୋଇଯିବ । ଏଥିରେ ଦେଶର ଆର୍ଥିକ ପରିସ୍ଥିତି ଓଲଟ ପାଲଟ ହୋଇଯିବ । କେଉଁ ଦୃଷ୍ଟିରେ ଦେଶର ଜମଜମା ପରିସ୍ଥିତି ଗଢିବାକୁ ହେବ ସେ ଦୂରଦୃଷ୍ଟି ଏବେ ବଡ଼ ଲୋଡ଼ା । ମାତ୍ର ଉପରୁ ପ୍ରଦେଶ ଯାଏ ଏ କଥା କେହି ବୁଝୁ ନାହାନ୍ତି । ଯାହା କୁହାଯାଉଛି ଯେ ଲଙ୍ଗଳ ଯାର, ଜମି ତା'ର ଏଇଟା ଇଂରାଜୀରେ ଯାହା କହନ୍ତି ଗୋଟାଏ ସ୍ଲୋଗାନ ଛଡ଼ା ଆଉ କିଛି ନୁହେଁ ।

Shri SURENDRANATH PATNAIK : ସଭାପତି ମହାଶୟ, ଏ ଯେଉଁ ବିଷୟଟା ବକ୍ତା ମହାଶୟ କହୁଛନ୍ତି ଆଲୋଚ୍ୟ ବିଷୟ ସହିତ ତା'ର କିଛି ସଂପର୍କ ଅଛି କି ନାହିଁ ଆପଣ ଅନୁଗ୍ରହକରି କହନ୍ତୁ ।

Mr. SPEAKER : ସେ ଯେଉଁ ଉପାଦେୟ କଥା କହୁଛନ୍ତି ତାହା ମୁଁ ଏତେ ତନ୍ମୟ ହୋଇ ଶୁଣୁଥିଲି ଯେ ତାହା ପ୍ରାସଙ୍ଗିକ କି ନା ମୋ ମନକୁ ଆସି ନାହିଁ । ମୁଁ ଭାବୁଛି ସେ ଯାହା କହୁଛନ୍ତି କେତେଗୁଡ଼ିଏ ବିଷୟ ପ୍ରାସଙ୍ଗିକ ।

Shri JOYKRUSHNA MOHANTY : ମାନ୍ୟବର ସଭ୍ୟ ଯେତେବେଳେ ଏ ଗୃହରେ ବେଦ ଉପନିଷଦରୁ କହିଥିଲେ ଯେ ଜମି ଯିଏ ତିଆରି କରିବ, ତାର ହେବ ଏବଂ ବର୍ତ୍ତମାନ କହୁଛନ୍ତି ରୟତ ହାତରେ ବା ଅନ୍ୟ କାହା ହାତରେ ଦିଆଯିବ, ଏ ଦୁଇଟାରୁ କେଉଁଟା ତାଙ୍କର ଠିକ୍ ମତ ମୁଁ ପରିଷ୍କାର ଭାବରେ ବୁଝିବାକୁ ଚାହୁଁଛି ।

Shri NILAKANTHA DAS : ରୟତ ଯଦି ରହିବ ରହୁ । ମୁଁ ନାହିଁ କରୁ ନାହିଁ । କିନ୍ତୁ ଲୋକଙ୍କୁ ଠକ ନାହିଁ । ପରିଷ୍କାର କରି କହିଦିଅ ଯେ ରାଜ୍ୟର ସବୁ ହୋଇଯିବ, ଲୋକଙ୍କର ହେବ ନାହିଁ । ଲୋକେ ମନେ କରିଛନ୍ତି ଯେ ସେମାନେ ଯାହା ଚାଷ କରିବେ ସେ ଜମି ବିକିଲେ ତାର ମୂଲ୍ୟ ପଇସା ତାଙ୍କ ପାଖକୁ ଆସିବ । ଏ ଯାହା ହେଉଛି, ଯେ ଜମି ତିଆରି କରିବ ତା ଉପରେ ଖଜଣା ବସିବ, ଏହା ହେଉଛି ମୋଗଲ ଏବଂ ଇଂରେଜ ସମୟର ପରାଧୀନତାର ପରମ୍ପରା । ପରିସ୍ଥିତି ଦେଖି କଣ କରିବ ବିଚାର କର । ଲୋକଙ୍କୁ କହିଦେବା ଉଚିତ ଯେ ସେମାନେ ଚାଷ କରିବେ । ସରକାରଙ୍କର ଜମି ହେବ । ତାଙ୍କୁ ଦେବା ପାଇଁ ଆମର ଆପତ୍ତି ନାହିଁ । ତାହା ଦବା ଉଚିତ । Community ର ଜମି ଯେତେବେଳେ ହୋଇଯିବ ଭଲ ହେବ । କିନ୍ତୁ ତାହା ବିପ୍ଳବରେ ହେବ କି ଆମ କାର୍ଯ୍ୟରେ ହେବ ଏହାଇ ବୁଝି କାମ କରିବା ଉଚିତ ।

ତା'ପରେ କ'ଣ ହେଉଛି ମୁଁ ବରାବର କହୁଛି ରଇତର ଜମି ଯିଏ ଚାଷ କରିବେ ବା ଭାଗଚାଷୀ ହେବେ ସେ ହେବେ ଚୁକ୍ତିବଦ୍ଧ labourer ବା ମଜୁରିଆ । ସରକାର ତାକୁ ମଜୁରୀ ଆଇନ (Labour Law)ରେ ତିନିପଞ୍ଚମାଂଶ ବା ଦୁଇତୃତୀୟାଂଶ ଦିଅନ୍ତୁ । ତହିଁରୁ ବେଶୀ ବି ଦେଇ ପାରନ୍ତି, ସରକାରଙ୍କର ମଜୁରୀ ବଢ଼ାଇବାର କ୍ଷମତା ଅଛି । କିନ୍ତୁ ଏହା ନ କରି ନ ବୁଝି, ଭାଗଚାଷୀକୁ ପୁଣି ରୟତି ସତ୍ତ୍ୱ ଦିଆଯାଉଛି । ତାକୁ ରକ୍ଷା କରିବାର ଆଇନର ନାମ ଦିଆଯାଉଛି, Tenants Protection Act, ରୟତରକ୍ଷା ଆଇନ । ତେବେ ଭାଗଚାଷୀ ଉପର ରୟତ ପୁଣି ହେଲା, ମଧ୍ୟ ସତ୍ତ୍ୱାଧିକାରି, ଏ ଗୋଲକ ଧନ୍ଦାରୁ ଦେଶର ଉଦ୍ଧାର ଅଛି ତ ?

Mr. SPEAKER: ମାନ୍ୟବର ସଭ୍ୟ ଅନୁଗ୍ରହକରି ଟିକିଏ ବିଷୟବସ୍ତୁକୁ ଆସନ୍ତୁ ।

Shri NILAKANTHA DAS: ଏହା ଯଦି ବିଷୟବସ୍ତୁ ଭିତରେ ନୁହେଁ ତା'ହେଲେ ଆଉ ଗୋଟିଏ କଥା କହିବି । ଆପଣ ଜାଣିଥିବେ ଆମର ପୁରୀ, କଟକ ଏବଂ ବାଲେଶ୍ୱରର

1803 ଠାରୁ 1817 ସାଲ ପର୍ଯ୍ୟନ୍ତ ଯାହା ହୋଇ ଯାଇଛି । ସେତେବେଳେ ଇଂରେଜ ଶାସନ ନୂଆ । କଟକ ଗୋଟିଏ ମାତ୍ର ଜିଲ୍ଲା । ସେଥିରେ ପୁରୀ ଓ ବାଲେଶ୍ୱର ଅନ୍ତର୍ଭୁକ୍ତ । ଗୋରା କଲେକ୍ଟର ଜଣେ । ବାକିସବୁ ପେସ୍କାର ପ୍ରଭୃତି ବଙ୍ଗାଳୀ ଥିଲେ । ଗୋରା କଲେକ୍ଟରଙ୍କୁ ସେମାନେ ମତାଇ ଦେଲେ । ଓଡ଼ିଆମାନଙ୍କର ପଢ଼ା ଶୁଣା ନାଇ, ଲିପି ନାଇ, ସମୟରେ ଖଜଣା ଦେବା କ'ଣ ତା ସେମାନେ ଜାଣନ୍ତି ନାଇ । ସେଥିପାଇଁ ସେକାଳ ଫୋର୍ଟ ଉଇଲିୟମରେ ବଙ୍ଗଳା ଓ ଇଂରାଜୀରେ ନୋଟିସ ଦଆହୋଇ ଓଡ଼ିଶାର ଜମିଦାରୀ ସବୁ ଶାଗ ମାଛ ମୂଲ୍ୟରେ ନିଲମ ହୋଇଥିଲା । Statistical Accounts of Bengalରେ Hunter ସାହେବ ଏହାର କିଛି ବବରଣୀ ଦେଇଛନ୍ତି । ସେ କହିଛନ୍ତି ଏହା ଓଡ଼ିଆଙ୍କ ଉପରେ ଡ଼କାୟତି ଛଡ଼ା ଆଉ କିଛି ନୁହେଁ । ଐତିହାସିକ ରାଖାଲ ଦାସ ବାନାର୍ଜି ନଜ ଓଡ଼ିଶାର ଇତିହାସରେ ଏ କଥାର ବଡ଼ ନିନ୍ଦାକରି ଲେଖିଛନ୍ତି । ସେ କହିଛନ୍ତି କଲିକତାର 19ଶ ଶତକରା ରାଧାକିଶନ ଓ ଗଙ୍ଗାଗୋବିନ୍ଦ ନାମରେ ହୋଇଥିବା ଜମିଦାରୀର ମୂଳ ଏଇ ଡ଼କାୟତିରେ । ଉଦାହରଣ ଦେଇ ସେ ପୁଣି କହିଛନ୍ତି, ବର୍ଷକୁ 54,000 ଟଙ୍କା ଆୟର ଗୋଟିଏ ଜମିଦାରୀ ମୋଟେ 36,000 ଟଙ୍କାରେ କଲିକତାରେ ନିଲମ ହୋଇଥିଲା । 1817ରେ ଖୋରଧାର ଯେଉଁ ପାଇକ ବିଦ୍ରୋହ ହୋଇଥିଲା ଓ ଯେଉଁଥିପାଇଁ ସୁନାମଧନ୍ୟ ପୁଣ୍ୟଶ୍ଳୋକ ଜଗବନ୍ଧୁ ବିଦ୍ୟାଧର ସର୍ବସ୍ୱ ପଣକରି ଦେଶରକ୍ଷା କରିଥିଲେ, ସବୁର ମୂଳ ଏଇଠାରେ । ତେଣୁ ଆଗ ନବାର ହେଲେ ଏହିସବୁ ଜମିଦାରୀ ଆଗ ସରକାର ନେବା ଉଚିତ । ବର୍ତ୍ତମାନ ଏହା ଯଦି ଆସ୍ତେ ଆସ୍ତେ କିସ୍ତିରେ କରିବାକୁ ପଡ଼ିବ ତାହେଲେ ମୁଁ ଅନୁରୋଧ କରୁଛି ଆମର ପୁରୀ, କଟକ, ବାଲେଶ୍ୱରରେ ଆଗ ହେଉ । ଅନୁଗ୍ରହ କର ବା ନଗ୍ରହ କର, ଯଦି ସେଇଆ ଉଦ୍ଦେଶ୍ୟ ଥାଏ ମୁଁ କହି ପାରୁ ନାହିଁ । ତେବେ ମୋର ଇଛା ହେଉଛି ଯେ ଖଲିକୋଟ ଓ ଜୟପୁର ପ୍ରଜା କାହିଁକି ଏଡ଼େ ଶୀଘ୍ର ରକ୍ଷା ପାଇଯିବେ । ମୁଁ ଯେ ଚରକାଳ ଟଙ୍କା ଦେଉଥିବି ଏବଂ ସେହି ଟଙ୍କାରେ କଲିକତାର ମେଡ଼ିକାଲ କଲେଜରେ ବେଡ଼ ତିଆରି ହେଉଥିବ, ମୋ ପଇସାରେ ପାଇକପଡ଼ାରେ ହାଇ ସ୍କୁଲ ତିଆରି ହେଉଥିବ, ଏହା କାହିଁକି ହେବ ? ମୋ ଘର "ପାଇକପଡ଼ା ଜମଦାରୀରେ । ମୋର ଆଉ ବିଶେଷ କହିବାର ନାହିଁ ! ମୁଁ ପୁଣି କହୁଛି, ଏକାବେଳକେ ଜମଦାରୀ ଉଠାଇବାର କଥା । ଏହା ସରକାର ବିଗ୍ଦର କରିପାରନ୍ତି ନ କରି ବି ପାରନ୍ତି । କିନ୍ତୁ ଶେଷକୁ ମୁଁ କହୁଛି ସରକାର ମନେ ରଖନ୍ତୁ ଇଂରେଜୀରେ ଯାହାକୁ କହନ୍ତି "Writings on the wall" ମୁଁ କହୁଛି ଏଥିରେ ଭଲ ଫଳ ହେବ ନାହିଁ । 30 ବର୍ଷ କାଳ ପର୍ଯ୍ୟନ୍ତ ପୁଣି ଶୁଣାଯିବ 'ଛାରଯୋକ' ଘୋଷା ହେଉଛନ୍ତି । ତେଣୁ ମୁଁ କହୁଛି ଏଥିରେଇ ଦେଶର ବାୟୁ ମଣ୍ଡଳ ଦୁର୍ଗନ୍ଧମୟ ହୋଇଯିବ । ଏହାକୁ ରଖ ନାହିଁ । ମୁଁ ସରକାରଙ୍କୁ ଜବାବ ଦେଉଛି, ସାତ କୋଟି ଟଙ୍କା ଦେଶରୁ ଉଠିବ । ଜମିଦାରୀ କଳଙ୍କ ବନ୍ଦ କରିବେତ ଏହାକୁ 'ଝଟକା'ରେ କାଟି ଦିଅନ୍ତୁ, ହଲାଲ କରନ୍ତୁ ନାହିଁ ।

## 11. ଓଡ଼ିଶା ହିନ୍ଦୁ ଦେବୋତ୍ତର ସଂଶୋଧନ ଚିଠା ଆଇନ
## [The Orissa Hindu Religions Endowments (Amendment) Bill, 1954[

ତତ୍କାଳୀନ ଆଇନ ମନ୍ତ୍ରୀ ଶ୍ରୀ ସତ୍ୟପ୍ରିୟ ମହାନ୍ତି, 1954 ଓଡ଼ିଶା ହିନ୍ଦୁ ଦେବୋତ୍ତର ସଂଶୋଧନ ଚିଠା ଆଇନ ବିଧାନ ସଭା ଗୃହରେ ଆଗତ କରିଥିଲେ । ଏହା ଉପରେ ପ୍ରଥମେ ନୀଳକଣ୍ଠ କହିଥିଲେ । ସୁପ୍ରିମ କୋର୍ଟ ଏହିପରି ଏକ ମାମଲାରେ ଶ୍ରଦ୍ଧା ବା Contribution କୁ Tax ନୁହେଁ, ମାତ୍ର ବାଧ୍ୟତା ମୂଳକ (Compulsory) ବୋଲି ଆଇନ ମନ୍ତ୍ରୀ କହିଥିବାରୁ ନୀଳକଣ୍ଠ ଏଥିରେ ସ୍ପଷ୍ଟୀକରଣ ଚାହିଁଥିଲେ । ଆଇନ ମନ୍ତ୍ରୀ କହିଥିଲେ ଯେ ମଠ ମନ୍ଦିର ଆଦି ଅନୁଷ୍ଠାନଗୁଡ଼ିକ ସେମାନଙ୍କର ଶ୍ରଦ୍ଧା ଯେ ଦେବାକୁ ବାଧ୍ୟ, ଏଥିରେ ସନ୍ଦେହ ନାହିଁ । ନୀଳକଣ୍ଠ ସୁପ୍ରିମ କୋର୍ଟ ରାୟର ଏହି ଅଂଶଟି ପଢି ଶୁଣାଇବାକୁ ଅନୁରୋଧ କରିଥିଲେ, ମାତ୍ର ଆଇନ ମନ୍ତ୍ରୀ ତାହା ପାଖରେ ନାହିଁ ବୋଲି ଉତ୍ତର ଦେଇଥିଲେ । ସେଥିରେ ନୀଳକଣ୍ଠ ପୁଣି Advocate-General ଙ୍କୁ ଏହାର ସ୍ପଷ୍ଟୀକରଣ ଦେବାକୁ ଗୃହକୁ ଆସନ୍ତୁ ବୋଲି ଦାବି କରିଥିଲେ । ନୀଳକଣ୍ଠ ଏହି ଚିଠା ଆଇନକୁ ଲୋକମତ ସଂଗ୍ରହ ପାଇଁ ପଠାଇବାକୁ ପ୍ରସ୍ତାବ ଦେଇଥିଲେ ।

ଏହି ପ୍ରସ୍ତାବ ସପକ୍ଷରେ ସେ ସାଂପ୍ରତିକ ଅବସ୍ଥାରେ ଥିବା ଦୋଷତ୍ରୁଟିମାନ ଦେଖାଇ ମାନ୍ଦ୍ରାଜର Justice Party ବ୍ରାହ୍ମଣ-ଅବ୍ରାହ୍ମଣ-ଭେଦଭାବ ଜଗନ୍ନାଥଙ୍କ ମନ୍ଦିରର ସାର୍ବଜନୀନ ଭାବ, ତିରୁପତି ମନ୍ଦିରର ଆର୍ଥିକ ସ୍ୱଚ୍ଛଳତା ଆଦି ସଂପର୍କରେ ସମ୍ୟକ୍ ସୂଚନା ଦେଇଥିଲେ । ମଠ, ଧର୍ମାନୁଷ୍ଠାନ ଆଦିର ବାଖ୍ୟା ମଧ୍ୟ ପାଣ୍ଡିତ୍ୟପୂର୍ଣ୍ଣ ଭାବରେ ସେ କରିଥିଲେ । ଦେବଦାସୀ ପ୍ରଥା ଦକ୍ଷିଣରୁ ଆନୀତ ଏକ ଦ୍ରାବିଡ଼ ପ୍ରଥା ବୋଲି କହି ଆଇନରେ ତାକୁ ପୂରାଇବାକୁ ମନା କରିଥିଲେ । ଧର୍ମାନୁଷ୍ଠାନର ବୈଧାନିକ ଅର୍ଥ କଲେ ଆମର ପ୍ରତ୍ୟେକ ପରିବାର ମଧ୍ୟ ତାର ଅନ୍ତର୍ଭୁକ୍ତ ହେବ, ଆମ ଘର ମଧ୍ୟ ଗୋଟିଏ ଲେଖାଁ ମଠ ବୋଲି କୁହାଯିବ । ସେ କହିଛନ୍ତି, "ଧରନ୍ତୁ ଏହି ଜଗନ୍ନାଥଙ୍କ କଥା ପୁରୀରେ ଏମାର ମଠ ପ୍ରତିଦିନ 200 ହାଣ୍ଡି ଭୋଗ କରି କାଙ୍ଗାଳ ଖାଇବାକୁ ଦେଉଛି । ଏହାକୁ ଯଦି ଧରାଯାଏ, Public Endowmen ବୋଲି ତାହାହେଲେ କିଏ ଖର୍ଚ୍ଚ କରି ଜଗନ୍ନାଥଙ୍କ ଭୋଗ କରାଇ 200 ଲୋକଙ୍କୁ ଖାଇବାକୁ ଦେବ ?" ସେମିତି ଭାରତୀୟ ଦର୍ଶନ ଓ ସଂସ୍କୃତ ଶିକ୍ଷାପାଇଁ ମଠମାନ ପ୍ରତିଷ୍ଠିତ ହେଲା । ସେଗୁଡ଼ିକ ଆବାସିକ ବିଦ୍ୟାଳୟ ଓ ମହାବିଦ୍ୟାଳୟ (Residential Schools and Colleges) ଭାବରେ ପରିଚିତ ହେଲା ।

ସେମିତି Specific Endowment ଦକ୍ଷିଣରୁ ଆସିଛି । ଏହା ସର୍ବସାଧାରଣ ବୋଲି ସେତେବେଳେ ସରକାର କହିଥିଲେ । ଏହିସବୁ କାରଣରୁ ବହୁ ବିଭ୍ରାଟ ଘଟିବାର ଆଶଙ୍କା କରି ନୀଳକଣ୍ଠ ଲୋକମତ ପାଇଁ ପଠାଇବାକୁ ପ୍ରସ୍ତାବ ଦେଇଥିଲେ । ଶେଷକୁ ଏହି ଚିଠା ଆଇନ ଯାଂଚ କମିଟିକୁ ଯାଇଥିଲା ।

ଏହିପରି ନୀଳକଣ୍ଠ ରକ୍ଷଣଶୀଳପରି ପ୍ରତୀୟମାନ ହେଲେ ମଧ୍ୟ ସମାଜ ଓ ସଂସ୍କୃତିର ମଙ୍ଗଳପାଇଁ ନିଜର ମତ ସ୍ପଷ୍ଟ ଓ ନିର୍ଭୟ ଭାବରେ ପ୍ରକାଶ କରୁଥିଲେ ଏବଂ ବାଂଛିତ ପରିବର୍ତ୍ତନ ଆଣିବାରେ ପଶ୍ଚାତ୍‌ପଦ ହେଉ ନ ଥିଲେ । ତେଣୁ ତାଙ୍କର ଚିନ୍ତାଧାରା ପ୍ରଗତିବିରୋଧୀ ବା ପ୍ରତିକ୍ରିୟାଶୀଳ (Reactionary) ନ ହୋଇ ପ୍ରଗତିଶୀଳ (Progressive) ହୋଇଥିଲା ।

ପଣ୍ଡିତ ନୀଳକଣ୍ଠ ବୟସ ଦୃଷ୍ଟିରୁ ସମସ୍ତଙ୍କୁ ଆଶୀର୍ବାଦ କରି ଏହି ଦେବୋତ୍ତର ଆଇନର ସଫଳତା କାମନା କରିଥିଲେ । ହିନ୍ଦୁ ଧର୍ମର ଯାହା ଆଦର୍ଶ, ଯାହା ପ୍ରେରଣା ଓ ଯାହା କ୍ରିୟା, ସେ ସଂପର୍କରେ ଆଲୋଚନା କରି କହିଛନ୍ତି, "ଅନେକ ସମୟରେ ଯେପରି କୁହାଯାଉଛି— ସରକାର ଗୋଟିଏ ବ୍ୟକ୍ତି ହେଲେ ମଧ୍ୟ ହୃଦୟହୀନ । ତାଙ୍କଠାରୁ ଏଭଳି ଗୋଟିଏ ଆଶା ଯେଉଁମାନେ କରୁଛନ୍ତି, ସେମାନେ ମୂଳରୁ ଭୁଲ କରୁଛନ୍ତି । ବିଶେଷରେ ଆଜିକାଲି ପୃଥିବୀରେ ସରକାରମାନଙ୍କ ସଙ୍ଗେ ଆମ ସରକାର ଯେଉଁ ଆଡ଼କୁ ଗତିକରୁଛନ୍ତି, ସେଥିରେ ଧର୍ମ ବା ପ୍ରାଣ ବୋଲି କିଛି ନାହିଁ । କେବଳ ହିସାବକିତାବ କଥା ରହୁଛି ।" ଆଧୁନିକ ସମାଜରେ ସରକାରୀ ବ୍ୟବସ୍ଥା ଓ ସେଥିରେ ଧର୍ମର ସ୍ଥାନ ସଂପର୍କରେ ନୀଳକଣ୍ଠଙ୍କର ମତ ଏହି ଉକ୍ତିରୁ ସ୍ପଷ୍ଟ ହେଉଛି ।

ପାଞ୍ଚ ହଜାର ବର୍ଷ ତଳୁ ବେବିଲୋନିଆ ସଭ୍ୟତା, ଭାରତଠାରୁ ଇଜିପ୍‌ଟରେ କିପରି ସମସ୍ତ ଭୂଖଣ୍ଡରେ ଏକଧର୍ମ ପ୍ରଚଳିତ ଥିଲା, ଦେବ ଦେବୀ ପୂଜା, ଈଶ୍ୱର ଆଦି ସଂପର୍କରେ ବୁଝାଇ ନୀଳକଣ୍ଠ କହିଛନ୍ତି, "ଏହାକୁ କହନ୍ତି ସନାତନ ଧର୍ମ । ସନାତନ ଅର୍ଥ ସର୍ବଦା ଜାତ, ନିତ୍ୟ ନୂତନ । ମାନବର ଯେପରି ପ୍ରଗତି ହେଉଛି, ସେ ଅନୁସାରେ ଆମେ ସବୁବେଳେ ଘଟଣାଚକ୍ରରେ ନିଜକୁ ମିଶାଇ ଦେଉଛୁ ।" ପରିସ୍ଥିତିକ୍ରମେ ଏଥିରେ ବହୁ ପରିବର୍ତ୍ତନ, ବିପ୍ଳବ ଓ ବିବର୍ତ୍ତନ ସଂଗଠିତ ହେଉଛି । ସାମ୍ୟବାଦୀମାନେ ଈଶ୍ୱରଙ୍କୁ କିପରି ସାମ୍ରାଜ୍ୟବାଦର ମୂଳ ବୋଲି କହି "ବିପ୍ଳବ କଲେ ଈଶ୍ୱରଙ୍କ ବିରୁଦ୍ଧରେ ଏବଂ ଈଶ୍ୱରଙ୍କୁ ଫିଙ୍ଗିଦେଲେ । ତାଙ୍କ ସ୍ଥାନ ଶୂନ୍ୟ ହେଲା ନାହିଁ ।" ଆମର ହେଉଛି ସନାତନ ଧର୍ମ । ଏହି ଧର୍ମ ରହିଲେ ଆମେ ରହିବା । ତା'ନହେଲେ ଆମର ସେଇଟା ହେଲା ଯୁଦ୍ଧ । ................ଅହିଂସା-ଭାବରେ କହ ବା ଗାନ୍ଧୀ ଭାବରେ କହ ତା'ର ମୂଳମନ୍ତ୍ର ହେଉଛି ସାମ୍ୟବାଦ, ଆମର ଜଗନ୍ନାଥ ଧର୍ମ, ସେଇଟା ହେଉଛି ସମଗ୍ର ମାନବ ସମାଜକୁ ସମାନଭାବରେ ଦେଖିବା । ପରପାଇଁ କାମ କରିବା ହେଲା ଏ ଧର୍ମର ମୂଳମନ୍ତ୍ର । "

ପ୍ରଥମେ ନୀଳକଂଠ ଲୋକମତ ସଂଗ୍ରହପାଇଁ ଏହି ବିଲ୍‌ଟିକୁ ପଠାଇବାପାଇଁ ପ୍ରସ୍ତାବ ଦେଇଥିଲେ । ଏହାର ସପକ୍ଷରେ ସେ କହିଛନ୍ତି, "ଯେତେବେଳେ କୁହାଗଲା, ଲୋକମତକୁ ଦିଆଯାଉ, ଲୋକମତ ବୋଇଲେ ସମସ୍ତେ ମନେ କରୁଛନ୍ତି ପୁରୀର ନୋଳିଆ-ମାନଙ୍କର ମତ ବା ବଡ଼ଦାଣ୍ଡରେ ଯେଉଁମାନେ ବସିଛନ୍ତି ତାଙ୍କର ମତ । କିନ୍ତୁ ଲୋକମତ

ବୋଇଲେ ଯେଉଁମାନେ ଏ ବିଷୟରେ ଜାଣନ୍ତି ତାଙ୍କର ମତକୁ ବୁଝାଏ ।" ମାତ୍ର ବିଲ୍‌ରେ ଯାହା ସଂଶୋଧନ କରାଗଲା, ସେଥିରେ ସେ ସନ୍ତୁଷ୍ଟ ହେଲେ ନାହିଁ । "ମୁଁ ଭାବିଥିଲି ଏଟା ସଂଶୋଧନ ହୋଇଗଲା, ସେଥିପାଇଁ ମୁଁ ଖୁସି ହୋଇଥିଲି, କିନ୍ତୁ ସେ ବିଷୟରେ ପୁଣି ଆଉ ଗୋଟିଏ ସ୍ଥାନରେ ସେ ବିଷୟଟିକୁ ଭର୍ତ୍ତି କରାଯାଇଛି । ମୁଁ କହିବି ଇଂରେଜୀରେ ଯାହା କହନ୍ତି Blackmailing ଏହା ଠିକ୍ ସେଇଆ ।" ଏହାଫଳରେ ଦୁର୍ନୀତି ମାଡ଼ିଚାଲିବ ବୋଲି ତାଙ୍କର ଆଶଂକା ।

ତରତର କରି ଗୁରୁତ୍ୱପୂର୍ଣ୍ଣ ଆଇନ ବିଲଗୁଡ଼ିକୁ ପାସ୍ କରାଇବା ବିରୁଦ୍ଧରେ ସାଂସଦ ନୀଳକଂଠଙ୍କ ମତ ଶୁଣନ୍ତୁ । "ଆମର ସେ ସବୁ ପଢ଼ି ବୁଝିବାର ସମୟ ନାହିଁ । ଏହିପରି Amendment ସବୁ ଆଣି ଆମଠାରୁ ପାସ କରାଇଦେବାକୁ ବସିଛନ୍ତି । ଆମ୍ଭଂକୁ ଗ୍ରହଣ କରି-ନେବାକୁ କହୁଛନ୍ତି । ଏହା ଠିକ୍ ନୁହେଁ । ଆମେ ଗୋଟିଏ ଭଲ ଜିନିଷ ତିଆରି କରିବା, ଆମ୍ଭଂକୁ କୁହାଯାଉଛି ସହଯୋଗ କର । ତେବେ ଏ ବିପତ୍ତି କାହିଁକି ? ଏଟା ଶିଷ୍ଟାଚାର ହେଉନାହିଁ । ଏଟା ପୁରାପୁରି ଅଶିଷ୍ଟାଚାର । ତଥାପି ମୁଁ କହୁଛି ଏଥିରେ ମଂଗଳ ହେଉ ।"

ପ୍ରବୀଣ ସାଂସଦଭାବରେ ନୀଳକଂଠ କୌଣସି ବିଧେୟକକୁ ଉପର ଠାଉରିଆ ଭାବରେ ସ୍ୱିକାର କରିବାକୁ ଚାହୁଁନାହାଁନ୍ତି । ସେ ସବୁକଥା ତନ୍ନତନ୍ନ କରି ପରୀକ୍ଷା ନିରୀକ୍ଷା କରି ମତ ଦେବାକୁ ଚାହାଁନ୍ତି । ମାତ୍ର ସମୟାଭାବରୁ ସରକାର ବିଲକୁ ପାସ୍ କରାଇବାକୁ ଚାହାଁନ୍ତି । ଏହି ଦୁଇଟି ଲକ୍ଷ୍ୟ ମଧ୍ୟରେ ଏକ ସମନ୍ୱୟ ଆସିବା ଉଚିତ । ଆଲୋଚନା ଓ ଭାଷଣ ଯଥାସମ୍ଭବ ପ୍ରାସଂଗିକ ଓ ସଂକ୍ଷିପ୍ତ ହେବା, ଅପ୍ରାସଂଗିକ ପ୍ରଶ୍ନ ଉଠାଇ ଗୃହର ସମୟ ନଷ୍ଟ ନକରିବା ଆଦି ଯେମିତି ବିଧାୟକମାନଙ୍କ କର୍ତ୍ତବ୍ୟ, ସରକାର ମଧ୍ୟ ସେଥିପାଇଁ ଆଶାନୁରୂପ ସମୟ ଦେବା ଉଚିତ । ମାତ୍ର ଆଜିକାଲି କେନ୍ଦ୍ରଠାରୁ ରାଜ୍ୟ ପର୍ଯ୍ୟନ୍ତ ସଂସଦମାନଙ୍କରେ ଯେମିତି ମୂଲ୍ୟବାନ ସମୟ ଅଯଥାରେ ଅପବ୍ୟୟ ହେଉଛି, ତାହା ବୁଦ୍ଧିଜୀବୀମାନଙ୍କ ପକ୍ଷେ ଏକ ଗଭୀର ଚିନ୍ତାର ବିଷୟ । ଜଗିଲା ବାଡ଼ ଘାସ ଖାଉଛି, ନ୍ୟାୟ ତଥା ଆଇନ୍ ଗଢୁଥିବା ଗୃହ ତା'ର ଅବମାନନା କରୁଛି, ଏହା ବଡ଼ ଦୁଃଖ ଓ ପରିତାପର ବିଷୟ । ନୀଳକଂଠଙ୍କ ମନ୍ତବ୍ୟ ଏହି କ୍ଷେତ୍ରରେ ସାଂସଦମାନଙ୍କରେ ପ୍ରଣୀଧାନର ବିଷୟ ।

Shri NILAKANTHA DAS : ମୁଁ ଏ ବିଲ୍‌କୁ ଲୋକମତପାଇଁ ପ୍ରସ୍ତାବ କରିବାର ବିଶେଷ କାରଣ ଅଛି । ଆମର ଏ ଯେଉଁ ହିନ୍ଦୁ ଦେବୋତ୍ତର ଆଇନ୍ ହୋଇଛି— ପ୍ରଥମ କଥା ଯଦି ଏହି ଦେଉଳଯାକ, ମଠଯାକ, Henery-VIII ଉଠାଇ ଦେବାର ଅଧିକାର ଥାଆନ୍ତା, ତା'ହେଲେ ସରକାରଙ୍କର ଏବଂ ଅନେକ ଲୋକଙ୍କର ଏହାଦ୍ୱାରା ଭଲ ହୁଅନ୍ତା ଏବଂ ମୁଁ ମଧ୍ୟ ସେଥିରେ ମତ ଦେଇଥାନ୍ତି । କାହିଁକି ନା ହିନ୍ଦୁଧର୍ମ, ମଠ

ଆମର ଯେପରି ଭାବରେ ଚ଼ଲି ଆସିଛି ଏଥିରେ ସମାଜକୁ ପ୍ରଗତିଶୀଳ ନ କରି ଅପ୍ରଗତି ପଛାରେ ପକାଇବାର ଅନେକ ସୁବିଧା ଅଛି ।

ଏହାକୁ ଅଗ୍ରଗତି ପଛାରେ ନେବାକୁ ବାଧ୍ୟ ହେବେ । ଏହା ମୋର ବ୍ୟକ୍ତିଗତ କଥା । କାହାରି ମନରେ ବାଧା ଦେବାପାଇଁ ମୁଁ କହୁନାହିଁ । କାହା ମନରେ ଯଦି ବାଧା ହୁଏ ମୁଁ ତାଙ୍କୁ କ୍ଷମା ପ୍ରାର୍ଥନା କରୁଛି । ଆମେ ସମସ୍ତେ ପ୍ରଗତି କହିଯାଉଛୁ, ତା' ଭିତରେ ଏଇଟା ହେଉଛି ପ୍ରଗତିଶୀଳ ଯାହାକୁ ଇଂରାଜୀରେ କହନ୍ତି reactionary । କୌଣସି କାରଣରୁ ଆମ୍ଭେମାନେ ଧର୍ମ ନିରପେକ୍ଷ ହେଲୁ । ତାହାହେଲେ ମଧ୍ୟ ଆମକୁ ସବୁଧର୍ମ ପାଇଁ ବ୍ୟବସ୍ଥା କରିବାକୁ ହେବ, ପୃଥିବୀର ପରିସ୍ଥିତି ହେତୁରୁ । ସଂବିଧାନ ଯୋଗୁରୁ ଏଇ ସଂଶୋଧନ ପ୍ରସ୍ତାବ ଆସିଛି । ଏହି ନୀତି ସ୍ୱୀକାର କଲେ ମଧ୍ୟ ଯାହାକୁ ଯେପରି କରିବାର କଥା ଆମେ ଯେତେ ଏହାକୁ ପ୍ରଗତିଶୀଳ ପଛାରେ ପକାଇ ପାରିବା ଆମ ହାତରେ ଯେତେଦୂର ହୋଇପାରିବ ଲୋକ ମଙ୍ଗଳ, ସେତିକି ଆମେ ସାହାଯ୍ୟ କରିବା, ଏଥିରେ ସନ୍ଦେହ ନାହିଁ । ତା'ପରେ ପ୍ରଗତିଶୀଳ ପଛାରେ ପକାଇବାପାଇଁ ଯାହା କହୁଛନ୍ତି ଓ ଯେଉଁ ଆଇନ୍ ଅଛି ତାକୁ ସଙ୍ଗେ ସଙ୍ଗେ ବିଚ଼ାର କରିବାକୁ ହେବ । ତାହା ନ ହେଲେ ଆମେ ପଦେ ପଦେ ବାଧା ପାଇବା ଏଇଟା ମଧ୍ୟ ଏହା ସଙ୍ଗରେ ବିଚ଼ାର କରିବାର ଅଛି । ତେବେ ପ୍ରଥମରୁ ଏହା କେମିତି ହୋଇଥିଲା ତା'ର ଟିକିଏ ଇତିହାସ ଦେଖାଯାଉ । ଯେତେବେଳେ ଏ ଆଇନ ହୋଇଥିଲା ସେତେବେଳେ ସଂବିଧାନ ନ ଥିଲା । ଆମେ ଇଂରେଜ ଅଧୀନରେ ମାଙ୍କଡ଼ ହାତରେ ଶାଳଗ୍ରାମ ଦେଇ ନଚ଼ଉ ଥିଲୁ । ଆମେ କେମିତି ଚ଼ଳାଇବା ଶିଖୁଥିଲୁ, ଏପରି କି 1935 ଯେଉଁ ଶାସନ ସଂସ୍କାର ଆଇନ୍ ହେଲା, ତା' ପୂର୍ବରୁ ଆମର ଦ୍ୱୈତ ଶାସନ (Diarchy) ହୋଇଥିଲା । Diarchy ରେ ଆମ ହାତ ଚ଼ଳାଇବାକୁ ଦିଆଗଲା । କେତେଗୁଡ଼ିଏ ଜିନିଷରେ, ତା' ଭିତରେ ଏ ଗୋଟିଏ । ସେତେବେଳେ ଆମ ଭାରତବର୍ଷରେ State ନ ଥିଲା, ପ୍ରଦେଶ ବୋଲି କୁହାଯାଉଥିଲା ଓ ସବୁ ପ୍ରଦେଶର ଲୋକେ ସେତେବେଳେ କଂଗ୍ରେସରେ ରହି ଲଢୁଥିଲେ । ଆମେ ସେ ଦ୍ୱୈତଶାସନ ଗ୍ରହଣ କଲୁନାହିଁ । ସେତେବେଳେ ଆମ ପ୍ରତିବେଶୀ ମାଡ୍ରାସ ପ୍ରଦେଶର ପରିସ୍ଥିତି ସ୍ୱତନ୍ତ୍ର ଥିଲା । ସେଠି ସେତେବେଳେ ବ୍ରାହ୍ମଣ, ଅବ୍ରାହ୍ମଣ ଭିତରେ ଭୟଙ୍କର ବିରୋଧ ଦେଖାଦେଇଥିଲା । ଏପରି କି ପ୍ରତ୍ୟେକ ଚ଼ାକିରୀ ବ୍ରାହ୍ମଣ ହାତକୁ ଗଲାବେଳେ ଅବ୍ରାହ୍ମଣମାନେ ବିଦ୍ରୋହ କରୁଥିଲେ । ସେତେବେଳେ ଅବ୍ରାହ୍ମଣମାନେ ଗୋଟିଏ ରାଜନୈତିକ ଦଳ ଥିଲେ । ତାଙ୍କର ନାମ ଥିଲା Justice Party, ବେନାଗର ବୋଲି ଜଣେ ନେତା ଥିଲେ । ବ୍ରାହ୍ମଣ ଯେତେ ଥିଲେ ସେମାନେ ସ୍ୱାଧୀନତା ପାଇବାପାଇଁ କଂଗ୍ରେସରେ ଯୋଗ ଦେବାକୁ ଡେଇଁ ପଡ଼ିଲେ । କିନ୍ତୁ ଜଷ୍ଟିସ ପାର୍ଟି ସେ ପନ୍ଥା ଗ୍ରହଣ କଲେ ନାହିଁ, ଜଷ୍ଟିସ ପାର୍ଟି ସେଠି ଦ୍ୱୈତ ସରକାର ନେଲେ । ବେକଂଗ୍ରେସ ଲୋକେ ମଧ୍ୟ କେଉଁଠି କେଉଁଠି ଶାସନ କାର୍ଯ୍ୟ ନେଲେ କିନ୍ତୁ ସମସ୍ତଙ୍କ ଅପେକ୍ଷା ଜଷ୍ଟିସ ପାର୍ଟି ବଡ଼ ପ୍ରବଳ ଥିଲେ ।

ଏ ଯେଉଁ ବ୍ରାହ୍ମଣ ଓ ଅବ୍ରାହ୍ମଣ ବିରୋଧ ଯୋଗୁରୁ ପ୍ରଥମେ ସେମାନେ ଆକ୍ରମଣ କଲେ ଏଇ ଦେବୋତ୍ତର ଉପରେ ସେଇଟାବି ତାଙ୍କୁ ଦିଆଯାଇଥିଲା । ସେତେବେଳେ ଆଇନ ବେଆଇନ୍, ଧର୍ମ ନୀରପେକ୍ଷ, ସଂବିଧାନ କିଛି ନ ଥିଲା । କୌଣସିମତେ ବ୍ରାହ୍ମଣଙ୍କୁ ବାହାର କରି ଅବ୍ରାହ୍ମଣଙ୍କୁ ବସାଇଦେବା । ଆମ ଜଗନ୍ନାଥମନ୍ଦିର ଯାହା ହୋଇଛି ସେ ତ ଗୋଟିଏ ପ୍ରକାର । ଏ ତ ଭାରତ ବିଖ୍ୟାତ ଏଥିରେ ସମସ୍ତଙ୍କର ସ୍ୱାର୍ଥ ରହିଛି । ଆମ ଜଗନ୍ନାଥଙ୍କର ଟଙ୍କା ଦୁଇଲକ୍ଷ କି ତିନିଲକ୍ଷ ଭିତରେ ବାର୍ଷିକ ଆୟ ହେବ, କିନ୍ତୁ ତିରୁପତି ମନ୍ଦିରରେ କେବଳ ଭେଟି ଦିଆହୁଏ ବାରଲକ୍ଷ ଟଙ୍କା । ଏଇଟା ଗୋଟାଏ କି ଲୋଭନୀୟ ଜିନିଷ । ସେଠୁ ବ୍ରାହ୍ମଣଙ୍କୁ କାଢ଼ି ନାନାପ୍ରକାର ଆଇନକରି ତିରୁପତିକୁ ସେମାନେ ନେଲେ । ତା' ପରେ ଆମ ଦୁର୍ଭାଗ୍ୟକୁ କି ସୌଭାଗ୍ୟକୁ ମାଡ୍ରାସର ସେଇ ଶାସନରେ ଆମ ଓଡ଼ିଶାର ଯେଉଁମାନେ ଦୀକ୍ଷିତ, ଶିକ୍ଷିତ ଥିଲେ ତାଙ୍କ ହାତରେ ଆମ ସରକାର ପଡ଼ିଲା । ଯେମିତିକି ବଙ୍ଗଳାରେ କହନ୍ତି "ଉନ୍ନତି କିଛୁ କରତେ ହବେ, ଉନ୍ନତି କିଛୁ କରବେ," ସେମିତି ନୂଆ କିଛି ଗୋଟାଏ କରିବାକୁ ହେବ । ସେତେବେଳେ ଏଇ ଆଇନ୍‌କୁ କରିଦେଲେ କାହାକୁ କିଛି ନ ପଚାରି । ଆମ ଦେଶର ପରିସ୍ଥିତି କଣ କେମିତି ଏହାକୁ କରିବାକୁ ହେବ, ସେ ବିଷୟରେ କାହାକୁ କିଛି ପଚରା ପଚିରି କଲେ ନାହିଁ । ଯେମିତି ଆମର ଗୋଟିଏ ବର୍ତ୍ତମାନ ହେଲା ଜଗନ୍ନାଥ ଦେଉଳ ରିପୋର୍ଟ । ସେଟା ଅତି ସୁନ୍ଦର ହୋଇଛି । ସେଟା ଯେତେ ସୁଖ ଲାଗିଲା, ମୁଁ ସଙ୍ଗେ ସଙ୍ଗେ ଟେଲିଫୋନ୍ କରି ମନ୍ତ୍ରୀଙ୍କୁ କହିଲି ଏଟା ଭଲ ହୋଇଛି । ସିଲେକ୍ଟ କମିଟିକୁ ଦିଅ, କିନ୍ତୁ ଏହା କଲାବେଳେ କିଛି ରିପୋର୍ଟ କରା ହୋଇ ନ ଥିଲା । ମୁଁ ଗୋଟିଏ ଉଦାହରଣ ଦେଉଛି, 1951 ରେ ଏ ଯେଉଁ ଆଇନ୍ କରାହୋଇଛି, ,ସେତେବେଳେ ସମ୍ବିଧାନ ହୋଇ ଗଲାଣି, ସେତେବେଳେ ଓକିଲମାନଙ୍କ ପରାମର୍ଶ ନେଇଥିଲେ ସେମାନେ ଏପରି କରି ନ ଥାନ୍ତେ । ବର୍ତ୍ତମାନ ଯେଉଁ ସଂଶୋଧନ ଆମେ କଲୁ ସେଥିରେ ଏସବୁ ନାହିଁ । ପ୍ରଥମ ଆଇନ୍‌ର ପ୍ରଥମ ଦଫାରେ explanation No. 2 ରେ ଅଛି "Every institution shall be presumed to be public until the contrary is proved." ଏପରି ଗୋଟିଏ ଆଇନ୍ ଆମ ସଂବିଧାନରେ ହୋଇ ନ ପାରେ । ଯିଏ ଏହାକୁ କରିଥିଲେ ସେ ବର୍ତ୍ତମାନ ସରକାରଙ୍କର ଉଚ୍ଚ ପାହିଆ ପେନ୍‌ସନ୍ ପ୍ରାପ୍ତ କର୍ମଚାରୀ । ମୁଁ ତାଙ୍କୁ ଦେଖା କରି କହିଥିଲି ଏ କ'ଣ presumed to be public କରୁଛ । ସେଥିରେ ଅଛି 3 ବର୍ଷ ଭିତରେ ସବୁ ଧର୍ମାନୁଷ୍ଠାନର ଯଦି କୌଣସି ଆପତ୍ତି ନହୁଏ ତାହାହେଲେ ସବୁ public ହୋଇଯିବ ।

Religious institution କଣ ? ତାହା ମୁଁ କହିବି । ଏପରି ଅନୁଷ୍ଠାନ ଏହା ଭିତରେ ଯିବ ଯଦି କୌଣସି ପଥରରେ କିଛି ଦିନ ସିନ୍ଦୁର ଲଗାଇ ଦିଆଯାଏ, ତାହାହେଲେ ସେ ଏହି ଅନୁଷ୍ଠାନ ଭିତରେ ଯିବ । ପୁରୀ ଷ୍ଟେସନରୁ ସହରକୁ ଗଲାବେଳେ ଡାହାଣ ହାତ ପାଖେ ପଥରରେ ସିନ୍ଦୁର ଲାଗୁଥିଲା । ସେ 10 ବର୍ଷ ଭିତରେ ଏକ ପ୍ରବଳ ପ୍ରତାପିନୀ ଠାକୁରାଣୀ ହୋଇ ଗଲେଣି, ସେ ସବୁ ମଧ୍ୟ ସର୍ବସାଧାରଣ ହୋଇଯିବ । ଯଦି 3 ବର୍ଷ

ଭିତରେ କିଏ ଆପତ୍ତି କରିବ ତାହାହେଲେ ତାହା କଥା ଶୁଣାଯିବ, ଯାହା ଶୁଣାଯିବ ଓ ଯାହା ଫଳ ହେବ ତାହା ମା' ଗଙ୍ଗେ ଜାଣନ୍ତି । ଇଂରେଜମାନେ ଆମକୁ ଶିଖାଇଛନ୍ତି ignorance of law is no excuse. ମୋର କହିବା କଥା ଏ ସବୁ ଯଦି ନେଇଥାନ୍ତେ ତାହାହେଲେ ଭଲ ହୁଅନ୍ତା । ମୋର ଏଥିରେ କିଛି ଆପତ୍ତି କରିବାର ନାହିଁ, କିନ୍ତୁ ମୋର କହିବାର କଥା ଆମର କ୍ଷମତା ନାହିଁ । ମୁଁ କହିବା କଥା ଆମେ ଦିଅଁ ଗଢୁ ଗଢ଼ ମାଙ୍କଡ଼ ଗଢିବା, ଏଥିପାଇଁ ମୁଁ ଆପତ୍ତି କରୁଛି। କରୁଛ କଣ ନ' ex-proprietory ଏହାକୁ ବେଗେ ବିଗ୍ଭର କରି ବଦଳାଅ । କିନ୍ତୁ ଯେତେ କହିଲେ କେହି ଶୁଣିଲେ ନାହିଁ, ଶେଷରେ ଏ ଆଇନ୍ ପାସ୍ ହୋଇଗଲା, Presidentଙ୍କ assent ପାଇଁ ଗଲା । ସେତେବେଳକୁ ବୋଧହୁଏ ମାଡ୍ରାସର ଜଜ୍‌ମାନେ ତାଙ୍କର ସେ ଆଇନ୍‌କୁ ନାକଚ କଲେ, ତାହା ସୁପ୍ରିମ କୋର୍ଟକୁ ତାପରେ ଗଲା, ସେଠି ଏହିପରି ସବୁ ଜିନିଷ ହୋଇ ପାରିବ ନାହିଁ । ଏହିପରି ଆମ ସରକାର ପୁରାପୁରି ସର୍ବଗ୍ରାସୀ କାଳ ଜିହ୍ୱା ସେ ବିସ୍ତାର କରିବାକୁ ଯାଉଛନ୍ତି । ମାଡ୍ରାସ ସରକାର ଯାହା କରିଥିଲେ ତାର ଉତ୍ତରାଧିକାରୀ ଭାବରେ ନିଜକୁ 10 ଗୁଣ ବଢ଼ାଇ ଏଠି ଏମାନେ ତାହା କଲେ ।

Shri JAYAKRUSHNA MOHANTY: ସଭାପତି ମାହାଶୟ, ସତ୍ୟବାଦୀର ସଭ୍ୟ କହିଲେ ସରକାର ସର୍ବଗ୍ରାସୀ ଜିହ୍ୱା ଗ୍ଭରିଆଡ଼େ ବିସ୍ତାର କରିଛନ୍ତି ବୋଲି । ମୋର ମନେ ହେଉଛି ଏ ଯେଉଁ ସର୍ବଗ୍ରାସୀ ଜିହ୍ୱା ଗ୍ଭରିଆଡେ ବିସ୍ତୃତ କରା ହୋଇଛି ସେଥିରୁ ରକ୍ଷା ପାଇବାକୁ ଏହି ବ୍ୟବସ୍ଥା ହୋଇଥିଲା ।

Shri NILAKANTHA DAS: ମୁଁ ବ୍ୟବସ୍ଥାର ବିରୋଧରେ କିଛି କହୁନାହିଁ । ମୁଁ ଜାଣେ ସରକାରଙ୍କର ସବୁ ଜିନିଷ ଦରକାର, ତାଙ୍କର ମଟର ଦରକାର, ଗସ୍ତ ଖର୍ଚ୍ଚ ଦରକାର, ଦରମା ଦରକାର, ବୁଲିବା ଦରକାର କିନ୍ତୁ ତାଙ୍କର ଦୁଇଟି ଜନିଷ ଦରକାର ନାହିଁ । ସେ ହେଉଛି ବିଦ୍ୟା, ବୁଦ୍ଧ ଓ ବିଗ୍ଭର । ମୁଁ କହୁଛି ସେଇ ଜନିଷ ଲଗାଇକରି ଏହାକୁ କରି ନାହାଁନ୍ତି । Advocate-General ଯଦି ଆମକୁ ବୁଝାଇ ଦିଅନ୍ତେ ଆମେ ବୁଝିଯାନ୍ତୁ । କିନ୍ତୁ ସରକାରଙ୍କର ଯେଉଁ ଐତିହ୍ୟ, ସରକାରଙ୍କର ଯେଉଁ ପରଂପରା ଅଛି ସେ କଥା ମୁଁ କହୁଛି । ଯେମିତିକି ଏଇଟା ଗୋଟାଏ କଥା କରିଥିଲେ ଯେ ତିନି ବର୍ଷ ଭିତରେ ନ କହିଲେ ସେଗୁଡକ ଗଲା ।

ଆଉ ଗୋଟିଏ କଥା ଦେଖନ୍ତୁ, ଓଡ଼ିଶାର କୌଣସି କଥା ଏଥିରେ ବିଗ୍ଭର ହୋଇନାହିଁ । ସେ ଖାଲି ନକଲ ନବିଶ । ସେଥିରେ ଦେଖିବେ 23 ଧାରାରେ ଦୁଇଟି ପୃଷ୍ଠା ଯାଇଛି, କେଉଁ ଦେବଦାସୀର କେଉଁଠି ଜମି ଅଛି, ତାକୁ କିଏ ନେଲା, ସେ କେମିତି enfranchise ହେବ, ଏହିପରି ନାନା କଥା ଅଛି । ଏ ଯେଉଁ ଦେବଦାସୀ ଏହା କେଉଁଠୁ ଆସିଛି । "A Devadashi shall mean any Hindu unmarried female who is dedicated to temple" ମୁଁ ପଗ୍ଭରେ ଏ ଜିନଷଟା ଓଡ଼ିଶାରେ ଅଛି କି ? ଓଡ଼ିଶାରେ

କେଉଁଠି ତାହା ଥିବ ସେ ଦେବଦାସୀ ନୁହଁନ୍ତି । କେଉଁଠି ଓଡିଶାରେ **unmarried female** ଦେବଦାସୀ ହୋଇ ଅଛନ୍ତି ? ଏଇ ଦେବଦାସୀ ଗୋଟିଏ ଦ୍ରାବିଡ଼ ଅନୁଷ୍ଠାନ । ମୁଁ ଏ ବିଷୟରେ ବିଶେଷ କହିବାକୁ ଯାଉନାହିଁ । ପୂର୍ବରୁ ତାଙ୍କର ଗୋଟିଏ ପ୍ରଥା ଥିଲା ଯାହାର ପୁଅ ନ ଥିବ ସେ ଦେବତାଙ୍କ ପାଖରେ ଯାଇ ରହିବ । ଦେବତାଙ୍କ ଆଡୁ ଯେଉଁ ପୁଅ ହେବ ସେ ପିଣ୍ଡ ଦେବ । ଆଉ ଗୋଟିଏ କଥା ବ ବାହାରୁଛି । ଘରେ କାହାରି ପୁଅ ଯଦି ନ ଥାଏ ଓ ଗୋଟିଏ ଝିଅ ଥାଏ, ସେ ଝିଅ ଅବିବାହିତ ରହିବ ଓ ତାକୁ ଦେବତାଙ୍କୁ ଦଆଯିବ, ସେଠ ରହି ତା'ର ପୁଅ ଜନ୍ମ ହେଲେ ସେ ପଣ୍ଡ ଦେବ । ଏହାର ବହୁତ ଇତିହାସ ପଶ୍ଚିମ ଏସିଆରେ ଅଛି । କିନ୍ତୁ ଏହାକୁ ନେଇ ଆମର ଏଠି ଆଇନ୍ କରାଗଲା, ସେଥିରେ ରଖାଗଲା **Hindu unmarried female dedicated to the temple.** ଓଡିଶାରେ ଏହି ଦେବଦାସୀର ନାମ ଗନ୍ଧ ନାହିଁ । ଓଡଶାରେ ଏ ଜିନିଷ ନାହିଁ, ଦେବଦାସୀ ନାହାଁନ୍ତି । ଦେବଦାସୀ ବୋଇଲେ ଆମର କେହି କିଛି ବୁଝି ପାରିବେ ନାହିଁ । ଏହିଟା ବୋରାବୋରି ଦ୍ରାବିଡ଼ କଥା । ତାଙ୍କ ଆଇନ୍‌ରେ ପସିଥିଲା ଆମର କାହିଁକି ହେବ ? ଏତେଗୁଡ଼ିଏ ଚିଠା, ଏତେଗୁଡିଏ ଖର୍ଚ୍ଚ, ଏତେଗୁଡଏ ଲେଖା କାହିଁକି ହେଲା ?

ଆଉ ଗୋଟିଏ କଥା ଦେଖନ୍ତୁ, ସବୁଠେଇ କହିଯାଇଛନ୍ତି ଏଥିରେ **a man professing Hindu religion** ଏହାର ଅର୍ଥ କ'ଣ ? ଯେ **Hindu religion**କୁ ମୋ ଧର୍ମ ବୋଲି କହେ, ପ୍ରଧାନ ଅର୍ଥତଃ ଏହା **Professing Hindu religion** କହିଲେ ସେ **Special Marriage Act**ରେ ଆସିପାରେ, **Statutory Hindu** ଯାହାକୁ କହୁଛନ୍ତି **Reformed Hindu** ବ୍ରାହ୍ମଣ ଏବଂ ସେହିପରି ଅନେକ ଅଛନ୍ତି । ଏ ସମସ୍ତେ **Professing Hindu religion**· ଆମର ଯଦି ବିଗ୍ଭର ସମସ୍ତେ ଆସନ୍ତୁ ମୁଁ କାହାକୁ ନାହିଁ କରିବାକୁ ଗ୍ଭହୁଁ ନାହିଁ । ହିନ୍ଦୁ ଧର୍ମର ଯେତେ ଔଦାର୍ଯ୍ୟରେ ପ୍ରସାର ହେବ ମୁଁ ତା ସପକ୍ଷରେ, ବିପକ୍ଷରେ ନୁହେଁ । କିନ୍ତୁ ଏଭଳ ଗୋଟିଏ ଆଇନ୍‌ରେ କୁହାଯାଇଛି **for the purposes of this Act,** ସେଠାରେ ଏକଥା ରହିବ କି ନାହିଁ ? ସେହିପରି ହିନ୍ଦୁ କିଏ, ଏକଥା ବୁଝାଇ ଦିଆହେବ କି ନାହିଁ ? ନ ହୋଇପାରେ କିନ୍ତୁ ଏହିଟା ଗୋଟିଏ ବିଗ୍ଭର୍ଯ୍ୟ ବିଷୟ । **Professing Hindu religion** ବୋଇଲେ ଆମେ କ'ଣ ମନେ କରୁଛୁ ସେଇଟା କଅଣ ବୁଝାଇଦେବା ଉଚିତ ନୁହେଁ ? ଯେ କୌଣସି ହିନ୍ଦୁ ହେଉ, ସେ ସବୁ ଦେଉଳକୁ ଯାଉ, ମୁଁ ତା'ର ବିରୁଦ୍ଧରେ ନୁହେଁ କିନ୍ତୁ ଆମେ ଗୋଟିଏ **reactionary** ଜିନିଷରେ ଯେତେବେଳେ ଆଇନ୍ କରୁଛୁ କେଡ଼େ ସାବଧାନ ହେବାର କଥା, ଏ ଗୋଟିଏ କଥା ।

ତା'ପରେ ମଠ ଆଉ ଦେଉଳ (**Math and Temple**) ଏଇଟା ଦ୍ରାବିଡ଼ରେ ଅଛି, କିନ୍ତୁ ଆମର ଏଠାରେ ଦୁଇଟା ଜିନିଷ ନୁହେଁ, ତୀରୁପତି ମଠାଧୀଶ, ମହନ୍ତ ନାମ ଅଛି କି ନାହିଁ, ମୁଁ ଜାଣେ ନାହିଁ, ସେଠି ଦେଖିଛି, ତୀରୁପତି ମନ୍ଦିରର 12 ଲକ୍ଷ ଭେଟି ସବୁ ତାଙ୍କ ପାଖକୁ

ଯାଉଥିଲ, ତାହାଛଡ଼ା 7ମାଇଲ ଧରି ଯେଉଁ ଚନ୍ଦନ କାନନ ଥିଲ ସେହି ସଂପତ୍ତିର ସମସ୍ତ ଆୟ ସେ ନେଉଥିଲେ । ଆମର ମଠ ବୋଇଲେ କ'ଣ ସେକଥା କେହି ବିଗ୍ଭର କରୁନାହାଁନ୍ତି । ଆମର ଦୀନବନ୍ଧୁ ବାବୁ ଯେତେବେଳେ ଆଇନର ମନ୍ତ୍ରୀ ଥିଲେ ମୁଁ ବହୁତ ଆପତ୍ତି କରି ତାଙ୍କୁ କହିଥିଲି ଯେ ମଠକୁ, ମନ୍ଦିରକୁ ଅଲଗା କରିଦିଅ, ମନ୍ଦିରଗୁଡ଼ିକୁ ଛାଡ଼ିଦିଅ, ଆଉ କେତେଟା ବା ଅଛି, ଜଗନ୍ନାଥ ତ ଗଲେଣି, ଆଉ ଦୁଇ ଗ୍ଭରିଟା ବଡ଼ ବଡ଼ ମନ୍ଦିର ବି ଗଲଣି । ମଠଗୁଡ଼ିକ ଅଲଗା ଜିନିଷ, ସେଗୁଡ଼ିକ ଯେଉଁଥିପାଇଁ ହୋଇଥିଲେ ସେ କାର୍ଯ୍ୟ କରୁନାହାଁନ୍ତି । ଅତଏବ ସେ କାର୍ଯ୍ୟଟା ସରକାର କରିବେ କି ନା ଅନ୍ୟ କେହି କରିବେ ? ଏ ଭାବରେ ନ ଦେଇ Trust property sacred doctrine ଏହିପରି ଲେଖାଯାଇ ଆମର ଯେଉଁ ଆଇନ ହୋଇଛି, ତାକୁ ବୋରାବୋରି ଅଲଗା କରି ନେଇଯାଆନ୍ତୁ । ସେଗୁଡ଼ିକ କାହିଁକି ଅଛି, ତା'ର ଇତିହାସ ଆମେ ଆଲୋଚନା କରିନାହୁଁ କି ଆମପାଖରେ କିଛି ନାହିଁ । ମୁଁ କହେଁ, ଆମେ କାହାକୁ ମଠ କହିବା ? ସେ ଯେମିତି କରିଛନ୍ତି, କାହିଁକି କରିଛନ୍ତି ମୁଁ କହି ପାରିବିନାହିଁ, Math means an institution for the promotion of the Hindu religion presided over by a person whose duty is to engage himself in spiritual services or who exercises or claims to exercise a spiritual headship among some disciples ଏତିକି ହେଲ definition, କ'ଣ ଏଥିରେ ଅଛି ? Math means an institution for the promotion of Hindu religion ଏହାର ମାନେ କ'ଣ ? Promotion of religion ପାଇଁ ମଠ ହୋଇଛି । ହିନ୍ଦୁର କୌଣସି କଥା ଧର୍ମ ବା religion ନୁହେଁ ଏହା କହି ହେବନାହିଁ । ମୁଁ ପିତୃଶ୍ରାଦ୍ଧ କରେ, ତାହା ଧର୍ମ ବା religion ଏହା ବି କୁହା ଯାଇପାରେ । ଆମର ଶ୍ମଶାନ ହେଉଛି ସ୍ୱର୍ଗଦ୍ୱାର । ଯେ ଶବଦାହ କରିବାକୁ ଯାଏ, ସେ ପଥଶ୍ରାଦ୍ଧ ଅର୍ଦ୍ଧ ପଥଶ୍ରାଦ୍ଧ କରେ । ଏସବୁ spiritual benefit ପାଇଁ କରାଯାଏ । ତାହାହେଲେ ଏହିପରି ଅର୍ଥ କଲେ ପ୍ରତ୍ୟେକ ଘର Public religions institution ହୋଇଯିବ । ଧର୍ମ ବା religion ଏହିଟା ଗୋଟିଏ ଲମ୍ବାକଥା । ଏହାର କୌଣସି ସୀମା ସରହଦ ଦିଆଯିବା ଉଚିତ, ତା'ପରେ presided over by a person whose duty is to engage himself in spiritual service ବୋଇଲେ କ୍ଷମା, ଶମ, ଦମ, ଆର୍ଯ୍ୟବ ପ୍ରଭୃତି ଦଶଟି କାମକୁ ଧର୍ମ ବୋଲୁଯାଏ । ଶାସ୍ତ୍ର ଲେଖୁଛି, ଆମେ ସମସ୍ତେ spiritual duty କରିଥାଇଁ । ଆମେ ଯେତେବେଳେ ବୈଶ୍ୱଦେବ କରୁ, ଆମେ କହୁଁ, ସ୍ୱାଧ୍ୟାୟ ନମଃ, ସ୍ୱାହାୟ ନମଃ, ଅଧିଦେବତାୟ ନମଃ, ବିଶ୍ୱଦେବାୟ ନମଃ, ତାହାହେଲେ ଆମରତ ସମସ୍ତଙ୍କର ମଠ ଅଛିବୋଲି ଧରାଯିବ । କାରଣ ଆମେତ ଧର୍ମ କାର୍ଯ୍ୟ କରୁ, ତା'ପରେ "ଯଜ୍ଞ ଶିଷ୍ଟାଶିନଃ ସନ୍ତୋ ମୁଚ୍ୟନ୍ତେ ସର୍ବ କିଲ୍ବିଷୈଃ" ବୋଲି ଯାହା ଧର୍ମ ଶାସ୍ତ୍ରରେ ଅଛି ଆମେ ତାହାହିଁ କରୁଛୁ । ଆମେ ଯଜ୍ଞରେ ଅର୍ପଣ କରିସାରି ସେଥିରୁ ଦେବତାଙ୍କ

ଉଚ୍ଛିଷ୍ଟ ଯାହା ବଳେ, ତାକୁ ଆମେ ଖାଉଁ, ସୁତରାଂ ଆମର ଘର ଗୋଟିଏ ମଠକି temple କଣ ହେବ ? Whose duty is to engage himself in spiritual service, spiritual service ବୋଇଲେ ସେ ଯୋଗ ସାଧନ କରିପାରିବେ, ସେ ଦିନ ଭିତରେ କେତେଥର ସେବା କରିପାରିବେ, ତାବାଦ୍ discipl**e** କଥା ଆମ ଗାଁରେ ମୋରିଭଳିଆ ଲୋକଙ୍କର disciple ଅଛନ୍ତି । ଆମେ ମନ୍ତ୍ର ଦେଉଁ ସେ ବି ଦିଅନ୍ତି । କେହି କେହି ମଫସଲକୁ ଯାଇ ମଧ୍ୟ ମନ୍ତ୍ର ଦିଅନ୍ତି । ଆମେ ଯେମିତି ଲୁଗା ଖଣ୍ଡେ, 1 ଟଙ୍କା ପାଉଁ ସେ, ସେମିତି ମନ୍ତ୍ର ଦେଇ ଟଙ୍କା ରୋଜଗାର କରି ମଠ ସଂପତ୍ତି କଣିଛନ୍ତି । ସେଇଟା ତାଙ୍କର private· କାଲି ଯଦି ସୁପ୍ରିମ କୋର୍ଟ କରେ ଏ ବିଷୟରେ କୌଣସି ରିପୋର୍ଟ ବା ଅନୁସନ୍ଧାନ ଅଛି କି ? ଧରନ୍ତୁ ଏହି ଜଗନ୍ନାଥଙ୍କ କଥା । ପୁରୀରେ ଏମାର ମଠ ପ୍ରତିଦିନ 200 ହାଣ୍ଡି ଭୋଗକରି କାଙ୍ଗାଳ ଖାଇବାକୁ ଦେଉଛି । ଏହାକୁ ଯଦି ଧରାଯାଏ Public Endowment ବୋଲି ତାହାହେଲେ କିଏ ଖର୍ଚ୍ଚକରି ଜଗନ୍ନାଥଙ୍କ ଭୋଗ କରାଇ 200 ଲୋକଙ୍କୁ ଖାଇବାକୁ ଦେବ । ପ୍ରଥମ କଥା ଜଗନ୍ନାଥଙ୍କର ସେ ସଂପତ୍ତିରେ ଅଛି କି ନାହିଁ । ମୁଁ ପ୍ରତିବର୍ଷ ମୋ ସଂପତ୍ତିରୁ ପିତୃ ଶ୍ରାଦ୍ଧରେ 50 ହାଣ୍ଡି ଭୋଗ କରି ଗ୍ରାମବାସୀଙ୍କୁ ଖାଇବାକୁ ଦେଲି; ସେଇଟା specific endowment ହେବ ନାହିଁ କିମ୍ବା ସେଇଟା ତା ଉପରେ charge ହେବ ନାହିଁ । ମୋ ପିଲ ଦିନେ, ମୁଁ ଜାଣେ, ଏମାର ମଠରେ ଅନେକ ଛାତ୍ର ଓ ଶିକ୍ଷକ ଥିଲେ । ଛାତ୍ରମାନେ କିଛିକାଳ ଗ୍ଚଉଳ ନେଇ ରୋଷାଇ କରି ଖାଉଥିଲେ, କିନ୍ତୁ ସାଧାରଣତଃ ସକାଳଓଳି ରୋଷାଇକରି ଖାଆନ୍ତି, ଓପରଓଳି ମହାପ୍ରସାଦ ଖାଆନ୍ତି । ଅନେକ ମଧ୍ୟ ଯଦି ଗୃହୁଁଥିଲେ ଓପରଓଳି ଗ୍ଚଉଳ ନେଇ ରୋଷାଇ କରୁଥିଲେ । ଆଉ ଗୋଟିଏ କଥା ବର୍ତ୍ତମାନ ସରକାରଙ୍କ ହାତରେ ଜଗନ୍ନାଥବଲ୍ଲଭ ମଠ ଅଛି । ଯେତେବେଳେ ଭୁତନାଥ ମରିଗଲେ ଇଂରେଜ ସରକାର ତାଙ୍କ ହାତରୁ ମଠ ନେଇଗଲେ, ସେତେବେଳେ ହରିଶ ଚନ୍ଦ୍ର ଘୋଷ ନୂଆ ଓକିଲ ହୋଇଥିଲେ । ସେ ନୂଆ ଟ୍ରଷ୍ଟି ହୋଇ ଏହି ମଠ ବୁଝିଲେ । ତାଙ୍କ ସଙ୍ଗେ ଆଉ ଦୁଇ ଜଣ ମଧ୍ୟ ରହିଲେ । ସେ ସଙ୍ଗେ ସଙ୍ଗେ ପୁରୀ ଜିଲ୍ଲା ସ୍କୁଲ ଓ ସଂସ୍କୃତ ବିଦ୍ୟାଳୟର 30 ଜଣ ଛାତ୍ରଙ୍କର ଖାଇବା ପାଇଁ ମହାପ୍ରସାଦ ବ୍ୟବସ୍ଥା କରିଦେଲେ । ସେମାନେ ସକାଳଓଳି ଗ୍ଚଉଳ ପାଉଥିଲେ ଓ ଓପରଓଳି ଡ଼ାଲି ପାଉଥିଲେ ଏବଂ ତା' ସଙ୍ଗେ ମାସକୁ 2ଟଙ୍କା ଦିଆଯାଉଥିଲା । ଅବଶ୍ୟ ସେତେବେଳେ ଆମର ମେଶ୍ ଖର୍ଚ୍ଚ ମାସକୁ ଦେଢ଼ ଟଙ୍କା ପଡୁଥିଲା । ଥରେ 1ଟଙ୍କା ୨ଅଣା ପଡ଼ିଲା ବୋଲି ମ୍ୟାନେଜରଙ୍କ ବିରୁଦ୍ଧରେ ସଭା ବସିଗଲା । ସେତେବେଳେ ଗ୍ଚଉଳ ଥିଲା 17 ସେର ଏବଂ ପଇସାକୁ ବିଛାବାଳିଆ ଚୁଙ୍ଗୁଡି 10ଟା ଥିଲା । ମଠ ବୋଇଲେ ମଠାଛାତ୍ରାଭିଃନିଳୟ । ବୌଦ୍ଧମାନଙ୍କର ଯେଉଁ ବିହାରଗୁଡିକ ଉତ୍ତର ବିହାରରେ ଥିଲା, ବକ୍ତାର ଖିଲିଜ ତାଙ୍କୁ ଭାଙ୍ଗି ଦେଇଥିଲେ । Vincent Smithଙ୍କର ମୁସଲମାନ ଇତିହାସରେ ଏହାର ଖୁବ ସୁନ୍ଦର ବର୍ଣ୍ଣନ ଅଛି । ଏହା I.C.S. ମାନଙ୍କର ପାଠ୍ୟ ପୁସ୍ତକ ଯାହାକୁକି ଅକସ୍‌ଫୋର୍ଡ ଇତିହାସ କହନ୍ତି । ସେଥିରେ ବର୍ଣ୍ଣନା ଅଛି, କିପରି ସମସ୍ତଙ୍କୁ ହାଣି ଦେଲେ । ଯେଉଁମାନେ ଲଣ୍ଡାମୁଣ୍ଡିଆ,

ଗେରୁଆ ପିନ୍ଧା ରହିଲେ, ତାଙ୍କୁ ପଢ଼ବୋଲି କହିଲେ । ସେ ଯଦି ନ ପଢିଲେ, ସମସ୍ତଙ୍କୁ ହାଣି ପକାଇଲେ । କିଏ ନେପାଳକୁ, କିଏବା ଓଡ଼ିଶାକୁ ପଳାଇ ଆସିଲେ । ତାହାପରେ ବହିଗୁଡିକ ଆଣି ବିହାର ଅଗଣାରେ ଜମାକରି ନିଆଁ ଲଗାଇ ଦେଲେ । ସେ ଇତିହାସରେ ଏହିପରି ବର୍ଣ୍ଣନା କରାଯାଇଛି । ମୋତେ ବୋଧହେଉଛି ସେ ସମୟରେ ମଠମାନେ ମାତି ଉଠିଲେ ସଂସ୍କୃତ ଓ ଦର୍ଶନ ଶିକ୍ଷା ପ୍ରସାର କରିବା ପାଇଁ । ସେତେବେଳେ ଯେ ଯେଉଁଠି ପାରିଲା ସଙ୍ଗେ ସଙ୍ଗେ ମଠ କଲା । ଛାତ୍ରଙ୍କର ପାଠ "ବିହାର" ନାମ ନ କରି 'ମଠ' ନାମ ଦେଲେ । କିନ୍ତୁ ମଠର ଅର୍ଥ ହେଉଛି 'ମଠାଛାତ୍ରାଭିନିଳୟ' । ଏହି ଅର୍ଥ ଅମରକୋଷରେ ଅଛି । ଛାତ୍ରମାନେ ଯେଉଁଠାରେ ରହୁଥିଲେ ଆଜିକାଲିକା ଭାଷାରେ ତାକୁ Residential College or School of the University କହୁଛନ୍ତି । ସେ ହେଉଛି ମଠ, ତାହା ଧର୍ମ ଅନୁଷ୍ଠାନ ନୁହେଁ । ଯଦି ଧର୍ମ ଅନୁଷ୍ଠାନ ବୋଲି କହିବେ ତାହାହେଲେ ଏମାର ମଠ ଜଗନ୍ନାଥଙ୍କୁ ଯେଉଁ 100 ହାଣ୍ଡି ଭୋଗ କରୁଛନ୍ତି ତାହା ସେ କରିବାକୁ ବାଧ୍ୟ ନୁହନ୍ତି । ଜଗନ୍ନାଥ ଯେଉଁ ଭୋଗ ପାଇଲେ ସେଥିରେ ମଠର ସଂପର୍କ କିଛି ନାହିଁ । ମୁଁ ଜାଣେ ସେଠି ଭୋଗମଣ୍ଡପ ଭଳିଆ ଆଉ ଗୋଟିଏ କରାଯାଏ, ସେଥିରେ ଦେଉଳର କିଛି ଯାଏ ଆସେ ନାହିଁ । ଯଦି religious ବୋଲି କହିବେ ସେ ଶିଷ୍ୟଗୁଡିଏକରି ତାଙ୍କଠାରୁ ଦାନ ଦକ୍ଷିଣା ପାଆନ୍ତି; ସେ ଯଦି ତାକୁ ପ୍ରମାଣ କରିବାକୁ ଯିବେ ଦିଅଁ ଦେବତାଙ୍କ ପାଇଁ କରୁଥିଲେ ବୋଲି ଆମ ଆଗରେ କିଛି ପ୍ରମାଣ ନାହିଁ । ପିଲାଙ୍କୁ ପାଠ ପଢ଼ାଯାଉଥିଲା । ଯଦି କିଛି ଦେବୋତ୍ତର ଥାଏ—କାହାର ରଘୁନାଥ ଅଛନ୍ତି, କାହାର ବା ବିଶ୍ୱନାଥ ଅଛନ୍ତି ତାଙ୍କ ନାମରେ ସେମାନେ ନିଜେ ଅନେକ ସଂପତ୍ତି କରିଛନ୍ତି ସେଗୁଡିକ Private ହୋଇ ରହିବ । କାହିଁକି ନା ସେଠାରେ ଯେଉଁ ଦିଅଁଙ୍କର ଝୁଲଣ ଯାତ୍ରା ହୁଏ ସେଥିରେ ଆଉ କାହାର ଅଧିକାର ନାହିଁ । ଏହାଙ୍କର temple ର definition ଯାହା ରଖିଛନ୍ତି ତାହାର ଅର୍ଥ କଣ ଏହାକୁ ବୁଝିବା କାଠିକର ପାଠ । ସୁଖର କଥା ମୁଁ ଏବେ କୌଣସି ଏକ ଘଟଣାରେ ଦେବୋତ୍ତର କମିଶନରଙ୍କୁ ବୁଝାଇ ପାରିଲି ଯେ ଏଇ 'section' କୁ 'sect' କରିବା ଉଚିତ । Section thereof ବୋଇଲେ ଏ କମିଶନର ଧରିଲେ, କେଉଁ କମିଶନର ନ ଧରିବେ ଏହା ପୂର୍ବରୁ ଏହିପରି ତିନି ଜଣ ଧରିପାରି ନାହାନ୍ତି । Section ବୋଇଲେ ମନେ କରନ୍ତୁ ଆପଣ ଓ ମୁଁ ଦୁଇଜଣ ଗୋଟାଏ ମନ୍ଦିର କଲେ । As a matter of right ଆମେ ଦୁଇଜଣ worship କରିବା ତାହାହେଲେ ଆମେ ଦୁଇଜଣ ହେଲେ a section of Hindu Community ସେଇଟା ଏଠାରେ ହୋଇଯାଉଛି public । ଏ ଆଇନରେ ଏଗୁଡ଼ା ସବୁ ବିଚାର କରୁ ନାହାନ୍ତି । 1939 ଆଇନରେ ଯାହା ଥିଲା, 1951 ଆଇନରେ ମଧ୍ୟ ଥିଲା । ଏହାକୁ ବିଚାର ନ କରିବାର ଅର୍ଥ କଣ ? କେହି ଏହାକୁ ବିଚାର କରି ନାହାନ୍ତି । ଏହାର କଣ ଅର୍ଥ ହେଉଛି ? ଖଜୁରୀ ଗଛ ତ ମୂଳରୁ ପାହାଚ ପାହାଚ, କେଉଁ କଥାଟି କହିବି ? worship ବୋଇଲେ କଥାଟା କ'ଣ ? ମୁସଲମାନ ଓ ଖ୍ରୀଷ୍ଟ ଧର୍ମରେ

worship ବୋଇଲେ, prayer ବା ପ୍ରାର୍ଥନା କିନ୍ତୁ ଆମର କ'ଣ ସେତିକି, Worship କହିଲେ ଆମେ ବୁଝୁ ସେବା ପୂଜା । ଆମର ସେଆଡ଼େ ମେଲଣ ଅଛି, କଟକ ଜିଲ୍ଲାରେ ମଧ୍ୟ ମେଲଣ ହୁଏ । ସବୁ ଦିଅଁ ଯାକ ଯାଆନ୍ତି ସମସ୍ତେ ସ୍ତୁତି କରନ୍ତି, ସମସ୍ତେ ଭୋଗ ଦିଅନ୍ତି, କିନ୍ତୁ ସେ public god ନୁହନ୍ତି । ଘରରୁ ଦିଅ ଯାଆନ୍ତି ପୁଣି ଘରକୁ ଫେରି ଆସନ୍ତି । ଏ ସବୁ କ'ଣ public god ହୋଇଯିବେ ? ଏହା ବାଦ ଆମର ଦେଖିବାର କଥା ଯେ ଏ ଆଇନଟା ପନ୍ଦର ବର୍ଷ ହେବ ହେଲାଣି । ଏ ପନ୍ଦର ବର୍ଷ ଭିତରେ ଆମେ କି ରିପୋର୍ଟ ପାଇଛୁ, କ'ଣ ଅସୁବିଧା ହେଉଛି, କ'ଣ ସଂପତ୍ତି ଲୋପ ହୋଇଛି । ଏ ସବୁ ବିଷୟରେ ଆମେ ଆଜି ପର୍ଯ୍ୟନ୍ତ କି ରିପୋର୍ଟ ପାଇଛୁ ? ପନ୍ଦର ବର୍ଷପରେ ଆମେ ସ୍ୱାଧୀନ ଭାରତର କୌଣସି Legislature କୁ ବିଚାର କରିବା ପାଇଁ ଆସିଛୁ । ଆମର କ'ଣ ଅଛି । ଅବଶ୍ୟ କିଏ ଭାବିଥିବେ, ଧର୍ମ ଗଲେ ଯାଉ, ରହିଲେ ରହୁ, ଏପରି ଭାବ କେତେକଙ୍କର ଥାଇପାରେ କିନ୍ତୁ ସେପରି ଭାବ ଆଇନ ମନ୍ତ୍ରୀଙ୍କର ଧରିବା ଉଚିତ ନୁହେଁ, କି ସରକାରଙ୍କର ଧରିବା ଉଚିତ ନୁହେଁ । ଆମ୍ଭେମାନେ ଏଥିରେ କ'ଣ କରିଛୁ, ବିଲାତରେ 1922ରେ ବହୁ ଦାବି ହୋଇ ହୋଇ କରି ତାଙ୍କର ଜମିଦାରମାନଙ୍କର ଏବଂ ସବୁତ ଜମିଦାରମାନଙ୍କର ଥିଲା, ଯେଉଁ Law of primogeniture ଥିଲା, ଅର୍ଥାତ ବଡ଼ପୁଅ ସଂପତ୍ତି ପାଇବ ସେ ଆଇନଟା ଥିଲା । ଯେତେବେଳେ ଦାବି ହେଲା ନାଁ, ସଂପତ୍ତି ସମସ୍ତଙ୍କର କରିଦିଅ, ସେତେବେଳେ Parliamentରେ Sir Leslie Steptens, ଯେକି ଆମର ଏଠି Advocate-General ବା ସେହିପରି ପଦରେ ଥିଲେ—Ansonଟା ମୁଁ ପାଇଲି ନାହିଁ, ପାଇଲେ ପରେ ଦେଖାଇବି—ସେ ତାଙ୍କ ବକ୍ତୃତାରେ କହିଥିଲେ ଯେତେବେଳେ କି ଚାର୍ଯ୍ୟ ହେଲା, ଆମ୍ଭରତ Primogeniture law ଥିଲା, ବେଶ ଚାଲୁଥିଲା, ତାକୁ କାହିଁକି ବଦଳା ଯିବ ? ସେତେବେଳେ Sir Leslie କହିଥିଲେ ଯେ 180 ବର୍ଷ ପୂର୍ବରୁ ଯେତେ ଉଇଲ ହୋଇଛି, ସବୁ ଉଇଲ ସରକାର ଦେଖି ଗୋଟିଏ ମତ ସ୍ଥିର କରିଛନ୍ତି ଯେ, ଏପରି ହେବା ଦରକାର । ଲୋକଙ୍କର ଆଭିମୁଖ୍ୟ ସେହିପରି କାହିଁକିନା, ଦେଶର ଲୋକେ ଉଇଲ କଲାବେଳେ ସବୁ ସନ୍ତାନକୁ ସଂପତ୍ତି ଦେଇ ଯାଉଛନ୍ତି । Primogeniture ଯଦି ଲୋକେ ଚାହୁଁଥାନ୍ତେ, ତା'ହେଲେ ସବୁ ସନ୍ତାନକୁ କାହିଁକି ଦେଇ ଯାଉଥାନ୍ତେ । ଗୋଟିଏ ପରଂପରାକୁ ବଦଳାଇବାକୁ ହେଲେ, ଏସବୁ ଜିନିଷ ଦରକାର । ଆମେ ପନ୍ଦର ବର୍ଷ ହେଲା ଆଇନ କଲୁଣି କିନ୍ତୁ ଆଇନ ମନ୍ତ୍ରୀ ଏ ଦିଗରେ କ'ଣ କରିଛନ୍ତି । ଏଇଟା କେବଳ ନୁହେଁ, 1904ରେ ଶାଳୀକୁ ବିବାହ ହେବାର ଆଇନ ନ ଥିଲା, ଅର୍ଥାତ ମାଇପର ସାନ ଭଉଣୀକୁ ବିବାହ ହେବା ଆଇନରେ ନିଷିଦ୍ଧ ଥିଲା । ଯେତେବେଳେ ଏ ବିଷୟରେ ଆଇନ କରାଗଲା, ପାର୍ଲାମେଣ୍ଟରେ ଏକଥା ପଡ଼ିଲା, ସେତେବେଳେ କେତେ ଲୋକ ଶାଳୀଠୁଁ ପିଲାଙ୍କନ୍ନ କରିଛନ୍ତି, ମାଇପ ମରିଗଲାପରେ, ତା'ରି ହିସାବ ଉପରେ ନିର୍ଭରକରି ଶାଳୀକୁ ବିବାହ କରି ପାରିବେ ବୋଲି ଆଇନ କରାଗଲା । ଏ ଯେଉଁସବୁ ପାରଂପାରିକ

ଜିନିଷ, ଏଗୁଡ଼ା ସହଜ କଥା ନୁହେଁ । ଏ ଯେଉଁ ଆଇନଟା ଚାଲିଛି, ସେ ବିଷୟରେ ଆମେ ସରକାରଙ୍କ ତରଫରୁ କିଛି ପାଇନାହୁଁ । ଏ ବିଷୟରେ ଲୋକଙ୍କର ଆଭିମୁଖ୍ୟ କ'ଣ—ସରକାର କହି ନାହାନ୍ତି । ପୁରୀରେ ଗୋଟିଏ ବାଲିମଠ ଅଛି । ଆରତିକୁସୁମଙ୍କ ପରେ ମଧୁସୂଦନ ତୀର୍ଥଙ୍କ ଭଳି ଜଣେ ପାଣିନି ବ୍ୟାକରଣରେ ବିଶାରଦ ବ୍ୟକ୍ତି, ବୋଧହୁଏ ଆଉ କେହି ଅଛନ୍ତି କି ନାହିଁ ସନ୍ଦେହ । ଇଂରାଜୀରେ ଯାହାକୁ କୁହନ୍ତି last word ସେହି କଥାଟା ପାଣିନି ବ୍ୟାକରଣ ବିଷୟରେ ତାଙ୍କ ପ୍ରତି ପ୍ରଯୁଜ୍ୟ । ସେଠାରେ ପାଣିନି ବ୍ୟାକରଣ ଯାହା ଚର୍ଚ୍ଚା ହେଉଥିଲା, ସେଥିର ଗୋଟିଏ ଅଂଶ ଅବଶିଷ୍ଟ ଅଛି ଏବଂ ସେଥିରେ ଆଜି ଆମର ସଂସ୍କୃତ ପରିଷଦରେ ପାଣିନି ବ୍ୟାକରଣ ଟିକିଏ ଅଛି । ତା'ପରେ ଭାରତୀ ସ୍ୱାମୀ ଶଙ୍କରାଚାର୍ଯ୍ୟଙ୍କ ରଚନା ଉପରେ ତାଙ୍କ ପରି ଆଉ କାହାରି ଭାରତରେ ଜ୍ଞାନ ଅଛି ବୋଲି ମୁଁ ଭାବୁନାହିଁ । ବୈଦିକ ଶାସ୍ତ୍ରରେ ତାଙ୍କର ମଧ୍ୟ ଅଗାଧ ପାଣ୍ଡିତ୍ୟ ଅଛି । ସେ ଏଠି ପଢ଼ାନ୍ତି ନାହିଁ । ବାହାରେ ପଢ଼ାନ୍ତି । ବୋଧହୁଏ ଆମର ଏଠି କେହି ପଢିଲେ ନାହିଁ । ସେ ଶଙ୍କରାଚାର୍ଯ୍ୟଙ୍କର ଚତୁଃଶ୍ରୁତି ଉପରେ ଯେଉଁ ଭାଷ୍ୟ ଲେଖିଛନ୍ତି ଜୟପୁର ମହାରାଜା ତାଙ୍କୁ ଆର୍ଥିକ ସାହାଯ୍ୟ ଦେଇ ସେ ବହି ଛପାଇଥିଲେ । ମୋତେ ଖଣ୍ଡିଏ ଦେଇଥିଲେ, ବର୍ତ୍ତମାନ ମୋ ପାଖରେ ଅଛି । ଚତୁଃଶ୍ରୁତି ଅର୍ଥାତ ପ୍ରଥମ ଚାରିଟି ଶ୍ରୁତି ଉପରେ ଏ ଭାଷ୍ୟ ଲେଖାଯାଇଛି, ଅନ୍ୟ କୌଣସି ଭାଷ୍ୟ ଲେଖିଛନ୍ତି କି ନା ମୁଁ ଜାଣେନା ।

The SPEAKER : ମାନ୍ୟବର ସଭ୍ୟ ଯେପରିଭାବରେ ଆଲୋଚନା ଆରମ୍ଭ କରିଛନ୍ତି, ସେଥିରେ 10—15 ଘଣ୍ଟା ସମୟ ଲାଗିବ । ମାନ୍ୟବର ସଭ୍ୟ ମୂଳ Act କୁ ଆଲୋଚନା ନକରି ଯେଉଁ ସଂଶୋଧନ ଚିଠା ଆଇନ ଆସିଛି, ତାରି ଉପରେ କୁହନ୍ତୁ । ଏ ଯେଉଁ ସଂଶୋଧନ ଆଇନ ଆସିଛି, 1939ରେ ଯେଉଁ ଆଇନ ଆସିଥିଲା, ତାର 38 ଓ 39 ଦଫା ଏବଂ Madrasର ଯେଉଁ ଆଇନ ଥିଲା, ତାହାର କେତେକ ଦଫା Supreme Court ଅସିଦ୍ଧ ଘୋଷଣା କରିଥିବା ହେତୁ ଏ ଆଇନ ଆସିଛି ।

Shri NILAKANTHA DAS : 1951ରେ Madras ରେ ଆଇନ ହେଲା ଏବଂ ସେହି ଅନୁସାରେ ଆମର ଗୋଟିଏ ଆଇନ ହୋଇଛି, ଯାହାକି ଏପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇନାହିଁ । 1939ରୁ ଆମର ଏ ଆଇନ ଚାଲିଛି । ଆମେ ମାନ୍ଦ୍ରାଜ ଅନୁକରଣରେ ଗୋଟିଏ ଆଇନ କରୁଛୁ, ସେଟା ଏ ଆଇନ ଦ୍ୱାରା କାର୍ଯ୍ୟକାରୀ ହେବାକୁ ଯାଉଛି । ସେଥିରେ ଦେବଦାସୀ ପ୍ରବୃତ୍ତି ରହିବ କି ନାହିଁ, ଏସବୁ ବିଶେଷକରି ବିଚାର କରିବାପାଇଁ ମୁଁ ଏସବୁ ଯୁକ୍ତି ଦେଖାଇଛି । ଯାହାକୁ କହନ୍ତି, ଇଙ୍ଗିତରେ ମୁଁ ଅନେକଥର ସରକାରଙ୍କୁ ବୁଝାଇବାପାଇଁ ଚେଷ୍ଟା କରିଛି, ସରକାର ବୁଝୁ ନାହାନ୍ତି । ତେଣୁ ମୋତେ ବାଧ୍ୟହୋଇ ଏସବୁ କହିବାକୁ ପଡୁଛି । ଆପଣ ଯଦି ସମୟ ଦେବେ କହିବି, ନହେଲେ ଏତିକିରେ ରହିଲି । ମୁଁ ଦେଖୁଛି ଗୋଟିଏ କଦର୍ଯ୍ୟ ଜିନିଷ ସମାଜରେ ପଶିଯିବ ।

The SPEAKER. ସଭା କାର୍ଯ୍ୟ ବର୍ତ୍ତମାନ 2ଟା ପର୍ଯ୍ୟନ୍ତ ମୂଲତବୀ ରହିଲା ।

(Interval for lunch)

Shri NILAKANTHA DAS : ମୁଁ କହୁଥିଲି ଗୋବର୍ଦ୍ଧନ ମଠ ମହନ୍ତ ଭାରତୀକୃଷ୍ଣଙ୍କ କଥା, ସେ ମହାପଣ୍ଡିତ । ଆମେ ଯେତେବେଳେ ଜେଲରେ ଥିଲୁ ସେତେବେଳେ ସେ ମଧ୍ୟ ଏହି କଂଗ୍ରେସ ଲଢେଇରେ ଯୋଗ ଦେଇଥିଲେ । ଅନେକଙ୍କର ମନେ ଥିବ କି ନାହିଁ ମୁଁ କହିପାରୁ ନାହିଁ । ଅସ୍ପୃଶ୍ୟତା ବିଷୟରେ ତାଙ୍କର ଯାହା ମତ ସେ ମତ ଯଦି ଅନ୍ୟାନ୍ୟ କଂଗ୍ରେସ ଲୋକଙ୍କ ମତ ସଙ୍ଗେ ମିଳି ଯାଇଥାନ୍ତା, ତାହାହେଲେ ସେ କଂଗ୍ରେସର ସଭାପତି ହୋଇଥାନ୍ତେ । ସେ ଏଇ ଭଳିଆ ଲୋକ । ପଣ୍ଡିତ ଗୋପବନ୍ଧୁ ଦାସ, ଭାଗୀରଥି ମହାପାତ୍ର ଏବଂ ଆମେମାନେ ଯେତେବେଳେ ହାଜାରିବାଗ ଜେଲକୁ ଦୁଇବର୍ଷପାଇଁ ଯାଇଥିଲୁ ସେତେବେଳେ ସେ ଆମ ସଙ୍ଗରେ ସେ ଜେଲରେ ଥିଲେ । ଆମେ ତାଙ୍କ ପାଖରୁ ବେଦାନ୍ତ ପଢିଥିଲୁ । ତାଙ୍କର ଚରିତ୍ର ଏବଂ ପାଣ୍ଡିତ୍ୟ କଥା ଆମେ ଜାଣୁ । କାଲି ସେ ଯଦି ଅପୁତ୍ରିକ ହୋଇ ମରିଯାନ୍ତି, ତାଙ୍କର ସମ୍ପତ୍ତିରେ ଦାବି କିଏ କରିବ ? ତାଙ୍କର ଉତ୍ତରାଧିକାରୀ କିଏ ଠିକ୍ କରିବ ? ଆମେ ବର୍ତ୍ତମାନ ଯେଉଁ ଆଇନ କରି ଦେଉଛୁ ସେଥିରେ ଏହି ଲୋକମାନେ ତାଙ୍କର ଉତ୍ତରାଧିକାରୀ ଠିକ୍ କରିବାପାଇଁ ଉପଯୁକ୍ତ ତ ? ସେଥିପାଇଁ ମୁଁ କହୁଛି ଏ ବିଷୟରେ ସ୍ୱତନ୍ତ୍ର ବନ୍ଦୋବସ୍ତ ହେବା ଦରକାର । ସୁଚିନ୍ତିତ ବନ୍ଦୋବସ୍ତ ହେବା ଦରକାର । ସେ ବିଷୟରେ ବହୁବିଧ ଚିନ୍ତା ଦରକାର । ତା'ବାଦ ସେମାନଙ୍କୁ promotion of Hindu Religion ଏହି କଥା ଛାଡି ଦିଆଯାଇଛି । ତା'ହେଲେ ସେମାନେ ଯଦି ସାଧାରଣ ଭାବରେ ପ୍ରଚ୍ଚରିତ ହୁଅନ୍ତି ସାଧାରଣ ହିନ୍ଦୁଧର୍ମ ଅନୁସାରେ ସେମାନେ ହେଉଛନ୍ତି ବ୍ରହ୍ମଚ୍ଚରୀ, ବ୍ରହ୍ମଚ୍ଚରୀମାନଙ୍କର ପୋଷ୍ୟପୁତ୍ର କରିବାର ଅଧିକାର ହିନ୍ଦୁଶାସ୍ତ୍ରରେ ଅଛି । ଦାୟଦଭାବରେ ସେମାନଙ୍କର ସ୍ଥାନ ଅଛି । ତା'ହେଲେ ଏସବୁ ସ୍ଥଳରେ ଏହି ସବୁ ପୀଠମାନଙ୍କର ସେ ଧର୍ମୀ ହେଉ ବା ବିଧର୍ମୀ ହେଉ, ଯଦି ସେ ସଂପତ୍ତିକୁ ଆମେ ରକ୍ଷା କରିବାକୁ ଚ୍ଚହୁଁ ; ଯଦି ଆମେ ମଠକୁ ମାନୁ, ତା'ହେଲେ ସେଠିକାର ଉତ୍ତରାଧିକାରୀ କିପରି ଠିକ୍ ହେବ ଏବଂ କିଏ ଠିକ୍ କରିବ । ମୁଁ କହୁଛି ମଠକୁ ସଂପୂର୍ଣ୍ଣ ଅଲଗା କରି ଦିଆଯାଇ ତା' ପ୍ରତି ଅନ୍ୟ ପ୍ରକାର ବ୍ୟବସ୍ଥା କରାଯାଉ । ସେସବୁ ସଂପତ୍ତି ଯେପରି ହୁଏତ ଛାତ୍ରମାନଙ୍କର, ଶିକ୍ଷକମାନଙ୍କର କାର୍ଯ୍ୟରେ ଲଗି ପାରିବ, ତା'ର ବ୍ୟବସ୍ଥା କରାଯାଉ । ତା'ର ପରମ୍ପରା ଇତିହାସ ଅନୁସନ୍ଧାନ କରି ତା'ଉପରେ ଏବଂ ତା ପାଇଁ ଯାହା କରିବାକୁ ହେବ ତାହା ପ୍ରତିଷ୍ଠିତ କରାଯାଉ । ସେଥିରୁ ଯେମିତି ମଧୁସୂଦନ ତୀର୍ଥ, ଭାରତୀକୃଷ୍ଣ ବାହାରିବେ ସରକାର ତାହାର ବ୍ୟବସ୍ଥା କରନ୍ତୁ । ମୁଁ ମଠର ପକ୍ଷ ନୁହେଁ । ସେମାନେ ବସି ମଉଜ କରି ଖାଇବେ, ମୁଁ ତା'ର ବିରୋଧୀ । ଯେଉଁ କାର୍ଯ୍ୟ କରିବାକୁ ହେବ୍ ସେ କାର୍ଯ୍ୟ ଆମ୍ଭେମାନେ କରିବା ଦରକାର । ଆମ ପରଂପରା ଭାଷା ପରିସ୍ଥିତି ସଙ୍ଗେ ମିଳାଇ ଯଦି ଏହି ଦେଶକୁ ଆମେ ଗଢିବା ପାଇଁ ପ୍ରସ୍ତୁତ ହୋଇଥାଏଁ ତା'ହେଲେ ଆମେ ସବୁ ଛାଡି ଯାହା ତାହା

କରିଦେବା ଠିକ୍ ହେବ ନାହିଁ । ଏହି କେବଳ କେତେଗୁଡ଼ିଏ ସୂଚନା ମୁଁ ମଠ ସଂପର୍କରେ ଦେଲି । ବର୍ତ୍ତମାନ ମନ୍ଦିର, ମଠ ଏ ଦୁହିଁରେ ମୁଁ ପଚାରୁଛି କହନ୍ତୁ କାହିଁକି ମାଳଶ୍ରୀ ଟ୍ରଷ୍ଟି ହୋଇଛନ୍ତି ? ଏହାର ଦରକାର କଣ ? ଆମର ଯଦି କମିଶନର ଏବଂ Executive Officer ରହିବାର ବ୍ୟବସ୍ଥା ଅଛି ଏହି ମାଳଶ୍ରୀ ଟ୍ରଷ୍ଟି ରହିବାର କାରଣ କ'ଣ ? ତଦ୍ୱାରା କିଛି ଉପକାର ହେଉ ନାହିଁ । ମୁଁ ଏଠି ବର୍ଣ୍ଣନାକରି କହୁ ନାହିଁ । ଏଥିରେ ଅନେକଙ୍କର ବ୍ୟକ୍ତିଗତ ସଂପର୍କ ଥାଇ ପାରେ, ବା ଅବାନ୍ତର ସମାଲୋଚନା ହୋଇପାରେ । କାହାର ମନରେ ମୁଁ ଆଘାତ ଦେବାକୁ ଚାହୁଁ ନାହିଁ କି ପ୍ରତ୍ୟକ୍ଷ ବା ଅବାନ୍ତର ଭାବରେ ସମାଲୋଚନା କରିବାକୁ ଚାହୁଁ ନାହିଁ । ମୋର ଗୋଟିଏ କଥା ମନେ ଅଛି । ପୁଣୀ ଶ୍ଳୋକ ଗୋପାଳଚନ୍ଦ୍ର ପ୍ରହରାଜଙ୍କୁ ସମସ୍ତେ ଜାଣନ୍ତି । ସେ ସେକାଳରେ ଭୁବନେଶ୍ୱର ମନ୍ଦିରର ଟ୍ରଷ୍ଟି ଥିଲେ । ସେ ଏକା ନଥିଲେ ତାଙ୍କ ସାଙ୍ଗରେ ମଧ୍ୟ ଆଉ ଦୁଇଜଣ ଥିଲେ । ମୁଁ ଦେଖିଛି ସେତେବେଳେ ଭୁବନେଶ୍ୱର ମନ୍ଦିରର ଜମିବାଡ଼ିରୁ କୌଣସି ରକମ ବେଶୀ ଆୟ ନ ଥିଲା । କୌଣସିଠାରେ କିଏ ପାଣି ଟେକି ଦେଲା, କିଏ କ'ଣ ଦିଅଙ୍କୁ ଭେଟି ଦେଲା ଏହିଥିରୁ କିଛି ଆୟ ହୁଏ । ସେତେବେଳେ ଯେଉଁ ଟ୍ରଷ୍ଟି ଥିଲେ ସେମାନେ ଦିନକୁ ଟ 20 ଗସ୍ତ ଖର୍ଚ୍ଚ ନେଉଥିଲେ । 10 ଦିନ ଆସି ରହିଲେ ଟ 200 ହୋଇଯାଏ । ଥରେ ଗୋପାଳଚନ୍ଦ୍ର ପ୍ରହରାଜ ଆସି କରି ଥିଲେ । ତାଙ୍କ ସହିତ ମୋର ସେତେବେଳେ ଭେଟ ହୋଇଥିଲା । ସେ ମୋତେ କାହିଁକି ଆସିଛନ୍ତି, କଣ କରୁଛନ୍ତି କଥା ଛଳରେ କହିଲେ । ବର୍ତ୍ତମାନ ଆମେ ହିସାବ କରି ଦେଖିଲେ ଜାଣିପାରିବା ସେହିପରି କେତେଗୁଡ଼ିଏ Executive Officer ଅଛନ୍ତି । ମଠରେ ଅଛନ୍ତି କି ନାହିଁ ମୁଁ ଜାଣେ ନାହିଁ । କିନ୍ତୁ ଜଗନ୍ନାଥବଲ୍ଲଭ ଠାରୁ ଆରମ୍ଭ କରି ବଳଦେବଜୀ ପର୍ଯ୍ୟନ୍ତ ରହିଛନ୍ତି । ଏହି Executive Officer ଙ୍କ ଦରମା ଏବଂ ଗସ୍ତଖର୍ଚ୍ଚ କେତେ ? ସେ ଯେଉଁ ପଦରେ ଅଛନ୍ତି ସେମାନେ ହେଉଛନ୍ତି ଟ୍ରଷ୍ଟି, Executive Officer ଙ୍କର ପରାମର୍ଶ-ଦାତା । କିନ୍ତୁ ଏହି Executive Officer କେଉଁ ଶ୍ରେଣୀର । ଏମାନେ Matriculation ପାଶ କରି ଚାକିରୀ କରିଛନ୍ତି । ଯାଙ୍କପାଇଁ ଯେଉଁ ସଂସ୍ଥା ତିଆରି ହୁଏ ମନ୍ତ୍ରୀମାନଙ୍କ ସମୟରେ ଯାହା ଖର୍ଚ୍ଚ ହୁଏ ସେଇଆ । ଏହି Executive Officer ଙ୍କ ଦରମା, ଗସ୍ତ ଖର୍ଚ୍ଚ କେତେ ? ଯାକୁ ନିୟନ୍ତ୍ରଣ କିଏ କରୁଛି ? ଯାକୁ କେବେ କେହି ମନ୍ତ୍ରୀ ହିସାବ କରିଛନ୍ତି କି ? ଏ ବିଷୟରେ କୌଣସି report ଅଛି କି ? ଏହା କେଉଁଠୁ ଅନୁସରଣ କରାଗଲା । ମୁଁ ଜାଣେ ନାହିଁ । ଆମର ତ ଜଣେ କମିଶନର, ସବଜଜ୍ ବା District Judge ପାହ୍ୟାର ଲୋକ ରହିଲେ ଭଲ କଥା । ତା' ବାଦ୍ Executive Officer ପୁଣି 5/10 ଜଣ ରଖି କି ଲାଭ ହେବ । ସେ କାହିଁକି ରହିଛନ୍ତି ? ସ୍ଥାନୀୟ ସେବକମାନଙ୍କ ମଧ୍ୟରୁ ଜଣେ ଦୁଇଜଣ ରହିବା ଦରକାର । Executive Officer ନ ରହିଲେ ଯେ ଦିଅଁଙ୍କ କାମ ବନ୍ଦ ହୋଇଯିବ ତା' ନୁହେଁ । ଟ୍ରଷ୍ଟିମାନେ Executive Officer ଙ୍କର ପରାମର୍ଶଦାତା ବୋଲି ମୁଁ ମୋ ଅଭିଜ୍ଞତାରୁ କହୁଛି । ଏହିପରି ପରାମର୍ଶଦାତା ଆମ ସତ୍ୟବାଦୀରେ ଥିଲେ । 33 ଧାରା ଅନୁସାରେ ଯେତେବେଳେ

Executive Officer ରହିଲେ ସେତେବେଳେ ଏ Trustee ଯାକ ଗଲେ । ଭାରାକ୍ରାନ୍ତ କରୁଥିଲେ । ସେତେବେଳେ ସେ ଯେ କମିଶନର ଥିଲେ ତାଙ୍କୁ ମୁଁ କହିଲି ଯେ Executive Officer ରହିଲାବେଳେ ଆମ ପରାମର୍ଶ ନେଇ ରଖିବେ । ସେ କହିଲେ ଆପଣ ନାମ ଦିଅନ୍ତୁ । ଗୋପାଳପୁର ପାଟଣାରେ ଦୁଆରୀ ପୂଜା ଯେଉଁମାନେ କରନ୍ତି, ତାଙ୍କ ଭିତରୁ ଜଣଙ୍କୁ ଓ ଜଣେ ସ୍ଥାନୀୟ ଲୋକ ସମରସରପୁରର ଶ୍ରୀ ଲକ୍ଷ୍ମଣ ମିଶ୍ରଙ୍କ ନାମ ମୁଁ ଦେଲି । ସେ ମୋତେ କହିଲେ ଯେ ଲକ୍ଷ୍ମଣ ମିଶ୍ର ନାହିଁ କଲେ । ପରେ ମୁଁ ବୁଝିଲି ଯେ ତାଙ୍କ ପାଖକୁ ଚିଠି ଯାଇ ନାହିଁ । ସେ ଯାହାହେବ Advisory Committee ନ ରଖିଲେ ବି ଚଳିବ । ଏପରି ଦଳେ କାହିଁକି ରହୁଛନ୍ତି । 5ଜଣଙ୍କୁ 10 ଜଣ କରିଦେଲେ ଆପତ୍ତି ନାହିଁ । ଏଭଳି ଗୋଟିଏ ବିଭତ୍ସ କାଣ୍ଡ କାହିଁକି ହେଉଛି ? ଏପରି ତାଣ୍ଡବଲୀଳା କାହିଁକି ଲାଗିଛି ? ମନ୍ଦିର ଭିତରୁ ଜଗନ୍ନାଥଙ୍କ ମନ୍ଦିର ହୋଇଗଲା । ମୋଗଲବନ୍ଦୀରେ ବଡ଼ ବଡ଼ ମନ୍ଦିର ଭିତରୁ—ଝଙ୍କଡ଼, ବଳଦେବଜୀଉ, ସାକ୍ଷୀଗୋପାଳ, ଭଗବତୀ ଏ ସବୁହୋଇଗଲା । ତା'ପରେ ପୁରୀରେ ଜଗନ୍ନାଥ ବଲ୍ଲଭ ମଠ ଅଛି । ମୁଁ ବର୍ତ୍ତମାନ କହୁଛି ସବୁ ହୋଇଗଲା । Executive Officer ରଖିଦିଅ, ଯଦି ନିତାନ୍ତ ଦରକାର ପଡୁଛି 5ଟା 3ଟା ମନ୍ଦିର ମିଶାଇ ରଖାଯାଉ । ଏମାନଙ୍କୁ ଅଫିସର ଯାଇ କହୁଛନ୍ତି—ତୋ ବାପ ଦିଅଁ ବସାଇଛି, ଏଇଟା ସାଧାରଣ ମନ୍ଦିର ହୋଇଗଲା । ତୁ ଟ20 ଦେ । ଏପରି ଘଟଣା ଘଟିଥିବାର ମୁଁ ପ୍ରମାଣ କରିଛି । କିନ୍ତୁ ସେପରି ଲୋକ Endowment ରେ ଅଛନ୍ତି । ଇଂରେଜିରେ ଯାହାକୁ କହନ୍ତି Blackmail ସେଇଆ ହେଉଛି । ମୁଁ କୌଣସି ବ୍ୟକ୍ତି ବିଶେଷଙ୍କ କଥା କହୁନାହିଁ । ବ୍ୟକ୍ତି ଉପରେ ନିର୍ଭର କରାଯାଏ ନାହିଁ । ଯାହାକୁ Judicial Service ରୁ ଆଣୁଛନ୍ତି, ସେ ଲୋକ High Court ତଳେ ଅଛି କି ? ସେ ଆସି ଏମାନଙ୍କ ଗୁକର ହୋଇଗଲେ । ଏମାନଙ୍କ ରଙ୍ଗରେ ରଞ୍ଜିତ ହୋଇଗଲା । ସେ ଯଦି Judicial Officer ହୋଇ ରହନ୍ତେ ତାହାହେଲେ ଆମେ ବିଶ୍ୱାସ କରନ୍ତୁ, ଏମାନଙ୍କ ଆଇନରେ ସେବକ ପୂଜାରୀ ଅଛନ୍ତି । ଆଉ ଗୋଟିଏ ଅର୍ଚ୍ଚକ ଶବ୍ଦ କେଉଁଠୁ ଆଣିଛନ୍ତି ବୁଝାଯାଉ ନାହିଁ । ଅନେକ ମନ୍ଦିରରେ ସେମାନେ ପୁରୁଷାନୁକ୍ରମେ Trustee ଅଛନ୍ତି । ଏ ଆଇନ ଯେପରି ଭାବରେ ହେବାକୁ ଯାଉଛି, ଯାହାର ପଇସା ଥିବ ସେ High Court କୁ ଯିବ । ଅନେକ ସମୟରେ ସଂପତ୍ତିଟା ଯେପରି ବିକ୍ରୀ ନ ହେବ, ଭାଗ ନ ହେବ, ସେଥିରୁ ରକ୍ଷା ପାଇବା ପାଇଁ ଲୋକେ ଦେବୋତ୍ତର କରିଦିଅନ୍ତି । ଆମର ଗୁରୁ ପଣ୍ଡିତ ଗୋପବନ୍ଧୁ ଦାଶ ମଲ୍ଲବେଳକୁ ସବୁ ଦେବୋତ୍ତର କରିଦେଇ ଯାଇଛନ୍ତି । ଏହିପରି ଅନେକ ଲୋକ କରିଛନ୍ତି । ଦେବୋତ୍ତର ନାମରେ କରିଦେଇ ପୁରୁଷାନକ୍ରମେ ମାରଫତଦାର ଅଛନ୍ତି । ସେହିପରି ବାଲୁଙ୍କେଶ୍ୱର ମହାଦେବ ଅଛନ୍ତି । ତାଙ୍କନାମରେ ଦେବୋତ୍ତର କରି ଅନେକ ମାରଫତଦାର ଅଛନ୍ତି । ତାଙ୍କର ସେବା ନାହିଁ । ଆମର ଯେଉଁ Specific Endowment ଅଛି ତାହା ଦକ୍ଷିଣରୁ ଆସିଛି । Specific Endowmentର ଅର୍ଥ କିଛି ନାହିଁ । ଯେତେବେଳେ ଏଇଟା ସର୍ବସାଧାରଣ ବୋଲି କହିଦେବେ, ସେତେବେଳେ ସରକାର ତାଙ୍କ ନଡ଼ିଆ ତୋଳିବେ ଓ ଧାନ ଉଷାଁଇବେ । ଏହିଟା ଯଦି ହାଇକୋର୍ଟ ପର୍ଯ୍ୟନ୍ତ ଯିବ,

ତାକୁ ପ୍ରମାଣ କରି ପାରିବେତ ? ଏହିଟା ଯଦି ସର୍ବସାଧାରଣ ନୁହେଁ ବୋଲି ସେମାନେ ଯଦି ପ୍ରମାଣ କଲେ ତାହାହେଲେ କେଡ଼େ ଅସୁବିଧା ହେବ । ଏହି ଆଇନ ସେ ସବୁ ସଂପତ୍ତି ରକ୍ଷା କରିବା ପାଇଁ କରାଯାଇଥିଲା, ଏଥିରେ କେଉଁ ମହାଦେବ ବାଲୁଙ୍କେଶ୍ୱର ହୋଇଗଲେ ତାହାହେଲେ ଦେଖିବାକୁ ହେବ ସେଠି ବାଲୁଙ୍କେଶ୍ୱର ଥିଲେ କି ନାହିଁ ? ସବୁଠି ଯେ ଦିଅଁଙ୍କ ନାମ ଧରି କୁହାଯିବ ତାହାନୁହେଁ । ଆମର ଅନୁସନ୍ଧାନକରି ଦେଖିବା ଉଚିତ, ସେ ବାଲୁଙ୍କେ-ଶ୍ୱରଠେଁ କୌଣସି କାମ ହେଉଛି କି ନାହିଁ । ତାର କଣ ସେବା ଅଛି କି ନାହିଁ । ଏ ବିଷୟରେ ଅନୁସନ୍ଧାନକରି ଏହାକୁ ସ୍ଥିର କରି ଦେବାକୁ ହେବ । ଏହାନକଲେ ଏପରି ହେଉଛି ମଫସଲରେ ନାନା ବିଭ୍ରାଟ ସୃଷ୍ଟି ହେଉଛି । ଏଥିପାଇଁ ମଫସଲରେ ଗୋଟିଏ enquiry ହେବା ଦରକାର ଯେ ତାଙ୍କର ସେବା ପୂଜା ହେଉଛି କି ନାହିଁ, ସେଠି ମାମଲତକାରମାନେ ସେସବୁକୁ ନେଇ ଭୋଗ କରୁଛନ୍ତି । ସେ ସବୁରେ ଟ୍ରଷ୍ଟି ହୋଇ ଭୋଗ କରୁଛନ୍ତି କେଉଁଠି ଯଦି ଟ ୫୦୦ଙ୍କା ବା ହଜାରେଟଙ୍କା ପର୍ଯ୍ୟନ୍ତ ଆଦାୟ ହେଉଛି । ଆମେ ତାକୁ ନେବା କାହିଁକି ? କାହାର ୨ ଏକର, କାହାର ୫ ଏକର ଜମି ଅଛି । ତାକୁ ସବୁ ଆମେ କାହିଁକି ନେବା ? ପ୍ରତି ଗାଁରେ ଟ୍ରଷ୍ଟି ରଖିବା ଫଳରେ କେଉଁଠି କେଶ୍ କୋର୍ଟକୁ ଯାଉଛି, କେଉଁଠି ତ ମାମଲତକାରମାନେ ଦଶ ପନ୍ଦର ଟଙ୍କା ଦେଇ ଦେଇ ସେଠି ତାଙ୍କର ରାଜତ୍ୱ ଚଳାଉ-ଛନ୍ତି । ଆଉ ଦେବୋତ୍ତର କିଛି ନାହିଁ, ସବୁ ମାମଲତଦାରମାନଙ୍କ ହାତରେ ଆମର ପନ୍ଦର ବର୍ଷ ହେଲା ଏହି ଆଇନ ହୋଇ କାର୍ଯ୍ୟକାରୀ ହୋଇଛି । ଏହା ଭିତରେ କଣ ଗୋଟିଏ Enquiry ହେବା ଉଚିତ ନୁହେଁ ଯେ ଏହା କେଉଁଠି କିପରି କାର୍ଯ୍ୟ କରୁଛି ଦେଖିବା ପାଇଁ ? ଏହା ପାଇଁ ଗୋଟିଏ ଅଲଗା ଫଣ୍ଡ କରାଯାଇଛି । ମୁଁ ଅନେକ ସମୟରେ କୁହେ ଆମର ଚରଖା ଫଣ୍ଡ କରାଯାଇଛି । ତାର କିଛି ହିସାବ ନାହିଁ । ସେହିପରି ଏହି ଫଣ୍ଡଟା ଚରଖା—ଚରିକରି ଖା ପରି ହୋଇଛି । ଏହାକୁ ଗୋଟିଏ Contribution ନାମ ଦେଇଛନ୍ତି, କି ମୁଁ ନ ଦେଇ ପାରିଲେ Certificate କରି ଘର କୁରୁକ କରି ନେଇଯିବେ । ଏହି ପରିସ୍ଥିତିରେ ସରକାରଙ୍କର କଣ ଉଚିତ ନୁହେଁ ଆମର ଏଥିରେ ଯାହା ଅସୁବିଧା ହେଉଛି ଗାଁରେ ଦଳ ଦଳ ହେଉଛନ୍ତି, ଏହାର କାରଣ ତଦନ୍ତ କରି ଦେଖିବା ଏହାକୁ କମିଶନର କଣ କରିବେ ? ତା' ପରେ ଆମର ଗାଁ ମାନଙ୍କରେ ଗୋଟିଏ କୋଠ ସଂପତ୍ତି ଅଛି । ଏଗୁଡ଼ିକ ଦିଅଁଙ୍କ ସାଙ୍ଗରେ ଲାଗିକରି ରହିଛି । ସରକାରଙ୍କର କଣ ଉଚିତ ନୁହେଁ ଏହି କୋଠ ସଂପତ୍ତି ପାଇଁ ଗୋଟିଏ ଆଇନ କରିବା ? ଏଗୁଡ଼ିକ କିଏ ଖାଇଯାଉଛି, ଏହାର ହିସାବ ନାହିଁ, ସେଥିପାଇଁ ମୁଁ କହୁଛି, ଏଥିପାଇଁ ଆଇନ ଆଗ କରିବା ଦରକାର । ତାହାହେଲେ ବହୁ ପରିମାଣରେ ଏହି ଦେବୋତ୍ତର କଥା ମିମାଂସା ହୋଇଯିବ ମୁଁ ଆଉ ବିଶେଷ କିଛି କହିବି ନାହିଁ । ଆଉ ବେଶି କହିଲେ ଚିଟା ଲାଗିବ । ଏ ବିଷୟରେ ମୁଁ କହିଲେ ଦଶ ପନ୍ଦର ଘଣ୍ଟା କହିବି, କାରଣ ଏ ବିଷୟରେ ମୁଁ ବହୁତ ଅନୁସନ୍ଧାନ କରିଛି । ଏଥିପାଇଁ କିଛି ବ୍ୟବସ୍ଥା ନରହୁ କିମ୍ବା କମିଶନର ରହିବେ ନାହିଁ ଏହା ମୋର ଇଚ୍ଛା ନୁହେଁ । ଏହିସବୁ ହେଉ , କିନ୍ତୁ ମୁଁ କହୁଛି, ବର୍ତ୍ତମାନପାଇଁ ଯେପରି Ordinance

ହୋଇଛି, ସେପରି ହେଉ । ଏ ଭିତରେ ଜଣେ ଅଫିସର ବା କମିଟି ହୋଇ ଏହିସବୁ ପନ୍ଦର ବର୍ଷ ଭିତରେ କଣ ପରିସ୍ଥିତି ସମାଜକୁ ପ୍ରଗତିଶୀଳ ଦିଗରେ ନେବାକୁ ହେବ, ସେମାନେ ଗୋଟିଏ Report ଦିଅନ୍ତୁ । ତା' ବାଦେ ଗୋଟିଏ ଆଇନ ଚିଠା କରିବା । ତାପରେ Select Committeeକୁ ପଠାଇବା । Select Committee ରେ ବଡ଼ବଡ଼ ଆଇନଜ୍ଞ ବା Advocate-Generalଙ୍କୁ ଡ଼କାଇ ତାଙ୍କ ସହିତ ପରାମର୍ଶ କରିବା । ଯେପରିକି ଏହା ସୁପ୍ରିମକୋର୍ଟ ଓ ହାଇକୋର୍ଟକୁ ଯାଇ ଯେପରି ଅବ୍ୟବସ୍ଥା ସୃଷ୍ଟି ନ'କରେ, ମୋର ଏଥିରେ ବହୁତ ସନ୍ଦେହ ରହିଛି । ମୁଁ ଆଇନଜ୍ଞ ନୁହେଁ ସେସବୁ କିଛି କହି ପାରିବି ନାହିଁ, କିନ୍ତୁ ଏହିସବୁ ସନ୍ଦେହ ଦୂର ହୋଇଯିବ– ଆମେ ଏ ବିଷୟରେ ଆଇନଜ୍ଞମାନଙ୍କ ପରାମର୍ଶ ନେଲେ । ଯେପରି Ordinance ଥିଲା, ସେପରି Ordinance କରି ଦିଅନ୍ତୁ, ପ'ରେ ଏହାକୁ ଭଲକରି ଆଇନ କରି ପାଶ୍ କରିବା । ସେଥିପାଇଁ ମୁଁ ଏହାକୁ Public Opinion ପାଇ ଯାଉବୋଲି କହିଛି । Public Opinionକୁ ଯାଉବୋଲି କହିବା ଅର୍ଥ କିଛି ସମୟ ନେଇ ଏହିସବୁ କାର୍ଯ୍ୟ ସେହି ସମୟ ଭିତରେ କରିବା ।

ଏସିଆ ମାଇନର ଯାହାକୁ କହୁଛନ୍ତି କିମ୍ବା କ୍ରିଟ ଯାହାକୁ କହୁଛନ୍ତି ସେଠାରୁ ବାହାରିଛି ସିଂହବାହିନୀ ଦୁର୍ଗା । ସେ ଆମ ଦେଶର ନୁହେଁ । ଏହି ଦୁଇ ପ୍ରକାରରୁ ଧର୍ମଟା କୌଣସିମତେ ଗୋଟାଏ ହୋଇଛି । ଏହାକୁ କହନ୍ତି ସନାତନ ଧର୍ମ । ସନାତନ ଅର୍ଥ ସର୍ବଦା ଜାତ, ନିତ୍ୟ, ନୂତନ । ମାନବର ଯେପରିପ୍ରଗତି ହେଉଛି ସେ ଅନୁସାରେ ଆମେ ସବୁବେଳେ ଘଟଣା ଚକ୍ରରେ ନିଜକୁ ମିଶାଇ ଦେଉଛୁ । କେତେବେଳେ ଦେବାଦେବୀଙ୍କ ଆକାର ପ୍ରକାର କ'ଣ ହେଉଛି, କେତେବେଳେ ବାଡ଼ି ବଂଧନ୍ତ ହେଲେ ସେମାନେ କାଳିଶି ଲଗି କହୁଛନ୍ତି, ନଡ଼ିଆ ଦେ, ପଇଡ଼ ଦେ, ଖେଚେଡ଼ି ଦେ–ଏ ବି ଧର୍ମ । ସେହି ଦେବୀଙ୍କୁ ମଧ୍ୟ ଆମେ ପ୍ରାର୍ଥନା କରୁଛୁ ଧନ ଦେ, ଯଶ ଦେ, ଆମେ ଏକଥା ମାଗୁଛୁ । ସେ ପୁଣି ହେଉଛନ୍ତି ସର୍ବଶକ୍ତି ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତବାଦ ଅନୁସାରେ ବ୍ରହ୍ମ ସାଙ୍ଗରେ ଶକ୍ତି ନ ରହିଲେ ସୃଷ୍ଟିର ପ୍ରକାଶ ହେବ ନାହିଁ, ସୃଷ୍ଟିର କ୍ରିୟା ହେବ ନାହିଁ, କର୍ମ ହେବ ନାହିଁ, କି କର୍ମର ସଫଳ ହେବ ନାହିଁ । ଘର ଦେବୀ, ବଣ ଦେବୀ କିମ୍ବା ରଜାଙ୍କ ଘର ଦେବୀ ଏଇ ଗୋଟିଏ ଜିନିଷ ଆମ ଭାରତୀୟ ସଂସ୍କୃତିରେ ବରାବର ଗଡ଼ି ଗଡ଼ି ଆସିଛି ଯାହାକି ପୃଥିବୀର ଅଧିକାଂଶ ସ୍ଥଳରେ ଲୋପ ପାଇଛି । ମୁଁ ଠିକ୍ କହିପାରିବି ନାହିଁ, ଚାଇନା ଦେଶରେ କ'ଣ ଘଟିଛି । କିନ୍ତୁ ପୃଥିବୀର କୁତ୍ରାପି ଏହିଭଳି ଘଟିଥିବା ମୁଁ ଜାଣିନାହିଁ । ଅଷ୍ଟ୍ରେଲିଆ ଓ ଆଫ୍ରିକାରେ ଯାହାକୁ କହନ୍ତି ଆଦିମ ଧର୍ମ ସେଇ ଆଦିମ ଧର୍ମ ବରାବର ସମାନ ଭାବରେ ଆମ ଭିତରେ ରହି ଆସିଛି । ଯେତେ ପ୍ରକାର ପ୍ରଚାର ହେଉ, ଯେତେ ପ୍ରକାର ଦର୍ଶନ ହେଉ, ଏ ସମସ୍ତଙ୍କୁ ଏକ କରି ସମାନ ଭାବରେ ଆମେ ବରାବର ଉଠିଥିଲୁ । ସେଇଟା ହେଉଛି ଆମର ଧର୍ମ, ସେଇଟା ହେଉଛି ଆମର ବିଶେଷତ୍ୱ । ଏହି ପ୍ରଚାର ଯେଉଁଟାକୁ କହୁଛନ୍ତି Revolution ସେ ବରାବର ଆମ ଧର୍ମକୁ ଆକ୍ରମଣ କରିଛି କିନ୍ତୁ ଧ୍ୱଂସ କରିପାରି ନାହିଁ । ନାନା ଭାବରେ ସେ ଆମ ଭିତରେ ପଶି ଆମର ହୋଇଛି । ଆମର ବୈଷ୍ଣବ ଧର୍ମ ଓ ଅନ୍ୟାନ୍ୟ ଭକ୍ତି ଧର୍ମ ଅଛି । ଆମେ ନିଜେ ତାକୁ ଆପଣାର କରି ନେଇଛୁ । କିନ୍ତୁ ଆଜି

ଯାହା ହେଉଛି ଏହା ଭିତରେ, ସେଇ ପାରମ୍ପରିକ ସନାତନ ଧର୍ମ ଯାହା କି ସର୍ବଦା ଜାତ, ନିତ୍ୟ, ନୂତନ, ପରିସ୍ଥିତି କଳନାରେ ଆମେ ଠିକ୍ କରି ନିଜକୁ ନେଇ ଯାଉଛୁ ଏବଂ ଯେଉଁ ଅବସ୍ଥା ଆସି ପହଞ୍ଚିଛି ସେ ଅବସ୍ଥାରେ ଆମେ ନିଜ ଧର୍ମକୁ ଧରି ପାରିଛୁ କି ନାହିଁ ବିଗ୍ଭରିବାର କଥା । ଆଟମ୍ ବମ୍ ଆସିଲାବେଳେ ଆମେ ଭାରତର ହିନ୍ଦୁଧର୍ମର ଚର୍ଚ୍ଚା କରୁଥାଇଁ ଏବଂ ହିନ୍ଦୁ ଧର୍ମ ରକ୍ଷା କରୁଥାଇଁ । କିନ୍ତୁ ଏ ଦେଶରେ ପ୍ରଥମରୁ ଈଶ୍ୱର ନ ଥିଲେ । ଈଶ୍ୱର କଳ୍ପନାମାନବ କରିଥିଲା ଦାର୍ଶନିକ ଭାବରେ । ଈଶ୍ୱର ଥିଲେ ବୋଲି କୌଣସି ପ୍ରମାଣ ନାହିଁ । ଆମେ ସେଇ ଅବସ୍ଥାରୁ ଏପର୍ଯ୍ୟନ୍ତ ଆସିଛୁ । ଖ୍ରୀଷ୍ଟିଆନ ଓ ମୁସଲମାନମାନେ ଈଶ୍ୱରଙ୍କୁ ଯେପରି ଧରିଲେ ସେଥିରେ ଯେଉଁମାନେ କମ୍ୟୁନିଷ୍ଟ ବାହାରିଲେ ସେମାନେ ଦେଖିଲେ ଈଶ୍ୱର ବୋଇଲେ ଗୋଟିଏ ଆଧ୍ୟାତ୍ମିକ ସମ୍ରାଟ । ତାଙ୍କ ପାଖରେ ଆତମ୍ ସମର୍ପଣ କରି ମନୁଷ୍ୟ ତାଙ୍କୁ ସବୁ ମାଗିବ । ଏହାହେଲେ ମାନବର ସ୍ୱାଧୀନତା ରହିବ କିପରି ? ଈଶ୍ୱର ହେଲେ ସାମ୍ରାଜ୍ୟବାଦର ମୂଳ । ଏଇଥିରୁ ସେମାନେ ପ୍ରଥମେ ବିପ୍ଳବ କଲେ ଈଶ୍ୱରଙ୍କ ବିରୁଦ୍ଧରେ ଏବଂ ଈଶ୍ୱରଙ୍କୁ ଫିଙ୍ଗିଦେଲେ । ଈଶ୍ୱରଙ୍କୁ ଫିଙ୍ଗି ଦେଲାପରେ ଆଉ କିଛି ରହିଲା ନାହିଁ, ସେ ସ୍ଥାନଟା ଖାଲି ହେଲା । ଆମର ହେଉଛି ସନାତନ ଧର୍ମ । ଏହି ଧର୍ମ ରହିଲେ ଆମେ ରହିବା, ତାହା ନ ହେଲେ ଆମର ସେଇଟା ହେଉଛି ଯୁଦ୍ଧ । ରୁଷିଆ ଯେତେବେଳେ ଆମ ଈଶ୍ୱରଙ୍କୁ ଫିଙ୍ଗିଦେଲେ ଈଶ୍ୱର ଚାଲିଗଲାପରେ ରହିଲା କେବଳ ଶୂନ୍ୟ । କିନ୍ତୁ ଶୂନ୍ୟ ତ ରହିବ ନାହିଁ । ଯେଉଁଠାରେ ଈଶ୍ୱର ଥିଲେ ସେମାନେ ନେଇ ସେଠାରେ ଥୋଇଲେ ଆଟମ୍ ବୋମ୍ । ସେଇଟା ନ ରହିଲେ ଅହିଂସା ଭାବରେ କହ ବା ଗାନ୍ଧୀ ଭବରେ କହ ତାର ମୂଳ ମନ୍ତ୍ର ହେଉଛି ସାମ୍ୟବାଦ, ଆମର ଜଗନ୍ନାଥ ଧର୍ମ । ସେଇଟା ହେଉଛି ସମଗ୍ର ମାନବ ସମାଜକୁ ସମାନଭାବରେ ଦେଖିବା । ପରପାଇଁ କାମକରିବା ହେଉଛି ଏ ଧର୍ମର ମୂଳ ମନ୍ତ୍ର କାହିଁକି ନା ସମସ୍ତେ ଈଶ୍ୱରଙ୍କ ପୁଅ-ଝିଅବୋଲି ଆମେ ସମସ୍ତଙ୍କପାଇଁ କାମ କରୁଥିଲୁ । ସେଇଟା ଯଦି ଗଲା ଆଉ କିଛି ରହିଲା ନାହିଁ । ତେଣିକି ପରସ୍ପରକୁ ମାରିବେ ଆଟମ୍ ବୋମ୍ ଛଡ଼ା ଉପାୟ ନାହିଁ । ସେଥିପାଇଁ ମୁଁ କହୁଛି ହିନ୍ଦୁ ଧର୍ମ ଆମେ ଚର୍ଚ୍ଚା କରୁଥାଇଁ । ହିନ୍ଦୁ ଧର୍ମର ଏହି ମଜ୍ଜା ଆମେ ବାହାର କରିବା । ମୁଁ ତ କହୁଥିଲି ସରକାରଙ୍କର ହୃଦୟ ନାହିଁ, ଚିନ୍ତା ଅଛି କି ନାହିଁ ମୁଁ କହି ପାରିବି ନାହିଁ । କିନ୍ତୁ ଏହା ବାହାର କରିବା ଦିଗରେ ଆମେ କିଛି କରୁଥାଇଁ କି ? ଆମେ କିନ୍ତୁ ଦେଖି ଆସୁଛୁ ଏହି ଘରୋଇ ଓ ଅଘରୋଇ କରି କରି ହିସାବକିତାବ ଯୋଡ଼ି ୧୯୩୯ ଠାରୁ ଆମେ ଲାଗିକରିଆସୁଛୁ ଏବଂ ଘରେ ଘରେ କନ୍ଦଳ ସୃଷ୍ଟି ହେଉଛି । ଏ ମୋର ଗୋଟିଏ ଅନୁଭୂତି । ଧର୍ମକୁ ନିର୍ମଳ କରିବାପାଇଁ ଆମେ ଆଇନ କରିବାକୁ ଯାଉଥାଇଁ କିନ୍ତୁ ଏ ଗୋଟାଏ ନିର୍ମଳ ଅପକ୍ରିୟା ଆରମ୍ଭ ହେଲା । ଆମେ ଧର୍ମକୁ ବଢ଼ାଇବାକୁ ଯାଉଥାଇ ଏହା ନୁହେଁ । କେତେଗୁଡ଼ିଏ ସଂପତ୍ତି ଅଛି, ତାକୁ କେମିତି ବ୍ୟବହାର କରିବା ଆମର ସବୁବେଳେ ଈର୍ଷା ହେଉଛି, ଅନ୍ୟଜଣେ କାହିଁକି ଖାଇଗଲା" ଅତଏବ ତାକୁ ଆମେ ନେଇ ଆଇନରେ ରଖୁଛୁ । ମୁଁ କହୁଥିଲି ଯେ ଆମେ ଯେତେବେଳେ ଆଇନ୍ କରୁଥାଇ, ଆମେ

ଅମୁକ ଲୋକ ଏମିତି କଲା, ତାକୁ ଯବତ କରିଦିଅ, ଏଇଆ ଆମେ ଯେ ଅନୁକରଣ କରି କରୁଛୁ, ଏଇଟା ମୂଳରୁ ବୁଝିବା ଉଚିତ । ଆମେ ଅନୁକରଣ କରୁନୁ, ଏଟା ବାରମ୍ବାର ଶୁଣି ମୋର ମନେପଡୁଛି, ଇଂରାଜୀରେ ଯାହା କୁହନ୍ତି, " Lady protests a little too much" ଆମେ ଯଦି ଅନୁକରଣ କରୁ ନ ଥାଇଁ ତା'ହେଲେ ଦେବଦାସୀ ପ୍ରଥା ଆସିଲା କେଉଁଠୁ ? ଆମେ ତ ବରାବର ଅନୁକରଣକରି ଆସୁଥାଏଁ ଏବଂ ସେଥିପାଇଁ ଅନେକ ଭୁଲ୍ ମଧ୍ୟ ହୋଇ ଯାଉଛି । ଆମର ଅନୁକରଣ ଯୋଗୁଁ ଦେବଦାସୀ ପ୍ରଥା ରହି-ଯାଇଥିଲା । ଏହିପରି ଗୋଟାଏ ବିଡ଼ମ୍ବନା ଗ୍ଲିଛି । ଏହିପରି ଆମେ ଅନେକ ଆଇନ୍ କରିଛୁ, କିନ୍ତୁ ଆମର ଉଦ୍ଦେଶ୍ୟ ପୂରଣ ହୋଇ ନାହିଁ । ଆଇନ୍‌ମନ୍ତ୍ରୀ କହିଛନ୍ତି ସେ ବିଗ୍ରକରି ଆଉ ଥରେ Amendment ଆଣିବେ । ବର୍ତ୍ତମାନ ସୁପ୍ରିମକୋର୍ଟର ରାୟ ଫଳରେ ଯାହା ଦରକାର ପଡିଲା, ତାହା କରାଯାଉଛି । ଭଲ କଥା, ତାହା କରି ପାରନ୍ତି କିନ୍ତୁ ସେଥିରେ Non-hereditary trustee କାହିଁକି ଯୋଗ କରାଗଲା ମୁଁ ବୁଝି ପାରୁନାହିଁ । ଆଜିକାଲି ଏଟା ଗୋଟେ Cancer ରୋଗପରି ପଶିଛି । ବଡ ବଡ ଜାଗାରେ ଟଙ୍କାପଇସା ଅଛି, ସେଠି ଏ ସବୁ ହୋଇପାରେ, କିନ୍ତୁ ଛୋଟ ଛୋଟ ମଠ ମନ୍ଦିରମାନଙ୍କରେ ଯେଉଁଠି 100/200 ଟଙ୍କା ଆୟ, ସେଠି ଅବସ୍ଥା କ'ଣ ହେଉଛି ଦେଖନ୍ତୁ । ମୋର ସଙ୍ଗରେ ମୋର Constituencyକୁ ଗ୍ଲଲନ୍ତୁ, ମୁଁ ଗୋଟିଏ ଦୁଇଟି ଉଦାହରଣ ଦେବି । ମାମଲତକାର ଲୋକେ କିଏ ଟ୍ରଷ୍ଟି ହେବ, କିଏ ନ ହେବ, ସେଥିପାଇଁ ଟଣା ଓଟରା ଗ୍ଲିଛି । ସେଥିପାଇଁ ମୁଁ ମୋ ନିଜର ସଭାର, ଦଳ ବା ମତ ବିରୁଦ୍ଧରେ ସରକାରୀ ଲୋକ ହୁଅନ୍ତୁ ବୋଲି ପ୍ରସ୍ତାବ କରିଛି କିନ୍ତୁ ସେ ପ୍ରସ୍ତାବଟା ଗୃହୀତ ହେଲା ନାହିଁ । କେହି ଯେ ଇଛା କରି ଗ୍ରହଣ କଲେ ନାହିଁ, କେହି ମୁଁ ଦୋଷ ଦେଉନାହିଁ କିନ୍ତୁ ଦୁଃଖର କଥା ଯାକୁ ବୁଝୁ ନାହାନ୍ତି । ଯେତେବେଳେ କୁହା ଗଲା, ଲୋକମତକୁ ଦିଆଯାଉ, ଲୋକମତ ବୋଇଲେ ସମସ୍ତେ ମନେ କରୁଛନ୍ତି ପୁରୀର ନୋଳିଆମାନଙ୍କର ମତ ବା ବଡ ଦାଣ୍ଡରେ ଯେଉଁମାନେ ବସିଛନ୍ତି ତାଙ୍କର ମତ, କିନ୍ତୁ ଲୋକମତବୋଇଲେ ଯେଉଁମାନେ ଏ ବିଷୟରେ ଜାଣନ୍ତି, ତାଙ୍କର ମତକୁ ବୁଝାଏ । ମୁଁ ବଡ ବ୍ୟାକୁଳ ହୋଇଥିଲି, ଏଠି Advocate-General ନାହାନ୍ତି । କେହି କେହି କହିଲେ Advocate-General କାହିଁକି ଆସିବେ ? ଏହା ଆଗରୁ ସେ ଆସିଛନ୍ତି ଏବଂ କୌଣସି କୌଣସି ଘଟଣାରେ ତାଙ୍କର ଆସିବା ଉଚିତ । ସେ ଅନେକ କଥା ଜାଣନ୍ତି । ସେ ଏ ଆଇନ୍ ପ୍ରଣୟନରେ ଆମକୁ ଅନେକ ସାହାଯ୍ୟ କରି ପାରନ୍ତେ, ଅବଶ୍ୟ କାହାରି ମନରେ କଷ୍ଟ ଦେବାପାଇଁ ମୁଁ କହୁନାହିଁ କିନ୍ତୁ ଆମ ଭିତରେ ଆଇନ୍ ଜାଣିବାବାଲା ବା ବ୍ୟବସାୟ କରିବାବାଲା ଲୋକେ ଥାଇ ପାରନ୍ତି କିନ୍ତୁ ଏ ବିଷୟରେ ଯେଉଁମାନେ ବିଶେଷଜ୍ଞ ବା Jurist, ସେଭଳି ବିଶେଷଜ୍ଞ କେହି ନାହାଁନ୍ତି ଏ କଥା ଅସ୍ୱୀକାର କରିହେବ ନାହିଁ । ଲୋକମତ ବୋଇଲେ ଯେଉଁ ଲୋକଙ୍କର ମତ ଆମେ ପାଇଲେ ଆମ କାର୍ଯ୍ୟରେ ସହାୟ ହେବ, ଯେଉଁମାନେ ଦେବୋତ୍ତର ବିଭାଗ ବିଷୟରେ ଜାଣନ୍ତି ସେଇପରି ଲୋକଙ୍କର ମତ ନେବା ଦରକାର । ପୁରୀର ନୋଳିଆମାନଙ୍କର

ବା ବଡ ଦାଣ୍ଡର ଲୋକଙ୍କର ମତ ନୁହେଁ । ତା'ପରେ ଦୃଷ୍ଟି ହେବାରେ ଏ ଯେଉଁ ବିତ୍ପାତ ଦେଶରେ ପଶିଛି, ଏ ବିତ୍ପାତ୍ ଭିତରେ ଧର୍ମ ଧ୍ୱଂସ ହେବାକୁ ବସିଛି । ଯାହାକୁ କୁହନ୍ତି 'ପ୍ରମାଣ ଭାର' ବା Burden of proof, ଏଇଟା ଲୋକଙ୍କ ଉପରେ ପଡିବ ମୁଁ ଭାବିଥିଲି ଏଟା ସଂଶୋଧନ ହୋଇଗଲା, ସେଥିପାଇଁ ମୁଁ ଖୁସି ହୋଇଥିଲି କିନ୍ତୁ ସେ ବିଷୟରେ ପୁଣି ଆଉ ଗୋଟିଏ ସ୍ଥାନରେ ସେ ବିଷୟଟିକୁ ଭର୍ତ୍ତି କରାଯାଇଛି । ମୁଁ କହିବି ଇଂରାଜୀରେ ଯାହା କୁହନ୍ତି Black mailing ଏହା ଠିକ୍ ସେଇଆ । ମଫସଲରେ ମାମଲତ୍କାର ସବୁ ଗାଁରେ ରହିବେ ଏବଂ ସେମାନେ ଗାଁ ଗାଁ ବୁଲି ଲୋକଙ୍କୁ ଭୟ ଦେଖାଇ ଟଙ୍କା ଆଦାୟ କରିବେ । ସେମାନେ କହିବେ ୫୦ ଟଙ୍କା ଦିଅ, ମୁଁ କିଛି କରିବି ନାହିଁ, ନ ହେଲେ ଖଣ୍ଡେ ଦରଖାସ୍ତ ଗୁଞ୍ଜି ଦେବି । ସରକାର ଯେତେବେଳେ ଶାରଦା ଆଇନ୍ କରିଥିଲେ ଏବଂ ଯେତେବେଳେ ସେ'ଟା ପୋଲିସ୍-ଧର୍ତ୍ତବ୍ୟ ଅପରାଧ ନ ଥିଲା, ସେତେବେଳେ ଯେ କହିବ ୧୪ ବର୍ଷ ହୋଇନାହିଁ, ସେ ୧୦୦ ଟଙ୍କା ଆଗେ ଜମା ରଖିବ । ସେପରି କିଛି ଏଥିରେ ଅଛି କି ? ଦେବୋତ୍ତର ବିଭାଗର Inspector ମାନେ ମଧ୍ୟ ଟଙ୍କା ପାଇଁ Private କରାଇ ଦିଅନ୍ତି । ଏହିପରି ନାନାଦି ଅସୁବିଧା ଆସି ପହଞ୍ଚିବ । Inspector enquiary କରି ଖଣ୍ଡେ ରିପୋର୍ଟ ଦେବେ ଏବଂ ଲୋକେ ଏଥିପାଇଁ ଦୌଡି ଦୌଡି କରି ହଜାରେ ଟଙ୍କା ଖର୍ଚ୍ଚ କରିବେ । ଏ Department ଟାରେ ତ ନାନା ପ୍ରକାର କାଣ୍ଡ ଘଟୁଛି ଏ ଆଇନ୍‌ର ସୁଯୋଗ ନେଇ କିପରି କାହାକୁ ଯବତ୍ କରିବ ଏ ଯାହା ବର୍ତ୍ତମାନ ଚାଲିଛି ତାହା ସେହିପରି ଚାଲିଥିବ । ଅବଶ୍ୟ ଯେଉଁମାନେ ନୂତନ ଓକିଲ ହୋଇଛନ୍ତି ସେମାନେ ଗାଁରେ ବୁଲି ଏପରି ଦରଖାସ୍ତ କରାଇ ପାରିଲେ ତାକୁ ଓକିଲାତି କରିବାର ସୁଯୋଗ ମିଳିବ । ମୁଁ ବର୍ତ୍ତମାନ କହୁଛି, ଆହୁରି ୨ ବର୍ଷ ଅଛି, ଆଉ କିଛି ନ ହେଉ ନା କାହିଁକି ମୁଁ କହୁଛି, ଏହା ପଛରେ ଆମର ସମସ୍ତ ସଦିଚ୍ଛା ଅଛି । ସେମାନେ ଅନୁସନ୍ଧାନ କରନ୍ତୁ ଏବଂ ଅନୁସନ୍ଧାନ କରି ଲୋକଙ୍କର ଯେପରି ମଙ୍ଗଳ ହେବ, ଦେବୋତ୍ତର ଯେପରି ପ୍ରତିଷ୍ଠା କରି ପାରିବେ, ସେହିପରି ଗୋଟିଏ ଆଇନ୍ ବ୍ୟବସ୍ଥା ସଭାରେ ଆଣନ୍ତୁ ଏତେଦିନ ତ ଲୋକେ ଟଙ୍କା ନେଇଗଲେ, ଆଉ ୫ ହଜାର, ୧୦ ହଜାର ବା ଲକ୍ଷେ ଟଙ୍କା ନେଇଗଲେ ସୃଷ୍ଟି ପ୍ରଳୟ ହୋଇ ଯିବନାହିଁ । ଏ ଦେଶରୁ ବହୁତ ଟଙ୍କା ଚାଲିଯାଇଛି । ଯେଉଁ ଗୁଡିକୁ ଧର୍ମାନୁଷ୍ଠାନ ବୋଲି କୁହାଯାଇଛି ସେ ଗୁଡିକ ଧର୍ମାନୁଷ୍ଠାନ ନୁହେଁ । ସେ ଗୁଡିକ ହେଉଛି, ଦାତବ୍ୟ ଅନୁଷ୍ଠାନ । ଧର୍ମାର୍ଥରେ ଦିଆଯାଇଥିଲା କିନ୍ତୁ ସେଥିପାଇଁ ଯେ ସେ ଗୁଡାକ ଧର୍ମାନୁଷ୍ଠାନ ହୋଇଗଲା, ତାହା ନୁହେଁ । ମୁଁ ସରକାରଙ୍କୁ ସାବଧାନ କରାଇ ଦେଉଛି ସେମାନେ ନାନା ଉପାୟରେ ଏ ଆଇନ୍‌ରୁ ଖସି ଯିବେ ଏବଂ ଆମର ସବୁ ପରିଶ୍ରମ ଆଦର୍ଶ ଏବଂ ଉଦ୍ଦେଶ୍ୟ ପଣ୍ଡ କରି ଦେବେ । ଧର୍ମାର୍ଥରେ ଯଦି କେହି କିଛି କରିଥାଏ ତା' ହେଲେ ଆମେ ସେମାନଙ୍କୁ ଧର୍ମ ଅନୁଷ୍ଠାନ ବୋଲି ବିଚାରି ତାଙ୍କ ପଛରେ ଲାଗିବା । ସବୁ ଧର୍ମାର୍ଥରେ ଦିଆଯାଇଛି, କେଉଁ ଉଦ୍ଦେଶ୍ୟରେ କୁହା ଯାଇ ନାହିଁ । କହୁଛନ୍ତି ଦାତାର ମନବାଞ୍ଛା ପୂର୍ଣ୍ଣହେଉ । ଦାତା କହିଥିଲେ କାଙ୍ଗାଳ ଭୋଜନ ଦେବ । ୧୦ ବର୍ଷ ଭିତରେ ହୁଏତ ଗୋଟିଏ ଆଇନ୍

ହୋଇଯିବ, କେହି ଭିକ ମାଗି ପାରିବେ ନାହିଁ । ଯେ ମାଗିବ ଜେଲ୍ ଯିବ । ଜେଲ୍ ଭୟରେ ଭିକ ମାଗିବେ ନାହିଁ । କାଙ୍ଗାଳ ଆସିବେ କେଉଁଠି ? କାଙ୍ଗାଳ ଭୋଜନ ହେବ କେଉଁଠୁ ? ତେଣୁ ପରିସ୍ଥିତି ନେଇ ସବୁ କରିବାକୁ ହେବ । ଖାଲି ଯା ଥିଲା, ଆମେ କରିବୁ କହିଲେ ହେବ ନାହିଁ । ଯାହା କହିଲେ Burden of proof ଏଥିରେ ନୂଆ କିଛି ଦେଖୁ ନାହିଁ । କିନ୍ତୁ ଆପଣ ଦେଖନ୍ତୁ ଜଣେ ଯଦି ମିଛରେ କହିବ କ'ଣ ହେବ, ଗୋଟିଏ ବ୍ୟବସ୍ଥା ରଖିବା ଉଚିତ । ତାଙ୍କର Deposit forfeit ହେବ, ତା' ହେଲେ କେହି ଡରି ମିଛ ଖବର ଦେବାକୁ ସାହସ କରିବେ ନାହିଁ । ଆଉ ଗୋଟିଏ କଥା ଶେଷରେ କହୁଛି । ସରକାର ନ ବୁଝି ନ ବିଚାରି ଏପରି ଆଇନ୍‌ଗୁଡିକ ଶେଷ ମୁହୂର୍ତ୍ତରେ ଆଣୁଛନ୍ତି ଫଳ ହେଉଛି କ'ଣ ଆମ ପାଖରେ କିଛି Materials ନାହିଁ । ଆମର ସେସବୁ ପଢି ବୁଝିବାର ସମୟ ନାହିଁ । ଏହିପରି Amendment ସବୁ ଆଣି ଆମଠାରୁ ପାସ୍ କରାଇ ନେବାକୁ ବସିଛନ୍ତି । ଆମକୁ ଗ୍ରହଣ କରି ନେବାକୁ କହୁଛନ୍ତି । ଏଟା ଠିକ୍ ନୁହେଁ ଆମେ ଗୋଟିଏ ଭଲ ଜିନିଷ ତିଆରି କରିବା, ଆମକୁ କୁହାଯାଉଛି ସହଯୋଗ କର । ତେବେ ଏ ବିପତ୍ତି କାହିଁକି ? ଏଟା ଶିଷ୍ଟାଚାର ହେଉ ନାହିଁ, ଏଟା ପୁରାପୁରି ଅଶିଷ୍ଟାଚାର ତଥାପି ମୁଁ କହୁଛି ଏଥିରେ ମଙ୍ଗଳ ହେଉ । ବହୁତ ସମୟ ହେଲାଣି କ୍ଷମା କରିବେ । ବିଜ୍ଞମାନଙ୍କ ସାମନାରେ ଅନ୍ତରେ ଆଲୋଚନା କରିବା କଥା । ସେମାନେ ବିଜ୍ଞ ନ ହେଲେ ବିଜ୍ଞ ହେବେ । ଏଥିରେ କୌଣସି ଦୁରଭିସନ୍ଧି ନ ରହୁ । ବୁଝି ବିଚାରି ଶୀଘ୍ର ସଂଶୋଧନ ଆଣନ୍ତୁ । ଏହାର ଭଲ ଫଳ ହେଉ, ଏହି ଆଶୀର୍ବାଦ କରୁଛି ।

* * * * * * *

ଶ୍ରୀ ନୀଳକଣ୍ଠ ଦାସ: ବାଚସ୍ପତି ମହାଶୟ, ଆମେ 2/3 ଦିନ ଲାଗି ଏ ଆଇନ୍‌କୁ ଧାର୍ଯ୍ୟକଲୁ । ଏହା ହିନ୍ଦୁ ଦେବୋତ୍ତର ଆଇନ୍ ହୋଇଥିବାରୁ ମୋର ବୟସ ଦୃଷ୍ଟିରୁ ମୁଁ ଆଶୀର୍ବାଦ କରୁଛି ଏହା ଖୁବ୍ ଭଲଭାବରେ କାମ ହେଉ । ମନ୍ତ୍ରୀ ମହାଶୟ ଓ ଅର୍ଥମନ୍ତ୍ରୀ ମଧ୍ୟ ଆମକୁ ନିର୍ଭର ଦେଇଛନ୍ତି କ'ଣ କାମକରି ଦେଶକୁ ସନ୍ତୁଷ୍ଟ କରିବାକୁ ହେବ, ଆମକୁ ସନ୍ତୁଷ୍ଟ କରିବାକୁ ପଡ଼ିବ । ମୁଁ ଆଶାକରୁଛି ଏବଂ ଅନୁରୋଧ କରୁଛି ଅତି ଆନ୍ତରିକତାରେ ସେସବୁ ପୂରଣ କରିବେ । ସେ କାର୍ଯ୍ୟସବୁ କରିବେ । ଗୋଟିଏ କଥା ହେଉଛି ଏ ଆଇନ୍‌କୁ କଥାରେ ଘୋଡ଼ାଇଲେ ଆମ ଦୋଷଗୁଡ଼ାକ ଚାଲିଯିବ ନାହିଁ । ଅନେକ ସଭ୍ୟ କହିଗଲେ ଏସବୁ ଆଇନ୍ କରିବାରେ ଯାହା ଦରକାର ଆମେ ତାହା କରୁ ନ ଥାଇ । ମୁଁ ପ୍ରଥମରୁ କହିଛି ଏପରି ଗୋଟିଏ ଦେବୋତ୍ତର ଆଇନ୍ ଧର୍ମକୁ ରକ୍ଷାକରିବାପାଇଁ ଆରମ୍ଭ କରିନାହାନ୍ତି । ଧର୍ମ ସମ୍ବନ୍ଧରେ ମୋର ନିଜର ଭିନ୍ନ ମତ ହେଉ ପଛକେ ଯେଉଁମାନେ ଏ ଆଇନ୍‌କୁ ଚାହିଁ ବସିଛନ୍ତି ସେମାନେ ଭାବୁଛନ୍ତି କିପରି ହିନ୍ଦୁଧର୍ମ ରହିବ, ତା'ର ବୃଦ୍ଧିହେବ । ହିନ୍ଦୁଧର୍ମରେ ଯାହା ଆଦର୍ଶ, ଯାହା ପ୍ରେରଣା, ଯାହା ବା କ୍ରିୟା ସେସବୁ କିମିତି ସମାଧାନରେ ରହିବ ଯେଉଁମାନେ ଏହା ଜାଣନ୍ତି ସେମାନେ ଏ କଥା ଆଶାକରନ୍ତି । କିନ୍ତୁ ଅନେକ ସମୟରେ ଯେପରି କୁହାଯାଇଛି, ସରକାର ଗୋଟିଏ ବ୍ୟକ୍ତି ହେଲେ ମଧ୍ୟ ହୃଦୟହୀନ । ତାଙ୍କଠାରୁ

ଏଭଳି ଗୋଟିଏ ଆଶା ଯେଉଁମାନେ କରୁଛନ୍ତି ସେମାନେ ମୂଳରୁ ଭୁଲ୍ କରୁଛନ୍ତି । ବିଶେଷରେ ଆଜିକାଲି ପୃଥିବୀରେ ସରକାରମାନଙ୍କ ସଙ୍ଗେ ଆମ ସରକାର ଯେଉଁ ଆଡ଼କୁ ଗତିକରୁଛି ସେଥିରେ ଧର୍ମ ବା ପ୍ରାଣ ବୋଲି କିଛି ନାହିଁ । କେବଳ ହିସାବକିତାବ କଥା ରହୁଛି । ଟଙ୍କା ଆସିଲା, ଟଙ୍କା ଗଲା, କେତେ ଖର୍ଚ୍ଚ ହେଲା ହୁଏତ ଦେଉଳ ଯାତ୍ରୀମାନେ ଆସି 5 ଟଙ୍କା ଦେଲେ, କେତେ ଟଙ୍କାର ଖାଇଲେ, ଠିକ୍ ସମୟରେ ତାଙ୍କୁ ଭୋଗ ଦିଆଗଲା କି ନାହିଁ କେବଳ ଏଗୁଡ଼ିକ ହେଉଛି । ଯେତେ ନିଷ୍ଠାରେ କରନ୍ତୁ ତାଙ୍କ କମିଶନର କେବଳ ଦେଖିବେ, ବଜେଟ୍ ହେଲା କି ନାହିଁ, ଠିକ୍ ଖର୍ଚ୍ଚ ହେଲା କି ନାହିଁ, ଗୃପବେଳେ ଠିକ୍ ପହଞ୍ଚିଗଲେ କି ନାହିଁ, ଯାହା ଭୋଗ ହୋଇଥିଲା ତାହା ବଣ୍ଟାହୋଇ ସମସ୍ତେ ଖାଇଲେ କି ନାଁ, ଏହାହେବ । ଏଥିରେ ଧର୍ମ ରହିବ ନାହିଁ । ହିସାବ କିତାବ, ଦେଣ ନେଣ ଖୁବ୍ ହେବ କିନ୍ତୁ ଧର୍ମ ବୋଇଲେ ଲୋକେ ଯାହା ଆଶାକରି ବସିଛନ୍ତି ମୁଁ ନିଜେ କହେ କରେ ବା ନକରେ ସେ ଜିନିଷ ଏଥିରେ ରହିବ ନାହିଁ, ଏହାର ଭିତରେ ରହିବ ନାହିଁ, ଏହାର ଶରୀରରେ ରହୁନାହିଁ, ଏହାର ପୁରୋଦୃଷ୍ଟିରେ ରହିବ ନାହିଁ । କାହିଁକି ମୁଁ ନିଜେ ଜାଣେ ମୋ ଜୀବନର ଅନୁଭୂତି ସମସ୍ତଙ୍କଠାରୁ ଟିକିଏ ଦୀର୍ଘତର ବରଂ ଦୀର୍ଘତମ । କିନ୍ତୁ ମୁଁ ଜାଣେ ଆଗେ ଧର୍ମ ବୋଇଲେ ଯାହା ଥିଲା ହୁଏତ ପୂଜକମାନେ ବା ସେବାୟତମାନେ ଖାଇ ଯାଉଥିଲେ, ଜମାଇ ଦେଇଥିଲେ, 20 ଭରଣ ଧାନ ଆଣି ତାଙ୍କୁ କମ୍ ଦେଖାଉଥିଲେ । ସେସବୁ ଭିତରେ ଭାବ ଧାରା ଯାହା ଥିଲା ଆମ ଲୋକଙ୍କ ଭିତରେ ତାହା ଆଜିକାଲି ଆଦୌ ନାହିଁ । ବିଶେଷରେ ଏ କଥା ସମସ୍ତେ ବୁଝନ୍ତୁ । ମୁଁ କହୁଛି ଗୋଟିଏ ଅନୁସନ୍ଧାନ କରନ୍ତୁ, ମୁଁ ନିଜେ ତାଙ୍କ ଆଗରେ ପ୍ରମାଣ ଦେବି । ଏହି ଦେବୋତ୍ତର ବିଷୟରେ । ମୋର ଧାରଣା ଦେବୋତ୍ତର ଆଇନ୍ ହେଲା ପରେ ବଡ଼ ବଡ଼ ମଠକୁ ଛାଡ଼ି ଦିଅନ୍ତୁ । ଆମର ସାଧାରଣ ଧର୍ମ ବିଷୟରେ କ'ଣ ହେଉଛି ଦେଖାଯାଉ । ଆମ ଧର୍ମ ଗୋଟିଏ ହେଉଛି ଘରୋଇ, ଆଉ ଗୋଟିଏ ହେଉଛି ସର୍ବସାଧାରଣ । ବାବିଲୋନ କାଳରୁ ଅର୍ଥାତ୍ ଆଜକୁ 5 ହଜାର ବର୍ଷତଳେ ଭାରତଠାରୁ ଇଜିପ୍ଟ ପର୍ଯ୍ୟନ୍ତ ସମସ୍ତ ପୂର୍ବ ଭୂଖଣ୍ଡରେ ଏଇଟା ଦୁଇ ପ୍ରକାରରେ ଥିଲାବୋଲି ପ୍ରମାଣ ମିଳିଛି । ବଡ଼ ବଡ଼ ରାଜାଙ୍କର ଯେଉଁତକ ଥିଲା ସେଗୁଡ଼ିକ ସର୍ବସାଧାରଣ ବାକି ଗୁଡ଼ିକ ଘରୋଇ । ସେ ପରଂମ୍ପରା ଆଜିପର୍ଯ୍ୟନ୍ତ ରହି ଆସିଛି ।

**( The Budget Supplementary Statement of Expenditure for 1954-55**

## 12. 1954-55 ବର୍ଷପାଇଁ ଅନୁପୂରକ ବଜେଟ୍ ବ୍ୟୟପତ୍ର

1954-55 ବର୍ଷର ସପ୍ଲିମେଣ୍ଟାରୀ ବଜେଟ୍ ଉପରେ କହିବାକୁ ପଣ୍ଡିତ ନୀଳକଣ୍ଠ ବିଶେଷ ଭାବରେ ପ୍ରଚଳିତ ପ୍ରାଥମିକ ଶିକ୍ଷାର ଦୋଷତ୍ରୁଟିକୁ ସମାଲୋଚନା କରିବା ସହିତ ସେଗୁଡିକୁ ଦୂର କରିବା ପାଇଁ ଉପାଦେୟ ପରାମର୍ଶମାନ ପ୍ରଦାନ କରିଛନ୍ତି ।

ମାଟ୍ରିକ୍ ପାସ୍ ବେକାର ଯୁବକମାନଙ୍କୁ ପ୍ରାଥମିକ ଶିକ୍ଷକ କରିବା ଯୋଜନାକୁ ସେ ସମର୍ଥନ କରିପାରିନାହାନ୍ତି ଓ ଏହି ସଂପର୍କରେ ଭାରତ ସରକାରଙ୍କ ନୀତିକୁ ସେ ନିନ୍ଦା କରିଛନ୍ତି । ସେ ଏହି ପ୍ରସଙ୍ଗରେ କହିଛନ୍ତି, "ବର୍ତ୍ତମାନ ଆମର ଯେଉଁ ପ୍ରାଥମିକ ଶିକ୍ଷା ହୋଇଛି, ସେଥିରେ ଗୋଟିଏ ହେଉଛି ମୌଳିକ, ଆଉ ଗୋଟିଏ ହେଉଛି ଯୌଗିକ ଆମର ଆଗ ଯାହା ଥିଲା ମୌଳିକ ନୁହେଁ । ନାନାଭାଷା, ନାନା ପଦ୍ଧତି ମିଶି ଏହା ହୋଇଥିଲା । ଏସବୁ ଯୋଗକରି ତାହା ହୋଇଥିଲା, ସେଥିପାଇଁ ଏଇଟା ହେଲା ଯୌଗିକ । ଏ ଦୁଇଟା ଭିତରେ ଏପର୍ଯ୍ୟନ୍ତ କୌଣସି ସମାଧାନ ହୋଇନାହିଁ । ମୋ ମତରେ ଏ ଦୁଇଟି ମିଶିକରି ନ ହେଉ, ଗୋଟିଏ ପ୍ରକାର ପନ୍ଥାରେ ସବୁ ଶିକ୍ଷା ଆରମ୍ଭ ହେବା ଉଚିତ୍ ।"

ଶିକ୍ଷକମାନଙ୍କର ଚାକିରୀ ମନୋବୃତ୍ତି ଯୋଗୁ ମୌଳିକ ଶିକ୍ଷା ସଫଳ ହେଉନାହିଁ ବୋଲି ତାଙ୍କର ଧାରଣା । । ପ୍ରାଥମିକ ଶିକ୍ଷକମାନଙ୍କର ଦରମା ବଢ଼ିଲେ ସୁଦ୍ଧା ଘରୋଇ ଟ୍ୟୁସନ୍ କରିବାରେ ବ୍ୟସ୍ତ ରହୁଛନ୍ତି । ସେଥିପାଇଁ ଯେଉଁ ଦୋଷତ୍ରୁଟି ରହୁଛି ତାକୁ ଜାଣିବା ପଣ୍ଡିତଜୀଙ୍କ ପକ୍ଷେ ଅସମ୍ଭବ ହୋଇନାହିଁ । ସେ କହିଛନ୍ତି, "ପ୍ରତ୍ୟେକ ପିଲା ଯେ ପଢ଼ିବାକୁ ଆସୁଛି, ତା ବାପ କିଛି ଦେଇକରି ଟ୍ୟୁସନ୍ ନକରାଇଲେ ସେ ପିଲା ପାସ୍ କରିବା ସହଜ ନୁହେଁ, କାହିଁକିନା, ଅନେକ ସ୍ଥଳରେ ସେ ପ୍ରଶ୍ନ ଜାଣିପାରିବାର ସୁବିଧା ହେଉଛି । ଏ ଯେଉଁ ସାରୁ ଭିତରେ ମାରୁ ଭର୍ତ୍ତି ହେଲାଣି, ଏହାଦ୍ୱାରା ଯେ ମୋ ପୁଅ କିପରି ଟ୍ୟୁସନ୍ କରାଇ ପାସ୍ କରି ଚାକିରୀ କରିବ । ମୁଁ କହୁଛି ଏ ଯେଉଁ ଟଙ୍କା ଖର୍ଚ୍ଚ ହେଉଛି, ଏଥିରେ ୩,୦୦୦ ପ୍ରାଇମେରୀ ସ୍କୁଲ ନକରି ୩,୦୦୦ ସାରୁ କିଆରୀ ତିଆରି କଲେ ବେକାର ସଂଖ୍ୟା ସମାଧାନ ହୁଅନ୍ତା" ବରଂ ଅନ୍ୟପ୍ରକାରେ ବେକାର ସମସ୍ୟା ଅଧିକ ବଢ଼ିବ ବୋଲି ନୀଳକଣ୍ଠଙ୍କ ସନ୍ଦେହ ବାସ୍ତବ ହେଉଛି । ଉତ୍ତୀର୍ଣ୍ଣ ଛାତ୍ରଛାତ୍ରୀମାନଙ୍କ ସଂଖ୍ୟାନୁସାରେ ଶିକ୍ଷକଗଣଙ୍କୁ ଅନୁଦାନ ମିଳୁଥିଲା ସେତେବେଳେ କିପରି ଶିଶୁ ଶ୍ରେଣୀ ରହିଥିବାରୁ ପାଠପଢ଼ା ଅଧିକ ଭଲ ହେଉଥିଲା, ତାହା ନୀଳକଣ୍ଠ ବୁଝାଇଦେଇଛନ୍ତି ।

ପ୍ରାଚୀନ ଅବଧାନୀ ପ୍ରଥାର ବିଶେଷତ୍ୱ ଉପରେ ନୀଳକଣ୍ଠ ତାଙ୍କର ମତାମତ ଦେଇଛନ୍ତି, ଏବଂ ମାଷ୍ଟର ରଖି ପିଲମାନଙ୍କୁ ଟ୍ୟୁସନ୍ କରାଇବା ଓ ବର୍ଷାବେଳେ ଘର ଭିତରେ ବର୍ଷାହୋଇ ବର୍ଷା ଦିନ (rainy day) ପାଳିବାକୁ ଯିବା ଭୁଲ ବୋଲି ସେ ଦେଖାଇ ଶିକ୍ଷାର ସ୍ତର କିପରି ନିମ୍ନଗାମୀ ହୋଇଛି ତାହା ଅନୁସନ୍ଧାନକରି ରିପୋର୍ଟ ଦେବାକୁ ଶିକ୍ଷାମନ୍ତ୍ରୀଙ୍କ ପାଖରେ ସେ ଦାବି କରିଛନ୍ତି । ବେକାର ସମସ୍ୟା ସମାଧାନ ହେବା ପରିବର୍ତ୍ତେ ଗୁରୁତର ହେବ ବୋଲି ସେ ଆଶଙ୍କା କରିଛନ୍ତି । ସେ କହିଛନ୍ତି "ବେକାର ସମସ୍ୟା ସମାଧାନ ହେବା ପରିବର୍ତ୍ତେ ଦୁଇଗୁଣ ବଢ଼ିଯିବ । ମୁଁ କହୁଛି, ଏ ବେକାର ସମସ୍ୟା ଦୂର ଲାଗି ପ୍ରାଥମିକ ସ୍କୁଲ ହେଉ, କିନ୍ତୁ ସେ ଦିଗରେ ନୀତି ବଦଳିବା ଉଚିତ । ପିଲାଏ ରହିବେ, ପ୍ରାଥମିକ ଶିକ୍ଷକ ରହିବେ, କିନ୍ତୁ ପ୍ରଣାଳୀ ବଦଳାଇ ଦିଆଯାଉ ।"

ଶିକ୍ଷାର ଗୁଣାତ୍ମକ ଉନ୍ନତି ପାଇଁ ପଣ୍ଡିତଜୀଙ୍କ ପରାମର୍ଶ ଯେ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଓ ସାଂପ୍ରତିକ ସ୍ଥିତିରେ ମଧ୍ୟ ଏହାର ପ୍ରାସଙ୍ଗିକତା ରହିଛି, ଏଥିରେ ସନ୍ଦେହ ନାହିଁ ।

ଶ୍ରୀ ନୀଳକଣ୍ଠ ଦାସ : ବାଚସ୍ପତି ମହାଶୟ, ମୋର ଏ ବିଷୟରେ ବହୁତ କିଛି କହିବାର ନାହିଁ, ଆମର ଏହି ଶିକ୍ଷା ***

ଶ୍ରୀ ଗଦାଧର ଦତ୍ତ : ମୋର ବୈଧାନିକ ପ୍ରଶ୍ନ ହେଉଛି ଗତ ଅଧୀବେଶନରେ ଯେପରି କାର୍ଯ୍ୟ ପରିଚାଳନା ହେଉଥିଲା ସେପରି ବର୍ତ୍ତମାନ ହେଉଛି ବୋଲି ମୋର ମନେ ହେଉନାହିଁ । ଏ ବିଷୟରେ ମୁଁ ନିଷ୍ପତ୍ତି ଚାହୁଁଛି ?

Mr. SPEAKER : ଏହା ପୂର୍ବରୁ ମାନ୍ୟବର ସଭ୍ୟ ଶ୍ରୀ ବିଜୟ କୁମାର ପାଣି ଯେପରି ହେଉଥିଲା ବୋଲି କହିଲେ ତାହାହିଁ ବର୍ତ୍ତମାନ ଅନୁକରଣ କରାଯାଉଛି ।

ଶ୍ରୀ ନୀଳକଣ୍ଠ ଦାସ : ସଂସ୍କୃତରେ ଗୋଟାଏ ଶ୍ଳୋକ ଅଛି " ଏକାକ୍ରୀୟା ଦ୍ୱ୍ୟର୍ଥ କରିବହୁବ " ? ଗୋଟିଏ କାମର ଦୁଇ ପ୍ରକାର ଅର୍ଥ ସାଧନ କରୁଛି । ଏହି କାର୍ଯ୍ୟ ଦ୍ୱାରା ମଙ୍ଗଳ ସାଧନ ହେଉଛି । ଗୋଟିଏ କଥା ହେଉଛି ପ୍ରାଇମେରି ସ୍କୁଲ ଗଢିବା । ମେଟ୍ରିକୁଲେଟମାନଙ୍କୁ ନେଇ ପ୍ରାଇମେରୀ ସ୍କୁଲରେ ମାଷ୍ଟ୍ର କରିବେ । ଏ ଯାହା ହୋଇଛି ଏହା ଦ୍ୱାରା କେତେଦୂର କାର୍ଯ୍ୟ ସାଧିତ ହେବ, କେତେଦୂର ବେକାର ସମସ୍ୟା କମିବ ନା ବଢିବ, ଏହାଦ୍ୱାରା ଦେଶର କ୍ଷତି ହେବ କି ନାହିଁ ଏଇଟା ବିଚାର କରିବାର ବଡ଼ ଦରକାର ଥିଲା । ଭାରତ ସରକାର ଏହି ନୀତି ଗ୍ରହଣ କରିଛନ୍ତି । ସେ ହୁଏତ ଓଡ଼ିଶାର ଯାହା ଅବସ୍ଥା ତାହା ଜାଣି ନ ଥିବେ । ବର୍ତ୍ତମାନ ଆମର ଯେଉଁ ପ୍ରାଥମିକ ଶିକ୍ଷା ହୋଇଛି ସେଥିରେ ଗୋଟିଏ ହେଉଛି ମୌଳିକ, ଆଉ ଗୋଟିଏ ହେଉଛି ଯୌଗିକ । ଆମର ଆଗ ଯାହା ଥିଲା ମୌଳିକ ନୁହେଁ । ନାନା ଭାଷା, ନାନା ପଦ୍ଧତି ମିଶି ତାହା ହୋଇଥିଲା । ଏହି ସବୁ ଯୋଗ କରି ତାହା ହୋଇଥିଲା । ସେଥିପାଇଁ ଏଇଟା ହେଲା ଯୌଗିକ । ଏ ଦୁଇଟା ଭିତରେ ଏ ପର୍ଯ୍ୟନ୍ତ କୌଣସି ସମାଧାନ ହୋଇନାହିଁ । ମୋ ମତରେ ଏ ଦୁଇଟା ମିଶିକରି ନ ହେଉ । ଗୋଟିଏ ପ୍ରକାର ପନ୍ଥାରେ ସବୁ ଶିକ୍ଷା ଆରମ୍ଭ ହେବା ଉଚିତ । ଅନେକ ମୌଳିକ ସ୍କୁଲକୁ ମୁଁ ଗଲାବେଳେ ମତେ ଅନେକ ବଡ଼ ବଡ଼ ଅମୃତଭଣ୍ଡା ଦେଉଛନ୍ତି । ସେ ସବୁ ଦେଖିଲେ ଆନନ୍ଦ ହେଉଛି । ଏଠାରେ ଅମୃତଭଣ୍ଡା ହେଉଛି କି ଆଉ କିଛି ହେଉଛି ମୁଁ ବୁଝିପାରୁନାହିଁ । ମତେ ସେଠାକାର ପିଲାମାନେ ପଚାରନ୍ତି ଏହି ମୌଳିକ ସ୍କୁଲ ରହିବଟିକି ? ସେମାନଙ୍କର ଡ଼ର ହେଉଛି ଯେ ସେମାନେ ଅନ୍ୟଆଡ଼େ ଚାକିରି ପାଇ ପାରିବେ ନାହିଁ । ଅନ୍ତତଃ ଏହି ସ୍କୁଲଗୁଡ଼ିକ ଥିଲେ ସେମାନେ ଶିକ୍ଷକ ହେବେ । ଏ କଥା ଦେଖି ମତେ ହସ ମାଡ଼ିଲା । ତାଙ୍କର ପଚାରିବା ଉଦ୍ଦେଶ୍ୟ ହେଉଛି 'ମତେ ଚାକିରି ମିଳିବତ' ? ମୁଁ ସେମାନଙ୍କୁ କହିଛି ଯେ ମୌଳିକ ଶିକ୍ଷା ରହିବ, ତୁମକୁ ଶିକ୍ଷକ ହେବାକୁ ସୁବିଧା ମିଳିବ । ଆଉ ଗୋଟିଏ କଥା—ପ୍ରାଇମେରୀ ଶିକ୍ଷକ ଗୁଡ଼ିଏ ବଢ଼ାଇ ଦେଲେ

ଆମ ଶିକ୍ଷାର moral ବା ନୈତିକ ପାଠ କ୍ରମେ ନଷ୍ଟ ହୋଇଯାଉଛି । ଏହା ଫଳରେ ହେଉଛି କଣ ନା, ବରାବର ତାଳୁରୁ ତଳିପା ପର୍ଯ୍ୟନ୍ତ— ମୁଁ ଏଇ କଥା ଅନ୍ୟ ସମୟରେ କହିଥିଲି—ଶିକ୍ଷା ଆଉ କିଛି ନାହିଁ । ଇଂରେଜମାନେ ଥିଲାବେଳେ ଗୋଟାଏ ଉଦ୍ଦେଶ୍ୟରେ ଆମକୁ ଶାସନ କରୁଥିଲେ । ତାଙ୍କର ଗୋଟାଏ ପ୍ରକାରର ଶିକ୍ଷା ଦରକାର ଥିଲା, ତାକୁ ଜଗିକରି ଶିଖାଉ ଥିଲେ । ଆମର ସେ କଥା ନାହିଁ । ଶିକ୍ଷା କିପରି ବଢିବ ଆମର ହେଉଛି ଉଦ୍ଦେଶ୍ୟ । ପ୍ରାଇମେରୀ ସ୍କୁଲସବୁ ବାରଣ୍ଡାରେ କାହିଁକି ହେବ ନାହିଁ, ଅବଧାନ କାହିଁକି ପଢ଼ାଇବେ ନାହିଁ, ଏହା ନ କରିବାହିଁ ହେଉଛି ଶିକ୍ଷା ନ ବଢିବାର କାରଣ ।ଆମ ଶିକ୍ଷା ମନ୍ତ୍ରୀ ଚାହାନ୍ତି କିପରି ବେଶୀ ଲୋକ ଖାଇବାକୁ ପାଇବେ । ଲୋକେ Living wage ନ ପାଇଲେ ପଢ଼ାଇବେ କଣ । ଏହା ଗୋଟିଏ ବାସ୍ତବ କଥା । ଶିକ୍ଷା ମନ୍ତ୍ରୀଙ୍କୁ ମୋର ଅନୁରୋଧ ଏ ବିଷୟ ଇନକ୍ୱାରୀ କରନ୍ତୁ । ଆଗେ ପ୍ରାଇମେରୀ ଶିକ୍ଷକ ଟ ୨ ଙ୍କା ନେଇ ଟ୍ୟୁସନ କରୁଥିଲେ, ନ ହଲେ କୌଣସି ଗୁମାସ୍ତାଗିରି ସନ୍ଧ୍ୟାବେଳେ କରୁଥିଲେ । ଏପରି ଟ ୪/୫ ଙ୍କା ଉପୁରି ହେଉଥିଲା । ବର୍ତ୍ତମାନ ଟ30/40ଙ୍କା ପାଇଲେଣି, ବର୍ତ୍ତମାନ ଟ 10 ଙ୍କା ନ ହେଲେ ଟ୍ୟୁସନ ହେଉ ନହିଁ । ପ୍ରତ୍ୟେକ ପିଲା ଯେ ପଢିବାକୁ ଆସୁଛି, ତା ବାପ କିଛି ଦେଇକରି ଟ୍ୟୁସନ ନ କରାଇଲେ ସେ ପିଲା ପାଶକରିବା ସହଜ ନୁହେଁ, କାହିଁକି ନା, ଅନେକସ୍ଥଳରେ ସେ ପ୍ରଶ୍ନ ଜାଣିପାରିବାର ସୁବିଧା ହେଉଛି । ଏ ଯେଉଁ ସାରୁ ଭିତରେ ମାରୁ ଭର୍ତ୍ତି ହେଲାଣି ଏହାଦ୍ୱାରା ବେକାର ସମସ୍ୟା ଯିବ କିପରି ? ପ୍ରତ୍ୟେକ ଚାହାନ୍ତି ଯେ ମୋ ପୁଅ କିପରି ଟ୍ୟୁସନ କରାଇ ପାସ-କରି ଚାକିରୀ କରିବ । ମୁଁ କହୁଛି ଏ ଯେଉଁ ଟଙ୍କା ଖର୍ଚ୍ଚ ହେଉଛି ଏଥିରେ 3,000 ପ୍ରାଇମେରୀ ସ୍କୁଲ ନ କରି 3,000 ସାରୁ କିଆରି ତିଆରି କଲେ ବେକାର ସମସ୍ୟା ସମାଧାନ ହୁଅନ୍ତା । ଏ ଯାହା କରିବାକୁ ଯାଉଛନ୍ତି, ତାଦ୍ୱାରା ବରଂ ବେକାର ସମସ୍ୟା ବଢିବ । ଯଦି ଦେଖାଯାଏ ପ୍ରତ୍ୟେକ ଟ୍ୟୁସନ କରାଇ ନ ପାରିଲେ କାମ ଚଳୁନାହିଁ, ମୁଁ କହୁଛି ପ୍ରାଥମିକ ସ୍କୁଲ ଯାହା ହେଉଛି ତ ହେଉଛି, ଯେପରି ଆଗେ ମାଟ୍ରି କୁଲେଟଙ୍କୁ ଦିଆଯାଉଥିଲା, ଅବଧାନଙ୍କୁ ଦିଆ-ଯାଉଥିଲା, ଯେଉଁମାନେ ଉପରୋକ୍ତ ଭବରେ ପିଲାଙ୍କୁ ଶିଖାଉଥିଲେ, ଯେପରି ଆଗେ କ ପରୀକ୍ଷା, ଖ ପରୀକ୍ଷା, ୨ୟ ପରୀକ୍ଷା ହେଉଥିଲା ତାହା ଅନୁସଂଧାନ କଲେ ଜାଣିପାରିବେ । ଶିକ୍ଷା ମନ୍ତ୍ରୀଙ୍କ ପିଲାଦିନେ ତାହା ଉଠି ଯାଇଥିଲା । ଆମ ପଲାଦିନେ ସେଇଟା ଥିଲା ଓ ଯେଉଁମାନେ ଡ଼କ୍‌ଟର ହୋଇଛନ୍ତି ତାଙ୍କ ପିଲାଦିନେ ଥିଲା । ସରକାର ଅବଧାନମାନଙ୍କୁ ପୁରସ୍କାର ଦେଉଥିଲେ । ପାଞ୍ଚଟା ପିଲା ପାଶ କରାଇଦେଲେ ପାଞ୍ଚ ପଞ୍ଚା ଟ ୨୫ ଙ୍କା ଦେଉଥିଲେ । ମୁଁ ଶିଶୁ, ପ୍ରଥମ ଶିଶୁ, ଦ୍ୱିତୀୟ ଶିଶୁରେ ପଢିଥିଲି । କ, ଖ ଓ ୨ୟ ପରୀକ୍ଷା ହେଉଛି ପ୍ରାଇମେରୀରେ । ବୋଧହୁଏ ସେ କଥାକୁ ଲକ୍ଷ୍ୟ କଲେ ଜାଣିପାରିବେ । ପରିକ୍ଷା ସାହେବ ଯେମିତି କହିଲେ ଟଙ୍କା ପୁରସ୍କାରରେ ଖର୍ଚ୍ଚକରି ଛାଡି ଦିଆଯାଉ କିଏ କେତେ ପିଲାଙ୍କୁ ପାଶ୍ କରାଉଛି । ଆଗେ ଆମର ସବୁ ଦାଣ୍ଡ ଚାହାଳି ଥିଲା, ବରଗଛ ମୂଳେ, ବୃକ୍ଷ ତଳେ ବସି ପାଠ ପଢୁଥିଲେ । ଶୀତ ଓ ଖରାଦିନେ ତଳେ ଗୁଞ୍ଜ ପଡ଼ିଥାଏ ।

ଆମେ ତଳ ଲିପିକରି ନିଜେ ଖଡ଼ିରେ ପଢୁଥିଲୁ । ତାପରେ ବର୍ଷାଦିନ ପାଇଁ ଖଣ୍ଡିଏ ଘର ଥାଏ । କଥା ହେଉଛି—ବର୍ଷା ଅନଧ୍ୟାୟ । ଏହା ଚିରକାଳ ଚାଲିଥିଲା । ଆଜିକାଲି ପିଲାଏ ବର୍ଷାବେଳେ ଛାତତଳେ ଛିଡ଼ାହୋଇ ଓଦାହୋଇ rainy day ପାଉଛନ୍ତି, ସେଇଟା ବୋଧହୁଏ ଅଙ୍କ ଅଛି । ପୁରସ୍କାର ଯାହାହେଉ, ବର୍ଷର ଅଧିକାଂଶ ସମୟରେ ପିଲାଙ୍କୁ ପଢ଼ାଇବାପାଇଁ ଆଦୌ ଘର ଦରକାର ନାହିଁ । ମାଷ୍ଟର ରଖି ପଲାଙ୍କୁ ଟ୍ୟୁସନ୍ କରାଇବା ଦରକାର ନାହିଁ । ଶିକ୍ଷାର ସ୍ତର ଯେପରି ଆସ୍ତେ ଆସ୍ତେ ତଳକୁ ଯାଉଛି ସେ ସମ୍ପର୍କୀୟ ବିଧାନକୁ ପରିବର୍ତ୍ତନ କରିବା ଉଚିତ । ଶିକ୍ଷାର ଅବସ୍ଥା ବର୍ତ୍ତମାନ ଯାହା ହେଲାଣି ମୁଁ ଶିକ୍ଷାମନ୍ତ୍ରୀଙ୍କୁ ବଡ଼ ସନ୍ତର୍ପଣରେ ଅନୁରୋଧ କରୁଛି ଯେ ଏହିପରି ଅନୁସନ୍ଧାନ କରି ରିପୋର୍ଟ ଅଣାଇବାର ବିଶେଷ ବ୍ୟବସ୍ଥା କରିବାରେ ବ୍ରତୀ ହୁଅନ୍ତୁ । ମୁଁ ଜାଣେ ସେ କାର୍ଯ୍ୟ କରିବାରେ ଭାରି ତତ୍‌ପର । ତାଙ୍କର ମନ ମଧ୍ୟ ଅଛି, କିନ୍ତୁ ଖର୍ଚ୍ଚଟା ଯଦି ଭିନ୍ନ ଦିଗରେ ଚାଲିଯାଏ ତାହେଲେ ଆମର ଭବିଷ୍ୟତରେ ବହୁତ କଥା ହେବ । ବେକାର ସମସ୍ୟା ସମାଧାନ ହେବା ପରିବର୍ତ୍ତେ ଦୁଇଗୁଣ ବଢ଼ିଯିବ । ମୁଁ କହୁଛି ଏ ବେକାର ସମସ୍ୟା ଦୂର ଲାଗି ପ୍ରାଥମିକ ସ୍କୁଲ ହେଉ, କିନ୍ତୁ ସେ ଦିଗରେ ନୀତି ବଦଳିବା ଉଚିତ । ପିଲାଏ ରହିବେ, ପ୍ରାଥମିକ ଶିକ୍ଷକ ରହିବେ, କିନ୍ତୁ ପ୍ରଣାଳୀ ବଦଳାଇ ଦିଆଯାଉ ।

## 13. ଶ୍ରୀ ଜଗନ୍ନାଥ ମନ୍ଦିର ବିଲ୍, 1954
## (Shri Jagannath Temple Bill, 1954)

ନୀଳକଣ୍ଠ, ଶ୍ରୀ ଜଗନ୍ନାଥ ଧର୍ମ ଓ ସଂସ୍କୃତିର ପ୍ରବୀଣ ପ୍ରବକ୍ତା । ଯେତେବେଳେ ସେ ଶ୍ରୀ ଜଗନ୍ନାଥ ମଂଦିର, ତାର ପୂଜାପାର୍ବଣ, କର୍ମକର୍ମାଣି, ଧର୍ମଧାରଣା ସଂପର୍କରେ କହିବାକୁ ସୁଯୋଗ ପାଇଛନ୍ତି, ସେ ଅଜ୍ଞାତରେ ପ୍ରଗଲ୍‌ଭ ହୋଇପଡ଼ିଛନ୍ତି । ସେ'ତ ଥିଲେ ପରମ ବିଦ୍ୱାନ ଓ ବାଗ୍ମୀ, ପୁଣି ଏହି ସଂଶିତ ପ୍ରସଂଗରେ ତାଙ୍କର ଗଭୀର ନିଷ୍ଠା ଓ ପ୍ରବେଶ ଥିବାରୁ ସେ ଅନର୍ଗଳ ଭାବରେ କହିଚାଲୁଥିଲେ । ତେଣୁ କେତେଥର ବାଚସ୍ପତିତ କେତେବେଳେ ସଭ୍ୟମାନେ ତାଙ୍କୁ ଭାଷଣକୁ ସଂକ୍ଷିପ୍ତ କରିବାକୁ ଅନୁରୋଧ କରୁଥିଲେ, ସେ ମଧ୍ୟ ଗୃହର ଶୃଂଖଳା ଓ ମର୍ଯ୍ୟାଦା ଦୃଷ୍ଟିରୁ ନିଜ ଭାଷଣକୁ ଶୀଘ୍ର ସାରିଦେବାରେ ସଚେଷ୍ଟ ଥିଲେ ।

ଓଡ଼ିଶା ବିଧାନ ସଭରେ ସେ ପୂର୍ବରୁ ଶ୍ରୀ ଜଗନ୍ନାଥ ମନ୍ଦିରର ପ୍ରଶାସନ ସଂପର୍କରେ ଆସିଥିବା ଏକ ବିଲ୍ ଉପରେ ଯାହା କହିଥିଲେ ଏହି ଅଧ୍ୟାୟରେ ତାହା ପ୍ରକାଶିତ ହୋଇଛି । ସଂବିଧାନରେ ସ୍ପଷ୍ଟ ହୋଇଛି ଯେ ଧର୍ମାନୁଷ୍ଠାନ ଉପରେ ଟ୍ୟାକ୍‌ସ ବସିପାରିବ ନାହିଁ । ଏହି ଚିଠା ଆଇନରେ ତାହା ଆଦାୟର ବ୍ୟବସ୍ଥା ଥିବାରୁ ସେ ତାର ସ୍ପଷ୍ଟୀକରଣ ଚାହିଁଛନ୍ତି । "ଯଦି କୌଣସି ଲୋକ ଉପରେ contribution ଥାଏ, ତେବେ ତାହା କିମିତି ଆଦାୟ ହେବ ? ଆଇନରେ ଅଛି ସେଇ ଅନୁସାରେ ଏହାକୁ ନେଇପାରିବେ କି ନାହିଁ

ମୋର ସନ୍ଦେହ ଅଛି । ଏପରି ସନ୍ଦେହ ରଖିବେ କାହିଁକି ? ଏତେ ତରତର ହେବା କାହିଁକି ?" ତେଣୁ ବୁଝିବିଚାରି ଏସବୁ କଥା କରିବା ଉଚିତ ବୋଲି ସେ ପରାମର୍ଶ ଦେଇଛନ୍ତି । ମାତ୍ର ସୁପ୍ରିମ କୋର୍ଟ ରାୟ ପରିପ୍ରେକ୍ଷୀରେ ଏହା ଅବୈଧାନିକ ହେବନାହିଁ ବୋଲି ଆଇନମନ୍ତ୍ରୀ କହିଛନ୍ତି । ତେଣୁ ଲୋକମତକୁ ପଠାଇବା ପାଇଁ ଆଗତ ପ୍ରସ୍ତାବକୁ ନୀଳକଣ୍ଠ ପ୍ରତ୍ୟାହାର କରିନେଇଥିଲେ । ପ୍ରସ୍ତାବଟି ପ୍ରତ୍ୟାହୃତ ହେଲା ପରେ ଅବଶ୍ୟ ବିଲ୍‌ଟି ଏକ 13 ଜଣିଆ ଯାଂଚ କମିଟିର ବିଚାର ପାଇଁ ଯାଇଥିଲା ଏବଂ ଉକ୍ତ ଯାଂଚ କମିଟିରେ ନୀଳକଂଠ ମଧ୍ୟ ଜଣେ ସଭ୍ୟ ରହିଥିଲେ ।

Shri NILAKANTHA DAS : ବାଚସ୍ପତି ମହାଶୟ, ମୁଁ ମୋର୍ ପ୍ରସ୍ତାବରେ ଯାହା କହିଗଲି ସେଥିରେ ମୁଁ ପରିଷ୍କାର କରି କହି ଦେଇଛି, ବିଲ୍‌ରେ କୌଣସି ବାଧା ସୃଷ୍ଟି କରିବାର ବିଷୟ ନାହିଁ । ମୁଁ ଏ କଥା କହିଛି, ତଥାପି ବକ୍ତାମାନଙ୍କର ବକ୍ତୃତା ଶୁଣି ମୁଁ ଯାହା ବୁଝିଲି କୌଣସି କୌଣସି ସଭ୍ୟ, ମୁଁ ଯାହା କହିଲି ତାହା ସେମାନଙ୍କର ବୋଧଗମ୍ୟ ହୋଇନାହିଁ ବୋଲି ମୁଁ ଭାବୁଛି । ଏ ଯେଉଁ ଟଙ୍କା ଏତେ ଧାର୍ଯ୍ୟ ହୋଇଛି ସେଇଟା ଟ୍ୟାକ୍‌ସ ହୋଇଯିବ, ସୁପ୍ରିମ କୋର୍ଟ ଆପତ୍ତି କରିବ, ମୋର କହିବାର ଉଦ୍ଦେଶ୍ୟ ତାହା ନୁହେଁ । କାରଣ ମୁଁ ଜାଣେ ସଂବିଧାନରେ ପରିଷ୍କାର ହୋଇଛି ଯେ କୌଣସି ଧର୍ମାନୁଷ୍ଠାନ ଉପରେ ଟ୍ୟାକ୍‌ସ ହୋଇ ପାରିବ ନାହିଁ । ଆମେ ଏଠି କହିଲୁ ଏଇଟା ଟ୍ୟାକ୍‌ସ୍ ନୁହେଁ (fees or contribution.) କିନ୍ତୁ ସେଠି ପରିଷ୍କାର କରାହୋଇ ନାହିଁ । Fees or contribution ନିଆହେଲେ ସେଇଟା କେମିତି ନିଆଯିବ । ସରକାର certificate କରି ଯେମିତି ନିଅନ୍ତି, revenue ଯେପରି ଆଦାୟ କରନ୍ତି, ସେମିତି ସେମାନେ କରିପାରିବେ କି ନାହିଁ, ଏ ବିଷୟରେ କୌଣସି ସ୍ପଷ୍ଟ ମତ ସେଠି ପ୍ରକାଶ ପାଇପାରି ନାହିଁ । ଯଦି ତାହା ହୋଇଥାଏ ତାହା ନେଇପାରିବେ ବୋଲି, ତାହାହେଲେ ଏଇଟା ପାଶ୍ କରିବାରେ ମୋର କୌଣସି ଆପତ୍ତି ନାହିଁ । ଯଦି କୌଣସି ଲୋକ ଉପରେ contribution ଥାଏ ତେବେ ତାହା କିମିତି ଆଦାୟ ହେବ ? Public demand ଆଇନରେ ଅଛି ସେଇ ଅନୁସାରେ ଏହାକୁ ନେଇ ପାରିବେ କି ନାହିଁ ମୋର ସନ୍ଦେହ ଅଛି । ଏପରି ସନ୍ଦେହ ରଖିବେ କାହିଁକି ? ଏତେ ତରତର ହେବା କାହିଁକି ? ଆମର ବର୍ତ୍ତମାନ ଗୋଟିଏ ବଡ଼ ବିଚିତ୍ର ମାନସିକ ଭାବ ଜାଗ୍ରତ ହୋଇଛି । ଯେତେବେଳେ ଇଂରେଜ ସରକାର ଥିଲେ ହିନ୍ଦୁ ଧର୍ମ ଉପରେ ହାତ ନ ଦେବା ତାଙ୍କର ସ୍ଥିର ହେଲା, ସେତେବେଳେ ଏହାକୁ କାହାକୁ ଦେଇଥିଲେ ? ଯେତେବେଳେ ରାଜ୍ୟ ଶାସନ କରିବେ, ଇଂରେଜ ସରକାର ହୁଅନ୍ତୁ ବା ଆମ ସରକାର ହୁଅନ୍ତୁ ସେତେବେଳେ ଆମର ଯେ କେତେଗୁଡ଼ିଏ ଧର୍ମ ଅନୁଷ୍ଠାନ ଅଛି, ତାକୁ କିଏ ଖାଇ ଯାଉଛି, ତାକୁ କଣ ଦେଖିବେ ନାହିଁ ? ଚୋରି ଡ଼କାଇତି ହେବ, ତାକୁ କଣ ଦେଖିବେ ନାହିଁ ? ତାର ନିଶ୍ଚୟ ବ୍ୟବସ୍ଥା କରିବେ, ତାକୁ ସେ ଦେଖି ତାର ସୁପରିଚାଳନା କରିବେ । ଏଟା ଯେକୌଣସି ସରକାରର

କାର୍ଯ୍ୟ । ଧର୍ମ ନିରପେକ୍ଷ ହେଲେ ଏଇଟା ସରକାରଙ୍କର କର୍ତ୍ତବ୍ୟ । ତାପରେ ଆମେ ସବୁବେଳେ କହୁଛୁ "Professing Hindu Religion". ଏହାର ଅର୍ଥ ମୁଁ ବୁଝିପାରୁନାହିଁ । ସେଗୁଡ଼ିକ ଓଡ଼ିଆ କଲାବେଳକୁ ଆମେ ଦେଖିବୁ ଯେ ତାର ଅବସ୍ଥା କଣ ହେଉଛି ? ମୁଁ ଇଂରେଜ ସରକାର ସମୟରେ—ମୁଁ ୬୦ ବର୍ଷ ତଳ କଥା କହୁଛି, ମୁଁ ପିଲା ହୋଇଥାଏ, ତାଙ୍କର ନାମ ମନେ ହେଉ ନାହିଁ, ସେ ଜଣେ କଞ୍ଚା ବିଲାତି ସାହେବ ( ଖ୍ରୀଷ୍ଟିୟାନ ), ସେ ହେଲେ ରାଜାଙ୍କର ଦେଓ୍ୱାନ । ମୋର ମନେ ଅଛି ସେ ଖଜଣା ଆଦାୟ କରିବାକୁ ଆମ ଗାଁକୁ ଆସିଥିଲେ । ସେ ଗୋଟିଏ ଗଛମୂଳେ ଚୌକି ପକାଇ ବସିଥିଲେ । ଖଜଣା ଆଦାୟ ନ ହେବାରୁ ସେ କହିଥିଲେ "ବିନୋଦ ପଣ୍ଡା ଆମାକେ ଖଜଣା ଦାଓ" ସେହିପରି Hindu faith ଆପତ୍ତି ହେବ, କିନ୍ତୁ ଏହା ଓଡ଼ିଆରେ କି ଶବ୍ଦ ଦିଆଯିବ ? ସେ ଦିନ ବିଶ୍ୱନାଥ ମହାପାତ୍ର ଜଣେ ସପ୍ଲାଇ ଅଫିସର, ଧର୍ମରେ ଖ୍ରୀଷ୍ଟିୟାନ, ଜାତିରେ ବ୍ରାହ୍ମଣ । ସେ କହିଲେ ମୁଁ ଖ୍ରୀଷ୍ଟିୟାନ ହେଲି ବୋଲି ମୋର କଣ ଜାତି ନାହିଁ ? ଏ ଯେଉଁ "Professing Hindu Faith" ଯଦି କିଏ profess କଲା ଯେ ମୁଁ ହିନ୍ଦୁ, ତାହାହେଲେ ଗୋଳମାଳ ହେବ । ଏଇ ଗୋଳମାଳିଆ ପରିସ୍ଥିତି ଏଥିରେ ଅଛି, ସେ ମାଜିଷ୍ଟ୍ରେଟ ଖ୍ରୀଷ୍ଟିୟାନ ହେଲେ ବି, ସେ କଥା ବୁଝିବ । ସରକାର ଖ୍ରୀଷ୍ଟିୟାନ ଜଣକୁ ପଠାଇଦେଇ ପାରନ୍ତି, କି ମୁସଲମାନ ଜଣକୁ ପଠାଇଦେଇ ପାରନ୍ତି । ସରକାର ବୁଝିବେ ଏଇଟା ତାଙ୍କର କର୍ତ୍ତବ୍ୟ । ଇଂରେଜ ସରକାର କଣ କରିଥିଲା । ବାଘ ପରି ଜନ୍ତୁ ଛପି କରି ଖାଏ । ଇଂରେଜ ସରକାର District Judge ପାହିଆ ଲୋକଙ୍କୁ କାର୍ଯ୍ୟ ବୁଝିବା ପାଇଁ ଦେଇଥିଲେ, ଲୋକେ ଆପତ୍ତି କଲେ ସେ ତାର ବ୍ୟବସ୍ଥା କରିଦେବେ । ସେ ଗୋଟିଏ scheme ସାମୟିକଭାବେ ଦେଇ ପାରିବେ । କିନ୍ତୁ ଆମ୍ଭେମାନେ ଗୋଟିଏ ବଡ଼ ଧାରଣା କରିଛୁ ଯେ ଆମେ ସ୍ୱାଧୀନ ହେଲା ପରେ 4/5 ବର୍ଷ ଭିତରେ ସୃଷ୍ଟି ବଦଳାଇ ଦେବୁ, ସବୁ କରିଦେବୁ । ଇଂରେଜିରେ ଯାହାକୁ କହନ୍ତି Welfare State. କିହୋ ! ତୁମେ କଣ ଆମର କଣ ବଡ ବାପ ? ତୁମେ ଯାହା କରିବ ତାହା କଣ ଆମେ ମାନି ନେବୁ ? ତୁମେ ଯାହା ଅନ୍ୟାୟ କରିବ ଆମେ ରାଜିହେବୁ, ଆମର କଣ କିଛି କହିବାର ନାହିଁ ? ଏଇ ଧର ପଞ୍ଚାୟତ ଆଇନ କଲ, ସେ କଣ ଆଇନ ହୋଇଛି ? ପଞ୍ଚାୟତ ଆଇନରେ କଣ କରିଛ, ଅଙ୍ଗେ ଆମେ ନିଭାଉଛୁ । ଜଣେ High Court ର Advocate-General ଥିଲେ, ତାଙ୍କ ସଙ୍ଗରେ ମୁଁ ଯେତେବେଳେ କଥା ହେଲି ସେ କହିଲେ ଆମେ ଜନ-ମଙ୍ଗଳ ରାଷ୍ଟ୍ର ବା Welfare State ଗୋଟିଏ କରିଛୁ, କେଉଁଠି କଣ ଭୁଲ ହୋଇଯାଉଛି ଆମେ ଜନ-ମଙ୍ଗଳ ରାଷ୍ଟ୍ର ବୋଲି କହୁଛୁ; କିନ୍ତୁ ଏହା ଦ୍ୱାରା ନାନାପ୍ରକାରରେ ଲୋକଙ୍କର ଯେ ସର୍ବନାଶ ହେଉଛି ସେ କଥା ଆମେ ବୁଝୁ ନାହୁଁ । ଜନ-ମଙ୍ଗଳ ରାଷ୍ଟ୍ର କଲ ଭଲ, ଏ ନାମଟି ଦେଲ ବଡ ପ୍ରାସଙ୍ଗିକ ହେଲା, କିନ୍ତୁ ଏତିକି କରିଦେଲେ କଣ ଯଥେଷ୍ଟ ହେଲା ? ଏହା ବିଗୁଡ଼ିଲେ କଣ ସବୁ ହୋଇଯିବ ? ଦେଶର ମଙ୍ଗଳ କରିବା ଭାବ ଅଛି, ଏଟା ପ୍ରଶଂସନୀୟ ଜିନିଷ । ଏଇଟା ଥିଲେ ଯଥେଷ୍ଟ ହେଲା, ଏହା ବିଗୁଡ଼ିଲେ ସବୁ

ହୋଇଯିବ, ଏହା ନୁହେଁ । ଏ ଯେଉଁ Judiciary ଅର୍ଥାତ୍ ବିଗ୍ରର ବିଭାଗ ଅଛି, ସେଇ ବିଗ୍ରର ବିଭାଗକୁ ଶାସନ ବିଭାଗ ପୁରାପୁରି ନ ଜଣାଇ ତାର କୌଣସି କର୍ତ୍ତୃତ୍ୱକୁ ନ ମାନି କରିଯିବାକୁ ବସିଛି, ଏ ଆଇନର ଶେଷରେ ଅଛି—ଏଟା ଗୋଟିଏ ଆନନ୍ଦର କଥା— ମୁଁ ଅନେକଥର ଏଥିପାଇଁ ଆପତ୍ତି କରିଛି । ମୋତେ ଖୁସି ଲାଗିଲା । If any difficulty arises in giving effect to the provisions of this Act, the State Government may as occasion may required by order to do any thing not inconsistent in this Act which appears them necessary for the purpose of removing the difficulty. ଅନ୍ୟାନ୍ୟ ସମୟରେ by order to do anything not inconsistent with this Act. ଏତକ ଭର୍ତ୍ତି କରିବାକୁ କେତେଥର ମୁଁ କହିଛି । କିନ୍ତୁ କରାଯାଇ ନାହିଁ । କେତେକ ବିଲ୍ ଅଛି, ଯେଉଁଥିରେ କି କେତେକ ଧାରଣାର ବଶବର୍ତ୍ତି ହୋଇ ଏଥିରେ ଯାହାଅଛି ତାକୁ final କରିଦେବା । କଚେରୀକୁ ନ ଯିବାପାଇଁ ଉପାୟମାନ ରହିବା ଦରକାର । ମୁଁ ସରକାରଙ୍କୁ କହୁଛି ସବୁଥିରେ ଯିମିତି ସବୁବେଳେ କୋର୍ଟକୁ ଯିବା ସୁବିଧା ଦିଆଯାଉ; ତା ନ ହେଲେ ଏଗୁଡ଼ିକ ସବୁ ବର୍ତ୍ତମାନ ସଂବିଧାନ, ଯଦି ନ ବଦଳେ ତାହାହେଲେ High Court, Supreme Court ଏହାକୁ ନାକଚ କରି ଦେବାର ସମ୍ଭାବନା ଅଛି । ମୋ ମତରେ ମୁଁ ବୁଝାଇ କରି କହିଥିଲି ଯେ ମୋର ଏ ଆଇନରେ କୌଣସି ଆପତ୍ତି ନାହିଁ, କିନ୍ତୁ ଆଇନ ହିସାବରେ ଏ ବିଷୟରେ ମତ ଗ୍ରହୁଁଥିଲି । ସେବାୟତମାନଙ୍କର ଏଥିରେ କର୍ତ୍ତୃତ୍ୱ ଅଛି । ରାଜା ମଧ୍ୟ ଜଣେ ସେବାୟତ । ସେବାୟତ ଗୋଟିଏ ସଂଘ । ତାଙ୍କ ସଂଘ ଜଣକୁ ନିର୍ବାଚନ କରି ତାଙ୍କ ହାତରେ ସବୁ କ୍ଷମତା ଦେଇଥିଲେ । ମୋର ଭାବନାଥିଲା ସେମାନଙ୍କ ଭିତରୁ ଲୋକ ନେଇ ସେହିପରି ଗୋଟିଏ ଯୋଜନା କରି ତାଙ୍କ ଦ୍ୱାରା କରାଇବା । ଜଣେ ଜଜ୍ ରହିବେ, ଯଦି ତାହା ଅଚଳ ହେଲା, ସଙ୍ଗେ ସଙ୍ଗେ ସେ ତାହା ବଦଳ କରି ଭର୍ତ୍ତି କରି ଦେବେ । ଏହା ହୋଇଥିଲେ ବଡ଼ ସୁନ୍ଦର ହୋଇଥାନ୍ତା । ଏହି ସବୁ କେତେ କଥା ନେଇ ଏହାକୁ ଲୋକମତକୁ ପଠାଯାଉ ବୋଲି ମୁଁ କହିଥିଲି, ଯାହାଫଳରେ କି ଯେଉଁମାନେ ଏ ବିଷୟରେ ଜାଣନ୍ତି, ସେମାନଙ୍କ ମତ ନେଇ ଏ କାର୍ଯ୍ୟ ଆରମ୍ଭ କରାଯାଉ । ବର୍ତ୍ତମାନ ଯେପରି ମୁଁ ଦେଖୁଛି ତା ନ ହେଲେ ଏ ଆଇନରେ ବେଶୀ କିଛି ଆପତ୍ତି କରିବାର ନାହିଁ । ଇଂରେଜୀରେ ଯାହାକୁ କହନ୍ତି fundamental. ଏ ଯେଉଁ ମୌଳିକ ଜିନିଷଟା ଆଖିଆଗରେ ରଖିବା ଦରକାର । ଆମେ ଯଦି ଠିକ୍ ପରିଗ୍ଳନା କରାଇ ଦେବା, ତାହାହେଲେ କାହାରି ଆପତ୍ତି କରିବାର କିଛି ନାହିଁ । ଏପରି ଭାବରେ ଏ ଆଇନ ହେବା ଉଚିତ । ବର୍ତ୍ତମାନ ଯାହା ହୋଇଛି ଏଥିରେ ମୋର ଆପତ୍ତି କରିବାର କିଛି ନାହିଁ । ମୋର କେବଳ ଏତିକି କହିବାର କଥା ଯେ ଏ ଆଇନରେ ଯେପରି ଖିଅ ନ ବାହାରେ । ଆମେ ଗୋଟିଏ କମିଟି କରିଦେବା, ତା ଉପରେ ବିରୋଧ ମତ ହେଲେ ସେ କୋର୍ଟକୁ ଯିବ । ଏହି କମିଟି ବରାବର invalid ହୋଇ ଯେପରି *Ultra Vires* ନ ହୁଏ । ଟଙ୍କା କିଏ ନେଇଯାଉଛି, କିଏ କେଉଁଠି ଗୋଳମାଳ କରୁଛି, ସରକାର ତାକୁ ଅଫିସର ଦେଇ modify କରିଦେଲେ ହୋଇଯିବ । ଯେତେଦୂର ସମ୍ଭବ

Select Committeeରେ ମୁଁ ସେ କଥା କରିବା ପାଇଁ ବ୍ୟବସ୍ଥା କରିବି । ମୁଁ ଯେପରି ଆଗରୁ କହୁଥିଲି ଆମର ଯିଏ ଚିଫ୍ ଜଷ୍ଟିସ୍ ଥିଲେ ବା ଆମର Ex-Advocate General ଥିଲେ, ସେଭଳିଆ ଲୋକଙ୍କର ସାହାଯ୍ୟ ନେଇ କରିବା ବୋଲି ମୋର ଇଚ୍ଛା । ଯେଉଁମାନେ ମୋତେ ସମାଲୋଚନା କରି କହିଲେ ତାହ ସେମାନେ କରିବାର କିଛି କାରଣ ନାହିଁ । ସେମାନଙ୍କର ସମାଲୋଚନା ଯେଉଁ ଭାବରେ ହୋଇଛି ମୋର ସେଥିରେ ଆପତ୍ତି କିଛି ନାହିଁ । ସମସ୍ତେ ଭଲ ଭାବରେ କହିଛନ୍ତି । ମୋର ଏତିକି ଦୁଃଖ ଯେ ମୁଁ ଯେଉଁ ଭାବରେ କହିଲି, ତାହା ତାଙ୍କୁ ବୁଝାଇ ପାରିଲି ନାହିଁ । Circulation ବିଷୟରେ ଏତିକି କହି ଏହାକୁ Press କରୁନାହିଁ ।

## 14. ବାଚସ୍ପତି ନିର୍ବାଚନ : ଫଳାଫଳ ଘୋଷଣା (Election of Speaker—Results Announced)

ବରିଷ୍ଠ ସଦସ୍ୟ, ଶ୍ରୀ ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ କାର୍ଯ୍ୟନିର୍ବାହୀ ବାଚସ୍ପତି ଭାବରେ ସେଦିନ (ତା 27-5-1957) ସଭା ଗୃହର କାର୍ଯ୍ୟ ପରିଚାଳନା ମଧ୍ୟରେ ସ୍ଥାୟୀ ବାଚସ୍ପତି ନିର୍ବାଚନ ସଂପାଦନା କରିଥିଲେ ଏବଂ ନିମ୍ନୋକ୍ତ ପ୍ରକାର ଫଳାଫଳ ଘୋଷଣା କରିଥିଲେ—

| | |
|---|---|
| ସମୁଦାୟ ଭୋଟ ସଂଖ୍ୟା | 137 |
| ଅବୈଧ ହୋଇଥିବା ଭୋଟର ସଂଖ୍ୟା | 4 |
| ବୈଧ ଭୋଟ ସଂଖ୍ୟା | 133 |
| ଶ୍ରୀ ନୀଳକଣ୍ଠ ଦାସଙ୍କ ସପକ୍ଷରେ ଭୋଟ ସଂଖ୍ୟା | 73 |
| ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କ ସପକ୍ଷରେ ଭୋଟ ସଂଖ୍ୟା | 60 |

ତେଣୁ ଅସ୍ଥାୟୀ ବାଚସ୍ପତି, ଶ୍ରୀ ମର୍ଦ୍ଦରାଜ ଦେଓ ଶ୍ରୀ ନୀଳକଣ୍ଠ ଦାସଙ୍କୁ ବିଧାନସଭାର ବାଚସ୍ପତି ଭାବରେ ଘୋଷଣା କରିଥିଲେ ଏବଂ ଅଭିନନ୍ଦନ ଜଣାଇଥିଲେ । ଉଭୟଙ୍କ ମଧ୍ୟରେ ଦୀର୍ଘଦିନରୁ ଥିବା ବନ୍ଧୁତ୍ୱର ସୂଚନା ଦେଇ ସେ କହିଥିଲେ ଯେ ନୀଳକଣ୍ଠ ଗୃହର ସର୍ବାଧିକ ଅଭିଜ୍ଞ ଓ ବରିଷ୍ଠ ସାଂସଦ । ଦକ୍ଷତାର ସହିତ ଗୃହର କାର୍ଯ୍ୟ ପରିଚାଳନା କରିବାରେ ସେ ସଫଳ ହେବେ ଏବଂ ମାନ୍ୟବର ସଦସ୍ୟଗଣଙ୍କ ସଦିଚ୍ଛା ଓ ସହଯୋଗ ଲାଭକରିବେ ବୋଲି ଆଶା ପ୍ରକାଶ କରିଥିଲେ । ସେ ନିଶ୍ଚୟ ଗୃହର ପରଂପରା ଓ ସମ୍ମାନ ରକ୍ଷା କରିବେ ବୋଲି କହି ତାଙ୍କୁ ବାଚସ୍ପତି ଆସନ ଅଳଂକୃତ କରିବାକୁ ଅନୁରୋଧ କରିଥିଲେ ।

ଏହାପରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଡ଼କ୍ଟର ହରେକୃଷ୍ଣ ମହତାବ ଅସ୍ଥାୟୀ ବାଚସ୍ପତିଙ୍କୁ ସାଧୁବାଦ ଜଣାଇବା ସଙ୍ଗେ ସଙ୍ଗେ ନବ ନିର୍ବାଚିତ ବାଚସ୍ପତିଙ୍କୁ ଅଭିନନ୍ଦନ ଜ୍ଞାପନ

କରିଥିଲେ । ଏହାପରେ ନୀଳକଂଠଙ୍କ ସହିତ ଏହି ପଦପାଇଁ ପ୍ରତିଦ୍ୱନ୍ଦ୍ୱିତା କରିଥିବା ସଦସ୍ୟ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ମଧ୍ୟ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଥିଲେ । ତା'ପରେ ବିରୋଧୀ ଦଳର ନେତା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ, ବିଶିଷ୍ଟ ସଭ୍ୟ ଶ୍ରୀ ରବୀନ୍ଦ୍ର ମୋହନ ଦାସ ପ୍ରମୁଖ ପଣ୍ଡିତ ନୀଳକଂଠଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ ସେ ନିର୍ଦ୍ଦ୍ୱନ୍ଦ୍ୱରେ ନିର୍ବାଚିତ ହେବା ଅଧିକ ଆନନ୍ଦର ବିଷୟ ହୋଇଥାନ୍ତା ବୋଲି ମତ ପ୍ରକାଶ କରିଥିଲେ ।

ଏହାପରେ ପଣ୍ଡିତ ନୀଳକଂଠ ଶ୍ରୀଯୁକ୍ତ ମର୍ଦ୍ଦରାଜ ଦେଓ ଯେପରି ଅଧ୍ୟକ୍ଷ ପଦରେ ବସି ସେଦିନ ତ୍ରୁଟିଶୂନ୍ୟ ଭାବରେ ଗୃହର କାର୍ଯ୍ୟ ପରିଚାଳନା କଲେ ତାହା ଯେମିତି ସ୍ମରଣୀୟ ତାଙ୍କୁ ବାଚସ୍ପତି ଭାବରେ ଆହ୍ୱାନ କରିବା ସେମିତି ବଡ଼ ଗୌରବର ବିଷୟ ହୋଇଛି ବୋଲି କହିଥିଲେ । ସେ ପ୍ରଥମେ ବିଧାନସଭା ଗୃହକୁ କେବଳ ଗୃହ ବୋଲି ନ କହି ସଭାଗୃହ କହିଲେ ଠିକ୍ ହେବ ବୋଲି ମତ ଦେଇଥିଲେ । " ଏହି ନେତା ଯାହା କହିଲେ ସେ କଥାରେ ମୋର କିଛି କହିବାର ନାଇ । ଦ୍ରବି ଯିବାର କଥା । ସେ ମୋତେ ବହୁତ କିଛି କହିଛନ୍ତି । ବରଂ ନ କହିଥିଲେ ଭଲ ହୋଇଥାନ୍ତା । ସେ ଯାହା କହିଲେ, ମୁଁ ତାଙ୍କୁ ଯଦି କାର୍ଯ୍ୟରେ ପରିଣତ କରିପାରିବି, ତା' ହେଲେ ତାଙ୍କ କଥାର ଯଥାର୍ଥତା ରହିବ । ସେ ବିଷୟରେ ବିଶେଷ କିଛି ମୁଁ କହୁନାହିଁ ।" ଅନ୍ୟ ସଭ୍ୟମାନଙ୍କୁ ସେ ସାଧୁବାଦ ଜଣାଇ ପ୍ରତିଦ୍ୱନ୍ଦ୍ୱିତାକୁ ଚନ୍ଦନ ବୋଲି ଗ୍ରହଣ କରିଛନ୍ତି ଏବଂ ପରିସ୍ଥିତି, ପରଂପରା ଓ ଦୂରଦୃଷ୍ଟିକୁ ମାନି ହିଁ ସବୁ କରିବାକୁ ହୋଇଥାଏ ବୋଲି ମତ ଦେଇଥିଲେ ।

ସବୁ ବିରୋଧ ଭିତରେ ଉଦାର ଭାବ ଧାରଣ କରିବା ଉଚିତ ବୋଲି କହି ଯଥାର୍ଥ ଉପଦେଶ ଦେଇଛନ୍ତି କେବଳ ସଭାଗୃହର ସଦସ୍ୟମାନଙ୍କୁ ନୁହେଁ ଆଧୁନିକ ସମାଜର ପ୍ରତ୍ୟେକଙ୍କୁ "ଏହି ଉଦାରତାହିଁ ସାମ୍ୟଭାବ ସେଥିରେ କ୍ରମେ ସବୁ ବିରୋଧ ତଟିଯିବ ପରଂପରା ନିର୍ମଳ ଦିଶିବ ଓ ଦୃଢ଼ ହେବ । ଆମ୍ଭେମାନେ ସେହି ବଳିଷ୍ଠ ପରଂପରା ତିଆରି କରିବା ଆମ ପୁରୋପୃଷ୍ଟି ମଧ୍ୟ ସୁନ୍ଦର ଓ ସୁଖକର ହେବ ।" ସେ ନିରପେକ୍ଷ ଭାବରେ ସବୁ କାର୍ଯ୍ୟ କରିବାକୁ ଚେଷ୍ଟା କଲେହିଁ ଭୁଲ କରିପାରନ୍ତି ବୋଲି ଆଶଙ୍କା ପ୍ରକାଶ କରିଛନ୍ତି । କାରଣ ଭୂଲ କରିବା ମଣିଷ ପକ୍ଷେ ସ୍ୱାଭାବିକ (To err is human) । ସେ ତେଣୁ ଆତ୍ମସଚେତନ ହୋଇ କହିଛନ୍ତି, "କିନ୍ତୁ ମୁଁ ମଧ୍ୟ ମନୁଷ୍ୟ; ମୋର ବି ଭୁଲ ହେବ ।"

ନିମ୍ନରେ ନୀଳକଂଠ ଓ ଅନ୍ୟ କେତେଜଣ ସଦସ୍ୟଙ୍କର ଭାଷଣ ପ୍ରଦତ୍ତ ହୋଇଛି । ଏହି ଭାଷଣ ବାଚସ୍ପତି ନୀଳକଂଠଙ୍କର ଅପେକ୍ଷାକୃତ ଦୀର୍ଘ ଓ ଗୁରୁତ୍ୱପୂର୍ଣ୍ଣ । କାରଣ ଏହି ପଦରେ ରହି ସେ ଆଉ ଦୀର୍ଘ ଭାଷଣ ଦେବାର ସୁଯୋଗ ପାଇନାହାନ୍ତି ଏବଂ ଆମ୍ଭେମାନେ ତାଙ୍କର ପାଣ୍ଡିତ୍ୟପୂର୍ଣ୍ଣ ଭାଷଣ ପାଇବାରୁ ବଂଚିତ ହୋଇଛୁ ।

## Election of Speaker—Results Announced

The Acting SPEAKER (Shri Ramachandra Mardaraj Deo) : The result of the ballot is as follows :

| | | |
|---|---|---|
| Number of votes polled | .. | 137 |
| Number of votes declared invalid | .. | 4 |
| Number of votes declared valid | | 133 |
| Number of votes polled in favour of Shri Nilakantha Das. | | 73 |
| Number of votes polled in favour of Shri Nityananda Mohapatra. | | 60 |

I hereby declare that Shri Nilakantha Das has been duly elected as the Speaker of the Assembly.

Hon'ble Members, while I declare Shri Nilakantha Das as the Speaker of the Assembly, I take this opportunity of congratulating him most heartily on his being elected as the Speaker of the Assembly. He is known to me. He knows me and I know him.

ଡକଟର ହରେକୃଷ୍ଣ ମହତାବ (ମୁଖ୍ୟମନ୍ତ୍ରୀ) : ଅଧ୍ୟକ୍ଷ ମହୋଦୟ ! ଆପଣଙ୍କର ନିର୍ବାଚନରେ ଆପଣଙ୍କୁ ମୁଁ ଆନନ୍ଦର ସହିତ ଅଭିନନ୍ଦନ ଜଣାଉଛି । ଆପଣ ଆପଣଙ୍କର ନିର୍ବାଚନମଣ୍ଡଳୀରୁ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଛନ୍ତି । ବର୍ତ୍ତମାନ ଆପଣ ଯେଉଁ ଆସନ ଗ୍ରହଣ କଲେ ତାହା ଆପଣଙ୍କ ପ୍ରତି ଉପଯୋଗୀ । ତା' ଛଡ଼ା 1924 ସାଲରୁ ପାର୍ଲାମେଣ୍ଟାରୀ ବ୍ୟାପାରରେ ଆପଣଙ୍କର ଅଭିଜ୍ଞତା ଅଛି । ମୁଁ ଅତି ପୁରାତନ ଇତିହାସ କଥା କହୁଛି । ଯେତେ-ବେଳେ No Changers, Swarajist ପ୍ରଭୃତି ଆନ୍ଦୋଳନ କଂଗ୍ରେସରେ ଚାଲୁଥିଲା ସେତେବେଳୁ ଆପଣ ଓଡ଼ିଶା Parliamentry Politicsରେ ନେତୃତ୍ୱ ନେଇଥିଲେ । ସେ ସମୟରୁ ଆପଣ Central Legislatureର ମେମ୍ବର ହୋଇଆସୁଛନ୍ତି । ଆପଣଙ୍କ ବିଦ୍ୱତ୍ତା ସମ୍ବନ୍ଧରେ କହିବା ନିଷ୍ପ୍ରୟୋଜନ, କେବଳ ପାର୍ଲାମେଣ୍ଟାରୀ ଅଭିଜ୍ଞତା ନୁହେଁ, ଅନ୍ୟାନ୍ୟ ସାଧାରଣ କ୍ଷେତ୍ରରେ ମଧ୍ୟ ଆପଣଙ୍କର ଖ୍ୟାତି ଅଛି । କହିବାକୁ ଗଲେ ସ୍ୱର୍ଗୀୟ ଗୋପବନ୍ଧୁ ଦାସଙ୍କ ସ୍ଥାନ ଆପଣ ପୂରଣ କରିଛନ୍ତି । ଏ ଗୋଟିଏ ସୌଭାଗ୍ୟର ବିଷୟ ଯେ ଆପଣଙ୍କର ଅନ୍ୟ ଯେକୌଣସି ଗୁଣକୁ ଧୃଷ୍ଟତାର ସହିତ କେହି ଆପତ୍ତି କଲେ ମଧ୍ୟ ଆପଣ ଯେ ବୟୋଜ୍ୟେଷ୍ଠ ଏ କଥାରେ କେହି ଆପତ୍ତି କରିପାରିବେ ନାହିଁ । ଏହା ସର୍ବବାଦିସମ୍ମତ

ଯେ ଆପଣ ବୟୋଜ୍ୟେଷ୍ଠ । ସେ ଦୃଷ୍ଟିରୁ ଓ ଆପଣଙ୍କର ଅନ୍ୟାନ୍ୟ ଅନେକ ସଦଗୁଣ ଦୃଷ୍ଟିରୁ ମୁଁ ଭାବୁଛି ଆପଣଙ୍କୁ ସଭାପତି ଭାବରେ ନିର୍ବାଚନ କରି ଏ ସଭା ଧନ୍ୟ ହୋଇଛି । ଏ ପ୍ରକାର ଆସନରେ ଆପଣ ବସିଲେ ଏ ସଭାର ଗୁରୁତ୍ୱ ଖୁବ୍‌ବଢିବ । ସଭାର ସଭ୍ୟ ସଂଖ୍ୟା ବୃଦ୍ଧିରେ ସଭାର ସମ୍ମାନ ବା ଗୌରବ ଯେ ବଢିବ ତା' ନୁହେଁ, ସଭାର ଗୌରବ ସଭାପତିଙ୍କ ଉପରେ ନିର୍ଭର କରେ । ଆପଣ ସେ ଗୌରବ ରକ୍ଷା କରିବେ । ସେ ଗୌରବ ରକ୍ଷା କରିବାପାଇଁ ଏ ଦଳ ତରଫରୁ ଯାହା ଆମର କରିବାର କଥା ତାହା କରିବା-ପାଇଁ ମୁଁ ନିର୍ଭର ପ୍ରତିଶ୍ରୁତି ଦେଉଛି । ଆପଣଙ୍କର ଯାହା ନିର୍ଦ୍ଦେଶ ହେବ ତାକୁ ଅନ୍ତର ସହିତ ପାଳନ କରିବାପାଇଁ ମୁଁ ପ୍ରସ୍ତୁତ ଅଛି ଏବଂ ପ୍ରତିଶ୍ରୁତି ଦେଉଛି । ଯେଉଁ କେତେଜଣ ଅନଭିଜ୍ଞ ସଭ୍ୟ ଅଛନ୍ତି ସେମାନେ ଯଦି କେବେ କିଛି ଦୋଷ ତ୍ରୁଟି କରନ୍ତି ତାକୁ ଆପଣ ଚଳାଇନେବେ ବୋଲି ମୋର ଆଶା ।

ଶ୍ରୀ ନିତ୍ୟାନନ୍ଦ ମହାପାତ୍ର : ନବ ନିର୍ବାଚିତ ତୃତୀୟ ବାଚସ୍ପତି ମହୋଦୟ ! ଆପଣ ଗୀତା ରହସ୍ୟର ଲେଖକ, ଆପଣଙ୍କର ସ୍ମରଣ ଥିବ ଗୀତାର ଗୋଟିଏ ଶ୍ଳୋକ । ଯାହାର ଅର୍ଥ ମନୁଷ୍ୟ ଲାଭାଲାଭ, ଜୟ ଓ ଅଜୟ ବା ପରାଜୟରେ ସ୍ଥିତପ୍ରଜ୍ଞ ହୋଇଥାଏ, ମାତ୍ର ମନୁଷ୍ୟ ଭାଗ୍ୟରେ ସାଧନା ବ୍ୟତିରେକ ମଧ୍ୟ ଏପରି ସୁଯୋଗ ଆସିଥାଏ ଯେତେବେଳେ କେବଳ ଲାଭାଲାଭ ଓ ଜୟାଜୟରେ ସ୍ଥିତପ୍ରଜ୍ଞ ହେବାର ଅତି ସାମାନ୍ୟ ହୋଇଯାଏ । ପରାଜୟରେ ସେ କେବଳ ସ୍ଥିତପ୍ରଜ୍ଞ ନୁହେଁ; ଗୌରବ ଓ ଆନନ୍ଦ ଅନୁଭବ କରେ । ମୁଁ ଆପଣଙ୍କ ଜୟରୁ ବୋଧହୁଏ ନିଜର ପରାଜୟରେ ଆଜି ଗୌରବାନ୍ୱିତ ହୋଇଛି । ଆପଣ ଏକ ଦିଗରେ ସାହିତ୍ୟିକ ଓ ଅପର ଦିଗରେ ରାଜନୀତିଜ୍ଞ । ଏ ଦୁଇ ଦିଗରେ ଏପରି ପ୍ରବୀଣ ଯେ ଆପଣଙ୍କୁ ସାଧାରଣ ଜୀବନରେ ଜଣେ ସବ୍ୟସାଚୀ କହିଲେ ଅତ୍ୟୁକ୍ତି ହେବନାହିଁ । ଆପଣଙ୍କ ବିଦ୍‌ବତ୍ତା ସମ୍ପର୍କରେ ମୁଁ କିଛି କହିବାକୁ ଚାହୁଁ ନାହିଁ । କିନ୍ତୁ ଆପଣଙ୍କୁ ଏ କ୍ଷେତ୍ରରେ ଅଭିନନ୍ଦନ କଲାବେଳେ ଆପଣଙ୍କ ଅନୁମତିକ୍ରମେ ମୁଁ ଗୋଟିଏ ପ୍ରସଙ୍ଗ ଉତ୍‌ଥାପନ କରିବାକୁ ଚାହେଁ ଯେ ଯେଉଁ ପକ୍ଷ ଦୁର୍ବଳ ସେ ଆପଣଙ୍କର ଶରଣାର୍ଥୀ ଏବଂ ଯେଉଁ ପକ୍ଷ ସବଳ ସେ ଯେପରି ସବୁବେଳେ ଆପଣଙ୍କ ଅଙ୍କୁଶ ଅଧୀନରେ ରହେ । ତାହାହେଲେ ଆମ୍ଭମାନଙ୍କର ଏହି ସାଧାରଣତନ୍ତ୍ରର ଗୌରବ ବୃଦ୍ଧି ପାଇବ ଏବଂ ଆମ୍ଭମାନଙ୍କର ଏହି ଗୃହର ସମ୍ମାନ ଓ ମର୍ଯ୍ୟାଦା ସୁରକ୍ଷିତ ହେବ । ତା ସଙ୍ଗେ ସଙ୍ଗେ ମୁଁ ଆପଣଙ୍କୁ ସ୍ମରଣକରାଇ ଦେଲେ ଅପ୍ରାସଂଗିକ ହେବନାହିଁ ଯେତେବେଳେ ବିଦେଶୀ ସରକାର ଭାରତ ଉପରେ ଅଧିକାର ସାବ୍ୟସ୍ତ କରି ରହିଥିଲେ ସେତେବେଳେ ଏହି ଗୃହର ଜଣେ ବାଚସ୍ପତି ନିର୍ଭିକ ଭାବରେ ଘୋଷଣା କରିଥିଲେ ଯେଉଁ ମୁହୂର୍ତ୍ତରେ ମୁଁ ଗୃହର ଦୁଇ ପକ୍ଷରୁ ଗୋଟିଏ ପକ୍ଷର ଅବିଶ୍ୱାସ ଭାଜନ ହେବି ବା ବିଶ୍ୱାସଭାଜନ ନ ହେବି ସେହି ମୁହୂର୍ତ୍ତରେ ମୁଁ ମୋର ଏଇ ଆସନ ପରିତ୍ୟାଗ କରିବି । ଏହା ଉତ୍‌ଥାପନ କରିବାର ଅର୍ଥ ହେଉଛି ଯେ ଆପଣ ଯେଉଁଭଳି ଭାବରେ ନିର୍ବାଚିତ

ହୋଇଛନ୍ତି ତାହା ନିଷ୍କଣ୍ଟକ ବା ନିରଙ୍କୁଶ ନୁହେଁ ; ଖଣ୍ଡା ଧାର ଝୁଲିଲାଭଳି ଆପଣଙ୍କୁ ନ୍ୟାୟ ଅନ୍ୟାୟର ବିଗ୍ଭର କରିବାକୁ ହେବ । ଏହି ଦିଗରୁ ବିଗ୍ଭର କଲେ ଆପଣଙ୍କ ଆସନ ଯେତିକି ମର୍ଯ୍ୟାଦାପୂର୍ଣ୍ଣ ସେତିକି ଗୁରୁତ୍ୱ ମଣ୍ଡିତ ମଧ୍ୟ । ଏତିକି କହି ମୁଁ ଆଜି ଆପଣଙ୍କୁ ଅଭିନନ୍ଦନ ଜଣାଉଛି ।

× × × ×

ଶ୍ରୀ ରବୀନ୍ଦ୍ର ମୋହନ ଦାସ : ନବ ନିର୍ବାଚିତ ବାଚସ୍ପତି ମହୋଦୟ ! ଆଜି ମୁଁ ଅନ୍ୟମାନଙ୍କ ପରି ଆପଣଙ୍କ ନିର୍ବାଚନରେ ଆନ୍ତରିକ ଅଭିନନ୍ଦନ ଜଣାଉଛି । ପୂର୍ବରୁ ଆପଣଙ୍କ ବୟସ ବିଷୟରେ ଗୃହର ନେତା ଯାହା କହିଲେ କେବଳ ସେତିକି ନୁହେଁ ଆପଣଙ୍କ ଯୋଗ୍ୟତା ଓ ପାଣ୍ଡିତ୍ୟ ବିଷୟରେ ଆମେ ସମସ୍ତେ ଯେ କେବଳ ଜାଣୁ, ତା' ନୁହେଁ । ଏହି ଗୃହର ବାହାରେ ମଧ୍ୟ ସମସ୍ତେ ଜାଣନ୍ତି ଆପଣ ଯୋଗ୍ୟଲୋକ । ଆଜି ଯେ ପରିସ୍ଥିତିରେ ଆପଣଙ୍କ ନିର୍ବାଚନ ହେଲା ତା' ନ ହୋଇ ଯଦି ଆପଣ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥାଆନ୍ତେ ତା' ହେଲେ ଭଲ ହୋଇଥାନ୍ତା । ସେ ଯାହା ହେଉ ଆଜି ପର୍ଯ୍ୟନ୍ତ ଆପଣ ଗୋଟିଏ ରାଜନୀତିକ ଦଳରେ ଅନ୍ତର୍ଭୁକ୍ତ ଥିଲେ । ବର୍ତ୍ତମାନ ଏହି ଗୃହର କର୍ତ୍ତା ହେଲେ । ସେହି ଦୃଷ୍ଟିରୁ ଆମେ ସମସ୍ତେ ଆଶା କରିବୁ ଯେ ଦୁର୍ବଳପକ୍ଷ ଏବଂ ସବଳପକ୍ଷ ଆପଣଙ୍କଠାରୁ ସମାନ ବ୍ୟବହାର ପାଇବେ । ମୋର ଆପଣଙ୍କ ବିଷୟରେ କିଛି କହିବାର ନାହିଁ । ମୋର ପୂର୍ବବର୍ତ୍ତୀ ବକ୍ତାମାନେ ଆପଣଙ୍କ ବିଷୟରେ ଯଥେଷ୍ଟ କହିଛନ୍ତି । ତଥାପ ଆପଣଙ୍କୁ ମୋର ଶେଷ ନିବେଦନ ଯେ ଏ ଗୃହର ସମ୍ମାନବୃଦ୍ଧି ପାଇଁ ଆପଣ ଯାହା କରିବେ ସେଥିରେ ଆମେ ପୂର୍ଣ୍ଣ ପ୍ରାଣରେ ସହଯୋଗ କରିବୁ । ଏଥିରେ କୌଣସି ସନ୍ଦେହ ନାହିଁ । ଶେଷରେ ମୁଁ ଆପଣଙ୍କୁ ଏହି ଗୃହ ପକ୍ଷରୁ ଆନ୍ତରିକ ଅଭିନନ୍ଦନ ଜଣାଉଛି ।

Mr. SPEAKER : ସଦସ୍ୟବୃନ୍ଦ ! ପ୍ରଥମରୁ ଆଜି ଚେୟାରମ୍ୟାନ ଯେପରି ଭାବରେ ମୋତେ ଆହ୍ୱାନ କଲେ ସେହିଟା ମୋ ପକ୍ଷରେ ସ୍ମରଣୀୟ । ପୁଣି ଯେପରି ଭାବରେ ସେ କାର୍ଯ୍ୟ କଲେ ସେଥିରେ କୌଣସି ତ୍ରୁଟିର ଗନ୍ଧ ନାହିଁ । ଅତି ଆଦରରେ ଆଉ ନିଜର ମର୍ଯ୍ୟାଦା ଖୁବ୍ ରଖି ମୋତେ ଯେଉଁ କଥା କହିକରି ଆହ୍ୱାନ କଲେ ତାହା ତାଙ୍କ ପକ୍ଷରେ ବଡ଼ ଗୌରବର ବିଷୟ ହୋଇଛି ଆଉ ମୋ ପକ୍ଷରେ ବି ତାହା ଭୁଲିବାର ନୁହେଁ । ତାପରେ ଆମର ଏହି ସଭା ବା House ହାଉସ୍ କୁ ଗୃହ ବୋଲି ଓଡ଼ିଆରେ କହିଲେ ଠିକ୍ ହେବ ନାହିଁ । ମୁଁ ଜାଣେ ସଭାଗୃହ କହିଲେ ଗୃହକୁ ବୁଝାଏ, କିନ୍ତୁ ଇଂରାଜୀରେ House of Assembly କହିଲେ Assembly ବା ଯାହା ସଭାକୁ ବୁଝାଏ, ସେଥିପାଇଁ ଗୃହ ନ କହି ସଭା କହିଲେ ଠିକ୍ ହେବ । ଏହି ସଭାର ନେତା ଯାହା କହିଲେ ସେ କଥାରେ ମୋର କିଛି କହିବାର ନାହିଁ । ଦବି ଯିବାର କଥା ସେ ମୋତେ ବହୁତ କିଛି କହିଛନ୍ତି । ବରଂ ନ କହିଥିଲେ, ଭଲ ହୋଇଥାନ୍ତା । ସେ ଯାହା

କହିଲେ ମୁଁ ତାକୁ ଯଦି କାର୍ଯ୍ୟରେ ପରିଣତ କରିପାରିବି ତା'ହେଲେ ତାଙ୍କ କଥାର ଯଥାର୍ଥତା ରହିବ, ସେ ବିଷୟରେ ବିଶେଷ କିଛି ମୁଁ କହୁନାହିଁ । ମୋର ପ୍ରତିଦ୍ୱନ୍ଦ୍ୱୀ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ଯାହା କହିଲେ ସେଥିରେ ମୋର କୌଣସି ଆଲୋଚନା କରିବାର ନାହିଁ । ଏହି ଘଟଣାରେ ଯାହା ତାଙ୍କ ପକ୍ଷରେ କହିବା ସୁନ୍ଦର ତାହା ସେ କହିଲେ । ତା' ପରେ ବିରୋଧର ନେତା ଅନେକ କଥା କହିଲେ । ସେ କହିଲେ ମୋତେ ଅପ୍ରତି-ଦ୍ୱନ୍ଦ୍ୱୀ ଭାବରେ ସମସ୍ତେ ସ୍ୱୀକାର କରିଥିଲେ ଭଲ ହୋଇଥାନ୍ତା, ତାହା ମୋ ପକ୍ଷରେ ଚନ୍ଦନ । କାହିଁକି ନା ଏ ଦେଶର ପରିସ୍ଥିତି ଯାହା ସେଥିରେ ଯେ ଯାହା କୁହନ୍ତୁ, ମୋତେ ଅନେକେ ଅପ୍ରତିଦ୍ୱନ୍ଦ୍ୱୀ ହେବା ଉଚିତ ବୋଲି ମନେ କରୁଛନ୍ତି ସେ କଥା ମୁଁ ଜାଣେ । କିନ୍ତୁ ତାହା ହୋଇ ପାରିନାହିଁ । ଯାହା ହୋଇଛି ତା' ଠିକ୍ ହୋଇଛି ପରିସ୍ଥିତିକି ଦେଖିଁ କୌଣସି କଥା କରି ହୁଏ ନା । କରି ବସିଲେ ମଧ୍ୟ ଏହା ଖାପ ଖାଏନା । ଅନ୍ୟ ଦେଶରେ ବା ଅନ୍ୟଠାରେ ଏହା ହୋଇଛି ବୋଲି ଭାବି ବସିଲେ ବା ଝୁରି ବସିଲେ କିଛି ଲାଭ ନାହିଁ । ଆମ ପରିସ୍ଥିତି ଯାହା ସେଥିରେ ବର୍ତ୍ତମାନ ଅବସ୍ଥାରେ, ମନେ ହେଉଛି, ଅନ୍ୟ ପ୍ରକାର ହୋଇପାରି ନଥାନ୍ତା । ପରମ୍ପରାକୁ ଲକ୍ଷ୍ୟରଖି ପୁରୋଦୃଷ୍ଟିକୁ ଧରି ପରିସ୍ଥିତିକୁ ତିଆରି କରିବାକୁ ହୁଏ । ପରମ୍ପରା ଓ ପୁରୋଦୃଷ୍ଟି ଏଠାରେ କୌଣସି ସମସ୍ତେ ବୁଝିବା ଭଳି ସମାନ ପରିସ୍ଥିତି ହୁଏତ ତିଆରି କରି ପାରିନାହିଁ, ତେଣୁ ଆମ୍ଭମାନଙ୍କର ଉଦ୍ୟମ ହେବା ଉଚିତ । ଇଂଲଣ୍ଡକୁ ବା ଅନ୍ୟ ଦେଶକୁ ନ ଚାହିଁ ଆମ ପରମ୍ପରାକୁ ଦୃଢ଼ ଭାବରେ ଲକ୍ଷ୍ୟ ରଖି ଆମେ ଭବିଷ୍ୟତରେ କ'ଣ ହେବ ସେ କଥା କଳ୍ପନାକରି ଉଦାର ପରିସ୍ଥିତିରେ ଚାରିଆଡ଼କୁ ଚାହିଁ କାର୍ଯ୍ୟ କରିବା ଉଚିତ । ସେଥିରେ ଆପାତ ବିରୋଧ ହୁଏତ ରହିବ, ମାତ୍ର ସେହି ବିରୋଧ ଭିତରେ ସମସ୍ତ ବିଷୟକୁ ନିଜର ବୋଲି ଲକ୍ଷ୍ୟକରି ଉଦାର ଭାବ ଧାରଣ କରିବାକୁ ହେବ । ଏହି ଉଦାରତାହିଁ ସାମ୍ୟଭାବ । ସେଥିରେ କ୍ରମେ ସବୁ ବିରୋଧ ତୁଟିଯିବ, ପରମ୍ପରା ନିର୍ମଳ ଦିଶିବ ଓ ଦୃଢ଼ ହେବ । ଆମ୍ଭେମାନେ ସେହି ବଳିଷ୍ଠ ପରମ୍ପରା ତିଆରି କରିବା ଆମ ପୁରୋଦୃଷ୍ଟି ମଧ୍ୟ ସୁନ୍ଦର ଓ ସୁଖକର ହେବ ।

ଏଠାରେ ପି. ଏସ୍. ପି. ଦଳର ନେତା ମଧ୍ୟ ଭଲ କଥା କହିଛନ୍ତି । କିନ୍ତୁ ଏ ସବୁ କଥା ଭିତରେ ସଭାର ନେତା ମତେ ସବୁ ବିଷୟରେ ଆତ୍ମ ସମର୍ପଣ କରି ସବୁ ଗଢିବା-ପାଇଁ ସୂଚନା ଦେଇଛନ୍ତି । କିନ୍ତୁ ମୁଁ ମଧ୍ୟ ମନୁଷ୍ୟ । ମୋର ବି ଭୁଲ ହେବ । ସେଥିରେ ମଧ୍ୟ ସମସ୍ତଙ୍କର କେବଳ ଆତ୍ମସମର୍ପଣ ନୁହେଁ ସମବେଦନା ସହଯୋଗ ଲୋଡ଼ା । ସେହି ସମବେଦନା ଓ ସହଯୋଗ ଅପେକ୍ଷାରେ ମୁଁ ପୂର୍ଣ୍ଣ ପ୍ରାଣରେ ଆଜି ଆପଣମାନଙ୍କ ପ୍ରଦତ୍ତ ଏ ପଦକୁ ଶିରୋଧାର୍ଯ୍ୟ କରି ଏଠାରେ ବସୁଚି । ଆଜି ଆଉ ଅଧିକ କିଛି କହିବାର ନାହିଁ ।

## ପଣ୍ଡିତ ନୀଳକଣ୍ଠ ଦାସଙ୍କ ସଂକ୍ଷିପ୍ତ ଜୀବନ ପଞ୍ଜି

| | | |
|---|---|---|
| 1884 | ମସିହା | ଅଗଷ୍ଟ 5 ତାରିଖ ଜନ୍ମ, ଗ୍ରାମ-ଶ୍ରୀରାମଚନ୍ଦ୍ରପୁର, ଥାନା-ସତ୍ୟବାଦୀ, ଜିଲ୍ଲା-ପୁରୀ । |
| 1899 | ,, | ମଧ୍ୟଭର୍ଣ୍ଣାକୁଲାର ପାଶ୍ ପରେ ପୁରୀ ଜିଲ୍ଲା ସ୍କୁଲର ଷଷ୍ଠ ଶ୍ରେଣୀରେ ନାମ ଲେଖା । |
| 1905 | ,, | (ରାଧାମଣୀ ଦେବୀଙ୍କ ସହ) ବିବାହ, ଏନ୍‌ଟ୍ରାନସ୍ ପାଶ୍ । |
| 1907 | ,, | ଏଫ୍. ଏ ପାଶ୍ ଓ ମେୟୋବୃତ୍ତି ଲାଭ । |
| 1909 | ,, | ବି. ଏ. ପାଶ୍ ଓ ଗୋପବନ୍ଧୁଙ୍କ ସଙ୍ଗେ ସତ୍ୟବାଦୀ ବନ ବିଦ୍ୟାଳୟ ପ୍ରତିଷ୍ଠା । |
| | | ପରେ ପରେ ଏମ୍. ଏ. ପଢିବା ପାଇଁ କଲିକତା ଗମନ । |
| 1911 | ,, | କଲିକତା ବିଶ୍ୱବିଦ୍ୟାଳୟରୁ ଦର୍ଶନ ଶାସ୍ତ୍ରରେ ଏମ୍. ଏ. ପାଶ୍ ଓ ସତ୍ୟବାଦୀ ବନବିଦ୍ୟାଳୟରେ ଯୋଗଦାନ । |
| 1911 ରୁ 1918 | ,, | ସତ୍ୟବାଦୀ ବନବହାରର 'କୁଳପତି' (ହେଡ୍‌ମାଷ୍ଟର) । ସମାଜ ସଂସ୍କାର ଆନ୍ଦୋଳନ ବନାମ 'ନିଶ' ଆନ୍ଦୋଳନ, 'ସତ୍ୟବାଦୀ' ମାସିକ ପତ୍ରିକାର କାର୍ଯ୍ୟକାରୀ ସମ୍ପାଦକ । |
| 1918 | ,, | ସତ୍ୟବାଦୀ ବନବିହାର 'କୁଳପତି' ପଦତ୍ୟାଗ । |
| 1919 | ,, | ଡ଼ଭାର ଦୁର୍ଭିକ୍ଷ ପ୍ରପୀଡ଼ିତଙ୍କ ସେବା । |
| 1920 | ,, | କୁଳପତି ସାର ଆଶୁତୋଷ ମୁଖାର୍ଜିଙ୍କ ନିମନ୍ତ୍ରଣ କ୍ରମେ ସେପ୍‌ଟେମ୍ବର 21 ତାରିଖରେ କଲିକତା ବଶ୍ୱବଦ୍ୟାଳୟରେ ଆଧୁନିକ ଭାରତୀୟ ସାହିତ୍ୟ ଓ ତୁଳନାତ୍ମକ ଭାଷାତତ୍ତ୍ୱ ବିଭାଗରେ ଓଡ଼ିଆ ଅଧ୍ୟାପକ ରୂପେ ଯୋଗଦାନ । |
| 1921 | ,, | ଜାନୁଆରୀ 6 ତାରିଖରେ କଲିକତା ବିଶ୍ୱବିଦ୍ୟାଳୟ ଅଧ୍ୟାପକ ପଦତ୍ୟାଗ । |
| | | ଜାନୁଆରୀ 7 ତାରିଖରେ ସମ୍ବଲପୁରରେ ଅସହଯୋଗ ଆନ୍ଦୋଳନ ପରିଚାଳନା 'ସେବା' ପତ୍ରିକା ପ୍ରକାଶନ । |

| | | |
|---|---|---|
| 1923 | ମସିହା | 4 ମାସ ପାଇଁ କାରାବରଣ । |
| | | କଂଗ୍ରେସ ସ୍ୱରାଜ୍ୟ ଦଳରେ ଯୋଗଦାନ । |
| 1924 ରୁ 1926 | ” | ସ୍ୱରାଜ୍ୟ ଦଳ ପକ୍ଷରୁ ବିହାର-ଓଡ଼ିଶା ପ୍ରଦେଶର ଅଣ-ମୁସଲମାନ ସଭ୍ୟ ଭାବରେ କେନ୍ଦ୍ର ବ୍ୟବସ୍ଥା ସଭାର ସଭ୍ୟ ଓ ମୋତିଲାଲ ନେହେରୁଙ୍କ ସଭାପତିତ୍ୱରେ ଗଠିତ 'ସ୍ୱରାଜ୍ୟ' ବ୍ୟବସ୍ଥା ସଭା ଦଳର ସଂପାଦକ । ଦିଲ୍ଲୀ ବିଶ୍ୱବିଦ୍ୟାଳୟ ସଂସଦର ସଭ୍ୟ । |
| 1926 | ” | 2ୟ ଥର ଲାଗି କେନ୍ଦ୍ର ବ୍ୟବସ୍ଥା ସଭାକୁ କଂଗ୍ରେସ ଦଳର ସଭ୍ୟ ରୂପେ ନିର୍ବାଚିତ ଓ ବୁଲାଭାଇ ଦେଶାଇଙ୍କ ନେତୃତ୍ୱରେ ଗଠିତ ବିରୋଧୀ ଦଳର ମଧ୍ୟ ସଂପାଦକ । |
| 1927 | ” | ଫେବୃଆରୀ ୪ ତାରିଖରେ କେନ୍ଦ୍ର ଆସେମ୍ବ୍ଲିରେ ଓଡ଼ିଆ ଭାଷା ଅଞ୍ଚଳ ଗୁଡ଼ିକର ଏକତ୍ରୀକରଣ ପ୍ରସ୍ତାବ ଆଗତ କରିବା । |
| 1928-29 | ” | ଗୋପବନ୍ଧୁଙ୍କ ମୃତ୍ୟୁପରେ 'ସମାଜ' ସମ୍ପାଦନା । |
| 1929 | ” | ଟାଟା ଓ କଲିକତାରେ ଶ୍ରମିକ ସଙ୍ଗଠନ । |
| 1930 | ” | କେନ୍ଦ୍ର ବ୍ୟବସ୍ଥା ସଭାରୁ ଇସ୍ତଫା ଓ କାକଟପୁରରେ ଲବଣ ସତ୍ୟାଗ୍ରହ ଓ କାରାବରଣ । |
| | | ଜେଲରୁ ମୁକ୍ତିଲାଭ କରି ଡ଼ିସେମ୍ବର, 30 ତାରିଖରେ ବନାରସରେ ଅନୁଷ୍ଠିତ ନିଖିଳ ଏସିଆ ଶିକ୍ଷା ସମ୍ମିଳନୀରେ ପ୍ରବନ୍ଧ ପାଠ । |
| | | ଓଡ଼ିଶା ସର୍ବଦଳୀୟ ସମ୍ମିଳନୀର ସଭାପତି । |
| 1931 | ” | ପ୍ରସ୍ତାବିତ ପୁରୀ କଂଗ୍ରେସ ଅଧିବେଶନର ଅଭ୍ୟର୍ଥନା ସମିତିର ସଭାପତି । |
| 1932 ରୁ 1933 | ” | କାରାବରଣ 3 ଥର । |
| 1934 | ” | 'ନବଭାରତ' ପତ୍ରିକା ସମ୍ପାଦକ ଓ ପ୍ରକାଶନ । |

| | | |
|---|---|---|
| 1934 ରୁ 1936 | ମସିହା | ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି । |
| 1936 | ” | 'ଲୋକମତ' ପ୍ରକାଶନ । |
| 1937 | ” | ଓଡ଼ିଶାରେ କଂଗ୍ରେସ ଦଳର ଅଭୂତପୂର୍ବ ବିଜୟ ଆନୟନ ଓ ସରକାର ଗଠନରେ ନେତୃତ୍ୱ ଦାନ ।<br>ଓଡ଼ିଶାରେ ବିଶ୍ୱବିଦ୍ୟାଳୟ ସ୍ଥାପନ ପାଇଁ ବେସରକାରୀ ସମିତିର ସଭାପତି । |
| 1938 | ” | ଓଡ଼ିଶାରେ ବିଶ୍ୱବିଦ୍ୟାଳୟ ସ୍ଥାପନ ପାଇଁ ଗଠିତ ସରକାରୀ କମିଟିର ସଭାପତି । |
| 1939 | ” | ଉତ୍କଳ କଂଗ୍ରେସ କମିଟିର ସଭାପତି ନିର୍ବାଚିତ । ସୁବାସ ବୋଷଙ୍କ ସଙ୍ଗେ ସହଯୋଗ । |
| 1940 | ” | ପ୍ରାଦେଶକ କଂଗ୍ରେସ ସଭାପତି ପଦରୁ ଇସ୍ତଫା ।<br>ଉତ୍କଳ ସାହିତ୍ୟ ସମାଜର ବରେଣ୍ୟ ଓ ଆଜୀବନ ସଭ୍ୟ । |
| 1941 ରୁ 1952 | ” | ନୀରବ ସାହିତ୍ୟ ସାଧନା 'ନବଭାରତ' ସଂପାଦନାକୁ ଅଗ୍ରାଧିକାର ପ୍ରଦାନ । |
| 1942 | ” | କଂଗ୍ରେସ ଦଳ ତ୍ୟାଗ । |
| 1951 | ” | 'ଉତ୍କଳଗୁରୁ' ଉପାଧିରେ ଭୂଷିତ । |
| 1952 | ” | 'ସ୍ୱାଧୀନ ଜନସଂଘ' ଦଳ ପ୍ରତିଷ୍ଠା ଓ ଏଇ ଦଳର ନେତା ଭାବରେ ଓଡ଼ିଶା ବିଧାନସଭାକୁ ସତ୍ୟବାଦୀରୁ ସଭ୍ୟ ରୂପେ ନିର୍ବାଚିତ । |
| 1954 | ” | ବିଶ୍ୱଭାରତୀ (ଶାନ୍ତିନିକେତନ)ରେ ଜଗନ୍ନାଥ ସଂସ୍କୃତି ପ୍ରସଙ୍ଗରେ ଭାଷଣ ଓ ସମ୍ବର୍ଦ୍ଧନା ଲାଭ । |

| | | |
|---|---|---|
| 1955 | ମସିହା | ପଣ୍ଡିତ ନେହେରୁଙ୍କ ଅନୁରୋଧ କ୍ରମେ କଂଗ୍ରେସରେ ଯୋଗଦାନ । |
| | | ଉତ୍କଳ ବିଶ୍ୱବିଦ୍ୟାଳୟରୁ ସମ୍ମାନିତ ଡ଼ି. ଲିଟ୍. ଉପାଧି ଲାଭ । ଉତ୍କଳ ବିଶ୍ୱବିଦ୍ୟାଳୟର ଉପକୁଳାଧିପତି (Pro-Chancellor) । |
| 1957 | ,, | କଂଗ୍ରେସ ପ୍ରାର୍ଥୀ ରୂପେ ସତ୍ୟବାଦୀ ନିର୍ବାଚନମଣ୍ଡଳୀରୁ ଅପ୍ରତିଦ୍ୱନ୍ଦ୍ୱୀ ଭାବେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ଓ ଓଡ଼ିଶା ବଧାନସଭାରେ ବାଚସ୍ପତି ପଦ ମଣ୍ଡନ । |
| 1958 | ,, | ଓଡ଼ିଶା ସାହିତ୍ୟ ଏକାଡ଼େମୀ ସଭାପତି । ବିଧାନସଭାର ସ୍ୱତନ୍ତ୍ରତାର ପ୍ରତିଷ୍ଠା । |
| | | ଭାରତ ସରକାର (ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ)ଙ୍କ ଦ୍ୱାରା ଭୁବନେଶ୍ୱରସ୍ଥ ସରକାରୀ ବାସଭବନରେ 'ପଦ୍ମଭୂଷଣ' ଉପାଧିରେ ଭୂଷିତ । |
| 1962 | ,, | ଉତ୍କଳ ବିଶ୍ୱବିଦ୍ୟାଳୟ ଉପକୁଳାଧିପତି ପଦରୁ ଅବସର ଗ୍ରହଣ । |
| 1963 | ,, | 'ଆତ୍ମ ଜୀବନୀ' ଲାଗି ଭାରତୀୟ ସାହିତ୍ୟ ଏକାଡ଼େମୀରୁ ସମ୍ମାନ ଲାଭ । |
| 1967 | ,, | ନଭେମ୍ବର 6 ତାରିଖ ପବିତ୍ର କାର୍ତ୍ତିକ ଶୁକ୍ଳ ପଞ୍ଚମୀ ତିଥିରେ ତିରୋଧାନ । |

## କାରା ଜୀବନ

ତା 7-2-1923ରୁ ତା 18-6-1923—ହଜାରିବାଗ ଜେଲ୍

ତା 10-6-1930ରୁ ତା 22-12-1930—ହଜାରିବାଗ ଜେଲ୍

ତା 19-1-1931ରୁ ତା 10-3-1931—ପୁରୀ ଜେଲ୍

ତା 16-1-1932ରୁ ତା 1-5-1933—ହଜାରିବାଗ ଜେଲ

---

# ସମସ୍ତ ବିଚ୍ଛିନ୍ନାଞ୍ଚଳକୁ ଏକ ଶାସନାଧୀନରେ ଆଣି ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରିବା ପାଇଁ କେନ୍ଦ୍ର ବ୍ୟବସ୍ଥା ସଭାରେ ଦାବି

ପଣ୍ଡିତ ନୀଳକଣ୍ଠ ଦାସ

1926 ମସିହା ନିର୍ବାଚନରେ, ନୀଳକଣ୍ଠ ବିପୁଳ ଭୋଟରେ ଜୟଲାଭ କରି 2ୟ ଥର ପାଇଁ କେନ୍ଦ୍ର ବ୍ୟବସ୍ଥା ସଭାକୁ ନିର୍ବାଚିତ ହେଲେ ଓ ବ୍ୟବସ୍ଥା ସଭାରେ ନିଜର ବ୍ୟକ୍ତିଗତ ମହତ୍ ଓ 'ସ୍ୱରାଜ୍ୟ' ପାର୍ଟି ସମ୍ପାଦକ ପଦର ମର୍ଯ୍ୟାଦା ବୃଦ୍ଧି କରିଥିଲେ । ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଓ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ନିମନ୍ତେ ସେ 1927 ମସିହା ଫେବୃଆରୀ ୪ ତାରିଖରେ ଗୋଟିଏ ବେସରକାରୀ ବିଲ୍ ଆଗତ କରିଥିଲେ ।

ବିଲ୍ ଆଗତ କରି ପଣ୍ଡିତ ନୀଳକଣ୍ଠ କହିଲେ, "ଏ ପ୍ରସ୍ତାବ ସରକାରଙ୍କ ପକ୍ଷରେ ଏକ ନୂଆ ବିଷୟ ନୁହେଁ—ପ୍ରାୟ ଦୀର୍ଘ 25 ବର୍ଷ ହେଲା ଏହା ଦେଶରେ ରାଜନୈତିକ ସମସ୍ୟା ମଧ୍ୟରେ ମୁଖ୍ୟସ୍ଥାନ ଅଧିକାର କରି ଆସିଚି । ଏହି ଆନ୍ଦୋଳନ 1903 ମସିହାରୁ ଆରମ୍ଭ ହୋଇଛି । ତତ୍କାଳୀନ ଘରୋଇ ମନ୍ତ୍ରୀ ଓଡ଼ିଆ ଅଞ୍ଚଳମାନ ଏକ ଶାସନାଧୀନ ହେବା ଆବଶ୍ୟକ ବୋଲି ସ୍ୱୀକାର କରିଥିଲେ । ଶାସନ ତାନ୍ତ୍ରୀକ ସୁବିଧା ଆଳ ଦେଖାଇ ଏହାକୁ ବାରମ୍ବାର ସ୍ଥଗିତ ରଖାଯାଇଛି । ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳମାନ ଏକ ସରକାର ଅଧୀନରେ ରଖାଯିବ ବୋଲି ଆମକୁ ନିର୍ଭର ଜବାବ ଦିଆଯାଇଚି, ଗୋଟିଏ ଉପପ୍ରଦେଶ ଗଢ଼ାଯିବାର ପ୍ରସ୍ତାବ ମଝିରେ ମଝିରେ ଉପସ୍ଥାପନ କରାଯାଇଚି । ମାତ୍ର ଓଡ଼ିଆମାନଙ୍କୁ ସନ୍ତୁଷ୍ଟ କରିବା ଭଳି କୌଣସି କାର୍ଯ୍ୟ ଆଜିଯାଏ ହୋଇନାହିଁ । ମାନ୍ୟବର ଶ୍ରୀ ସଚିଦାନନ୍ଦ ସିଂହ ଗତ ବଡ଼ଲାଟ ପରିଷଦର ଅନ୍ତିମ ପର୍ଯ୍ୟାୟରେ 1920 ମସିହାରେ ଏପରି ଏକ ପ୍ରସ୍ତାବ ଉପସ୍ଥାପିତ କରିବାରୁ ସରକାର ଏ ବିଷୟରେ ଅନୁସନ୍ଧାନ କରିବେ ବୋଲି ରାଜି ହୋଇଥିଲେ । ସମ୍ଭବତଃ ନୂତନ ଶାସନ ସଂସ୍କାର ଖସଡ଼ା କାର୍ଯ୍ୟକାରୀ ହେବା ପୂର୍ବରୁ ସରକାର କିଛି କରିବାକୁ ମନସ୍ଥ କରିଥିଲେ । କିନ୍ତୁ ନୂତନ ଶାସନ ସଂସ୍କାରମତେ ଗଠିତ ପ୍ରଥମ ପରିଷଦର କାର୍ଯ୍ୟକାଳ ପୂରିଗଲା । ଅଥଚ ସରକାର ଏବିଷୟରେ କିଛି କଲେ ନାହିଁ । ଦ୍ୱିତୀୟ ପରିଷଦର ପ୍ରାରମ୍ଭରେ ମୋର ବନ୍ଧୁ ଶ୍ରୀ ଭୁବନାନନ୍ଦ ଦାସଙ୍କ ଏକ ପ୍ରଶ୍ନର ଉତ୍ତରରେ ସରକାର ମାନ୍ଦ୍ରାଜ ପ୍ରଦେଶର ଓଡ଼ିଆମାନଙ୍କ ବିଷୟ ଅନୁସନ୍ଧାନ କରିବେ ବୋଲି ରାଜି ହେଲେ, ଫିଲିପ୍ ଡ଼ଫ୍ କମିସନ ବସାଇଲେ । ଉକ୍ତ କମିସନ ଅନୁସନ୍ଧାନ କରି ରିପୋର୍ଟ ଦେଲେ, ଗଞ୍ଜାମ ଓ ବିଶାଖାପାଟଣା ଲୋକେ ଓଡ଼ିଶା ଡ଼ିଭିଜନ ସହ ମିଶିବାର ପ୍ରବଳ ଇଚ୍ଛା ପ୍ରକାଶ କରିଛନ୍ତି ।

ମୁଁ ଏଠାରେ ସ୍ପଷ୍ଟ ଜଣାଇ ଦେବାକୁ ଚାହେଁ, ବହୁ ଓଡ଼ିଆ ଅଞ୍ଚଳ ବିଭିନ୍ନ ପ୍ରଦେଶମାନଙ୍କ ଅଧୀନରେ ରହିଛି ଓ ସେହି ପ୍ରଦେଶମାନଙ୍କର ଗୋଟିଏ ଗୋଟିଏ ସ୍ୱାର୍ଥାନ୍ୱେଷୀ ଶାସକ ଗୋଷ୍ଠୀ ସୃଷ୍ଟି ହୋଇଛନ୍ତି । ବଙ୍ଗ ସରକାର ସ୍ପଷ୍ଟ ଜଣାଇଛନ୍ତି ଜନଗଣନାକାରୀ ଅଫିସରମାନେ ଲୋକଙ୍କୁ ଓଡ଼ିଆ ଭାଷାଭାଷୀ ବୋଲି ରେକର୍ଡ କରିବାକୁ ଡରୁଛନ୍ତି । କାରଣ ସେମାନଙ୍କର ଭୟ କାଳେ ଏମାନଙ୍କୁ ଓଡ଼ିଆଭାଷୀ ବୋଲି ଜନଗଣନା ରିପୋର୍ଟରେ ଲେଖିଦେଲେ ସେହି ଅଞ୍ଚଳଗୁଡ଼ିକ ଓଡ଼ିଶା ଡିଭିଜନ ସହିତ ମିଶିଯିବ । ବାସ୍ତବରେ ଜନଗଣନା ସୁପରିଂଟେଣ୍ଡେଣ୍ଟ ଜନଗଣନାକାରୀ ଅଫିସର ଓ ସୁପରଭାଇଜରଙ୍କର ଏକ ମିଟିଂରେ ଶୁଣିବାକୁ ପାଇଥିଲେ, ଦାନ୍ତନରେ ବହୁ ଓଡ଼ିଆ ଭାଷୀ ଲୋକେ ରହିଥିବା ହେତୁ ଦାନ୍ତନ ବାଲେଶ୍ୱର ଜିଲ୍ଲା ସହିତ ମିଶି ଯାଇପାରେ । ସର୍କଲ ଅଫିସର ଶ୍ରୀ ଏ:ଏମ: ଚକ୍ରବର୍ତ୍ତୀ 1921 ଜୁଲାଇ 5 ତାରିଖ ଚିଠିରେ ଜଣାଇ ଥିଲେ, ଦାନ୍ତନ ଓ ମୋହନ ପୁରରେ ଓଡ଼ିଆ ଭାଷାଭାଷୀ ଲୋକଙ୍କ ସଂଖ୍ୟା ଅଧିକ । ଆଉ ଏକ କଥା କୁହା ଯାଇଛି ଯେ ଆନ୍ଦୋଳନ ହେତୁ ଲୋକେ ଏପରି ଇଛା ପ୍ରକାଶ କରିଛନ୍ତି । ଏ କଥା ହୋଇପାରେ ଯେ ଯେତେବେଳେ କୌଣସି ଏକ ଦାବି ଉପରେ ଆନ୍ଦୋଳନ ଆରମ୍ଭ କରାଯାଏ, ସେତେବେଳେ ଆନ୍ଦୋଳନର ନେତୃବର୍ଗ ଦେଶର ହିତକୁ ଦୃଷ୍ଟିରେ ରଖି ଜନମତ ସୃଷ୍ଟି କରିଥାନ୍ତି ।

ଏ ବିଷୟରେ ବୁଝାଇ କହିବା ପୂର୍ବରୁ ଓଡ଼ିଶାର ସଂସ୍କୃତି, ପରମ୍ପରା ଐତିହ୍ୟଆଦି ବିଷୟରେ ମୁଁ ପରିଷଦର ସଭ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିବାକୁ ଚାହେଁ । ଏପରିକି ଗତ ବିଧାନ ପରିଷଦର ଜଣେ ସଭ୍ୟ ମୁଁ 'ଓଡ଼ିଶା ସଭ୍ୟ' ବୋଲି କହିବାରୁ କିଛି ବୁଝି ପାରିନଥିଲେ । ତତ୍‌ପରେ ମୁଁ "ବିହାର ଓ ଓଡ଼ିଶାର ସଭ୍ୟ" ବୋଲି କହିଲି । ସେତେବେଳେ ଉକ୍ତ ସଭ୍ୟ କହିଲେ "ଏ ସ୍ଥାନଟି ଆସାମ ନିକଟବର୍ତ୍ତୀ ଏକ ଅଞ୍ଚଳ" । ଗଲା ଦୁଇଶହ ବର୍ଷହେଲା ଆମ ଲୋକେ ବିଭିନ୍ନ ପ୍ରଦେଶରେ ବିଛିନ୍ନ ହୋଇ ରହିବା ଫଳରେ ସମ୍ଭବତଃ ଭାରତର ଅନ୍ୟ ପ୍ରଦେଶ ଲୋକେ ଆମର ଯଥାର୍ଥ ପରିଚୟ ପାଇ ପାରୁନାହାନ୍ତି । ଆଧୁନିକ ଓଡ଼ିଶା ତିନୋଟି ପୁରାତନ ସଂସ୍କୃତିକୁ ଘେନି ଗଠିତ ହୋଇଛି । ଯଥା:—କଳିଙ୍ଗ, ଉତ୍କଳ ଓ ଉଡ୍ର । ପୁରାତନ କଳିଙ୍ଗ ହେଲା, ଦ୍ରାବିଡ଼ ରାଜ୍ୟର ସୀମାନ୍ତରେ ଆର୍ଯ୍ୟମାନଙ୍କର ପ୍ରଥମ ଉପନିବେଶ । ଏହା ଖ୍ରୀଷ୍ଟପୂର୍ବ 7ମ ଶତାବ୍ଦୀର କଥା । ଏହି କଳିଙ୍ଗ କଲିକତା ବା ତାମଲୁକ୍‌ଠାରୁ ଗଞ୍ଜାମର ସୀମାନ୍ତ ଅଞ୍ଚଳ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ମଗଧ ସମ୍ରାଟ ଅଶୋକ ଏହି କଳିଙ୍ଗକୁ ଜୟ କରିବାରେ ଧର୍ମାଶୋକରେ ପରିଣତ ହୋଇଥିଲେ । କଳିଙ୍ଗର ଏକ ବଳିଷ୍ଠ ସଂସ୍କୃତି ଥିଲା । ଓଡ଼ିଶାରେ ଏବେ ଯେଉଁ ଉନ୍ନତ ଶିଳ୍ପକଳା ଫୁଟି ଉଠିଚି, ତାହା ଆର୍ଯ୍ୟ ଶିଳ୍ପକଳାର କଳିଙ୍ଗ ସଂସ୍କରଣ ଓ ତାହା ଏବେ ମଧ୍ୟ ଓଡ଼ିଶାର ଗୁମ୍ଫା ମନ୍ଦିର ମାନଙ୍କରେ ଦେଖିବାକୁ ମିଳେ । କଳିଙ୍ଗର ଲୋକେ ସମୁଦ୍ର ଡେଇଁ ଜଳଯାତ୍ରା କରିବାରେ ଖୁବ୍ ପଟୁ ଥିବା କଥା ବେଶ୍ ଜଣାଶୁଣା । ଭାରତ ଇତିହାସରେ

ବିଜୟ ସିଂହଙ୍କର ନାମ ସୁପରିଚିତ । ଅବଶ୍ୟ ବିଜୟ ସିଂହଙ୍କୁ ଓଡ଼ିଶା, ବଙ୍ଗଳା, ଗୁଜୁରାଟ ଓ ବର୍ମା ପ୍ରତ୍ୟେକ ନିଜ ଅଞ୍ଚଳର ଲୋକ ବୋଲି ଦାବି କରିଥାନ୍ତି । ଏଇ ବିଜୟ ସିଂହଙ୍କ ସହିତ ତାଙ୍କ ସ୍ତ୍ରୀ ଯାଇ ଶ୍ରୀଲଙ୍କାରେ ଉପନିବେଶ ସ୍ଥାପନ କରିଥିଲେ । ତାଙ୍କ ସ୍ତ୍ରୀ କିନ୍ତୁ ନିଶ୍ଚିନ୍ତ ଭାବରେ କଳଙ୍ଗର ଗଜକନ୍ୟା ବୋଲି ଜଣାଯାଏ । ବର୍ମା ଓ ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜରେ କଳିଙ୍ଗ ଲୋକେ ଉପନିବେଶ ସ୍ଥାପନ କରିଥିଲେ । ଏବର ପେଗୁର ସ୍ଥାନୀୟ ନାଁ 'ଓଶା' ଓ ଏହା ଓଡ଼ିଶାର ଅପଭ୍ରଂଶ ମାତ୍ର । ବର୍ମାର କେତେକ ମନ୍ଦିର ଓଡ଼ିଶାର ଉଦୟଗିରି ଗୁମ୍ଫା ମନ୍ଦିରର ଅନୁକରଣରେ ନିର୍ମିତ । ଓଡ଼ିଶାର ନୌ-ବାଣିଜ୍ୟଗତ ଶତାବ୍ଦୀର ସପ୍ତ ଦଶକ ପର୍ଯ୍ୟନ୍ତ ଚାଲୁଥିଲା । ଓଡ଼ିଶାର ଉପକୂଳବର୍ତ୍ତୀ ଲବଣ ବ୍ୟବସାୟ ସରକାର ନାନା ଭାବରେ ଧ୍ୱଂସ କରିଦେବାରେ ନୌ-ବାଣିଜ୍ୟରେ ଓଡ଼ିଆଙ୍କର ବିଶେଷତ୍ୱ ଲୋପ ପାଇଗଲା । ତଥାପି ବାଲେଶ୍ୱର ଓ ଓଡ଼ିଶାର କେତେକ କ୍ଷୁଦ୍ର ବନ୍ଦରମାନଙ୍କରେ ଓଡ଼ିଶା ନୌ-ବାଣିଜ୍ୟର ଭଗ୍ନାବଶେଷ ଏବେ ବି ଦେଖାଯାଏ ।

ଏହି କଳିଙ୍ଗ ପୁଣି ବୌଦ୍ଧ ସଂସ୍କୃତିର ପ୍ରଧାନ କେନ୍ଦ୍ର ହୋଇଥିଲା । ଏହାପରେ ଉତ୍ତରାଜ୍ୟ ସଭ୍ୟତା କଳିଙ୍ଗର ବୌଦ୍ଧ ସଭ୍ୟତାକୁ ହ୍ରାସ କରି ହିନ୍ଦୁ ଧର୍ମ ପୀଠରେ ଏହାକୁ ପରିଣତ କରିଥିଲା । ଏହି ଉତ୍ର ସଭ୍ୟତା ଏବେ ମଧ୍ୟପ୍ରଦେଶର ଦକ୍ଷିଣ-ପୂର୍ବାଞ୍ଚଳ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏବେ ଆମର ଯେଉଁ ଜଗନ୍ନାଥ ମନ୍ଦିର ଭାରତ ବିଖ୍ୟାତ ହୋଇ ରହିଚି, ତାହା ଉତ୍ର ସଭ୍ୟତାର ହିଁ ଅବଦାନ । ଓଡ଼ିଶାର ସଂସ୍କୃତି ଏହି ଜଗନ୍ନାଥ ମନ୍ଦିର ଘେନି ନିଜକୁ ଧନ୍ୟ ମଣିଥାଏ ଯେହେତୁ ଏହି ମନ୍ଦିର ମଧ୍ୟରେ ଜାତି, ବର୍ଣ୍ଣ, ଅସ୍ପୃଶ୍ୟତା ଆଦି ଭେଦଭାବ ନାହିଁ । ଭାରତର ଅନ୍ୟ କୁତ୍ରାପି ଏହା ପରିଲକ୍ଷିତ ହୁଏନାହିଁ । ଏହାହିଁ ସ୍ପଷ୍ଟତଃ ଓଡ଼ିଆ ସଭ୍ୟତା । ଭାରତର ଧର୍ମ ବିଗ୍ରହରେ ଏବେ ଓଡ଼ିଶାର ସ୍ୱତନ୍ତ୍ର ସତ୍ତା ବିଗ୍ରହକୁ ନିଆଯାଉ ।

ସେହିପରି ପ୍ରାଚୀନ ଉତ୍କଳର ପ୍ରଭାବ ସିଂହଭୂମି ପଟୁ ଆସି ସଭ୍ୟତାର ପ୍ରବାହରେ ବହୁକିଛି ସଂଯୋଗ କରିଥିଲା । ଏହିପରି ତିନିଗୋଟି ସଭ୍ୟତାର ମିଶ୍ରଣରେ ଓଡ଼ିଶାରେ ଯେ ଏକ ପୁଷ୍ଟିଳ ସଭ୍ୟତା ଗଢି ଉଠିଥିଲା, ତାହା ସ୍ପଷ୍ଟ । ଏହି ଓଡ଼ିଆ ସଭ୍ୟତାକୁ ଧ୍ୱଂସ କରିବା ପାଇଁ ବାରମ୍ବାର ତୀବ୍ର ଆକ୍ରମଣ କରାଯାଇଛି ସତ, କିନ୍ତୁ ଏପରି ଏକ ବଳିଷ୍ଠ ସଭ୍ୟତା ଧ୍ୱଂସ ହେବାର ନୁହେଁ, ହୋଇପାରି ନାହିଁ ।

କେହି ଯେପରି ମନେ କରିବା ଉଚିତ ନୁହେଁ ଯେ ଏହି ବିଂଶ ଶତାବ୍ଦିରେ ପ୍ରଥମ କରି ଆମେ ଆମକୁ ଏକ ପ୍ରଦେଶରେ ଅନ୍ତର୍ଭୁକ୍ତ କରିବା ଲାଗି ଆମର ଦାବି ଜଣାଉଚୁ । କାରଣ ଇତିହାସରେ ଓଡ଼ିଶା ଏକ ସ୍ୱତନ୍ତ୍ର ରାଜ୍ୟ ହୋଇ ବରାବର ଥିଲା, କେବଳ ଏହାର ରାଜସ୍ୱତ୍ତ୍ୱ କୌଣସି ମତେ ବଳି କରି ନୁହେଁ ଏହା ବରାବର ଏକ ସମୃଦ୍ଧିଶାଳୀ ରାଜ୍ୟଥିଲା,

ନିଜର ଶିଳ୍ପକଳା, ସାହିତ୍ୟ ଓ ସଂସ୍କୃତିକୁ ଘେନି ଏକ ଖୁବ୍ ଉନ୍ନତ ଓ କ୍ଷମତାଶାଳୀ ରାଜ୍ୟ । ମେଦିନପୁରଠାରୁ ଗଞ୍ଜାମର ଦକ୍ଷିଣାଞ୍ଚଳ ଓ ସମୁଦ୍ରତଟ ଭୂମିଠାରୁ ସିଂହଭୂମ ଓ ମଧ୍ୟ-ପ୍ରଦେଶର ପୂର୍ବାଞ୍ଚଳ ପର୍ଯ୍ୟନ୍ତ ଓଡ଼ିଶା ବିସ୍ତୃତ ଥିଲା ବୋଲି ଇତିହାସରେ ଲିପିବଦ୍ଧ ହୋଇ ରହିଛି । ପୂର୍ବକାଳରେ ବିଜୟନଗର ବାହାମନି ରାଜ୍ୟ ଓ ବଙ୍ଗ ଦେଶର ସୁବର୍ଣ୍ଣ ଯୁଗରେ ମଧ୍ୟ ଓଡ଼ିଶାର ସମ୍ରାଟମାନେ ନିଜର ସ୍ୱାଧୀନତା ରକ୍ଷାକରିବା ବ୍ୟତୀତ ସେମାନଙ୍କର କୃଷକ ସେନା ନେଇ ଏହି ରାଜ୍ୟମାନଙ୍କ ଅନ୍ତର୍ଦ୍ଦେଶ ପର୍ଯ୍ୟନ୍ତ ମାଡ଼ି ଯାଉଥିଲେ । ମୋଗଲ ସମ୍ରାଟ ଆକବର ଜଣେ ବିଚକ୍ଷଣ ରାଜନୀତିଜ୍ଞ ଥିଲେ । ସେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ରାଜ୍ୟରୂପେ ରଖିବାର ଆବଶ୍ୟକତା ବୁଝିଥିଲେ । ତେଣୁ ମୋଗଲ କାଳରେ ମଧ୍ୟ ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ହୋଇ ରହିଥିଲା । ମୁଁ ଏଠି କହିଦେବାକୁ ଚାହେଁ ଯେ ଓଡ଼ିଶାର ମୁସଲମାନମାନେ ଅତି ସମ୍ମାନୀୟ ଜାତି । ତେଣୁ ଓଡ଼ିଶାରେ କେବେ ହିନ୍ଦୁ ମୁସଲମାନଙ୍କ ଭିତରେ ସାମ୍ପ୍ରଦାୟିକ ଦଙ୍ଗା ହୋଇନାହିଁ ।

ଏହାପରେ ଓଡ଼ିଶା ଉପରେ ବାରମ୍ବାର ଆକ୍ରମଣ କରାଯାଇଛି । ଆମକୁ ଏକ କନ୍ଦୁକ ସଦୃଶ ବ୍ୟବହାର କରାଯାଇଛି । ସମ୍ଭବତଃ ଇଂରେଜ ଅମଳରେ ଓଡ଼ିଶାର ଚରମ ଅଧୋଗତି ହୋଇଛି । ପଲାସୀ ଯୁଦ୍ଧର ଅଳ୍ପଦିନ ପୂର୍ବରୁ ଏହା ବଙ୍ଗଳାର ଅଂଶବିଶେଷ ହୋଇ ରହିଥିଲା ଓ ତା'ର କିଛିକାଳ ପୂର୍ବରୁ ଓଡ଼ିଶା ନାଗପୁର ଅଧୀନରେ ରହିଥିଲା । ଖୁବ୍ ସମ୍ଭବ, ମରହଟ୍ଟାଙ୍କ ଭୟରେ ବଙ୍ଗାଳୀ ବଣିକମାନେ ବଙ୍ଗ ଲାଟଙ୍କୁ ପ୍ରଭାବିତ କରି ମରହଟ୍ଟାମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ଓଡ଼ିଶାକୁ ମରହଟ୍ଟାଙ୍କ ପାଖରେ ସମର୍ପଣ କରିଦେଇଥିଲେ ଓ ଏହା ମଧ୍ୟପ୍ରଦେଶର ଅନ୍ତର୍ଭୁକ୍ତ ହେଲା । ଦ୍ୱିତୀୟ ମରହଟ୍ଟା ଯୁଦ୍ଧପରେ ଓଡ଼ିଶାକୁ ପୁଣି ବଙ୍ଗଳା ସହିତ ସାମିଲ କରାଗଲା । ପ୍ରସିଦ୍ଧ ଐତିହାସିକ ହଣ୍ଟର ସାହେବ ସ୍ୱୀକାର କରିଛନ୍ତି, ଓଡ଼ିଶାର ଦୈନ୍ୟ ଏବଂ ଦୁର୍ଭିକ୍ଷ ଲାଗି ଇଂରେଜମାନେହିଁ ଦାୟୀ ।

ପଣ୍ଡିତ ଦାସ କ୍ଷୋଭ ପ୍ରକାଶ କରି କହିଲେ, ଓଡ଼ିଶାକୁ ଏକ ପଣ୍ୟରୂପେ ବ୍ୟବହାର କରାଯାଇଛି । ବିଭିନ୍ନ ସମୟରେ ବିଭିନ୍ନ ପ୍ରଦେଶର ନିରାପତ୍ତା ଓ ସୁଖ ସୁବିଧା ପାଇଁ ଓଡ଼ିଶାକୁ ଖଣ୍ଡ ବିଖଣ୍ଡିତ କରି ବିଭିନ୍ନ ପ୍ରଦେଶ ସହିତ ଯୋଡ଼ି ଦିଆଯାଇଛି । ଶେଷରେ ଏହାକୁ ବିହାର ସହିତ ଯୋଡ଼ି ଏକ ଅପଚେଷ୍ଟା କରାଯାଇଛି । କୁହାଯାଉଚି ବିହାରକୁ ଏକ ସାମୁଦ୍ରିକ ଉପକୂଳର ସୁବିଧା ଦେବାପାଇଁ ଏପରି କରାଯାଇଚି । କିନ୍ତୁ ଏବେବି ଓଡ଼ିଶାରେ କୌଣସି ବନ୍ଦର ପ୍ରତିଷ୍ଠା କରାଯାଇଚି କି ? ଓଡ଼ିଶା ସମୁଦ୍ର ଉପକୂଳ ଅଞ୍ଚଳର ଉନ୍ନତି ନିମନ୍ତେ କୌଣସି ଉଦ୍ୟମ କରାଯାଇଚି କି ?

ବିହାର ସହିତ ସମସ୍ତ ସମ୍ପର୍କ ଛିନ୍ନ କରି ଦେବାକୁ ଚାହାନ୍ତି କି ବୋଲି ମଧ୍ୟପ୍ରଦେଶର ଜଣେ ସଭ୍ୟଙ୍କ ପ୍ରଶ୍ନର ଉତ୍ତରରେ ପଣ୍ଡିତ ଦାସ କହିଲେ, ଆମେ ଆସାମ ବା ମଧ୍ୟ-ପ୍ରଦେଶ ଭଳି ଏକ ସ୍ୱତନ୍ତ୍ର ପ୍ରଦେଶ ହୋଇ ରହିବାକୁ ଚାହୁଁ । ଲୋକସଂଖ୍ୟା ଏବଂ

ଆୟ ଦୃଷ୍ଟିରୁ ଓଡ଼ିଶା ସହିତ ପ୍ରାୟ ସମାନ ହେଲେ ମଧ୍ୟ ଆସାମକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରାଗଲା । ସ୍ୱତନ୍ତ୍ର ହାଇକୋର୍ଟ ଓ ବିଶ୍ୱବିଦ୍ୟାଳୟ ନ ଥାଇ ମଧ୍ୟ ଆସାମ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ସ୍ୱୀକୃତି ପାଇଚି । ଅତୀତରେ ଓଡ଼ିଶା ନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖିଥିବା କଥା ମୁଁ ପୂର୍ବରୁ ଦର୍ଶାଇଚି । ମାତ୍ର ପ୍ରାୟ ଦୁଇଶହ ବର୍ଷହେଲା ଇଂରେଜ ସରକାରଙ୍କ କାରସାଦିରୁ ଏହାକୁ ବିଭିନ୍ନ ପ୍ରଦେଶ ସହିତ ଯୋଡ଼ି ଦିଆଯାଉଚି । ତେଣୁ ଏବେ ଆର୍ଥିକ ଦୁର୍ଗତିର ଆଶଙ୍କା ସତ୍ତ୍ୱେ ଆମେ ଏକ ସ୍ୱତନ୍ତ୍ର ପ୍ରଦେଶ ଚାହିଁବା ସ୍ୱାଭାବିକ । ତେବେ ଯେହେତୁ ବଛିନ୍ନ ଓଡ଼ିଆ ଅଞ୍ଚଳର ଏକତ୍ରୀକରଣ ନିମନ୍ତେ ଏଠି ଆଲୋଚନା ଚାଲିଛି, ତେଣୁ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠନ କରିବା ବିଷୟ ମୁଁ ଏଠାରେ ଉଠାଉ ନାଇ । ମାତ୍ର ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ହିଁ ଆମର ଲକ୍ଷ୍ୟ ।

ପଣ୍ଡିତ ଦାସ ଭାଷଣ ପ୍ରସଙ୍ଗରେ ଉଲ୍ଲେଖ କରିଥିଲେ ଯେ ବିହାର ଭିତରେ ଓଡ଼ିଶା ଡ଼ିଭିଜନର ଆକାର ବୃଦ୍ଧି କରିବା ପାଇଁ ବାରମ୍ବାର ଏହିପରି କୁହାଯାଉଚି ଓ ପ୍ରସ୍ତାବନା ଅଣାଯାଇଚି । ବିହାର ଓ ଓଡ଼ିଶା ବ୍ୟବସ୍ଥା ପରିଷଦ 1921 ରେ ଏହିପରି ଏକ ପ୍ରସ୍ତାବ ଆସି କାଟ ଖାଇ ଯାଇଥିଲା । କିନ୍ତୁ ଏହି ପ୍ରସ୍ତାବରେ ଟିକିଏ ପରିବର୍ତ୍ତନ କରି "ବିହାର ଓ ଓଡ଼ିଶା ଶାସନାଧୀନ" ରେ ଓଡ଼ିଶା ଡ଼ିଭଜନର ବିଛିନ୍ନାଞ୍ଚଳର ଏକତ୍ରୀକରଣ ପ୍ରସ୍ତାବ ଆସିଲା ବେଳେ ତାହା ଗୃହିତ ହୋଇଗଲା । ତେଣୁ ଏଠି ସଂଶୋଧନ ପ୍ରସ୍ତାବରେ ଏକ ଶାସନାଧୀନରେ ରହିବା କଥା କହିଲାବେଳେ ମୁଁ ଓଡ଼ିଶାକୁ ବିହାର ଓ ଓଡ଼ିଶା ଅଧୀନରେ ରହିବା ସ୍ୱତନ୍ତ୍ର ପ୍ରଦେଶ ହୋଇ ରହିବା କଥାରେ ଛନ୍ଦି ହୋଇ ନାଇ । ସ୍ୱତନ୍ତ୍ର ପ୍ରଦେଶ ହିଁ ଆମର ପରବର୍ତ୍ତୀ ଅଭିଳାଷ ।

ପଣ୍ଡିତ ଦାସ ବୁଝାଇଥିଲେ ଯେ ଯଦି ଅନ୍ୟ କୌଣସି ପ୍ରଦେଶ ସହିତ ପରୀକ୍ଷାମୂଳକଭାବେ ଓଡ଼ିଶାକୁ ଯୋଡ଼ିବା କଥା ହୁଏ, ତେବେ ତାକୁ ମଧ୍ୟପ୍ରଦେଶ ସହିତ ସଂଲଗ୍ନ କରିବା ଉଚିତ । କାରଣ କଟକରୁ ସମ୍ବଲପୁର ଦେଇ ପରିକଳ୍ପିତ ରେଳ ଲାଇନ ଯୋଗେ ନାଗପୁର ସହିତ ଯୋଗାଯୋଗ ସ୍ଥାପନ କରାଯାଇପାରିବ । ଏହାଛଡ଼ା ବିଶାଖାପାଟଣା ବନ୍ଦର ପାଇବାରେ ଆମର ଅନ୍ୟଏକ ସୁବିଧା ମଧ୍ୟ ହେବ । ତାହା ଯଦି ନ ହୁଏ, ବଙ୍ଗଳା ସହିତ ମଧ୍ୟ ଆମକୁ ମିଶାଇ ଦିଆଯାଇପାରେ । ତଦ୍ୱାରା ହାଇକୋର୍ଟ ଓ ବିଶ୍ୱବିଦ୍ୟାଳୟର ସୁବିଧା ଛଡ଼ା ଓଡ଼ିଶାର ଯେକୌଣସି ସ୍ଥାନରୁ 12 ଘଣ୍ଟାରେ ରାଜଧାନୀ କଲିକତାରେ ପହଞ୍ଚି ହେବ । ବିହାର ସହିତ ଆମକୁ ସଂଯୁକ୍ତ କରି ରଖିବାରେ କି ମାଧୁର୍ଯ୍ୟ (Charm) ଅଛି, ମୁଁ ବୁଝି ପାରୁନାଇ । ରାଜଧାନୀ ପାଟନା ଆମଠାରୁ ବହୁ ଦୂରରେ । ପୁଣି ଇତିହାସରେ ବଂଗଳା କିଂବା ମଧ୍ୟ ପ୍ରଦେଶ ଛଡ଼ା ଅନ୍ୟ କୌଣସି ପ୍ରଦେଶ ସଙ୍ଗେ ଆମକୁ କେବେ ରଖାଯାଇ ନ ଥିବା କଥା, ମୁଁ ଆଗରୁ ଦର୍ଶାଇଚି । 1911 ରୁ ବଂଗ ବିଚ୍ଛେଦ ରଦ୍ଦ କରି ବିହାରକୁ ଟିକିଏ ସୁବିଧା ଦେବାପାଇଁ ଆମକୁ

ବିହାର ଅଧୀନରେ ରଖାଯାଇଚି । ତଥାପି ଯଦି ସରକାର ଆମକୁ ବିହାର ଅଧୀନରେ ରଖିବାକୁ ଚାହୁଁଥାନ୍ତି ଓ ତହିଁରେ ଆମେ ଆମର ଭାଗ୍ୟ ଆଦରିବାକୁ ବାଧ୍ୟ ହେଉଁ, ତେବେ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରିତ କରି ବିହାର ଅଧୀନରେ ରଖନ୍ତୁ । ଆମେ ବର୍ତ୍ତମାନ ଏ ଇଂରେଜ ସରକାରଙ୍କର ଅଧୀନରେ ଗୋଟିଏ ମୃତ ଜାତି ରୂପେ ରହିଚୁ । ଏପରି ପରିସ୍ଥିତିରେ କେଉଁ ପ୍ରଦେଶରେ ରହିବୁ ତାହା ଲୋଡ଼ିବାର ଅବକାଶ ଏବେ ଆମର ନାହିଁ । କେବଳ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରିବାକୁ ଆମେ ଏଠି ଏବେ ଚାହୁଁଚୁ, ତାହା ନ ହେବା ପର୍ଯ୍ୟନ୍ତ ଆମେ ଆନ୍ଦୋଳନରୁ କ୍ଷାନ୍ତ ହେବୁ ନାଇଁ । ଶାନ୍ତ ହେବୁ ନାଇଁ ।

ଗୋଟିଏ ଉପ-ପ୍ରଦେଶ ପ୍ରସ୍ତାବ ମଧ୍ୟ ଉଠିଚି—ମୁଁ କିମ୍ବା ମାନ୍ୟବର ଘରୋଇ ବିଭାଗ ସଭ୍ୟ, ଏହା ବାସ୍ତବରେ କ'ଣ ବୁଝୁନାହୁଁ । ଗୋଟିଏ ପ୍ରଦେଶକୁ ଉପ-ପ୍ରଦେଶ କହିବା ଅସଂଗତ, (Somewhat odd) । ଉପ-ପ୍ରଦେଶ ବୋଇଲେ ଗୋଟିଏ ହାଇକୋର୍ଟ ଓ ବିଶ୍ୱବିଦ୍ୟାଳୟ ବିହୀନ ଏକ ପ୍ରଦେଶ ବୋଲି ମୁଁ ବୁଝେ । ଏ ସମସ୍ତ ଖର୍ଚ୍ଚ ତୁଲାଇବା ଆମ ପ୍ରଦେଶର ଆର୍ଥିକ ଅବସ୍ଥା ଦୃଷ୍ଟେ ସମ୍ଭବ ନୁହେଁ ବୋଲି କୁହାଯାଉଥିଲେ ହେଁ ହାଇକୋର୍ଟ ଓ ବିଶ୍ୱବିଦ୍ୟାଳୟ ସମେତ ସବୁର ଖର୍ଚ୍ଚ ଆମେ କୌଣସି ମତେ ତଲାଇ ପାରିବୁ ବୋଲି ମୋର ଦୃଢ଼ ମତ । କିନ୍ତୁ ଆମ ଭାଗ୍ୟ ନିୟନ୍ତାମାନେ ଏହା ସମ୍ଭବ ନୁହେଁ ବୋଲି ଯଦି ଦେଖନ୍ତି, ତେବେ ଆସାମ ସଦୃଶ ଗୋଟିଏ ପ୍ରଦେଶ ଆମକୁ ଦିଆଯାଉ । ଉପ-ପ୍ରଦେଶ କେବଳ ନାମତଃ ଅପମାନ ସୂଚକ ନୁହେଁ, ତଦ୍ୱାରା ଆମକୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିବ ବୋଲି ଆମ ଲୋକଙ୍କର ଆଶଙ୍କା ।

ଏହାପରେ ପଣ୍ଡିତଜୀଙ୍କର ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଓଡ଼ିଶା ଡ଼ିଭିଜନ ସହିତ ଏକତ୍ରକରି ବିହାର ଓଡ଼ିଶା ଅଧୀନରେ ରଖିବା ପ୍ରସ୍ତାବରେ ସରକାର ରାଜି ହୋଇଥିଲେ ।

# 1940 ମସିହାରେ ଓଡ଼ିଶାରେ ମିଳିତ ମନ୍ତ୍ରିମଣ୍ଡଳ ଗଠନର ପୃଷ୍ଠଭୂମି

ପଣ୍ଡିତ ନୀଳକଣ୍ଠ ଦାସ

1936-37 ସାଲର କଥା, ସେତେବେଳେ ପାର୍ଲ୍ୟାମେଣ୍ଟାରୀ ବୋର୍ଡରେ ଆମେ କୋଡ଼ିଏ ଜଣ ସଭ୍ୟ ଥିଲୁ ଓ ସେଥିରେ ସଭାପତି ଥିଲେ ସ୍ୱର୍ଗୀୟ ବଲ୍ଲଭଭାଇ ପଟେଲ । ସେତେବେଳେ ଆମେମାନେ ବିଶ୍ୱାସ କରିପାରି ନ ଥିଲୁ ଯେ କଂଗ୍ରେସ ଏତେ ସଂଖ୍ୟାରେ ଭୋଟ ପାଇ ଆସିବ । ଆଉ ଏଇ ବିଶ୍ୱାସ କରୁ ନ ଥିବା ଲୋକମାନଙ୍କ ମଧ୍ୟରେ ଥିଲେ ପଣ୍ଡିତ ଜବାହାରଲାଲ ନେହେରୁ । ସେତିକିବେଳେ ପୁଣି ଉତ୍ତରପ୍ରଦେଶରେ ପହିଲେ ବାହାରିଲା ନିର୍ବାଚନ ପାଇଁ ମୁସ୍‌ଲିମ ଲିଗ । ଏଇ ମୁସଲିମ ଲିଗକୁ କଂଗ୍ରେସ ଭାବେ ଭାବିତ କରି ପରେ ଏଇ ଲିଗ ମେମ୍ବରଙ୍କ ସଙ୍ଗେ କଂଗ୍ରେସ ମେମ୍ବରଙ୍କୁ ମିଳାଇ କୋଆଲିସନ କରିବା ପାଇଁ ଆମ ପାର୍ଲିଆମେଣ୍ଟାରୀ ବୋର୍ଡର ସୁବକ୍ତା ଉଜ୍ଜ୍ୱମାନଙ୍କୁ ବରଗି ଦେଲେ । ସେ ଯାଇ ଲିଗର ନେତା ହୋଇ ଲିଗ୍ ପକ୍ଷରୁ ସବୁ ପ୍ରାର୍ଥୀଙ୍କୁ ନିର୍ବାଚିତ କରାଇ ଦେଲେ । ଏଣେ ଓଡ଼ିଶା ପରେ ପରେ ଅଧିକାଂଶ ପ୍ରଦେଶରେ କଂଗ୍ରେସର ମେଜୋରିଟି ହେଲା । ତା ଦେଖି ଜବାହାରଲାଲ୍ ଆଉ ଲିଗକୁ ସଙ୍ଗେ ନ ନେଇ ଯାହା କଲେ ତାକୁ ରାଜନୀତିରେ କୁହାଯାଏ ବିଶ୍ୱାସଘାତକତା । ଏହା ଫଳରେଇ ହେଲା ସେଥିର ଫଳ ହିଁ ପାକିସ୍ଥାନ ।

1937 ମସିହା ଭୋଟରେ କଂଗ୍ରେସ ବହୁସଂଖ୍ୟାରେ ଭୋଟ ପାଇ ଆସିବା ପରେ ଲାଟମାନେ ତାଙ୍କ **discretionary powers** ବ୍ୟବହାର କରିପାରିବେ ନାହିଁ, ଏହି **Assurance** ତତ୍‌କାଳିନ ବଡ଼ଲାଟଙ୍କଠାରୁ ପାଇଲାରୁ ପ୍ରଦେଶମାନଙ୍କରେ ମନ୍ତ୍ରୀପଦ ନେଲେ । ଖଲିକ୍‌ଉଜମାନଙ୍କ ସଙ୍ଗେ ଜିନ୍ନା କ୍ରମେ ମିଶି ପାକିସ୍ଥାନ ଗଢି ଭାରତ ଭାଙ୍ଗିବାରେ ଲାଗିଲେ । କିନ୍ତୁ ସ୍ୱାଧୀନତା ନ ପାଇଲେ ଇଂରେଜମାନଙ୍କୁ ସାହାଯ୍ୟ କରିବେ ନାହିଁ ବୋଲି କଂଗ୍ରେସ ପକ୍ଷ 1939 ରେ ମନ୍ତ୍ରୀଗାଦି ଛାଡ଼ିଲେ । କଂଗ୍ରେସ ଗାଦି ଛାଡ଼ିବାର କେତେକଦିନ ପରେ ବମ୍ବେରେ **Quit India Resolution Pass** ହେଲା ପରେ ଦେଶରେ ଯିଏ ଯେଉଁଠି କଂଗ୍ରେସ ନେତାଏ ଥିଲେ ସମସ୍ତେ ଇଚ୍ଛାକରି ଆରେଷ୍ଟ ହୋଇଗଲେ । ଏତିକି ବେଳକୁ ଜିନ୍ନାଙ୍କ ନେତୃତ୍ୱରେ ମୁସଲିମଲିଗଙ୍କ ପ୍ରସିଦ୍ଧ 'ଲାହୋର-ପ୍ରସ୍ତାବ 1940 ମାର୍ଚ୍ଚରେ ପ୍ରକାଶ ପାଇଲା–ପ୍ରସ୍ତାବ ହେଉଚି–ଭାରତ ଦ୍ୱିଭାଗ କର । "ହିନ୍ଦୁ ଭାରତ ହିନ୍ଦୁଙ୍କୁ ଛାଡ଼ । ମୁସଲିମ ଭାରତ ବା ପାକିସ୍ଥାନ ମୁସଲମାନଙ୍କୁ ଛାଡ଼ ।" **Quit India** ର ଶେଷକୁ ଏଇ ହେଲା ଫଳ ବା ପରିଣାମ । ଜବାହାର ଲାଲଙ୍କ ମୁସଲମାନଙ୍କ ପ୍ରତି ରାଜନୀତିକ ବ୍ୟବହାର, ଆମକୁ ତଥା ସୁଭାଷ ଓ ସୁଭାଷ ପନ୍ଥୀଙ୍କୁ କେବେ ସନ୍ତୋଷ ଦେଇ ନ ଥିଲା । ଏବେ ସୁଭାଷ ଡାକି ପଠାଇଲେ ଆମକୁ-ମୁଁ, ଗୋଦାବରୀଶ ମିଶ୍ରେ ଓ ଯଦୁମଣି ମଙ୍ଗରାଜ କଲିକତା ଗଲୁ । ସେ କହିଲେ, ଲିଗ୍

ମୁସଲମାନଙ୍କ ସଙ୍ଗେ କୋଆଲିସନ ସରକାର ଛଡା ଗତି ନାଇ । ସେ ଏହା ଆସାମରେ ବରଦୋଲାଇ-ସା'ଦୁଲ୍ଲା ସରକାର ଗଢିବାରେ କରି ଆସିଥିଲେ । ବଙ୍ଗରେ ଫଜ୍ଲୁଲହକ ଶରତ ବୋଷଙ୍କୁ ଧରି ଶୀଘ୍ର ଗଢିବାର ଠିକ୍ କରିଛନ୍ତି । ଓଡ଼ିଶାରେ ଆମେ ତା କରିବୁ ଓ ସେ ନିଜେ ଯାଇ ବିହାରରେ କରିବେ । ମତାନ୍ଧ କଂଗ୍ରେସୀମାନେ ଏଥିରେ ଆମକୁ ଦେଶଦ୍ରୋହୀ ବୋଲି କହିବେ । ସେଥିପାଇଁ ସବୁ ବାମପନ୍ଥୀଙ୍କୁ ଧରି ସମାନ୍ତରାଳ ସରକାର ଗଢିବା ପାଇଁ ରହିବେ 'ଫରଓ୍ୱାର୍ଡ ବ୍ଲକ' । ସେଇଦିନ ସେଇଠାରେ—ସେଇ ୩୪/2 ଏଲଗିନ ରୋଡ଼ରେ—ସୁଭାଷ କହିଲେ, "ତେବେ ଗୋଦାବରୀଶ ବାବୁ ଓ ଯଦୁମଣି ଯାଆନ୍ତୁ ଓଡ଼ିଶା ଲିଗ୍‌କୁ ଧରି କୋଆଲିସନ ମନ୍ତ୍ରୀ ମଣ୍ଡଳ ଗଢିବେ । ନୀଳକଂଠବାବୁ, ନିଖିଳ ଭାରତ ଫରଓ୍ୱାର୍ଡ ବ୍ଲକକୁ ଯାଆନ୍ତୁ ।" ଗୋଦାବରୀଶ ଓ ଯଦୁମଣି ସେଥିରେ ଜମା ମଂଗିଲେ ନାଇ, କହିଲେ ମୁଁ ନ ରହିଲେ ସେ ଦୁହେଁ ମନ୍ତ୍ରୀ ମଣ୍ଡଳ ଗଢି ପାରିବେ ନାଇ । ସେଠୁ ଦିବାକରଙ୍କୁ ଟେଲିଗ୍ରାମ ହେଲା । ତହିଁ ପରଦିନ ସନ୍ଧ୍ୟାକୁ ସେ ପହଞ୍ଚିଲେ । ସେ ଗଲେ ନିଖିଳ ଭାରତ ଫରଓ୍ୱାର୍ଡ ବ୍ଲକକୁ । ସେଥିରେ ସେ ଏବେ ଅଛନ୍ତି । ଆମେ ତିନିହେଁ ଆସି ଓଡ଼ିଶା ମୁସଲିମ ଲିଗ୍ ସେକ୍ରେଟାରୀ ଶୋଭାନ ଖାଁ କୁ ଧରି ମନ୍ତ୍ରୀ ମଣ୍ଡଳ ଗଢିଲୁ । ନିଖିଳ ଭାରତ ଫରଓ୍ୱାର୍ଡ ବ୍ଲକ ନାଗପୁର ଅଧିବେଶନରେ ଆମ ମିଳିତ ମନ୍ତ୍ରୀମଣ୍ଡଳକୁ ଅଭିବାଦନ ଜଣାଇ ଥିଲେ । ସେତେବେଳେର ଭାରତ ସରକାରଙ୍କ ପ୍ରଚାର ବିଭାଗ ଅଧ୍ୟକ୍ଷ ବସବ୍ରକ ଉଇଲିୟମସ୍ ଏ ବିଷୟଟିକୁ ହିନ୍ଦୁ ମୁସଲମାନ ସମସ୍ୟା ସମାଧାନର ବାଟ ବୋଲି କହି ପ୍ରଶଂସା କରି ପ୍ରଚାର କରିଦେଲେ । ହୁଏତ ଏହାର ଫଳରେ , ଶରତ ବୋଷ କୋଡ଼ାଇ କାନାଲରେ ବନ୍ଦୀ ହେଲେ ଓ କିଛିଦିନ ପରେ ସୁଭାଷ ଅର୍ନ୍ତଧ୍ୟାନ ହେଲେ—କଣ'ପାଇଁ କିଏ କହିବ ? ଏହାପରେ ମୁଁ ଦେଖିଲି ଆଉ ମତାନ୍ଧ କଂଗ୍ରେସକୁ ବୁଝାଇବା ଧ୍ୱଂସି ହେବ ନାଇଁ । ଏ କଂଗ୍ରେସ ଏ ଭାରତକୁ ଦୁଇଭାଗ ନ କରି ଛାଡ଼ିବ ନାଇଁ । ତେଣୁ ମୁଁ ମିଳିତ ମନ୍ତ୍ରୀ ମଣ୍ଡଳ ଭାଂଗି ଦେବାକୁ ବାହାରିଲି ।

"ଯେ ଯାହା ନିୟତି ଘେନି, ଯିବେ ଭବେ,
ବହିବ ତଟିନୀ ସାଗର- ମୁଖେ,
ଯେଝାକାଳେ ଭବେ ଭୁଲିବେ ସରବେ
ବିପଦ ସମ୍ପଦ ବିଷାଦ ସୁଖେ ।" (ମାୟାଦେବୀ)

—ନୀଳକଣ୍ଠ

## ବିଧାନସଭାର ସ୍ୱାତନ୍ତ୍ର୍ୟ

ଡ଼ଃ ପଣ୍ଡିତ ନୀଳକଣ୍ଠ ଦାସ

ଓଡ଼ିଶାରେ ଏହି ବୟୋବୃଦ୍ଧରାଜନୀତିକ ଓ ବିଧାନସଭା ବାଚସ୍ପତି ପଣ୍ଡିତ ନୀଳକଣ୍ଠ ଦାସଙ୍କୁ ଆସେମ୍ବ୍ଲିର ନୂତନ ଭବନ ଉଦ୍‌ଘାଟନ ଉତ୍ସବ ଉଦ୍ଦେଶ୍ୟରେ ଗୋଟିଏ ବାର୍ତ୍ତା ଦେବାପାଇଁ 'ପ୍ରଜାତନ୍ତ୍ର'ର ପ୍ରତିନିଧି ଅନୁରୋଧ କରିବାରେ ସେ ଇଂରାଜୀରେ ଯାହା କହିଥିଲେ, ଏହା ହେଉଛି ତା'ର ଓଡ଼ିଆ ରୂପାନ୍ତର ।

(ସମ୍ପାଦକ—ପ୍ରଜାତନ୍ତ୍ର')

ରାଜ୍ୟ ବିଧାନସଭାମାନଙ୍କ ମଧ୍ୟରେ କେବଳ ଆମ ବିଧାନସଭା ଭାରତୀୟ ସମ୍ବିଧାନର 187 (1) ଧାରା ଅନୁଯାୟୀ ଏକ୍‌ଜିକ୍ୟୁଟିଭ ଶାସନଠାରୁ ସ୍ୱତନ୍ତ୍ର ହୋଇଛି । ଆଶ୍ଚର୍ଯ୍ୟର କଥା ଯେ , ଏ ପର୍ଯ୍ୟନ୍ତ ଏହା ଏକ ସ୍ୱତନ୍ତ୍ରବିଭାଗ ଭାବରେ ମଧ୍ୟ ନ ଥିଲା । ଘରୋଇ ବିଭାଗ ଅଧୀନରେ ଏକ ଉପ-ବିଭାଗ ବା ସେହିପରି ଏକ ଅବସ୍ଥାରେ ରହିଥିଲା । ଅଥଚ ଭାରତରେ ଅନ୍ୟ କେଉଁଠି ଏପରି **ଅବ**ସ୍ଥା ନ ଥିଲା । କିନ୍ତୁ ବର୍ତ୍ତମାନ ନୂତନ ଗୃହକୁ ଆସୁଥିବା ଆମ ବିଧାନସଭାକୁ ଉପଯୁକ୍ତ ମର୍ଯ୍ୟାଦା ଓ ସ୍ଥାନ ଦେବାପାଇଁ ମୋତେ ପ୍ରାୟ ଦୁଇବର୍ଷ କାଳ ଉଦ୍ୟମ କରିବାକୁ ପଡ଼ିଛି । ମୋର ଆଶା ଦେଶବାସୀ ଏହା ହୃଦୟଙ୍ଗମ କରିବେ । ଏହି ଦୃଷ୍ଟିରୁ ବିଧାନସଭା ବା ଆସେମ୍ବ୍ଲି ବିଭାଗ ବର୍ତ୍ତମାନ ଏକ୍‌ଜିକ୍ୟୁଟିଭ ଶାସନର ବିଭିନ୍ନ ବିଭାଗ ସହିତ ସମାନ୍ତରାଳ ଭାବରେ ଏକ ସ୍ଥାନ ପାଇଛି । ଏକ୍‌ଜିକ୍ୟୁଟିଭ ଶାସନ ସଂକ୍ରାନ୍ତରେ ମୁଖ୍ୟମନ୍ତ୍ରୀ ଯେପରି ସମ୍ବିଧାନ ଅନୁଯାୟୀ ରାଜ୍ୟମାନଙ୍କୁ ପରାମର୍ଶ ଦେବେ, ଆବଶ୍ୟକ ହେଲେ ଆସେମ୍ବ୍ଲି ବିଭାଗ ସଂକ୍ରାନ୍ତରେ ବାଚସ୍ପତି ମଧ୍ୟ ସେହିପରି ତାଙ୍କୁ ପରାମର୍ଶ ଦେବେ । ଏହା କେବଳ ଓଡ଼ିଶାରେ ହୋଇଛି ।

ଅନ୍ୟାନ୍ୟ ରାଜ୍ୟରେ ପୁରାତନ ପ୍ରଥା ଏବେ ସୁଦ୍ଧା ଚାଲିଛି ଏବଂ ଅଧିକାଂଶ କ୍ଷେତ୍ରରେ ଆଇନ ବିଭାଗ ଅଧୀନରେ ଆସେମ୍ବ୍ଲି ବିଭାଗ ରହିଛି । କିନ୍ତୁ କେନ୍ଦ୍ରରେ 1928-29 ଅର୍ଥାତ ପ୍ରେସିଡେ଼ଣ୍ଟ ପଟେଲଙ୍କ ଅମଳରୁ ଏ ପର୍ଯ୍ୟନ୍ତ ଏ ସ୍ୱାତନ୍ତ୍ର୍ୟ ରହି ଆସିଛି । ସଂବିଧାନ ପ୍ରଣୀତହେଲା ବେଳେ 187 ଧାରା ସେଥିରେ ଯୋଗ କରାଗଲା ଏବଂ ଏହାର ପ୍ରଣେତା ଡ଼ଃ ଆମ୍ବେଦକର କହିଥିଲେ ଯେ , କେନ୍ଦ୍ର ପରି ରାଜ୍ୟ ବିଧାନସଭାମାନଙ୍କୁ ସମାନ ମର୍ଯ୍ୟାଦା ଓ ସ୍ୱାତନ୍ତ୍ର୍ୟ ଦେବା ଏହାର ଉଦ୍ଦେଶ୍ୟ । ଏହି ଉଦ୍ଦେଶ୍ୟରେ ଏହି ନୂତନ ଧାରାଟିର ପରିକଳ୍ପନା କରାଯାଇଥିଲା ।

ମୁଁ, ସଦସ୍ୟବୃନ୍ଦ ଓ ସଂପୃକ୍ତ ଅନ୍ୟ ସମସ୍ତଙ୍କୁ ମୋର ଆଶୀର୍ବାଦ ଓ ସଦିଚ୍ଛା ଦେଉଛି । ମୋର ବିଶ୍ୱାସ, ବର୍ତ୍ତମାନ ଏହି ନୂତନ ଗୃହ ସେମାନଙ୍କର ଆବଶ୍ୟକତା ଦୃଷ୍ଟିରୁ ଉପଯୁକ୍ତ ହେବ ଏବଂ ସେମାନେ ଗୃହର ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତାର ସଦୁପଯୋଗ କରିବେ ।

## ବିଧାନସଭାର ସ୍ୱାତନ୍ତ୍ର୍ୟ ସମ୍ପର୍କରେ ସରକାରୀ ଘୋଷଣା

କୌଣସି ବିଧାନ, ପ୍ରଥା, ବ୍ୟବସ୍ଥା, କାର୍ଯ୍ୟାନୁଷ୍ଠାନ ପ୍ରଭୃତି ଏହାର ପ୍ରତିକୂଳ ଥିବା ସତ୍ତ୍ୱେ ସଚିବଙ୍କ ସମେତ ସମସ୍ତ ସାଚିବିକ କର୍ମଚାରୀ, ଅର୍ଥାତ୍ ଓଡ଼ିଶା ବିଧାନ ସଭାର ସଚିବାଳୟ ସମ୍ବିଧାନର ୧୮୭(୧) ଧାରାଗତ ବ୍ୟବସ୍ଥାନୁସାରେ ଏକ ସ୍ୱତନ୍ତ୍ର ବିଭାଗ ହୋଇ ରହିବ, ଅର୍ଥାତ୍ ଯେକୌଣସି ପ୍ରକାର କାର୍ଯ୍ୟବାହୀ ନିୟନ୍ତ୍ରଣରୁ ମୁକ୍ତହୋଇ ଅଧ୍ୟକ୍ଷଙ୍କ ଏକମାତ୍ର ଓ କେବଳ ପ୍ରଶାସନୀ ନିୟନ୍ତ୍ରଣାଧୀନରେ ରହିବ । ଓଡ଼ିଶା ବିଧାନସଭା ସହିତ ସମ୍ପୃକ୍ତ ସମସ୍ତ ବିଷୟ ଓ ଜିନିଷପତ୍ରର ଅଧ୍ୟକ୍ଷ ଚୂଡ଼ାନ୍ତ ଅଧିକାରୀ ଅଟନ୍ତି । ଅଧ୍ୟକ୍ଷ ବିଧାନସଭା ପାଇଁ ଆବଶ୍ୟକ ହେବା କର୍ମଚାରୀଙ୍କ ସଂଖ୍ୟା ସ୍ଥିର କରିବେ । ବିଧାନସଭା ସଚିବାଳୟ ପାଇଁ ସମସ୍ତ ନିଯୁକ୍ତି ଅଧ୍ୟକ୍ଷଙ୍କ ଦ୍ୱାରା କିମ୍ବା ତାଙ୍କ କର୍ତ୍ତୃତ୍ୱାଧୀନରେ କରାଯିବ ।

ସମ୍ବିଧାନର 194 (3) ଧାରା ଅନୁଯାୟୀ ବ୍ରିଟିଶ୍ ହାଉସ ଅଫ୍ କମନ୍ସ ତା'ର ସଭ୍ୟବୃନ୍ଦ ଓ ବିଭିନ୍ନ କମିଟିର କ୍ଷମତା, ସ୍ୱାଧୀକାର ଓ ବିଶେଷାଧୀକାରରୁ ଉତ୍ପନ୍ନ କିମ୍ବା ତା' ସହିତ ସମ୍ପୃକ୍ତ ଓ ସମସ୍ତ ପ୍ରଥା ଓ ପରମ୍ପରା ଆବଶ୍ୟକୀୟ ପରିବର୍ତ୍ତନ ସହ ଓଡ଼ିଶା ବିଧାନସଭା ପ୍ରତି ପ୍ରଯୋଜ୍ୟ ହେବ । ବ୍ରିଟିଶ ହାଉସ ଅଫ୍ କମନ୍ସ ପରି ଅଧ୍ୟକ୍ଷ ଓଡ଼ିଶା ବିଧାନସଭାର ପ୍ରତିନିଧିତ୍ୱ କରନ୍ତି । ଓଡ଼ିଶା ବିଧାନସଭା ସଚିବାଳୟ ସେହି ବିଭାଗ ପାଇଁ ବଜେଟ ପ୍ରସ୍ତୁତ କରିବେ । ତାହା ଅର୍ଥ ବିଭାଗ ଦ୍ୱାରା ଏକ ପୃଥକ ଅନୁଦାନ ଶୀର୍ଷ (Heads)ରେ ସାଧାରଣ ବଜେଟରେ ଅନ୍ତର୍ଭୁକ୍ତ ହେବ ଓ ସୁବିଧା ଅନୁଯାୟୀ ମୁଖ୍ୟମନ୍ତ୍ରୀ କିମ୍ବା ଅର୍ଥ ମନ୍ତ୍ରୀଙ୍କ ଦ୍ୱାରା ବିଧାନସଭାରେ ଆଗତ କରାଯିବ ।

ବିଧାନସଭା ବିଭାଗର ଆର୍ଥିକ ପ୍ରସ୍ତାବମାନ ସେଇ ବିଭାଗର ସଚିବଙ୍କ ଦ୍ୱାରା ସିଧା ଅର୍ଥବିଭାଗକୁ ପଠାଯିବ ଓ ଅର୍ଥବିଭାଗ ତାକୁ ଅଧ୍ୟକ୍ଷଙ୍କ ପ୍ରସ୍ତାବ ହିସାବରେ ଆନୁଷ୍ଠାନିକ ଭାବେ ମଞ୍ଜୁର କରିବେ । ଯଦି କୌଣସି କାରଣରୁ କୌଣସି ପ୍ରକାର ମତଦ୍ୱୈଧ ଉପୁଜେ ଓ ସଚିବାଳୟ ସ୍ତରରେ ତାର ସମାଧାନ ନ ହୁଏ, ତେବେ ଉକ୍ତ ବିଷୟ ବିଚାରାର୍ଥେ ଅଧ୍ୟକ୍ଷଙ୍କ ନିକଟକୁ ପଠାଯିବ ଓ ଅଧ୍ୟକ୍ଷ ଅର୍ଥମନ୍ତ୍ରୀ କିମ୍ବା ଦରକାର ହେଲେ ମୁଖ୍ୟମନ୍ତ୍ରୀଙ୍କ ସହିତ ପରାମର୍ଶ କରି ତାହା ସମାଧାନ କରିବେ ।

ବିଧାନସଭାର ବଜେଟ୍ ଅନୁଦାନ ମଧ୍ୟରେ ଯେକୌଣସି ବ୍ୟୟ ମଞ୍ଜୁର କରିବା କ୍ଷମତା ଅଧ୍ୟକ୍ଷଙ୍କର ରହିବ ଓ ଯଦି ଦରକାର ପଡ଼େ ଅଧ୍ୟକ୍ଷ ଅର୍ଥର ଆବଶ୍ୟକ ପୁନର୍ବିନିଯୋଗ କରିପାରିବେ ।

---

# ଗ୍ରନ୍ଥସୂଚୀ (Bibliography)


| | | | |
|---|---|---|---|
| ଦାସ, ନୀଳକଂଠ | ଆତ୍ମଜୀବନୀ | କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, । | 1986 |
| ଏଜନ୍ | ଗ୍ରନ୍ଥାବଳୀ | ଏଜନ୍ | 1986 |
| ଦାସ, ବିକ୍ରମ | ମୋ ନନାଙ୍କ ଦେଶ | ଓଡ଼ିଶା ବୁକ୍ ଷ୍ଟୋର, କଟକ । | 1683 |
| ଦାଶ, ଗଗନେନ୍ଦ୍ର<br>ମିଶ୍ର, ବନମାଳି<br>ଦାଶ, ମଧୁସୂଦନ } ସଂପାଦନା | ପଣ୍ଡିତ ନୀଳକଂଠ ସ୍ମାରକୀ, ତୃତୀୟ ଖଣ୍ଡ । | ପଣ୍ଡିତ ନୀଳକଂଠ ସ୍ମୃତି ସମିତି । | 1986 |
| ମହାନ୍ତି, ଜଗନ୍ନାଥ<br>ମିଶ୍ର, ଭାବଗ୍ରାହୀ } ସଂପାଦନା | ପଣ୍ଡିତ ନୀଳକଂଠ ସ୍ମାରକୀ, ଚତୁର୍ଥ ଖଣ୍ଡ । | ଏଜନ୍ | 1988 |
| ମିଶ୍ର, ନରେନ୍ଦ୍ରନାଥ | ପଣ୍ଡିତ ନୀଳକଂଠ : ଜୀବନ ଓ କୃତି । | ଏଜନ୍ | 1983 |
| ମିଶ୍ର, ସଦାଶିବ<br>ମହାପାତ୍ର, ନିତ୍ୟାନନ୍ଦ<br>ମିଶ୍ର, ଭାବଗ୍ରାହୀ<br>ଦାଶ, ମଧୁସୂଦନ } ସଂପାଦନା | ପଣ୍ଡିତ ନୀଳକଂଠ ସ୍ମାରକୀ । | ଏଜନ୍ | 1984 |
| ଏଜନ୍ | ନୀଳକଂଠ ସ୍ମାରକୀ | ଏଜନ୍ | 1983 |

| | | |
|---|---|---|
| Lok Sabha Secretariat | Pandit Nilakantha Das, Eminent Parliamentarian. | New Delhia 1990. |
| Mishra, Harihar .. | Pandit Nilakantha Das, The Legislator. | Kauishk Publish New Delhi 1990. |
| Orissa Legislative Assembly Secretariat. | Proceedings from 1952—1961. | |
| Orissa Legislative Assembly Secretariat (RILT Service). | A brief history of Orissa Legislative Assembly (1937—1995). | Bhubaneswar 1995. |

OGP—MP-VI (L. A.) 169—500—10-11-1997

